# ଭାରତ ଚରିତାମୃତ

## ଦ୍ୱିତୀୟ ଭାଗ




ଜଗବନ୍ଧୁ ସିଂହ

# ଭାରତ ଚରିତାମୃତ

## ଦ୍ୱିତୀୟ ଭାଗ

ଜଗବନ୍ଧୁ ସିଂହ

ଓଡ଼ିଶା ସାହିତ୍ୟ ଏକାଡେମୀ

# ଭାରତ ଚରିତାମୃତ

ଦ୍ୱିତୀୟ ଭାଗ




ଜଗବନ୍ଧୁ ସିଂହ

ପ୍ରକାଶକ:—
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର—୧

ମୁଦ୍ରାକର :—
ବୈଦ୍ୟଭୂଷଣ ଶିବରାମ ଦାଶ ଏମ୍. ଏ.
ଶତଦଳ ପ୍ରେସ—କଟକ

ପ୍ରଥମ ମୁଦ୍ରଣ
୧୯୬୪

ମୂଲ୍ୟ—ଦଶ ଟଙ୍କା ପଚିଶ ପଇସା

# ସୂଚୀପତ୍ର

# ଭାରତ-ଚରିତାମୃତ

## ଛସ୍ତରି ଅଧ୍ୟାୟ

### ବଳଭଦ୍ର ଉବାଚ

ଭାରତ ଜାତୀୟ ମହାମେଳା ସେ କଂଗ୍ରେସ
କେତେ ବରଷ ହୋଇଲା ତାହାର ଆୟୁଷ । ୧
ସେ ସଭାନାୟକ କିଏ କିଏ କେତେବେ ହେଲେ
ତହିଁର ବିଷୟ କିଛି ଜଣା ନ ପଡ଼ିଲା । ୨
ଏ ସର୍ବ ଚରିତ ମୋର ଶୁଣିବାକୁ ମନ
ଠିକେ ଠିକେ କହ ଗୁରୁ ହୋଇ ସୁପ୍ରସନ୍ନ । ୩

### ଜଡ଼ଭରତ ଉବାଚ

ପ୍ରଥମରେ ଅଠରଶ ପଞ୍ଚାଅଶୀ ସାଲେ
କଂଗ୍ରେସର ବଇଠକ ହେଲା ବୋମ୍ବାଇରେ । ୪
ଉମେଶଚନ୍ଦ୍ର ବାନୁର୍ଯ୍ୟା ସଭାପତି ହେଲେ
ସେ ବରଷ ସଭାକାମ ସେହୁ ଚଳାଇଲେ । ୫
ତାପର ବରଷ ସଭା କଲିକତାଠାରେ
ନାଉରୋଜୀ ନାୟକ ହେଲେ ପୁଣି ସେ ସଭାରେ । ୬
ତହିଁ ପର ବରଷ ମାନ୍ଦ୍ରାଜେ ସଭା କଲେ
ତାୟବଜୀ ସେ ସଭାରେ ନାୟକ ହୋଇଲେ । ୭
ଅଠରଶ ଅଠାଅଶୀ ସାଲେ ସଭା କଲେ
ଜରଜୟୁଲୁ ସାହେବ ନାୟକ ହୋଇଲେ । ୮

ଆଲାହାବାଦ ନଗରେ ବର୍ଷେ ସଭା ବସିଲା
ଭାରତର ସୁଖ ଦୁଃଖ ବିଚାର ଚଳିଲା । ୯
ତହୁଁ ପର ବରଷକୁ ବମ୍ବାଇ ନଗରେ
ଓ଼ଡ଼ରବର୍ଣ୍ଣ ସାହେବ ସଭାପତି ହେଲେ । ୧୦
ତହୁଁପର ବରଷକୁ କଲିକତାଠାରେ
ମେହେତା ସେ ବଇଠକେ ନାୟକ ହୋଇଲେ ।
ପର ବରଷକୁ ସଭା ନାଗପୁରଠାରେ
ଅନନ୍ତଚାର୍ଲୁ ସଭାରେ ସଭାପତି ହେଲେ । ୧୨
ତହୁଁପର ବରଷକୁ ଆଲାହାବାଦରେ
ଉମେଶଚନ୍ଦ୍ର ଆବର ସଭାପତି ହେଲେ । ୧୩
ଅଠରଶ ତେୟାନବେ ସାଲେ ଲାହୋରରେ
ଦାଦାଭାଇ ସେ ସଭାରେ ନାୟକ ହୋଇଲେ ।
ପର ବରଷ ମାନ୍ଦ୍ରାଜେ ହେଉଁ ସଭା କଲେ
ଓ଼ୟେବ ସାହେବ ସଭାପତି ହୋଇଥିଲେ । ୧୫
ପୁନା ନଗରେ ତା ପରେ ବଇଠକ କଲେ
ସୁରେନ୍ଦ୍ର ବାନୁର୍ଯ୍ୟା ସଭାପତି ହୋଇଥିଲେ । ୧୬
କଲିକତା ନଗରରେ ପରେ ସଭା କଲେ
ସାୟାଜୀ ସେ ସଭାର ନାୟକ ହୋଇଥିଲେ । ୧୭
ଅମରାବତୀ ନଗରେ ପରେ ସଭା କଲେ
ଶଙ୍କର ନାୟାର ସଭାପତି ହୋଇଥିଲେ । ୧୮
ପର ବର୍ଷ ମାନ୍ଦ୍ରାଜରେ ବଇଠକ କଲେ
ଆନନ୍ଦମୋହନ ବସୁ ସଭାପତି ହେଲେ । ୧୯
ତା ପର ବରଷ ସଭା ଲକ୍ଷ୍ନୌ ନଗରେ
ରମେଶ ଦତ୍ତ ସେଠାରେ ନାୟକ ହୋଇଲେ ।
ଉଣେଶି ଶ ଏକ ସାଲେ କଲିକତାଠାରେ
ସଭା ହେଲା ୱାଚ୍ଛା ସେ ନାୟକ ହୋଇଥିଲେ
ତା ପର ବରଷ ସଭା ଆଲ୍ହାବାଦରେ
ସୁରେନ୍ଦ୍ର ବାନୁର୍ଯ୍ୟା ସଭାପତି ହୋଇଥିଲେ ।

ମାନ୍ଦ୍ରାଜରେ ଅନ୍ୟ ବର୍ଷ ବଇଠକ କଲେ
ଲାଲମୋହନ ସେଠାରେ ସଭାପତି ହେଲେ ।୨୩
ବମ୍ବାଇରେ ପର ବରଷକୁ ସଭା କଲେ ।
କଟନ ସାହେବ ସଭାପତି ହୋଇଥିଲେ । ୨୪
ପର ବରଷ ଗୋଖଲେ ସଭାପତି ହେଲେ
ସଭା ବଇଠକ ହେଲା ବନାରସଠାରେ । ୨୫
ଲାହୋର ସହରେ ପର ବର୍ଷ ସଭା କଲେ
ଚନ୍ଦ୍ରଭରକର ସଭାପତି ହୋଇଥିଲେ । ୨୬
ପର ଦୁଇ ବରଷ ସୁରାଟ ମାନ୍ଦ୍ରାଜରେ
ସଭାରେ ରାସବିହାରୀ ନାୟକ ହୋଇଲେ । ୨୭
ଉଣିଶି ଶ ଦଶ ସାଲେ ଆଲାହାବାଦରେ
ଓ଼ଡ଼ରବର୍ଣ୍ଣ ସାହେବ ସଭାପତି ଥିଲେ । ୨୮
ପର ବର୍ଷ ସଭା ହେଲା କଲିକତାଠାରେ
ବି·ଏନ· ଧର ସେଠାରେ ସଭାପତି ହେଲେ ।
ବାଙ୍କିପୁରଠାରେ ପର ବର୍ଷ ସଭା କଲେ
ମୁଧୋଲକର ସେଠାରେ ସଭାପତି ହେଲେ । ୩୦
ତା ପର ବରଷ ସଭା କରାଚି ନଗରେ
ସୟଦ ମହମ୍ମଦ ଯେ ସଭାପତି ହେଲେ । ୩୧
ମାନ୍ଦ୍ରାଜରେ ପର ବରଷକୁ ସଭା କଲେ
ବି· ଏନ· ବସୁ ସଭାରେ ନାୟକ ହୋଇଲେ ।
ସଭା କଲେ ପର ବରଷକୁ ବମ୍ବାଇରେ
ଲର୍ଡ଼ ସିଂହ ସେ ସଭାରେ ନାୟକ ହୋଇଲେ ।
ଲକ୍ଷ୍ନଉ ସହରେ ପର ବର୍ଷ ସଭା କଲେ
ଆନନ୍ଦ ମଜୁମଦାର ସଭାପତି ହେଲେ । ୩୪
ତା ପରେ ସଭା ବସିଲା କଲିକତାଠାରେ
ଆନି ବେସାଣ୍ଟ ସଭାରେ ନାୟିକା ହୋଇଲେ ।
ପର ବରଷକୁ ସଭା କଲେ ବମ୍ବାଇରେ
ହାସାନ ଇମାମ ସଭାପତି ହୋଇଥିଲେ । ୩୬

ଅମୃତସହରଠାରେ ବଇଠକ କଲେ
ମୋତିଲାଲ ସେ ସଭାରେ ନାୟକ ହୋଇଲେ ।
ପର ବରଷରେ ସଭା ନାଗପୁରଠାରେ
ବିଜୟ ରାଘବାଚାରି ସଭାପତି ହେଲେ । ୩୮
ଏ ବରଷ ଆଉ ଥରେ କଲିକତାଠାରେ
ଲାଲା ଲଜପତ ରାୟ ସଭାପତି ହେଲେ । ୩୯
ପର ବରଷକୁ ପୁଣି ବଇଠକ କଲେ
ଅହମଦାବାଦଠାରେ ସକଳେ ମିଳିଲେ । ୪୦
ଆଜମଲ ଖାଁ ସଭାପତି ହୋଇଥିଲେ
ପର ବରଷକୁ ଗୟାଠାରେ ସଭା କଲେ । ୪୧
ଚିତ୍ତରଞ୍ଜନ ସଭାରେ ନାୟକ ହୋଇଲେ
ପର ବର୍ଷ ସଭା କଲେ କାକନଡ଼ାଠାରେ । ୪୨
ମହମଦ ଅଲି ସଭାପତି ହୋଇଥିଲେ
ସେ ବରଷ ଆଉ ଥରେ ହେଲା ଦିଲ୍ଲୀଠାରେ । ୪୩
ଆବୁଲକାଲାମ ସଭାପତି ହୋଇଥିଲେ
ପର ବରଷରେ ସଭା ବେଲଗାଉଁଠାରେ । ୪୪
ମହାତ୍ମା ଗାନ୍ଧି ଏଥର ସଭାପତି ହେଲେ
ପର ବରଷକୁ ସଭା କାନପୁରଠାରେ । ୪୫
ସରୋଜିନୀ ସେ ସଭାରେ ସଭାପତି ହେଲେ
ପରବର୍ଷେ ସଭା ହେଲା ଗୁହାଟି ନଗରେ । ୪୬
ଶ୍ରୀନିବାସ ଆୟାଙ୍ଗାର ଗୁହାଟି ସଭାରେ
ସଭାପତି ହୋଇ ସଭାକାର୍ଯ୍ୟ ଚଳାଇଲେ । ୪୭
ଊନବିଂଶ ସତାଇଶ ସାଲେ ମାନ୍ଦ୍ରାଜରେ
ସଭା ହେଲା ଆନସାରି ସଭାପତି ହେଲେ । ୪୮
ପର ବର୍ଷେ ସଭା ହେଲା କଲିକତାଠାରେ
ମୋତିଲାଲ ସେ ବରଷ ସଭାପତି ହେଲେ । ୪୯
ଊନବିଂଶ ଏକହିଂଶ ସାଲ କରାଚିରେ
ସଭା ହେଲା ପଟେଲ ସେ ସଭାପତି ହେଲେ । ୫୦

ପରୁ ବର୍ଷ ଦିଲ୍ଲୀଠାରେ ବଇଠକ କଲେ
ସେଠ ରଣ୍ଛୋଡ଼ଲାଲ୍ ଯେ ସଭାପତି ହେଲେ ।୫୧
ପର ବରଷକୁ ଯେଉଁ ବଇଠକ ହେଲା
କଲିକତାଠାରେ ସେହି ସଭା ହୋଇଥିଲା । ୫୨
ସେନଗୁପ୍ତା ସେ ସଭାରେ ସଭାନେତ୍ରୀ ହେଲେ
ତା ପର ବରଷ ବମ୍ବାଇରେ ସଭା କଲେ । ୫୩
ରାଜେନ୍ଦ୍ର ପ୍ରସାଦ ସଭାପତି ହୋଇଥିଲେ
ଊନବିଂଶ ଛତିଶ ସାଲେ ଲକ୍ଷନଉରେ । ୫୪
ପର ବରଷ ଆଉର ଫଇଜପୁରରେ
ଦୁଇ ବରଷ ଜହର ସଭାପତି ହେଲେ । ୫୫
ଊନବିଂଶ ଅଠତିଶ ସାଲେ ହରିପୁରେ
ସୁଭାଷ ବୋଷ ସେଠାରେ ସଭାପତି ହେଲେ ।୫୬
କଂଗ୍ରେସର ମୂଳ ଲକ୍ଷ ଭାରତର ହିତ
ଭାରତ ଲୋକେ କପରି ହୋଇବେ ଉନ୍ନତ ।୫୭
ସ୍ୱର୍ଣ୍ଣପ୍ରସୂ ଭାରତରେ ଅନ୍ନ ନ ମିଳଇ
ବିଦେଶି ବାଣିଜ୍ୟ ସବୁ ନେଇଯାଏ ବହି । ୫୮
ଏହିସବୁ ଆଲୋଚନା ସଭାରେ ହୁଅଇ
ଏହିପରି କେତେ କେତେ କାଳ ଗଲାବହି । ୫୯
ଯେତେ ଯେତେ ଆବେଦନ ନିବେଦନ ହେଲା
ଭାରତର ଦାବି କିଛି କେହି ନ ଶୁଣିଲା । ୬୦
ଯାବତ ସ୍ୱରାଜ୍ୟ ଭାରତକୁ ନ ମିଳିବ
ତାବତ ଭାରତ ଦୁଃଖ କେବେ ନ ଘୁଞ୍ଚିବ । ୬୧
ଶାନ୍ତ ଶୃଙ୍ଖଳା ସହିତ କାର୍ଯ୍ୟ କରାଯିବ
ଭାରତରେ ସ୍ୱରାଜ୍ୟ ପ୍ରତିଷ୍ଠା ତେବେ ହେବ ।୬୨
ଭାରତ ଯେବେ ସମ୍ପୂର୍ଣ୍ଣ ସ୍ୱାଧୀନ ନ ହେବ
ଭାରତବାସୀ କେବେହେଁ ସୁଖୀ ନ ହୋଇବ ।
ଗାନ୍ଧି ହେଲେ କଂଗ୍ରେସର ମୂଳ କର୍ଣ୍ଣଧାର
ସତ୍ୟ ଅହିଂସା ମାତ୍ର ସେ କଲେକ ପ୍ରଚାର ।୬୪

ସେହି ମତ ଧରି ଗାନ୍ଧି କାର୍ଯ୍ୟ ଚଳାଇଲେ
ଅସହଯୋଗ, ଆଇନ ଅମାନ୍ୟ ଛନ୍ଦ କଲେ ।
ବହୁ ଆନ୍ଦୋଳନ ପରେ ଭାରତ ଆଇନ
ଊନବିଂଶ ପଞ୍ଚତ୍ରିଂଶ ସାଲେ ସଂଶୋଧନ । ୬୬
ସେହି ସଂସ୍କାର ଫଳରେ ପ୍ରତିନିଧି ଗଲେ
କଂଗ୍ରେସ ଦଳର ମନ୍ତ୍ରୀ ଛଅ ପ୍ରଦେଶରେ । ୬୭
ଶାସନ ଚଳାଉଛନ୍ତି କଂଗ୍ରେସ ମତରେ
ପୂରା କ୍ଷମତା ତ ନାହିଁ ତାହାଙ୍କ ହାତରେ । ୬୮
ଦୁଇ ନାବେ ଗୋଡ଼ ଦେଇ ଚଳୁଅଛି କାମ
କଂଗ୍ରେସ ଲୋକଙ୍କ ମଧ୍ୟେ ନାହିଁ ଏକମନ । ୬୯
ବାମ ଡାହାଣ ଦୁ'ଦଳ ହୋଇ ରହିଛନ୍ତି
ପରସ୍ପର ଛକା ଛକି ହୋଇ ଚଳୁଛନ୍ତି । ୭୦
ବାମଦଳମାନେ ସାମ୍ୟବାଦ ମତ ଧରି
କାର୍ଯ୍ୟ କରିବାକୁ ହେଉଅଛନ୍ତି ତିଆରି । ୭୧
ବିପ୍ଳବ ସୃଷ୍ଟି କରିବା ଏମାନଙ୍କ ମତ
ମହାତ୍ମା ଏ ମତକୁ ପସନ୍ଦ ନ କରନ୍ତି । ୭୨
ତ୍ରିପୁରୀଠାରେ କଂଗ୍ରେସ ବୈଠକ ହେଲା
ସଭାପତି କିଏ ହେବ ବିବାଦ ଲାଗିଲା । ୭୩
ବାମଦଳ ଇଚ୍ଛା କଲେ ସୁଭାଷ ହୋଇବେ
ଡାହାଣ ଦଳଙ୍କ ମତ ସେ କେବେ ନ ହେବେ ।
ଏହିହେତୁ ନିର୍ବାଚନ ସମର ଲାଗିଲା
ପ୍ରତି ପ୍ରଦେଶରେ ଏହି ଲଢ଼ାଇ ଜଳିଲା । ୭୫
ସୁଭାଷ ସହିତ ସୀତାରାମୟା ଲଢ଼ିଲେ
ଅବଶେଷେ ଏ ସମରେ ସୁଭାଷ ଜିଣିଲେ । ୭୬
ସୁଭାଷ ଜିତିଲେ କିନ୍ତୁ ଦ୍ୱନ୍ଦ୍ୱ ନ ତୁଟିଲା
କ୍ରମେ କ୍ରମେ ଖରା ଆଲୋଚନା କରାଗଲା । ୭୭
କାର୍ଯ୍ୟକାରୀ ସମିତିରେ ଯେତେ ସଭ୍ୟ ଥିଲେ
ପ୍ରତିବାଦ ରୂପେ ସର୍ବେ କାର୍ଯ୍ୟ ଛାଡ଼ିଦେଲେ ।

ବୋଇଲେ ସୁଭାଷ ଯେବେ ସଭାପତି ହେବେ
ତାଙ୍କ ମତରେ ସେମାନେ କାର୍ଯ୍ୟ ନ କରିବେ
ଏହାପର ଲାଗିଲା ତୁମୁଳ ଗଣ୍ଡଗୋଳ
ତ୍ରିପୁରୀ ସଭାରେ ସବେ ହେଲେ ଏକମେଳ ।୮୦
ସେଠାରେ, ସଭାରେ ଏକ ପ୍ରସ୍ତାବ ହୋଇଲା
ଗାନ୍ଧି କାର୍ଯ୍ୟକାରୀ ସଭା ଗଢ଼ିବାର ହେଲା ।୮୧
ଏକଥା ସୁଭାଷ ଦଳ ପସନ୍ଦ ନ କଲେ
ନାନା ପରକାରେ ଆଲୋଚନା ଚଳାଇଲେ ।୮୨
ବାଦ ବିବାଦ ଲାଗିଲା ନାନା ପରକାର
ଗାନ୍ଧି ସୁଭାଷଙ୍କ ଭେଦ ହୋଇଲା ନିକର । ୮୩
କେତେକେତେ ଭାଷାମାନ ଲେଖା ଲେଖି ହେଲା
ସଂବାଦ ପତ୍ରରେ ସବୁ ପ୍ରକାଶ ପାଇଲା । ୮୪
ସୁଭାଷ ସଭା ସମୟେ ରୋଗଗ୍ରସ୍ତ ହେଲେ
କଂଗ୍ରେସର ସଭାପତି ରହି ନ ପାରିଲେ । ୮୫
ସଂକ୍ଷିପ୍ତ ଭାଷଣ ସେହୁ ଲେଖି ଦେଇଥିଲେ,
ତାଙ୍କ ପ୍ରତିନିଧି ଜଣେ ସଭାରେ ପଢ଼ିଲେ । ୮୬
ରାଜେନ୍ଦ୍ର ପ୍ରସାଦ ତେଣୁ ସଭାପତି ହେଲେ
କଂଗ୍ରେସ ବୈଠକର କାମ ଚଳାଇଲେ । ୮୭
କଂଗ୍ରେସ ଅଧିବେଶନ କାର୍ଯ୍ୟ ଶେଷହେଲା
ନିଖିଳ ଭାରତ କଂଗ୍ରେସର ସଭା ହେଲା । ୮୮
କାର୍ଯ୍ୟକାରୀ ସମିତି କିପରି ଗଢ଼ା ହେବ
କିଏ ଗଢ଼ିବ କିଏ ବା ତାର ସଭ୍ୟ ହେବ ।୮୯
ଗାନ୍ଧି ବୋଇଲେ ସୁଭାଷ ଅଟେ ସଭାପତି
ତାଙ୍କ ଦଳ ଲୋକ ବାଛି କରନ୍ତୁ ସମିତି । ୯୦
ତାଙ୍କ ମତ ସଙ୍ଗେ ଯାହା ମତ ମିଳିଯିବ
ସେମାନେ ସଭ୍ୟ ହୋଇଲେ ଶୁଭଫଳ ହେବ
କଂଗ୍ରେସ ସଭା କହୁଛି ଗାନ୍ଧି ମତ ନେଇ
କାର୍ଯ୍ୟକାରୀ ସମିତିକି ଗଢ଼ି ପାରେ କେହି । ୯୧

ଏ ଘଟଣା ଓ୍ୱଟେରୁ ଯେବେ ବହୁକାଳ ଗଲା
କାର୍ଯ୍ୟକାରୀ ସମିତି ଯେ ଗଠନ ହୋଇଲା ।
ସୁଭାଷ ବୋଇଲେ ହେବେ ମୁଁ ଏହା କରିବି
କଂଗ୍ରେସ ନିର୍ଦ୍ଧାରଣର ବିପକ୍ଷରେ ଯିବି । ୯୪
ବହୁ ଚିନ୍ତା ପରେ ସେହୁ ପଦତ୍ୟାଗ କଲେ
ରାଜେନ୍ଦ୍ର ପ୍ରସାଦ ପୁଣି ସଭାପତି ହେଲେ । ୯୫
ନିଖିଳ ଭାରତ କଂଗ୍ରେସର ଯେ ସମିତି
ରାଜେନ୍ଦ୍ରଙ୍କୁ ବାଛିନେଲେ ସେହୁ ସଭାପତି । ୯୬
ସୁଭାଷ ତ ସଭାପତି ରହି ନ ପାରିଲେ
ନିର୍ବାଚନ ପରେ ଯଥା ଶିଶୁପାଳ ହେଲେ । ୯୭
ବାମଦଳ ନାମ ଏବେ ଅଗ୍ରଗାମୀ ଦଳ
ସୁଭାଷ ବିସ୍ତୃତି କରିବେ ପ୍ରବଳ । ୯୮
ଭାରତର ସବୁ ପ୍ରଦେଶକୁ ଯାଉଛନ୍ତି
ଅଗ୍ରଗାମୀ ଦଳ କଥା କହି ବୁଲୁଛନ୍ତି । ୯୯
ଜହରଲାଲ ମତରେ ଅଗ୍ରଗାମୀ ଦଳ
ଆବଶ୍ୟକ ନାହିଁ କିଛି ହେବ ଅମଙ୍ଗଳ । ୧୦୦
କଂଗ୍ରେସ ଭିତରେ ବହୁ ଅନୀତି ପଶିଛି
ସେ ସବୁ ସଂସ୍କାର ପାଇଁ ବିଚାର ଲାଗିଛି । ୧୦୧
ଉପସମିତି ବସିଛି କରିବ ବିଚାର
କପରି ସମ୍ଭବ ହେବ ଏ ସବୁ ସଂସ୍କାର । ୧୦୨
ଏ ସବୁ ଦେଖି ମହାତ୍ମା ଅତ୍ୟନ୍ତ ଦୁଃଖିତ
ସତ୍ୟ ଅହିଂସା ନୀତିର ଏହା ବିପରୀତ । ୧୦୩
ଦୁର୍ନୀତି ରହିଲେ ସବୁ ଧର୍ମ ନଷ୍ଟ ହେବ
ଭଲ ଗୃହୀଁ ଗୃହୁଁ ଏଥୁଁ ଭେଲ ଉପୁଜିବ । ୧୦୪
ଦେଶ ପକ୍ଷେ ଏ ସବୁ ଭାବନା ଅମଙ୍ଗଳ
ବଳହାନି କରିଦେବ ଏହା କଂଗ୍ରେସର । ୧୦୫
ଏପରି କଂଗ୍ରେସ ହେବା ନ ହେବା ସମାନ
କଂଗ୍ରେସକୁ ଭାଙ୍ଗିଦେଲେ ଭଲ ହେବ ଜାଣ ।

ଏହାପରେ କେତେ କଥା ଗାନ୍ଧି କହୁଛନ୍ତି
ଶୁଣି ନ ଶୁଣିଲା ପରି ଲୋକେ ରହୁଛନ୍ତି । ୧୦୭
ବୋଲେ ଧନ ଜଗବନ୍ଧୁ ତୁହି ଜଗତ ସାଇଁ
ଭାରତ ବାସୀଙ୍କି ଦିଅ ସୁପଥ ଦେଖାଇ । ୧୦୮

ଇତି ଶ୍ରୀ ଭାରତ-ଚରିତାମୃତେ କଂଗ୍ରେସଚରିତ ବର୍ଣ୍ଣନୋ ଷଷ୍ଠ ସପ୍ତତମ ଅଧ୍ୟାୟଃ ।



## ସପ୍ତସ୍ତରି ଅଧ୍ୟାୟ

ବଳଭଦ୍ର ଉବାଚ

ଭାରତ ଅଟଇ ପରା ଇଂରେଜ ଅଧୀନ
ବ୍ରିଟିଶ ଜାତି ଚଳାଏ ଭାରତ ଶାସନ ।
ଭାରତରେ କେତେ କେତେ ଗଡ଼ଜାତ ଅଛି
ଦେଶୀୟ ରାଜ୍ୟ କେତେକ ଭାରତେ ରହିଛି ।
ସେ ସବୁ ଦେଶ ଶାସନ ହୁଏ କି ପ୍ରକାର
ଜଣା ନଗଲା ତହିଁର କିଛିହେଁ ଖବର । ୩
ରାଜକୋଟଠାରେ କି କି ଅନୀତି ହୋଇଲା
ଗଡ଼ଜାତ ମୂଲକରେ କଅବା ଘଟିଲା । ୪
ଗାନ୍ଧି କାହିଁପାଇଁ ପୁଣି ଉପବାସ କଲେ
କେତେଦିନ ପରେ ପୁଣି ଦୋଷ ମାନଗଲେ । ୫
ଏସବୁ ଚରିତମାନ କହନ୍ତୁ ଆପଣ
ଲୋକମାନେ ବୁଝିପିବେ ଏ ସବୁ କାରଣ । ୬

ଜଡ଼ଭରତ ଉବାଚ

ଭାରତର ମାନଚିତ୍ର ଦେଖିଛୁ କି ତୁହି
ଉତ୍ତର ଅଞ୍ଚଳ ଆଡ଼ୁ ଦେଖ ମନଦେଇ । ୭
କାଶ୍ମୀର, ଯାମୁ, ସେ ପଟିଆଲା, ବିକାନିର,
ଅଲୱାର, ଭରତପୁର ସେ ଧୋଲପୁର । ୮

ଖଇରପୁର, ଯେ ଯୋଧପୁର, ଆଜମୀର
ମାରଓ୍ୱାର, ଗୋଆଲିଅର, ଯେ ଉଦୟପୁର ।
ଟଙ୍କ, ଭୂପାଳ, ଇନ୍ଦୋର, ଲିମ୍ବିଡ଼ି ଆବର
ରାଜକୋଟ, ରାଜପିପ୍ଲା, ଯେ ଯାମନଗର । ୧୦
ଆଲୱର, ରେବା, ବରୋଦା ଆବର କୋହ୍ଲାପୁର
ପାଡ଼ୁକୁଟା, ହାଇଦରାବାଦ, ମହୀଶୂର । ୧୧
ଟ୍ରାଭାଙ୍କର, ବସ୍ତର, ବାମଣ୍ଡା, ରଣପୁର
ନୀଳଗିରି, ଢେଙ୍କାନାଳ, ସିକମି ଆବର । ୧୨
କୁଚବିହାର, ଅଗରତଲା, ମଣିପୁର
ଏସବୁ ଦେଶୀୟ ରାଜ୍ୟ ଅଟଇ ନଜର । ୧୩
ଓଡ଼ିଶାରେ ଗଡ଼ଜାତ ରାଜ୍ୟମାନ ଅଛି
କେତେ ନାମ କହୁଅଛି ଶୁଣ ବାଛି ବାଛି । ୧୪
ନୂଆଗଡ, ତାଳଚେର, ଖଣ୍ଡପଡ଼ା ପୁଣ
ମୟୂରଭଞ୍ଜ ଆବର କେନ୍ଦୁଝର ଜାଣ । ୧୫
ଗାଙ୍ଗପୁର, କଳାହାଣ୍ଡି, ପାଟଣା ସହିତ
ଅଛି ଓଡ଼ିଶାରେ ଅଠରଟି ଗଡ଼ଜାତ । ୧୬
ସରକାର ଯେତେବେଳେ ଭାରତକୁ ନେଲେ
ଏ ଦେଶୀୟ ରାଜ୍ୟ ସବୁ ବଳଶାଳୀ ଥିଲେ । ୧୭
ତେତେବେଳେ ସରକାର ସଙ୍ଗେ ସନ୍ଧି କଲେ
କଏ କରଦ କଏବା ମିତ୍ରରାଜ୍ୟ ହେଲେ । ୧୮
ପ୍ରତି ରାଜ୍ୟ ରାଜା ସଙ୍ଗେ ସନ୍ଧି କରାଗଲା
ସନ୍ଧିପତ୍ରମାନ ସରକାର ଲେଖିଦେଲା । ୧୯
ଦେଶୀୟ ରାଜ୍ୟରେ ରାଜା କଲେକ ଶାସନ
କ୍ଷମତା ସେମାନଙ୍କର ରହିଲା ଅକ୍ଷୁନ୍ନ । ୨୦
ପ୍ରତି ରାଜ୍ୟେ ସରକାର ପ୍ରତିନିଧି ଥିବ
ରାଜାମାନଙ୍କର ରୀତି ନୀତି ଦେଖୁଥିବ । ୨୧
ସନ୍ଧି ପତ୍ରର ସରତ ମାନି ଚଳୁଥିବେ
ସରକାର ସଙ୍ଗେ କେବେ ବିରୋଧୀ ନୋହିବେ ।

ଲୋଡ଼ା ହେଲାବେଳେ ସବୁ ସାହାଯ୍ୟ କରିବେ
ସରକାର ତାଙ୍କୁ ସେହିପରି ସାହା ହେବେ । ୨୩
ଭିନ୍ନ ଭିନ୍ନ ରାଜ୍ୟର କ୍ଷମତା ଭିନ୍ନ ଭିନ୍ନ
ସବୁ ରାଜାର କ୍ଷମତା ନୁହଇ ସମାନ । ୨୪
ସରକାରଙ୍କର ମିତ୍ର ହୋଇ କେ ରହିଲେ
କାଏ କିଛି କର ଦେଇ ରାଜ୍ୟଭାର ନେଲେ । ୨୫
ଏହିପରି ଆଜଯାକେ କାମ ଚଳୁଥିଲା
ସରକାର ସଙ୍ଗେ ତାଙ୍କ ସମ୍ପର୍କ ରହିଲା । ୨୬
ଭାରତ ଶାସନରୁ ସେ ପୃଥକ ରହିଲେ
ତାଙ୍କ ମନ ଇଚ୍ଛାରେ ଶାସନ ଚଳାଇଲେ । ୨୭
ସରକାର ଭାରତକୁ ଆଇନ-ଜାଲରେ
ଛନ୍ଦା ଛନ୍ଦ କରି ରଖିଛନ୍ତି ଯତନରେ । ୨୮
ଦେଶୀୟ ରାଜ୍ୟରେ ନାହିଁ ଆଇନ କାନୁନ
ସର୍କାରୀ ଆଇନକୁ କେ କରଇ ଗ୍ରହଣ । ୨୯
ଭାରତରେ ହେଲା ପୁଣ ନୂତନ ଶାସନ
ସେହି ଅନୁସାରେ ପୁଣି ଚଳିଲା ଶାସନ । ୩୦
ଭାରତରେ ସ୍ୱତନ୍ତ୍ର ସରକାର ହେଲା
ଦେଶୀୟ ରାଜ୍ୟ ଶାସନ ସେପରି ରହିଲା । ୩୧
ଦେଶୀୟ ରାଜ୍ୟଗୁଡ଼ିକ ଅନ୍ଧାର ମୂଲକ
ରାଜା ଅଛନ୍ତି ଏକମାତ୍ର ଦେଶର ଶାସକ । ୩୨
ଭାରତରେ କଂଗ୍ରେସର ଆନ୍ଦୋଳନ ହେଲା
ସ୍ୱରାଜ୍ୟ ଦାବି ପବନ ଭାରତେ ବହିଲା । ୩୩
ଦେଶୀୟ ରାଜ୍ୟରେ ସେ ପବନ ବାଜିଗଲା
ଗଡ଼ଜାତ ପରଜାଙ୍କୁ ଚେତା ଆଣିଦେଲା । ୩୪
ସେମାନେ ଦେଖିଲେ ତାଙ୍କ ଦଡ଼ଶା ଭାରତେ
ପ୍ରଜାକୁଳ ଆନ୍ଦୋଳନ କରୁଛନ୍ତି କେତେ । ୩୫
ଆନ୍ଦୋଳନ କରି କିଛି ଫଳ ଲଭ କଲେ
ତାଙ୍କ ଭଳି ଲୋକମାନେ ସଭାରେ ବସିଲେ ।

ମନ୍ତ୍ରୀ ହୋଇ ଚଳାଇଲେ ଦେଶର ଶାସନ
ସେମାନେ ନିଜ ରାଜ୍ୟରେ ହେଲେ ହୀନମାନ ।
ନାନା ପରକାର ଅତ୍ୟାଚାର ଭୋଗୁଛନ୍ତି
ସେମାନଙ୍କ ଦୁଃଖ କେ କାନକୁ ନ ନିଅନ୍ତି ।୪୦
ଭାରତ ଲୋକଙ୍କ ପରି କିଛି ଅଧିକାର
ନ ପାଇବେ କେବେ ସେହି ରାଜ୍ୟରେ ତାଙ୍କର ।
ଏହି ଅନଳ ଜଳିଲା ପ୍ରଜାଙ୍କ ହୃଦୟରେ
କେହି କେହି ଏ ଅଗ୍ନିରେ ଘୃତ ଢାଳିଦେଲେ
ପ୍ରଜାମାନେ ଉତ୍ତେଜିତ ହୋଇଣ ମାତିଲେ
ପ୍ରଜା ପ୍ରତିନିଧି ସଭାମାନ କରାଇଲେ । ୪୧
ଅତି କ୍ଷୁଦ୍ର ରାଜ୍ୟ ଖଣ୍ଡେ ଅଟେ ରଣପୁର
ସେଠାରେ ଏହି ଅନଳ ଜଳିଲା ପ୍ରଖର । ୪୨
ବେଜଗେଟ ସାହେବଙ୍କୁ ମାରି ପକାଇଲେ
ସରକାର ପ୍ରତିନିଧି ସେ ସାହେବ ଥିଲେ ।୪୩
ପ୍ରଜାଙ୍କର ଉତ୍ତେଜନା କ୍ରମେ ବୃଦ୍ଧି ହେଲା
ସବୁ ଦେଶୀୟ ରାଜ୍ୟକୁ ଏ ରୋଗ ମାଡ଼ିଲା ।୪୪
ତାଳଚେର ପ୍ରଜାମାନେ ପଳାଇ ଆସିଲେ
ଅନୁଗୁଳଠାରେ ଆସି ଆଶ୍ରୟ ଧରିଲେ । ୪୫
ସରକାରୀ ସୈନ୍ୟମାନେ ସେଠାକୁ ଆସିଲେ
ଦେଶୀୟ ରାଜ୍ୟରେ ସେହି ଶାନ୍ତିରକ୍ଷା କଲେ ।
ଦମନ ଲୀଳା ଲାଗିଲା ସବୁ ଗଡ଼ଜାତେ
ବିସ୍ତୃତ ଘଟଣା ଜଣା ନ ଗଲା ଭାରତେ । ୪୭
ସମ୍ବାଦପତ୍ର କେତେକ ବିବରଣ ଦେଲା
ସଠିକ ଖବର କିଛି ଜଣା ନ ପଡ଼ିଲା । ୪୮
ସବୁ ଦେଶୀୟ ରାଜ୍ୟରେ ପଡ଼ିଲା ଚହଳ
ଚାରିଆଡ଼େ ଲାଗିଗଲା ଏହି ଗଣ୍ଡଗୋଳ । ୪୯
ରାଜକୋଟଠାରେ ହେଲା ଏହି ଗଣ୍ଡଗୋଳ
ରାଜା ପ୍ରଜାରେ ବିରୋଧ ବଢ଼ିଲା ବହୁଳ । ୫୦

ଠାକୁର ସାହେବଙ୍କ ସଙ୍ଗେ ହେଲା ମତଭେଦ
ଗାନ୍ଧିଙ୍କ ସହିତ ହେଲା ବହୁତ ବିବାଦ । ୫୧
ଗାନ୍ଧିଙ୍କ ମତ ସହିତ ମତ ନ ମିଳିଲା
କେତେ ଭାଷା ଲେଖା ଲେଖି ଆବର ଚଳିଲା
ଗାନ୍ଧି ତେଣୁ ଉପବାସ ବ୍ରତ ଆରମ୍ଭିଲେ
ଦିନେ ଦୁଇଦିନ ଯାକେ କେହି ନ ଶୁଣିଲେ ।
ଲର୍ଡ଼ ଲିନ୍‌ଲିଥ୍‌ଗୋ ଯେ ଆମ୍ଭ ବଡ଼ଲାଟ
ତାଙ୍କ କାନକୁ ଏ କଥା ଚଳିଲା ନିରାଟ । ୫୪
ସେ ବୋଇଲେ ସବୁକଥା ସେହି ବୁଝିଦେବେ
ଉଚିତ ନ୍ୟାୟରେ ଯାହା ହୋଇବ କରିବେ ।
ଯେଉଁ ଭାଷା ଅର୍ଥନେଇ ଲାଗିଛି ବିବାଦ
ମଧ୍ୟସ୍ଥ ଜଣେ ମାନିଲେ ତୁଟିଯିବ ଭେଦ । ୫୬
ସେ ଭାଷାର ଯାହା ଅର୍ଥ ସେହି କହିଦେବେ
ଉଭୟେ ସେହି କଥାକୁ ଅବଶ୍ୟ ମାନିବେ । ୫୭
ଭାରତର ସର୍ବଶ୍ରେଷ୍ଠ ଉଚ୍ଚ ଅଦାଲତ
ମରିଶଗାୟାର ତାଙ୍କ ନାମ ଅଟେ ଖ୍ୟାତ ।୫୮
ତାହାଙ୍କୁ ମଧ୍ୟସ୍ଥ କରିବାର ସ୍ଥିର ହେଲା
ଉଭୟପକ୍ଷ ତାହାଙ୍କୁ ସିଉକାର କଲା । ୫୯
ଅନଶନ ବ୍ରତ ଏହାପରେ ବନ୍ଦ ହେଲା
ଗାନ୍ଧିଙ୍କ ଶରୀର କ୍ରମେ ନିରାମୟ ହେଲା । ୬୦
ଗାନ୍ଧି ଯେ ଭାଷାର ଯେଉଁ ଅର୍ଥ କରୁଥିଲେ
ମରିଶଗାୟାର ସେହି ଅର୍ଥ କରିଦେଲେ । ୬୧
ଅସଲ ବିଷୟ କିଛି ମୀମାଂସା ନ ହେଲା
ପୁଣି କେତେ କେତେ ଯୁକ୍ତି ତର୍କ ହୋଇଲା ।
ଗାନ୍ଧି ପୁଣି ବୋଇଲେ ତାଙ୍କର ଭ୍ରମ ହେଲା
ଅନଶନ କରିବାର ଉଚିତ ନ ହେଲା । ୬୩
ସେହି ଅନଶନ ମୂଳେ ହିଂସା ଭାବ ଥିଲା
ତେଣୁ ଏ ଅନଶନର ଫଳ ନ ମିଳିଲା । ୬୪

ଏପର୍ଯ୍ୟନ୍ତ ହୋଇ ନାହିଁ କିଛି ସମାଧାନ
କି ଉପାୟ କାଢ଼ିବ ଲଗିଛି ଧ୍ୟାନ ।
ପ୍ରତିନିଧି ଶାସନ ଯାବତ ନ ହୋଇବ
ତାବତ ଏ ଆନ୍ଦୋଳନ କେବେ ନ ଛୁଟିବ । ୬୬
ହାଇଦ୍ରାବାଦ ଲମ୍ବିଡ଼ି ପ୍ରଭୃତି ରାଜ୍ୟରେ
ଆନ୍ଦୋଳନ ଚଳୁଅଛି ପ୍ରଖର ଗତିରେ । ୬୭
କଂଗ୍ରେସ ସକ୍ଷାତଭାବେ କିଛି କରିନାହିଁ
ସରକାର କି କରିବେ ଲୋକେ ଛନ୍ତି ଚାହିଁ । ୬୮
ଘର ବାହାରେ ଲଗିଛି ଏହି ଗଣ୍ଡଗୋଳ
ପୁର ପଲ୍ଲୀରେ ପଡ଼ୁଛି ସତତ ଚହଳ । ୬୯
ଅଶାନ୍ତ ପବନ ବହୁଅଛି ଭାରତରେ
ମତଭେଦ ଚାଲୁଅଛି ନାନା ପରକାରେ । ୭୦
ମତାନ୍ତର ମନାନ୍ତର ଅଛି ପରସ୍ପରେ
ହୃଦୟ ନିର୍ମଳ କଥା ନାହିଁ କାହାଠାରେ । ୭୧
ଭାରତେ ଅସହଯୋଗ ହେଲା ଯେତେବେଳେ
କ୍ଷମତା ଉତ୍କଟ ବିଷ ଗାନ୍ଧି କହିଥିଲେ । ୭୨
କ୍ଷମତା ବିଷ ରହିଛି ଶାସନ ଯନ୍ତ୍ରରେ
ଯେ ହାତ ଦେବ ତହିଁରେ ଯାରିବ ବିଷରେ ।୭୩
ସେ ବ୍ୟାମୋହ ଛୁଟାଇବା ନୁହଇ ସହଜ
ଏବେ କ୍ଷମତା ପାଇଛନ୍ତି କି ହେଉଛି ବୁଝ ।୭୪
କିଛି କ୍ଷମତା ନବାତ ପଣା ସଙ୍ଗେ ସରି
ପିଇଦେଲେ ମୁହଁଏ ସତତ ହେବ ଝୁରି ।୭୫
ଦେଶୀୟ ରାଜ୍ୟ ସମସ୍ୟା ବଡ଼ ଗୁରୁତର
ଜଣାନାହିଁ କି ହୋଇବ ଭବିଷ୍ୟତ ତାର । ୭୬
ଭାରତରୁ ଯେବେ କେହି ଗଡ଼ଜାତ ଯିବ
ରାଜାଆଜ୍ଞା ନ ପାଇଲେ ରହି ନ ପାରିବ । ୭୭
ଗିରଫ କରିବେ ତାକୁ କାରାଗାରେ ଦେବେ
ଏଭଳି ଅବସ୍ଥା ହୋଇଅଛି ଜାଣ ଏବେ । ୭୮

ସତ୍ୟାଗ୍ରହ କରିବାକୁ କେତେ କର୍ମୀ ଗଲେ
ତାଙ୍କୁ ଧରିନେଇ ଆନସ୍ଥାନେ ଛାଡ଼ି ଦେଲେ ।
କଂଗ୍ରେସ କର୍ତ୍ତା ବୋଇଲେ ଏପରି ନ କର
ଏପରି କଲେ ବିଶେଷ ହେବନାହିଁ ଫଳ । ୮୦
ଗାନ୍ଧି ଏବେ ଭିନ୍ନ ପନ୍ଥା ଖୋଜ ହେଉଛନ୍ତି
କି କଲେ ଗଡ଼ଜାତରୁ ହୋଇପାରେ ମୁକ୍ତି ।
ଭାରତ ଶାସନ ପାଇଁ ହେଲା ଯେ ଆଇନ
ପ୍ରାଦେଶିକ ଶାସନ ଯେ ହୋଇବ ସ୍ୱାଧୀନ ।୮୨
ବ୍ୟବସ୍ଥା ସଭା ବସିବ ସବୁ ପ୍ରଦେଶରେ
ଲୋକ ପ୍ରତିନିଧିମାନ ବସିବେ ସେଠାରେ । ୮୩
ପ୍ରଦେଶ ଶାସନ କଥା ଏ ସଭା ବୁଝିବ
ପ୍ରଦେଶ ପାଇଁ ସକଳ ଆଇନ କରିବ । ୮୪
ପ୍ରଦେଶର ଆୟ ବ୍ୟୟ ସେମାନେ ବୁଝିବେ
କେନ୍ଦ୍ର ସରକାରୁ କିଛି ସାହାଯ୍ୟ ପାଇବେ । ୮୫
କେନ୍ଦ୍ର ସରକାର କି ସୂତ୍ରରେ ଗଢା ହେବ
ପ୍ରଦେଶ ସଭାରୁ ପ୍ରତିନିଧି ବଛା ହେବ । ୮୬
ପ୍ରତି ପ୍ରଦେଶରୁ ପ୍ରତିନିଧିମାନେ ଯିବେ
ଦେଶୀୟ ରାଜ୍ୟର ପ୍ରତିନିଧି ଅଣା ହେବେ ।୮୭
ଏମାନେ ସକଳେ ମିଳି କେନ୍ଦ୍ର ସରକାର
ସଂଯୁକ୍ତ ସଭା ନାମଟି ହୋଇବ ତାହାର । ୮୮
ଏ ପର୍ଯ୍ୟନ୍ତ ସେ ସଭାଟି ଗଢ଼ା ହୋଇନାହିଁ
ପୁରୁଣା ମତରେ କାମ ଚଳୁଅଛି ତହିଁ । ୮୯
କଂଗ୍ରେସ ବୋଲେ ଏ ମତ ନ କର ଗ୍ରହଣ
କପରି ସଂଯୁକ୍ତ ସଭା ହୋଇବ ଗଠନ । ୯୦
ଦେଶୀୟ ରାଜ୍ୟରେ ନାହିଁ ମତ ବା ନିୟମ
ହୋଇନାହିଁ ପ୍ରତିନିଧିମୂଳକ ଶାସନ । ୯୧
ଭୋଟ ଦେବା ଅଧିକାର ଲୋକଙ୍କର ନାହିଁ
ରାଜଆଜ୍ଞା ଅନୁସାରେ ସେ ଦେଶ ଚଳଇ । ୯୨

ସେ ଲୋକେ ତ ପ୍ରତିନିଧି ବାଛି ନ ପାରିବେ
ରାଜା ନିଜେ ବାଛି ତାଙ୍କ ଲୋକ ପଠାଇବେ ।
ରାଜାଙ୍କ ସଂଯୁକ୍ତ ଲୋକ ଯେ ସବୁ ଆସିବେ
ପ୍ରଜାପାଇଁ କପଟ ବା ପାଞ୍ଚି ଫିଟାଇବେ । ୯୦
ପରଜା ପକ୍ଷରେ ଏହା ନୁହଇ ମଙ୍ଗଳ
ତେଣୁ କେନ୍ଦ୍ର ସରକାର ନ ହେବ ସଫଳ ।୯୫
କଂଗ୍ରେସ ବୋଲେ ଏହାକୁ ଗ୍ରହଣ ନ କର
ଏଥିପାଇଁ ମହାଘୋର ଆନ୍ଦୋଳନ କର । ୯୬
ଭାରତ ଶାସନ ପାଇଁ ଯେ ଆଇନ ହେବ
ଭାରତ ଲୋକଙ୍କ ମତ ନେଇ କରାଯିବ । ୯୭
ଭାରତ ଲୋକେ ଆପଣା ସଭାକୁ ଗଢ଼ିବେ
ସେ ସଭାରେ କ ଆଇନ ହେବ ବିଚାରିବେ । ୯୮
ସେଠାରେ ବୁଦ୍ଧି ବିଚାରି କରିବେ ଆଇନ
ସେ ବିଧାନେ ଚଳାଇବେ ଭାରତ ଶାସନ ।୯୯
ତେବେ ପୂରା ଗଣତନ୍ତ୍ର ଶାସନ ବସିବ
ଭାରତ ନିଜ ଭାଗ୍ୟର ବିଧାତା ହୋଇବ ।୧୦୦
କଂଗ୍ରେସର ମତ ଏହା ହେଲା ନିର୍ଦ୍ଧାରଣ
ଗାନ୍ଧି ମାର୍ଗ ଅନୁସାରେ ହେବ ଆନ୍ଦୋଳନ ।
ସତ୍ୟ ଅହିଂସା ମାର୍ଗରେ ସକଳ ହୋଇବ
ଶାନ୍ତ ଶୃଙ୍ଖଳାରେ ସବୁ କାମ କରାଯିବ ।୧୦୨
ସୁଭାଷଙ୍କ ମତ ସଙ୍ଗେ ଏ ମତ ଅମେଳ
ତେଣୁ ଦୁଇ ଦଳ ହୋଇ ହୁଏ ଗଣ୍ଡଗୋଳ ।
ଦଳ ସୃଷ୍ଟି ଭାଙ୍ଗି ଅଛି ଭାରତର ବଳ
ତେଣୁ ସର୍ବେ ଏକମନେ ଏକତ୍ରେ ଚଳ ।୧୦୪
ବୋଲେ ଜଗବନ୍ଧୁ ଅହେ ନୀଳାଚଳ ପତି
ଭାରତ ବାସୀଙ୍କି ପ୍ରଭୁ ଦିଅ ହେ ସୁମତି । ୧୦୫

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ଦେଶୀୟ ରାଜ୍ୟଚରିତ ବର୍ଣ୍ଣନେ
ସପ୍ତ ସପ୍ତମ ଅଧ୍ୟାୟଃ ।

# ଅଠସ୍ତରି ଅଧ୍ୟାୟ

### ବଳଭଦ୍ର ଉବାଚ

କଂଗ୍ରେସ ଅଟେ ଭାରତ ଜାତି ବଇଠକ
ସେ ସଭା ଯାହା କହିବ ପାଳିବେ ଏ ଲୋକ ।୧
ଏହି ମତି ଧରି କାମ କାର୍ଯ୍ୟ ହେଉଥିଲା
ପଞ୍ଚାଶ ବର୍ଷରୁ ଊର୍ଦ୍ଧ୍ୱ କାଳ ବିତିଗଲା । ୨
ମହାତ୍ମା ଗାନ୍ଧି ଯେ ହୋଇଥିଲେ କର୍ଣ୍ଣଧାର
ଅହିଂସା ଧର୍ମ୍ୟ ମାର୍ଗ ସେ କଲେକ ପ୍ରଚାର । ୩
ଅଟଳ ବିଶ୍ୱାସେ ତାଙ୍କ ବଚନକୁ ମାନି
କିଛି କିଛି କାମ କାର୍ଯ୍ୟ କରୁଥିଲେ ପୁଣି । ୪
ପୁରୁଣା ଖାଣ୍ଟି କଂଗ୍ରେସ କର୍ମୀମାନେ ଯେତେ
ଗାନ୍ଧି କଥାକୁ ବିଶ୍ୱାସ କରନ୍ତି ସମସ୍ତେ । ୫
ଗାନ୍ଧି ବିନୁ ପରିତ୍ରାଣ ନାହିଁ ଭାରତର
ତାଙ୍କ ପନ୍ଥାରେ ନ ଗଲେ ନାହିଁକ ନିସ୍ତାର । ୬
ଭାରତର ଜାତୀୟ ଜୀବନେ ଗାନ୍ଧି ପ୍ରାଣ
ତାଙ୍କୁ ଛାଡ଼ିଲେ ନିସ୍ତାର ନାହିଁ ବୋଲି ଜାଣ ।୭
ଡାକହାକ ଉଚ୍ଚସ୍ୱରେ ଏମନ୍ତ କହନ୍ତି
ଗାନ୍ଧି ନବ-ଭାରତର ଏକା ଗତି ମୁକ୍ତି । ୮
ବିଜ୍ଞ ଅଭିଜ୍ଞ କଂଗ୍ରେସ କର୍ମୀଙ୍କର ମତ
ଦୃଢ଼ଭାବେ କରୁଛନ୍ତି ଏ ମତ ବ୍ୟକତ । ୯
ଗାନ୍ଧିଙ୍କ ନୀତି ନିୟମେ ବିଶ୍ୱାସ ଯାହାର
ଗାନ୍ଧିବାଦୀ ବୋଲି ନାମ ଅଟେ ତାହାଙ୍କର ।୧୦
ଭାରତର ପୁର ପଲ୍ଲୀ କୁଟୀର ନିବାସୀ
ଗାନ୍ଧି ନାମ ଅହରହ ହେଉଛନ୍ତି ଘୋଷି । ୧୧
ସାଧିପାରନ୍ତୁ ବା ନ ପାରନ୍ତୁ ତାଙ୍କ ନୀତି
ଗାନ୍ଧି କହୁଛନ୍ତି ବୋଲି ଅଟଳ ଭକତି । ୧୨

ଗାନ୍ଧି ଏହା କହୁଛନ୍ତି ଅବଶ୍ୟ କରିବା
ଖାଲିରେ ଡ଼ିପରେ ପଡ଼ୁ କିଛି ନ ଭାବିବା ।୧୩
ସାଧନା ନ ଥାଉ ପଛେ ଏହି ବିଶ୍ୱାସରେ
ଆବଶ୍ୟକ ବେଳେ ଲୋକେ କାମ କରୁଥିଲେ ।
ସାମ୍ୟବାଦୀ ଦଳ ପୁଣି ବାହାର ହୋଇଲେ,
ତାଙ୍କ ମତ ନିୟମ ସେ ଲୋକଙ୍କୁ କହିଲେ । ୧୫
ପୁଣି ଅଗ୍ରଗାମୀ ଦଳ ହେଲେଣି ବାହାର
ସୁଭାଷ ସେ ଦଳର ହେଲେଣି କର୍ଣ୍ଣଧାର । ୧୬
ତାଙ୍କ ମତ ନିୟମ ସେ ଗାଇ ବୁଲୁଛନ୍ତି
ସେ ପଥେ ଅଛି ମୁକତି ବୋଲି କହୁଛନ୍ତି । ୧୭
ଏ ତିନି ଦଳ ମଧ୍ୟରେ ଲଗିଅଛି ଦ୍ୱନ୍ଦ
କେଉଁ ପଥ ଭଲ ଅବା କେଉଁ ପଥ ମନ୍ଦ । ୧୮
ସାରାସାର ବାଛିବାର ଅତ୍ୟନ୍ତ କଠିଣ
ଯେ ଯାହା ମତକୁ ସେହି ବୋଲନ୍ତି ପ୍ରଧାନ ।୧୯
କଂଗ୍ରେସ ଭିତରେ ହେଲେ ଏହି ତିନି ଦଳ
ଯେଉଁ ଦଳ ମତହେବ ସବୁଠୁଁ ପ୍ରବଳ । ୨୦
ସେହି ଦଳ ପଛେ ଲୋକମାନେ ଗୋଡ଼ାଇବେ
ସେ ଦଳ ଯାହା କହିବେ ତାହା ସେ କରିବେ ।
ବୁଝିଥିଲି ଗାନ୍ଧି ମତ ଅଟଇ ଶାଶ୍ୱତ
ସତ୍ୟ ଅହିଂସା ଉପରେ ଏହା ପ୍ରତିଷ୍ଠିତ । ୨୨
ପୁରାତନ ଧର୍ମ ଏହା ଅଟେ ଭାରତର
ସତ୍ୟ ସ୍ୱୟଂ ଭଗବାନ ସାକ୍ଷାତ ଈଶ୍ୱର । ୨୩
ଅହିଂସା ପରମଧର୍ମ ଅଟେ ଭାରତର
ଯିଶୁଖ୍ରୀଷ୍ଟ କହିଥିଲେ ଏ ଧରମ ସାର । ୨୪
ସେହି ଧର୍ମ ଧରି ଗାନ୍ଧି କାର୍ଯ୍ୟ କରୁଛନ୍ତି
ଏହି ଧରମ ଅଟଇ କଂଗ୍ରେସର ମତି । ୨୫

ବଳଭଦ୍ର ଉବାଚ

ସାମ୍ୟବାଦ ଅଗ୍ରଗାମୀ ବାଦର କି ନୀତି
ବୁଝି ପରୁନାହିଁ ମୁଁ ଏହାର ମତି ଗତି । ୨୬
ଦୟା କରି ବିସ୍ତାରି କହନ୍ତୁ ସାରସାର
କାହାର କି ଧର୍ମ କିବା ଆକାର ପ୍ରକାର ।୨୭
ଦିବ୍ୟଜ୍ଞାନ ବଳେ ଗୁରୁ କହନ୍ତୁ ଆପଣ
ଲୋକମାନେ ଶୁଣିଲେ ଲଭିବେ ଦିବ୍ୟଜ୍ଞାନ ।୨୮

ଜଡ଼ଭରତ ଉବାଚ

ସୁଭାଷ ନାୟକ ପଦ ପରିତ୍ୟାଗ କଲେ
ତାହାଙ୍କ ନୀତିକୁ କେହି ପସନ୍ଦ ନ କଲେ ।୨୯
ଗାନ୍ଧିଙ୍କ ମତ ସହିତ ନ ମିଳିଲା ମତ
ଗାନ୍ଧିବାଦୀମାନେ କେହି ନ ହେଲେ ସମ୍ମତ ।
ପଦତ୍ୟାଗ କରିଣ ସୁଭାଷ ବିଚାରିଲେ
ଲୋକମାନେ ତାଙ୍କ ପ୍ରତି ଅନ୍ୟାୟ ବିହିଲେ ।
ଅଧିକ ଭୋଟ ପାଇ ସେ ନିର୍ବାଚିତ ହେଲେ
ସୀତାରାମାୟା ସେ ଏହି ସମରେ ହାରିଲେ ।
ଗାନ୍ଧି ବୋଇଲେ ସେ ସୀତାରାମାୟା ହାରିଲେ
ତାଙ୍କ ନିଜ ପରାଜୟ ହେଲା ବିଚାରିଲେ । ୩୩
ଏହି କଥା ନେଇ ହେଲା ବହୁତ ବିବାଦ
ସମ୍ବାଦପତ୍ରରେ ଦେଲା ବହୁତ ସମ୍ବାଦ । ୩୪
ସପକ୍ଷ ବିପକ୍ଷ ଯୁକ୍ତି ଚଳିଛି ବହୁତ
ଗାନ୍ଧି ନୁହନ୍ତି ଏଥିରେ କିଛି ବିଚଳିତ । ୩୫
କେ ବୋଲେ ଗାନ୍ଧି ଯା କଲେ ନ ହେଲା ଉଚିତ
ଗାନ୍ଧି ନ ମାନିଲେ କାହିଁପାଇଁ ଲୋକମତ । ୩୬
ଗଣତନ୍ତ୍ର ଶାସନର ନୀତି ଭଙ୍ଗ ହେଲା
ଲୋକଙ୍କ ମତର ଆଉ କି ମୂଲ୍ୟ ରହିଲା । ୩୭
ସୁଭାଷ ଏ ଯୁକ୍ତି ଧରି କଲେ ଆନ୍ଦୋଳନ
ଗାନ୍ଧି ସଙ୍ଗେ କଥାବାର୍ତ୍ତା ହେଲା ବହୁଦିନ ।୩୮

ଶେଷରେ ଦୁହିଁଙ୍କ ମତ ମେଳ ନ ହୋଇଲା
ଯେ ଯାହାର ମତ ପଥେ ଦମ୍ଭରେ ରହିଲା ।୩୯
ସୁଭାଷ ନିରାଶ ହୋଇ ପଦତ୍ୟାଗ କଲେ
ରାଜେନ୍ଦ୍ର ପ୍ରସାଦ ତେଣୁ ସଭାପତି ହେଲେ ।୪୦
ସୁଭାଷ ତେଣୁ ଅନେକ ଦଳ ସୃଷ୍ଟି କଲେ
ଅଗ୍ରଗାମୀ ଦଳ ବୋଲି ତାର ନାମ ଦେଲେ ।
ସେ ବୋଲନ୍ତି କଂଗ୍ରେସର କାର୍ଯ୍ୟକ୍ରମ ଯାହା
କିଛିମାତ୍ର ଏଣେ ତେଣେ ନ ହୋଇବ ତାହା ।
କାର୍ଯ୍ୟ ନିର୍ଘଣ୍ଟ ଯା ଅଛି ସେହିପରି ଥିବ
ସେହି ଅନୁସାରେ କାର୍ଯ୍ୟ କାରଣ ହୋଇବ ।
ମାନସିକ ବୃତ୍ତିମାନ ବଦଳାଇ ନେବା
ବିପ୍ଳବୀ ହୋଇ ସକଳ କାମ ଚଳାଇବା । ୪୪
ବିନା ରକ୍ତପାତରେ ବିପ୍ଳବ ହୋଇପାରେ
ଏ କଥା କି ଅସମ୍ଭବ ଆମ୍ଭ ଏ ଦେଶରେ ।୪୫
ମନରେ ବିପ୍ଳବ ଭାବ ନ ହେବା ଯାଏତ
ସ୍ୱରାଜ୍ୟ ପାଇ ପାରିବ ନାହିଁ ଏ ଭାରତ । ୪୬
ବର୍ତ୍ତମାନ ଶାସନ ଯେପରି ଭାବେ ଅଛି
ସେ ପରିସ୍ଥିତିକି ଦିଅ ମୂଳୁ ଛୋଟିପାଛି । ୪୭
ଏପରି ପରିବର୍ତ୍ତନ ନାମଟି ବିପ୍ଳବ
ଦେଶବାସୀଙ୍କର ହେଉ ଏହି ମନଭାବ । ୪୮
କଂଗ୍ରେସ କାର୍ଯ୍ୟ ନିର୍ଘଣ୍ଟ ଯାହା ଯାହା ହେବ
କାର୍ଯ୍ୟରେ ସେ ସବୁ ପରିଣତ କରାଯିବ । ୪୯
ମନରେ ବିପ୍ଳବ ଭାବ ରଖି ସବୁ କର
ବିପ୍ଳବୀ କର୍ମରେ ଯୁକ୍ତ ହୁଅ ହେ ନିର୍ଭର । ୫୦
କଂଗ୍ରେସ ବଇଠକରେ ଏ କଥା ପକାଇ
ମଞ୍ଜୁର କରାଇ ନେବା ବୁଝାଇ ସୁଝାଇ । ୫୧
ବର୍ତ୍ତମାନ କଂଗ୍ରେସର ଯାହା ରୀତି ନୀତି
ନିୟମ ଶୃଙ୍ଖଳା ଦିଗେ କରୁଅଛି ଗତି । ୫୨

କାଳକୁ ଚାହିଁ ଏ ଗତି ନୂତନ କାର୍ଯ୍ୟକାରୀ
ତେଣୁ ସେ ମତ ନିୟମ ଦିଅ ଜଳାଞ୍ଜଳି । ୫୩
ଭବିଷ୍ୟତେ ନାନା ବାଧା ବିଘ୍ନ ଆସି ପାରେ
କି ଉପାୟେ ତା ସହିତ ଲଢ଼ା ଯାଇପାରେ ।
ଦେଶ ଯେବେ ତହିଁପାଇଁ କମର କଷିବ
କି ଉପାୟେ କାର୍ଯ୍ୟ କଲେ ସେ ଶକ୍ତି ଆସିବ ।
ଯେବେ ଦେଶ ତହିଁପାଇଁ ହୋଇବ ପ୍ରସ୍ତୁତ
ତହିଁର କାର୍ଯ୍ୟନିର୍ଘଣ୍ଟ କରିବା ବିହିତ । ୫୬
ନିଖିଳ ଭାରତ ସ୍ୱେଚ୍ଛା ସଇନ ବାହିନୀ
ପ୍ରସ୍ତୁତ କରି ରଖିବା ଆବଶ୍ୟକ ପୁଣି । ୫୭
ହେଲାରେ ଏ କାର୍ଯ୍ୟ ଅଦ୍ୟାବଧି ହୋଇନାହିଁ
କଂଗ୍ରେସ ବିରୋଧି ଦଳ ଏ ସୁଯୋଗ ନେଇ ।
ସ୍ୱେଚ୍ଛାସେବକ ଦଳ ସେ କରୁଛନ୍ତି ଠୁଳ
ତାଙ୍କର କିସ ଉଦ୍ଦେଶ୍ୟ ଜଣା ନାହିଁ ମୂଳ ।୫୯
ଅଗ୍ରଗାମୀ ଦଳ ଆଉ କଥା ଏ କହିବେ
ଦେଶୀୟ ରାଜ୍ୟ ସହିତ ସମ୍ପର୍କ ରଖିବେ । ୬୦
ଦେଶୀୟ ରାଜ୍ୟରେ ଅଛି କେତେ ଅନୁଷ୍ଠାନ
ତହିଁ ମଧ୍ୟରୁ କେତେକ ବଡ଼ ବଳବାନ । ୬୧
କଂଗ୍ରେସ ସଙ୍ଗେ ମିଶିବା ପାଇଁ ଚାହୁଁଛନ୍ତି
କଂଗ୍ରେସ ସେ ସବୁକୁ ସ୍ୱୀକାର ନ କରନ୍ତି ।୬୨
କଂଗ୍ରେସ ଉଦ୍ଦେଶ୍ୟ ଅଟେ ସ୍ୱାଧୀନତା ଲଭ
ଏକା କି ଭାରତ ପାଇଁ ଏ ଲାଭ କରିବ । ୬୩
ଦେଶୀୟ ରାଜ୍ୟ କି ଏଥୁଁ ଅଲଗା ରହିବେ
ସେ ଲୋକେ କି ଏ ଫଳର ଭୋଗ ନ ପାଇବେ ।
ଏହି ମତ ସୁଭାଷ ଯେ କରନ୍ତି ପ୍ରଚାର
ଯୁବକ ଦଳଙ୍କ ମନ ମାନୁଛି ନିକର । ୬୫
କେତେ ଲୋକ କହୁଛନ୍ତି ନୂଆ ପଥେ ଯିବା
ଏ ପନ୍ଥାରେ ଶୀଘ୍ର ଆମ୍ଭେ ସ୍ୱାଧୀନ ହୋଇବା ।

ଅଗ୍ରଗାମୀ ଦଳ ବୋଲେ କଥାଏ କରିବା
କୃଷକ ଦଳକୁ ଏ ଦଳରେ ମିଶାଇବା । ୬୭
ଏମାନେ ପୁଞ୍ଜିବାଦୀଙ୍କ ବଇରୀ ଅଟନ୍ତି
ଏ ଦଳ ସଙ୍ଗେ ମିଶିଲେ ବଢ଼ିବ ଶକତି । ୬୮
ଏପରି ନାନା ମୁନିର ଅଟେ ନାନା ପଥ
ଲୋକ ବୁଝି ନ ପାରନ୍ତି କାହାର କି ମତ ।
ଯେ ଯାହା ମତକୁ ସେହୁ କହୁଅଛି ଶ୍ରେଷ୍ଠ
ଆଉ ସବୁ ମତମାନ ତାଠାରୁ ନିକୃଷ୍ଟ । ୭୦
ରାଜନୀତି ପଥ ଅଟେ ବିଷମ ଗହନ
ବୁଝି ପାରିବା କଠିନ ସେ ନୀତି ନିୟମ । ୭୧
ପାଶ୍ଚାତ୍ୟ ଦେଶରେ ପ୍ରଚଳିତ ରାଜନୀତି
ପାଶବିକ ବଳ ଅଟେ ତାର ମୂଳ ଭିତ୍ତି । ୭୨
ବଳ ଯାହାର ଅଟଇ ମୁଲକ ତାହାର
ଇଉରୋପ ଦେଶେ ଏହି ନୀତି କାରବାର ।୭୩
ଏକ ଦେଶଠାରୁ ଯେବେ ବଳୀ ଆନ ଦେଶ
ସେ ତାକୁ ଅତି ଅକ୍ଳେଶେ କରିଦିଏ ଗ୍ରାସ ।୭୪
ଏହି ଲୀଳା ଖେଳା ଲାଗିଅଛି ସେ ଦେଶରେ
ଧର୍ମର ସମ୍ପର୍କ ନାହିଁ ସେ ରାଜନୀତିରେ । ୭୫
ଭାରତ ପ୍ରାଚୀନ ରାଜନୀତି ଯାହା ଥିଲା
ଧର୍ମ ନୀତି ସଙ୍ଗେ ସେହୁ ଯୋଡ଼ା ହୋଇଥିଲା ।
କି ନୀତିରେ ରାଜା ରାଜ୍ୟ ଶାସନ କରିବ
ପ୍ରଜାର ଦୁଃଖ କଷଣ କିଛି ନ ରହିବ । ୭୭
ପୁଅପରି ପରଜାକୁ ପାଳିବ ସୁଖରେ
ଉନ୍ନତି କରିବ ପ୍ରଜା ସକଳ ଦିଗରେ । ୭୮
କୃଷି ଶିଳ୍ପ ବାଣିଜ୍ୟରେ ଲାଭ କରୁଥିବ
ପରଜାର ଅନ୍ନକଷ୍ଟ କେବେହେଁ ନ ହେବ ।
ପରଜାଠାରୁ ଉଚିତ ରାଜସ୍ୱ ସେ ନେବ
ପରଜା ହିତରେ ତାକୁ ବ୍ୟୟ କରୁଥିବ । ୮୦

ଏ ବିଷୟ ରାଜନୀତି ନାମରେ କଥିତ
ପରଜାର ହିତାହିତ ଦେଖିବ ନିଯୁତ । ୮୧
ଧର୍ମ ଡୋରେ ବନ୍ଧା ଥିଲା ଏ ନୀତି ନିୟମ
ପରଜା ପାଳିବା ଅଟେ ରାଜାର ଧରମ । ୮୨
ଭାରତେ ରାଜନୀତିର ଅଟେ ଏ ମରମ
ରାଜ୍ୟ ଶାସନ ପ୍ରଧାନ ଧରମ କରମ । ୮୩
ଭାରତେ ଇଂରେଜ ରାଜାହେଲେ ଯେଉଁ ଦିନୁ
ପାଶ୍ଚାତ୍ୟର ରାଜନୀତି 'ଚଳିଲା ସେ ଦିନୁ । ୮୪
ଏ ସୃଷ୍ଟିରେ ଜୀବ ଅଟେ ଜୀବର ଜୀବନ
ଏ ନୀତିରେ ସାରା ସୃଷ୍ଟି ହେଉଛି ପାଳନ । ୮୫
ବଳ ଯାହାର ମୁଲକ ତାହାର ନିୟମ
ସେହି ନୀତିରେ ଏ ନୀତି ହୋଇଛି ଜନମ । ୮୬
ଖାଦ୍ୟ ପାଇଁ ଏ ବିଶ୍ୱରେ ଲାଗିଛି ସଂଗ୍ରାମ
କିଏ କାହାଠୁ ଛଡ଼ାଇ କରିବ ଭୋଜନ । ୮୭
ଗୋଡ଼ଆଗୋଡ଼ ସଂଗ୍ରାମ ଲାଗିଛି ବିଶ୍ୱରେ
କିଏ କାହାକୁ ଗୋଡ଼ାଇ ଖାଇ ପାରେ ବଳେ ।
ହିଂସା ବୃତ୍ତି ଜନମୁଛି ଏହି କଥା ନେଇ
ପ୍ରତ୍ୟେକ ଚେଷ୍ଟା କରୁଛି ନିଜ ରକ୍ଷା ପାଇଁ । ୮୯
ହିଂସାରୁ ଜନମୁଅଛି ନାନା ଅତ୍ୟାଚାର
ହାଣକାଟ ଗଣ୍ଡଗୋଳ ନାନାଦି ପ୍ରକାର । ୯୦
ଅଶାନ୍ତ ହାଠ ବସିଛି ତେଣୁ ଜଗତରେ
ଛକା ଛକ ରହିଛନ୍ତି କପଠ ବେଶରେ । ୯୧
ମଣିଷ ମାରିବା ଯନ୍ତ୍ର ନାନା ପରକାର
କୂଟ ବୁଦ୍ଧି ଖେଳାଇ କରନ୍ତି କାରିଗର । ୯୨
ମଣିଷ ମାରିବା ଯନ୍ତ୍ର ଯେ ଦେଶେ ଅଧିକ
ଆନ ଦେଶ ପରେ ସେହି ହେଉଛି ମାଲିକ । ୯୩
ଡରାଇ ଥରାଇ ଅବା ପରାଣେ ମରାଇ
ଦୁର୍ବଳ ଦେଶ ପ୍ରବଳ ଗ୍ରାସ କରେ ଭାଇ । ୯୪

ପ୍ରତିଦିନ ଏହି ଲୀଳା ଲଗିଛି ଜଗତେ
ଦେଖି ସ୍ତମ୍ଭିତ ହୁଅନ୍ତି ଭୀରୁ ଲୋକେ ଯେତେ ।
ପଶୁ ବଳ ଏ ମାନବର ଅଟଇଟି ବଳ
ସଭ୍ୟତା ବୋଲି ଏହାକୁ ବୋଲନ୍ତି ସକଳ ।
କୂଟ କପଟରେ ପୂର୍ଣ୍ଣ ଏହି ରାଜନୀତି
ବାହାରେ ସଫା ସୁତର ସବୁ ଶିଷ୍ଟରୀତି । ୯୭
ଗୁପତେ ଭିତରେ ତୀକ୍ଷ୍ଣ କାତି ଧରିଥାଏ
ବାଗ ପଡ଼ିଲେ ପଛରୁ ଯୋଖି ଭୂଷି ଦିଏ । ୯୮
ଦଣ୍ଡନୀତି ଭେଦ ନୀତି ଦୁଇ ଅସ୍ତ୍ର ଧରି
ବୁଲୁଅଛି ରାଜନୀତି ଦିବସ ଶର୍ବରୀ । ୯୯
ଦୁଇଶ ବରଷ କାଳ ଚଳୁଛି ଏ ଯନ୍ତ୍ର
ପେଡ଼ିକରି ରଯାକ ନିଅନ୍ତି ନିୟୁତ । ୧୦୦
ଚଢ଼ିଆ ହୋଇ ପଡ଼ିଛି ଏ ଭାରତ ଦେଶ
ନାହିଁ ଶକତି ଏହାର ମାରିବ ନିଶ୍ୱାସ । ୧୦୧
କେହି କେହି ବୁଝିପାରି ଏ ସକଳ ରୀତି
ଭାରତ ମୁକତି ଲାଗି ବିଚାର ବାନ୍ଧନ୍ତି । ୧୦୨
କଂଗ୍ରେସ ବସିବା ଦିନୁ ଲାଗିଛି ବିଚାର
ଠିକଣା ନ ହେଲା ସ୍ଥିର ଉପାୟ ଏହାର ।
ଆବେଦନ ନିବେଦନ ନିର୍ଦ୍ଧାରଣ ଯେତେ
ପଣ୍ଡ ହୋଇଲା ସକଳ ପାଞ୍ଚିଲେ ଯେ ଯେତେ ।
ନିର୍ଧନ ନିରକ୍ଷର ନିରସ୍ତ୍ର ବହୁତ
ଇଂରେଜି ପଢ଼ି ଚତୁର ହୋଇଲେ କେତେକ ।
ତହିଁ ମଧ୍ୟରୁ ଅନେକ ଚାକିରିଆ ହେଲେ
ଦରମା ପାଇ ସକଳ ବୁଦ୍ଧି ବିକି ଦେଲେ ।
କେତେ ଜଣ ମୁସଲମାନ ଚେତନା ଲଭିଲେ
ମୁଣ୍ଡକୁ ପାଣି ଛଡ଼ାଇ ତୁଣ୍ଡ ଫିଟାଇଲେ । ୧୦୩
ଅବଶେଷେ ଗାନ୍ଧି କର୍ମକ୍ଷେତ୍ରେ ଦେଖା ଦେଲେ
ଦେଶକାଳ ପାତ୍ର ସବୁ ବିବେଚନା କଲେ ।

ବହୁକାଳ ସାଧନାରେ ସିଦ୍ଧି ଲଭି କଲେ
ଭାରତି ମୁକ୍ତି ମନ୍ତ୍ରର ଲୋକଙ୍କୁ କହିଲେ । ୧୦୯
ଜଗାଇଲେ ଆତ୍ମବଳକୁ କର ଏବେ ମୂଳ
ସତ୍ୟ ଅହିଂସା ଏ ଦୁଇ ମାତ୍ର ଧରି ଚଳ । ୧୧୦
ଖଦି ପିନ୍ଧ, ନିଶା ଛାଡ଼, ଅସ୍ପୃଶ୍ୟତା ତେଜ
ଏ ସବୁ କରି ପାରିଲେ ପାଇବ ସ୍ୱ-ରାଜ୍ୟ ।
ଭାରତ ହାତରେ ଅସ୍ତ୍ର ଶସ୍ତ୍ର ନାହିଁ କିଛି
ଜଡ଼ପରି ଏ ଭାରତ ପଡ଼ି ରହିଅଛି । ୧୧୨
ପଶୁବଳ ସଙ୍ଗେ ଲଢ଼ିବାକୁ କାହିଁ ବଳ
ଏକା ତୋପକୁ ନଅଣ୍ଟ ସବୁ ଜନବଳ । ୧୧୩
ଆଧୁନିକ ସଂଗ୍ରାମକୁ ନାହିଁ କିଛି ବଳ
ବନ୍ଧୁକ ଗଲେ ମିଳିବ ନାହିଁ ଥଳକୂଳ । ୧୧୪
ଧରମ ବଳକୁ ଦୃଢ଼ କରିପାର ଯେବେ
ସ୍ୱରାଜ୍ୟ ସଂଗ୍ରାମେ ଜୟୀ ହୋଇପାର ତେବେ
ସତ୍ୟ ଧର୍ମ ନ୍ୟାୟ ଯାହା ସେ ସବୁ କରିବା
ଯେ ଯାହା କହିବ କହୁ ସକଳ ସହିବା ।୧୧୬
ଯାବତ ଆମ୍ଭର ନ୍ୟାଯ୍ୟ ଦାବି ନ ମିଳିବ
ଯେ ଯାହା କଷଣ ଦେଉ ଅବଶ୍ୟ ସହିବ ।
କାହା ପ୍ରତି ହିଂସା ଭାବ ନ ପୋଷିବ ମନେ
ସକଳ କଷ୍ଟ ସହିବ ସହାସ୍ୟ ବଦନେ । ୧୧୮
ସତ୍ୟ ଅହିଂସା ପଥରେ ଯେବେ ଦୃଢ଼େ ଥିବ
ଗୁଳି ଗୁଳା ବାରୁଦ ଯେ ପାଣି ଫାଟିଯିବ ।
ଦୁର୍ବଳ ଲୋକ ଏ କଥା କରି ନ ପାରିବ
ଆତ୍ମବଳେ ବଳୀ ଯେହୁ ସେ ଏହା କରିବ ।
ସତ୍ୟ ଅହିଂସା ପଥରେ ଯେହୁ ଗୋଡ଼ ଦେବେ
ଭୀରୁ କାପୁରୁଷ ଲୋକ ନୁହନ୍ତି ସେ କେବେ ।
ଏହି ସବୁ ମୁକ୍ତି ମନ୍ତ୍ର ଗାନ୍ଧି ଶିକ୍ଷା ଦେଲେ
ଦଳେତେକେତେ ଏ ଦୀକ୍ଷାରେ ଦୀକ୍ଷିତ ହୋଇଲେ ।

ସତ୍ୟ ଅହିଂସା ମତରେ ଜଗତ ଚଳିଲେ
ହିଂସା ଭାବ ଜଗତରୁ ଦୂର ହେବ ବଳେ ।
ପରମ ସୁଖ ଶାନ୍ତିରେ ସଂସାର ଚଳିବ
ଲୋକମାନଙ୍କ ସ୍ୱଭାବ ସଂଯତ ହୋଇବ । ୧୨୪
ଏ ମତ ଗାନ୍ଧି ମହାତ୍ମା କଲେକ ପ୍ରଚାର
ଏ ମତରେ ହେଲା କାମ ମିଳିଲାକ ଫଳ ।୧୨୫
ତୁରନ୍ତେ ଯାହା କହନ୍ତି ସେ କାମରେ କରନ୍ତି
ନକରି ପାରିବେ ଯାହା କେବେ ନ କହନ୍ତି ।
ଆଉମାନେ କଳ୍ପନାରେ କହନ୍ତି ବହୁତ
ବଚନ ଶୃଙ୍ଖଳା ବଳେ ବଳିଷ୍ଠ ସନ୍ତତ ।୧୨୭
ଦମ୍ଭ ଦର୍ପ ବଚନ ଶୃଙ୍ଖଳା ତାଙ୍କ ବଳ
କଳ୍ପନା ରାଜ୍ୟରେ ସ୍ୱର୍ଗ ଗଢ଼ନ୍ତି କେବଳ ।୧୨୮
ଏ ଦେଶ ସେ ଦେଶ ମାତ୍ର ସ୍ୱପନ ଦେଖନ୍ତି
ଲୋକଙ୍କ ଆଗେ ଆପଣା ବଡ଼ିମା ବାଢ଼ନ୍ତି ।୧୨୯
ପାଶ୍ଚାତ୍ୟ ହିଂସା ମତକୁ କରି ଆଗୁଁ ସାର
ସଂଗ୍ରାମ ପାଇଁ ଲୋକଙ୍କୁ ଡାକନ୍ତି ନିକର । ୧୩୦
କେ ବୋଲେ ଭାରତ ନୁହେଁ ଅସ୍ତ୍ର ଶସ୍ତ୍ର ହୀନ
ପ୍ରତ୍ୟେକ ଲୋକର ଦୁଇ ହାତ ଅଛି ପୁଣ ।୧୩୧
ତେତିଶ କୋଟି ଲୋକର କେତେ ହାତ ଗଣ
ଆଉ ଅଧିକ କି ଅସ୍ତ୍ର ଶସ୍ତ୍ର ପ୍ରୟୋଜନ । ୧୩୨
ଉଡ଼ା ବୁଡ଼ା ଅସ୍ତ୍ର ଶସ୍ତ୍ର ଯହିଁ ପଣ ପଣ
ଉପରୁ ବ୍ୟୋମଯାନରୁ ପଡ଼ିବ ତକ୍ଷଣ । ୧୩୩
ଲକ୍ଷ ଲକ୍ଷ ହାତ କି କରିବେ ତେତେବେଳେ
ଏକଥା ଅବଶ୍ୟ ହେବ ହିଂସା ମତ ଫଳେ ।
ଏହି ସବୁ ପରିସ୍ଥିତି କରି ହେ ବିଚାର
ଗାନ୍ଧି ମତ ଆଲୋଚନା କର ବାର ବାର ।୧୩୪
ତେଣୁ ବଡ଼ ଅଭିଜ୍ଞ ପଣ୍ଡିତେ ବୋଲୁଛନ୍ତି
ଭାରତ ପାଇଁ କି ଗାନ୍ଧି ମତ ଶ୍ରେଷ୍ଠ ମାନ୍ତି ।୧୩୬

ଧନ୍ୟ ଜଗବନ୍ଧୁ ବୋଲେ ପ୍ରଭୁ ଦୀନନାଥ
[illegible] ପରା ଅଟ ପ୍ରଭୁ ଅନାଥର ନାଥ । ୧୩୯
ଯୁଗେ ଯୁଗେ ଅବତରି ଧର୍ମ ଥାପୁଛ
ଆପଣା ଶ୍ରୀମୁଖେ ଏହା ଗୀତାରେ କହିଛ । ୧୩୮
ଜ୍ଞାନ ଦୀପ ଜାଳ ଦିଅ ଭାରତ ହୃଦରେ
ଈର୍ଷା ହିଂସା ଦ୍ୱେଷ ଭାବ ନାଶ ଯାଉ ହେଳେ ।
ସକଳେ ଭ୍ରାତୃ ପ୍ରେମରେ ହୋଇ ବନ୍ଧା ବନ୍ଧି
ଅଜ୍ଞାନ ଅନ୍ଧାରେ କେହୁ ନ ହୁଅନ୍ତୁ ଧନ୍ଦି । ୧୪୦
ନିର୍ମଳ ଅନ୍ତରେ ସର୍ବେ ହୋଇ କର୍ମପର
ଉନ୍ନତି ମାର୍ଗରେ ହୋଇ ଯାନ୍ତୁ ଅଗ୍ରସର । ୧୪୧

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ପରିସ୍ଥିତି ବର୍ଣ୍ଣନେ ଅଷ୍ଟସତୁରୀ ଅଧ୍ୟାୟଃ ।



## ଅଣସ୍ତୋରି ଅଧ୍ୟାୟ

ବଳଭଦ୍ର ଉବାଚ

ଗାନ୍ଧୀଙ୍କ ନୀତିର ମୂଳ ଭିତ୍ତି ଧର୍ମବଳ
ସତ୍ୟ ଅଟଇ ସାକ୍ଷାତ ପରମ ଈଶ୍ୱର । ୧
ସନାତନ ଧର୍ମର ଏହା ମୂଳ ତତ୍ତ୍ୱ
ଅହିଂସା ପରମ ଧର୍ମ ହୋଇଛି ଉକ୍ତ । ୨
ତେଣୁ ଗାନ୍ଧି ନୀତି ସହଜରେ ବୁଝାଗଲା
ପ୍ରାଚୀନ ତତ୍ତ୍ୱର ନୂଆ ବ୍ୟାଖ୍ୟାନ ହୋଇଲା । ୩
ଯୁବକଙ୍କ ନୀତି ମୂଳେ ନାହିଁ ଧର୍ମଭିତ୍ତି
ମାନୁ ନାହିଁ ମନ ଶୁଣି ଉପଜଇ ଭ୍ରାନ୍ତି । ୪
ହିଂସା ବୃତ୍ତି ନୁହେଁ ସନାତନ ଧର୍ମ ଅଙ୍ଗ
ତେଣୁ ଅଡୁଆ ଲାଗୁଛି ଏ ବିପ୍ଳବ ଢଙ୍ଗ । ୫
ଯୁବକର ମନୋବୃତ୍ତି ସନ୍ତତ ଉଦ୍ଦାମ
ସେମାନଙ୍କୁ ଭଲ ଲାଗେ ବିଶୃଙ୍ଖଳ କାମ । ୬

ଯୁବକ ଭବିଷ୍ୟତର ଚିନ୍ତା କରେ ନାହିଁ
ଖାଲେ ପଡ଼ୁ ଡ଼ିପେ ପଡ଼ୁ ମାଡ଼ିଯାଏ ସେହି । ୭
ଯୁବକ ଦେଶର ଶକ୍ତି ଭବିଷ୍ୟତ ନେତା
ସଂଯମ ବଳେ ସେ ହୋଇପାରେ ଜଗଜ୍ଜିତା । ୮
ଯୁବକ ଯେ ମତ କରି ଧାରଇ ପସନ୍ଦ
ବିଜ୍ଞ ଲୋକଙ୍କ ମନକୁ ତାହା ଅପସନ୍ଦ । ୯
ସାମ୍ୟବାଦ ମତ କଥା ଯାହା ମୁଁ ଶୁଣିଲି
ତାର ଗତି ଗୋପ୍ୟ କଥା ବୁଝି ନ ପାରିଲି । ୧୦
କି ଧର୍ମ ଭିତ୍ତି ଉପରେ ତାହା ପ୍ରତିଷ୍ଠିତ
କେଉଁ ଧର୍ମ ପୁରାଣରେ ଅଛି ଏହି ତତ୍ତ୍ୱ । ୧୧
ଏ ତତ୍ତ୍ୱ ବିସ୍ତାରି ମତେ କହନ୍ତୁ ଗୋସାଇଁ
ଶୁଣି ତବ ମୁଖୁ ଜ୍ଞାନ ଲଭିପାରେ ମୁହିଁ । ୧୨

## ଜଡ଼ଭରତ ଉବାଚ

ଏ ମତି ବିଷୟେ କେତେ କଥା ସଂକ୍ଷେପରେ
ପୂର୍ବ ଅଧ୍ୟାୟରେ କହିଥିଲି ଆଉ ଥରେ । ୧୩
ବୁଝି ନ ପାରିଲ ତୁମ୍ଭେ ଏ ମତ ରହସ୍ୟ
ପୁଣି ଯେବେ ପଚାରିଲ କହିବା ଅବଶ୍ୟ । ୧୪
ଏ ମତ ମୂଳରେ ଧର୍ମ ଭିତ୍ତି କିଛି ନାହିଁ
ବିତଣ୍ଡା ଯୁକ୍ତି ପ୍ରସୂତ ଏ ମତ ଅଟଇ । ୧୫
କେଉଁ ଶାସ୍ତ୍ର ପୁରାଣରେ ଏ କଥା ନ ଥିଲା
ରୁଷିଆ ଦେଶେ ଏ ନବ ମତ ଜନମିଲା । ୧୬
ଫରାସୀ ଜର୍ମାନୀ ଦେଶେ ଏହି ଭାବ ଥିଲା
କ୍ରମେ କ୍ରମେ ଗୃହ ଆଡ଼େ ଏ ରୋଗ ବ୍ୟାପିଲା । ୧୭
ଏ ଧରା ଜଗତେ ଯେତେ ଦେଶ ମହାଦେଶ
ଯେଉଁଠି ମାନବ ଜାତି କରନ୍ତି ନିବାସ । ୧୮
ମାନବ ସମାଜ ବାନ୍ଧି ସବୁଠି ରହଇ
ସମାଜ ପ୍ରିୟ ମାନବ ସବୁଠି ଅଟଇ । ୧୯

ପରିଶ୍ରମ ମାନବର ଅଟଇ ସମ୍ବଳ
[illegible] ଅରଜଇ ନିତ ମୂର୍ଖ ବ୍ରାହ୍ମଣ ଖଳ । ୨୦
ପରିଶ୍ରମ ମୂଳଭିତ୍ତି ବୁଦ୍ଧି ବିଦ୍ୟା ବଳ
ସେ ବଳେ ଲୋକ କରଇ ନାନା କଉଶଳ । ୨୧
ନାନା କଉଶଳେ କରେ ଧନ ଅରଜନ
ଚଳାଏ ତହିଁରେ ନିଜ ଅଶନ ବସନ । ୨୨
ଯେ ଯେପରି କର୍ମ କରେ ବୁଦ୍ଧି ଅନୁସାରେ
ସେ ସେପରି ଫଳ ଲଭକରେ ଏ ସଂସାରେ ।୨୩
ସକଳର ବୁଦ୍ଧି ବୃତ୍ତି ନୁହଇ ସମାନ
ତେଣୁ ସକଳର କର୍ମ ଅଟେ ଭିନ୍ନ ଭିନ୍ନ । ୨୪
କର୍ମ ଅନୁସାରେ ମଜୁରିର ତାରତମ୍ୟ
ସକଳ କର୍ମର ମୂଲ୍ୟ ନୁହଇ ସମାନ । ୨୫
କାର ଧନ ଅଛି କେହି କରେ ପରିଶ୍ରମ
ଲଭ•ଅଂଶ ବେଶି ତାର ଯାର ଅଛି ଧନ ।୨୬
ଶ୍ରମିକ ଶ୍ରମରେ ସବୁ ହୁଏ ଉତପନ
ମୂଳଧନ ଅଛି ଯାର ସେହି ଲଭବାନ । ୨୭
ଶ୍ରମିକର ଶ୍ରମ ଧନୀକର ମୂଳ ଧନ
ଧନୀକର ବହୁ ଲଭ ହୁଏ ଅରଜନ । ୨୮
ଶ୍ରମିକ ଶ୍ରମ ନ କଲେ ନ ପାଇବ ଅନ୍ନ
ଅନ୍ନ ବିହୁନେ ଏ ପ୍ରାଣ ରହିବା କଠିନ । ୨୯
ତେଣୁ ଏ ଜଗତେ ବାସ କଲେ ଯେତେ ଜନ
କାହା ସଙ୍ଗେ କା ଅବସ୍ଥା ନୁହଇ ସମାନ । ୩୦
କେହି ଖିରି ପିଠା ଖାଇ ଏଉଡ଼ି ମାରଇ
କାହାକୁ ବାସି ଓଳିକ ଦାନା ନ ମିଳଇ । ୩୧
କେହି ଅରଜଇ ଧନ ସମ୍ପତ୍ତି ବହୁତ
କେହି ବଡ ଦାଣ୍ଡେ ବସି କାନ୍ଦଇ ନିୟତ ।୩୨
କେହି ନିତଳ ଗୃହରେ କରଇ ଆସନ
କାହା କୁଟୀର ଉପରେ ନାହିଁ ଖିଏ ଛଣ । ୩୩

କାହାକୁ ପଖାଳ ଭାତ ଲୁଣ ନ ମିଳଇ
କାର ପେଟ ରୋଗ, ଖିର ପିଠା ନ ରୁଚଇ ।
କାହାର ପାଟ ପଟମ୍ବି ପୋକ ଖାଇଯାଏ
କାହାପାଇଁ ଛିଣ୍ଡାକନା ନ ମିଳେ ଖଣ୍ଡିଏ । ୩୫
ଘିଅଖାଇ କୁକୁରୁଆ କେ କରେ ଦୁଧରେ
କିଏ ପାଞ୍ଚ ସାତ ଦିନ ଉପାସରେ ମରେ । ୩୬
କାର ଦରମା ମାସକୁ ହଜାର ହଜାର
କାହାକୁ ନ ଜୁଟେ କିଛି ବୃତ୍ତି ବା ଦେପାର ।
ବାଟ ଚାଲି ଚାଲି ପାଦୁଁ ରକତ ବୁହଇ
କିଏ ବ୍ୟୋମଯାନେ ବସି ଆକାଶେ ଉଡ଼ଇ ।
ତୂଳତଳ୍ପ ଶଯ୍ୟାପରେ କେ ନିତ ଶୁଅଇ
କାହାକୁ ଚିରା ମସିଣା ଖଣ୍ଡେ ନ ମିଳଇ । ୩୯
କେ ରାଜା ହୋଇ ବସିଛି ସିଂହାସନ ପରେ
କେ ଚୋର ହୋଇ ହାଜର ହୋଇଅଛି ତଳେ ।
କେହୁ ଏ ରାଜ୍ୟରେ ହୋଇ ଅଛଇ ଅମୀର
କେହୁ ଦ୍ୱାରେଦ୍ୱାରେ ଫେରେ ହୋଇଣ ଫକୀର ।
କେହୁ ଦେଉଅଛି ଦାନ କେହୁ ନିଏ ଦାନ
କେହୁ ଶୂନ୍ୟେ ଉଡ଼ି ଯାଏ ଚଢ଼ି ବ୍ୟୋମଯାନ ।
ଏହିପରି ଯେତେଯେତେ ବିଚାର କରିବ
ଦୁନିଆରେ ଏ ବିଚିତ୍ର ଗତି ଦେଖା ଯିବ । ୪୩
ଗୁଣ ବୈଷମ୍ୟରୁ ସୃଷ୍ଟି ହୁଏ ଉତପନ୍ନ
ତେଣୁ ଜଗତର ସବୁ ଅଟଇ ବିଷମ । ୪୪
ଦୁଇଟି ବସ୍ତୁର ଗୁଣ ନୁହଇ ସମାନ
ହାତର ପାଞ୍ଚ ଆଙ୍ଗୁଠି ଅଟେ ଅସମାନ । ୪୫
ଆକାର ପ୍ରକାର ରୂପ ରସ ଗନ୍ଧ ଗୁଣ
ଜ୍ଞାନ କର୍ମାକର୍ମ ଆଦି ନୁହଇ ସମାନ । ୪୬
ଧନୀ ଦରିଦ୍ର ଅବଶ୍ୟ ରହିବେ ସଂସାରେ
ଯୁଗେ ଯୁଗେ ରହିଛନ୍ତି ଏହି ପରକାରେ । ୪୭

ଯେ ଯାହା ବୁଦ୍ଧିକି ଶ୍ରୁଦ୍ଧେ କରେ ଅରଜନ
ତେଣୁ ସକଳର ଧନ ନୁହଇ ସମାନ । ୪୮
ଜଗତର ଅଟେ ଏହା ଚିରନ୍ତନ ନୀତି
ଏହାକୁ ଏଡ଼ି ପାରିବ କାହାର ଶକତି । ୪୯
ଶ୍ରମିକ କୃଷି ମୂଲଆମାନେ ବିଚାରନ୍ତି
କାହିଁକି ହେବ ଏପରି ଅସମାନ ନୀତି । ୫୦
ସକଳ କରମ କରୁଥାଉଁ ଆମ୍ଭେମାନେ
ଆମ୍ଭେ ମୂଲଦୁଆ ଅଟୁଁ ଧନ ଉପାର୍ଜନେ । ୫୧
ଖରା କାକର ପବନ ବରଷା କାଳରେ
ଜୀବନ ମୂରୁଛୁ ଆମ୍ଭେ ଖଟୁଁ ଯାଇ ବିଲେ । ୫୨
ଆମ୍ଭେମାନେ ବିଲ ଚାଷ ନ କରିବୁଁ ଯେବେ
ଧାନ ହେବନାହିଁ ବିଲେ ମରିବେ ସରବେ । ୫୩
ସକଳ କାର୍ଯ୍ୟକୁ ଆମ୍ଭ ବାହୁବଳ ଲୋଡ଼ା
ଆମ୍ଭଯୋଗୁଁ ଲୋକେ ଚଢ଼ୁଛନ୍ତି ଗାଡ଼ି ଘୋଡ଼ା ।
ମୁଣ୍ଡଖାଳ ତୁଣ୍ଡେ ମାରି କରୁଁ ଅରଜନ
କେବେ ଆମ୍ଭର ଧନ ନ ମିଳଇ ଅନ୍ନ । ୫୫
ଆମ୍ଭ ଧନ ନେଇ ସର୍ବେ ହେଲେ ବଡ଼ଲୋକ
ଆମ୍ଭ ପିଲାଏ ଦରିଦ୍ର ଆବର ମୂରୁଖ । ୫୬
ନିଜ ଆୟୁ ବ୍ୟୟ ନିଜେ ବୁଝି ନ ପାରନ୍ତି
ଏପରି ଅଜ୍ଞାରେ ସଦା ଘାଣ୍ଟି ହେଉଛନ୍ତି । ୫୭
ଜଗତରେ ଦେଖୁଁଥାଇ ସବୁ ଅସମାନ
ସବୁ ଲୋକର କଳ୍ପନା ନୁହଇ ସମାନ । ୫୮
କେହୁ କଳ୍ପନା କରଇ ଏ ମୋର ଅନ୍ୟାୟ
ବଡ଼ ସାନ ଭେଦ କମା ରହିବ ନିଶ୍ଚୟ । ୫୯
ସକଳେ ସମାନ ଭାବେ ଚଳନ୍ତୁ ସଂସାରେ
ସର୍ବେ ଏକମେଳ ହୋଇ ଲଢ଼ନ୍ତୁ ଏଥିରେ । ୬୦
ମାର୍କସ ଲେନିନ ନାମରେ ଦୁଇଜଣ
ଏହି କଳ୍ପନାରେ ସଦା ହୋଇଲେ ମଗନ । ୬୧

ବହୁ କଳ୍ପନା ଜଳ୍ପନା କଲେ ଏଥିପାଇଁ
ଲାଗିଲେ ଏହି ଚିନ୍ତାରେ ନ ଖାଇ ନ ଶୋଇ ।
ଏହି ମତ ଦାଣ୍ଡେ ହାଟେ କଲେକ ପ୍ରଚାର
ଲେଖିଲେ ପୁସ୍ତକମାନ ନାନା ପରକାର ।୬୩
ଚଉଦିଗେ ଏହି ମତ ହୋଇଲା ପ୍ରଚାର
ସାମ୍ୟବାଦ ବୋଲି ନାମ ହୋଇଲା ତାହାର ।
ଋଷି ମୂଳିଆଙ୍କ କାନେ ଏ କଥା ପଡ଼ିଲା
ଅଗ୍ନିକି ବାୟୁ ସହାୟ ପରାଏ ହୋଇଲା । ୬୪
ଶୁଣିବାକୁ ସାମ୍ୟବାଦ ଅତି ମନୋହର
କାର୍ଯ୍ୟରେ ହେବା ଅଟଇ କଠିନ ବ୍ୟାପାର ।
ସାମ୍ୟବାଦୀ ମତ କସ କେହୁ ନ ବୁଝଇ
ମାତି ଉଠୁଛନ୍ତି ଲୋକେ ସାମ୍ୟବାଦୀ ହୋଇ ।
ବିଶ୍ୱାସ କରନ୍ତି ଲୋକେ ଏ ମତ ଧରିଲେ
ଦୁଃଖ ଦାରିଦ୍ର୍ୟ ପଳାଇ ଯିବ ଅବହେଳେ ।୬୫
ଯେଉଁମାନେ ଏହି ମତ କଲେକ ପ୍ରଚାର
ସେମାନେ କଳ୍ପନା କଲେ ଅତି ଚମତ୍କାର ।୬୯
ଧନୀ ଦରିଦ୍ର ମଧ୍ୟରେ ଯେଉଁ ଅସନ୍ତୋଷ
କପରି ତାର ସମୂଳେ ହୋଇବ ବିନାଶ ।୭୦
ଧନୀ ଦରିଦ୍ର ମଧ୍ୟରେ ଲାଗିଛି ସମର
ନୂତନ ନୁହେଁ ଏ କଥା ଅଛି ଚିରକାଳ । ୭୧
ପ୍ରବଳ ଦୁର୍ବଳ ପରେ କରେ ଅତ୍ୟାଚାର
ପ୍ରକୃତିର ମତ ଏହା ମନରେ ବିଚାର । ୭୨
ସାନ ଦୁର୍ବଳ ଜୀବ ଯେ ବଡ଼ ପ୍ରବଳର
ଆହାର ହେଉଛନ୍ତି ନିତି ଦେଖୁଛ ନିକର । ୭୩
ଏଥୁଁ ଅନଗତ ନାହିଁ ପ୍ରାଣୀ ଜଗତର
ଜୀବ ଅଟଇ ଜୀବର ନିଯୂତ ଆଧାର । ୭୪
ଏ ମତ ନିୟମ ଥିବ ସଂସାରେ ଯାବତ
ଧନୀ ଦରିଦ୍ର ସଂଘର୍ଷ ରହିବ ତାବତ । ୭୫

ସଂଘର୍ଷରୁ ଜନମିବ ପ୍ରବଳ କନ୍ଦଳ
ଲାଗିଥିବ ପରସ୍ପର ମଧ୍ୟେ ଗଣ୍ଡଗୋଳ । ୭୬
ଉତ୍ତେଜନା ଶୃଙ୍ଖଳା ଯେ ବଢ଼ିବ ନିଶ୍ଚିତ
ଶେଷଫଳ ହାଣ ମାର ହୋଇବ ନିଶ୍ଚିତ । ୭୭
ବର୍ତ୍ତମାନ ରାଜନୀତି ମୂଳେ ଏହି ଭାବ
ସକଳ ଲୋକ ହୃଦରେ ଏହା ପାଏ ଠାବ ।୭୮
ତେଣୁ ମାତି ଉଠୁଛନ୍ତି ଉଚ୍ଛୃଙ୍ଖଳ ହୋଇ
ଭୂତ ଭବିଷ୍ୟତ କିଛି ଗୋଚର ନୁହଇ । ୭୯
ଗାନ୍ଧି ଏ ବିଷୟମାନ ବୁଝନ୍ତି ସକଳ
ତାଙ୍କଠାରୁ ବିଶେଷ ବିପ୍ଳବୀ କିଏ ବୋଲ । ୮୦
ସେ ବୋଲନ୍ତି ଜଣେ କର୍ମୀ ବହୁଧନ ରଖି
ସଂସାର ମଧ୍ୟରେ ଯେହ୍ନେ ହେବ ଏକା ସୁଖୀ ।୮୧
ପ୍ରତିବାସୀ କାହିଁପାଇଁ ଶୋକରେ ସଢ଼ିବ
ଏ କଥା କର୍ମୀଙ୍କ ଭାରତରେ ଦେଖାଯିବ ।୮୨
ଅନର୍ଥରେ ଧନ ଜମି ମାଡ଼ିବସେ ଯେହ୍ନେ
ମାନବ ମଧ୍ୟରେ ମହା ଅପରାଧୀ ସେହି । ୮୩
ବହୁ ପରିମାଣେ କର ନ ଦେବେ କାହିଁକି
ଏଥିରେ ଅନ୍ୟାୟ ବିବେଚନା ଅଛଇ କି ? ୮୪
ଜଣେ ମରିଗଲେ ଯେବେ ବହୁଧନ ସଞ୍ଚି
ଉତ୍ତରାଧିକାରି ହୋଇ ଯେ ତାହା ପାଉଛି ।୮୫
ଅକ୍ଳେଶ ଲବ୍ଧ ଏ ଧନ ଅଟଇ ଜାତିର
ତେଣୁ ବୋଲେ କର୍ମୀଙ୍କ ସେ ଦେବ ନାହିଁ କର ।
ଧନୀ ଶ୍ରେଣୀ କାହିଁ ପାଇଁ ସୁଖରେ ରହିବେ
ଶ୍ରମିକ ମୂଲିଆ କର୍ମୀଙ୍କ ଦୁଃଖେ ଦିନ ନେବେ ।
ସମାଜ ଅର୍ଥରେ ମୁହିଁ ଏମନ୍ତ ବୁଝଇ
ସକଳେ ସମାନ ଭାବେ ଜନମ ଲଭିଲେ । ୮୮
ସମାନ ସୁଯୋଗ ସର୍ବେ ପାଇବା ଉଚିତ
କିନ୍ତୁ ସବୁରି ଶକତି ସମାନ ନୁହେଁ ତ । ୮୯

ଏପରି ସମାନ ହେବା ଅଟେ ଅସମ୍ଭବ
ପ୍ରାକୃତିକ ନୀତିର ବିରୁଦ୍ଧ ଏହା ଭାବ । ୯୦
ସକଳ ମାନବ ନୁହନ୍ତି ଏକାପରି ଉଚ୍ଚ
ବର୍ଣ୍ଣ, ଶକ୍ତି, ଗୁଣ, ବୁଦ୍ଧି ପାହାଚ ପାହାଚ ।
ତେଣୁ ଯେ ଯାହା ବୁଦ୍ଧିରେ କରେ ଅରଜନ
ଅଳପ ବହୁତ ତେଣୁ ହୁଏ ପରମାଣ । ୯୨
ଯାର ବୁଦ୍ଧି ଯେତେ ବେଶି ସେ ଅଧିକ ପାଏ
ଆନ ଊଣା ବୁଦ୍ଧି ଲୋକ ଦେଖି ଝୁରୁଥାଏ ।
ବୁଦ୍ଧିମାନ ଲୋକ ବୁଦ୍ଧି ଜାତୀୟ ସମ୍ପତ୍ତି
ଦେଶ ଲୋକ ସେ ଧନର ମାଲିକ ଅଟନ୍ତି ।୯୪
ଧନୀମାନେ ସେ ଧନର ନୁହନ୍ତି ମାଲିକ
ନ୍ୟାସି ବୋଲି ସେମାନଙ୍କୁ ବୁଝ ହେ ଗୁଣିକ ।
ଯେତେ ଇଚ୍ଛା ତେତେ ସେହୁ କରୁ ଅରଜନ
ତାକୁ ବାଧାଦେବା ପାଇଁ ନୁହେଁ ମୋର ମନ ।
ତାର ବୁଦ୍ଧିକି ସଙ୍କୋଚ ନ କରିବି ମୁହିଁ
ଯେତେପାରୁ ତେତେ ଧନ ଅରଜୁ ହେ ସେହି ।
ସେ ଧନ କିପରି ବ୍ୟୟ ହେବ ମୁଁ ଦେଖିବି
ରାଜ୍ୟର ମଙ୍ଗଳ କାମ ପାଇଁ ମୁହିଁ ନେବି । ୯୮
ପୁଅ ଯାହା ଦିନରାତି କରେ ଅରଜନ
ବାପ ଜମା ଆଣି ତାହା କରେ ସମର୍ପଣ । ୯୯
ପରିବାର ଇଜମାଲ ପାଣ୍ଠିରେ ତା ରହେ
ପରିବାର ହିତ ଖରଚରେ ବ୍ୟୟ ହୁଏ । ୧୦୦
ସେହିପରି ସମାଜ ଭିତରେ ଧନୀ ସ୍ଥାନ
ବଳକା ଧନ ସମାଜ ହିତପାଇଁ ଜାଣ । ୧୦୧
ଏହି ଧର୍ମ ଥାପିବାକୁ ଇଚ୍ଛା ଅଛି ମୋର
ହୋଇ ପାରିବ କି ନାହିଁ କାର୍ଯ୍ୟରେ ନିଜର ।
ଜୟ ପରାଜୟ ପାଇଁ ଶଙ୍କା ନାହିଁ ମୋର
ଏ ଢଙ୍ଗେ କାର୍ଯ୍ୟ କରିବି ପ୍ରତିଜ୍ଞା ମୋହର ।

କେ ବୋଲେ ମହା ବିପ୍ଳବୀ ଜଣେ ଅଟେ ମୁହିଁ
ବିପ୍ଳବୀ ବୋଲି ମୁଁ ମୋର ବିଶ୍ୱାସ ଅଛଇ ।୧୦୪
ବିପ୍ଳବୀ ମୁଁ ସତ ହିଂସା ଭାବ ନାହିଁ ମୋର
ଅହିଂସା ଭକ୍ତ ବିପ୍ଳବୀ ଅଟେ ମୁଁ ନିକର । ୧୦୫
ଅସହଯୋଗ ଉପାୟ ଅଟଇ ମୋହର
ଏ ଉପାୟେ ଥାପିବ ଏ ଧରମ ନିକର । ୧୦୬
ଯେଉଁ ଉପାୟରେ ହେଉ କଲେ ଅରଜନ
ଆନ ସହଯୋଗ ବିନା ନ ହେବ ଏକାମ ।୧୦୭
ଏକାକୀ ଜଣେ କିଛିହିଁ କରି ନ ପାରିବ
ଅବଶ୍ୟ ଆନର ସହଯୋଗ ସେ ଲୋଡ଼ିବ ।୧୦୮
ସ୍ୱେଚ୍ଛାରେ କେହୁ କାହାର ସହଯୋଗ କରେ
ଅବା କେହି ସହଯୋଗ କରେ ବଳାତ୍କାରେ ।
ଯେ ଧନୀ ଏ ତତ୍ତ୍ୱ ବୁଝି କାର୍ଯ୍ୟ ନ କରିବ
ଅସହଯୋଗ ଉପାୟେ ବାଟକୁ ଆସିବ । ୧୧୦
ଅଗ୍ରଗାମୀ ଦଳ ଅବା ସାମ୍ୟବାଦୀ ଦଳ
ଯେଉଁ ଉଦ୍ଦେଶ୍ୟ ସାଧିବେ ହୁଅନ୍ତୁ ବିକଳ ।୧୧୧
ଗାନ୍ଧିଙ୍କ ଉଦ୍ଦେଶ୍ୟ ଠାରୁ ନାହିଁ କିଛି ଭିନ୍ନ
ଗାନ୍ଧିଙ୍କ ଉପାୟ ସବୁଠାରୁ ବଳବାନ । ୧୧୨
ଅହିଂସା ଧର୍ମରେ ଯାର ନାହିଁଟି ବିଶ୍ୱାସ
ଆନ ଆନ ପନ୍ଥା ସେହୁ ଧରନ୍ତୁ ଅବଶ୍ୟ ।୧୧୩
କୃଷକମାନେ ବୋଲନ୍ତି ଜମି ତାହାଙ୍କର
ଗାନ୍ଧି ବୋଲନ୍ତି ଏ ତଥ୍ୟ ବିଶ୍ୱାସ ମୋହର ।
କିନ୍ତୁ ମୁହୂର୍ତ୍ତିକେ ଏହା ହୋଇ ନ ପାରିବ
ଜମିଦାରଠାରୁ ଚଷା ଛଡ଼ାଇ ନ ନେବ ।୧୧୫
ବଳ ପ୍ରୟୋଗ କଲେକି କାର୍ଯ୍ୟ ହେବ ନାହିଁ
ଆଗେ ନିଜ ଶକ୍ତି ନିଜେ ବୁଝି ଚଷାଭାଇ ।୧୧୬
ଅସହଯୋଗ ପନ୍ଥାରେ ଏ ଫଳ ମିଳିବ
କଳଗୋଳ ଦ୍ୱନ୍ଦ କିମ୍ପା ବୃଥାରେ କରିବ ।

ଧର୍ମ୍ମ ପଥରେ ନ ଗଲେ ଶାନ୍ତି ନ ମିଳିବ
ଅନର୍ଥକ ଅଶାନ୍ତିରେ କାଳ ବିତିଯିବ । ୧୧୮
ମନ୍ତ୍ରୀମାନଙ୍କ ସହିତ, ସହଯୋଗ କର
ନିର୍ବାଚିତ ପ୍ରତିନିଧି ସେମାନେ ତୁମ୍ଭର । ୧୧୯
ଏହା ଅଟେ ଗାନ୍ଧିବାଦ, ବୁଝ ମନଦେଇ
ସତ୍ୟ ଅହିଂସା ସାଧନା କର ମନଦେଇ ।୧୨୦
ସାମ୍ୟବାଦ ମତ ଏହାଠାରୁ ଅଟେ ଭିନ୍ନ
ଈଶ୍ୱର ମାନନ୍ତି ନାହିଁ ସାମ୍ୟବାଦୀ ଜନ । ୧୨୧
ରୁଷିଆ ଦେଶରେ ହେଲା ଏ ମତ ପ୍ରଚାର
ସେ ଦେଶରେ ରାଜବଂଶେ ରାଜା ଥିଲେ ଜାର ।
ବହୁ ପ୍ରାଚୀନ କାଳର ରାଜବଂଶ ଥିଲା
ଏକା ରାତିକେ ସବଂଶେ ସେହୁ ହଣା ହେଲା ।
ପ୍ରଜାମାନେ ଉତ୍ତେଜିତ ହୋଇ ଏହା କଲେ
ସବୁରି ଧନ ସମ୍ପତ୍ତି କାଢ଼ି ନେଇ ଗଲେ ।୧୨୪
ଲୋକେ ଆପଣା ଭିତରୁ ଯାହାକୁ ବାଛିଲେ
ସେହିମାନେ ରାଜ ସରକାର ବୋଲାଇଲେ ।
ସକଳ ଧନ ସମ୍ପତ୍ତି ହୋଇଲା ରାଜ୍ୟର
କାହାର ରହିଲା ନାହିଁ କିଛୁ ଅଧିକାର । ୧୨୬
ସକଳେ ମଜୁରି ଖଟି କରମ କରିବେ
ଯେ ଯାହାର ଅରଜନ ସରକାରେ ଦେବେ ।
ପ୍ରଜାର ଖାଦ୍ୟ ଇତ୍ୟାଦି ସରକାର ଦେବେ
ସରକାର ଶିକ୍ଷା ଭାର ବହନ କରିବେ । ୧୨୮
ନୂଆ କଥା ହେଲା ଏକ ଅତି ଉତ୍ସାହରେ
ସକଳେ ଏହି ପଥରେ ଚଳାଚଳ ହେଲେ ।
ସକଳେ ଅଟନ୍ତି ସିନା ପ୍ରକୃତି ଅଧୀନ
ପ୍ରକୃତି କେବେ କାହାର ନୁହଇ ଅଧୀନ । ୧୩୦
ନୂଆ କଥା ଦିନାକେତେ ଖୁସିରେ ଚଳିଲା
କ୍ରମେ କ୍ରମେ ପ୍ରକୃତି ସ୍ୱରୂପ ଦେଖାଇଲା । ୧୩୧

ଖାଦ୍ୟ ପେୟ ସରକାରୁଁ ଅକ୍ଳେଶେ ମିଳିଲା
କାର୍ଯ୍ୟକରିବା ପ୍ରବୃତ୍ତି କ୍ରମେ ଊଣାହେଲା ।
ମମତା ଲୋକଙ୍କୁ ନାନା କ୍ରମେ ନିଏ ଭିଡ଼ି
ନାନା କାର୍ଯ୍ୟରେ ଲଗାଏ ପ୍ରାଣ ଭୟ ଛାଡ଼ି ।
ମୁଁ ମୋହର ଏ ମମତା ମନରେ ନ ଥିଲେ
ବିଷୟ ରସରେ ରସି ନ ପାରିବ ଭଲେ ।୧୩୪
ମମତା ନ ଥିଲେ ବୁଦ୍ଧି ପ୍ରକଟ ନ ହେବ
ବୁଦ୍ଧି ବଳେ କିଛୁ କାମ କରି ନ ପାରିବ ।୧୩୫
ପେଟ ଚିନ୍ତା ଲୋକ ମନେ ଆଣଇ ପ୍ରବୃତ୍ତି
ନାନା ପରକାର ବୁଦ୍ଧି ଦିଶେ ତାହା ଚିନ୍ତି ।
ଲୋକମାନେ ସରକାରୁ ଭୋଜନ ପାଇଲେ
ଆଳସ୍ୟ ପ୍ରକୃତି କ୍ରମେ ଗ୍ରାସ କଲା ବଳେ ।୧୩୬
ଏକଥା ଦେଖାଗଲାରୁ ମତି ବଦଳିଲା
ପରିଶ୍ରମ ଅନୁସାରେ ମଜୁରି ବଢ଼ିଲା । ୧୩୮
ସାମ୍ୟବାଦ ମୂଳ ମତି ଆଉ ନ ରହିଲା
ଯେ ଯାହା କାମକୁ ଚାହିଁ ମଜୁରି ପାଇଲା ।୧୩୯
ପ୍ରକୃତି ବିରୁଦ୍ଧ ମତି ଅଟେ ସାମ୍ୟବାଦ
ଏଥିରୁ ଉପୁଜି ପାରେ ନାନାଦି ବିବାଦ ।୧୪୦
କାହାରିଠାରେ ଶାସନ ଶକତି ରହିବ
କେହି ଜଣେ ରାଜା ରୂପେ ଶାସନ କରିବ ।୧୪୧
ଇଟାଲିରେ ସୃସାଲିନ ଅଟନ୍ତି ଶାସକ
ହିଟଲର ଜର୍ମାନୀର ଅଟଇ ମାଲିକ । ୧୪୨
ଏମାନେ ସାମ୍ୟବାଦକୁ ପସନ୍ଦ ନ କଲେ
ଆପଣା ଆଦେଶେ ନିଜ ରାଜ୍ୟ ଚଳାଇଲେ ।
ରାଜ୍ୟ ଶାସନ ଅଟଇ କଠିନ ବ୍ୟାପାର
ରାଜ୍ୟର ପରିଚାଳନା ନୁହେଁ ପିଲାଖେଳ ।୧୪୪
ବୁଦ୍ଧିମାନ ଯୋଗ୍ୟ ଲୋକ ରାଜ୍ୟରେ ଯେ ଥିବ
ତାଙ୍କୁ ବାଛି ନେଇ ସରକାର ଗଢ଼ାଯିବ ।୧୪୫

ଲୋକ ସାଧାରଣ ଯାକୁ ତାକୁ ଶ୍ରେଷ୍ଠ ହେବେ
ରମା, ଦାମା, ଶାମା ଯାଇ ସଭାରେ ବସିବେ ।
ସେମାନେ ଯାଇ କପରି କରିବେ ଶାସନ
ଏ କଥାରେ ନ ମାନିଲା ସେମାନଙ୍କ ମନ ।୧୪୭
ଭାରତେ ସେହି ମତକୁ ଚଳାଇବା ପାଇଁ
କେତେ ଚିନ୍ତାଶୀଳ ଲୋକେ ହୋଇଛନ୍ତି ବାଇ ।
ସୁଭାଷ ଅଲଗା ଗୋଠ ଗଢ଼ୁଛନ୍ତି ପୁଣ
ଅଗ୍ରଗାମୀ ମତ ପୁଣି କରନ୍ତୁ ବଖାଣ । ୧୪୯
ଏ ସବୁ ମତ ନୂଆ ନୁହେଁ ଏ ଦେଶର
ବିଦେଶରେ ଜନମ ହୋଇଛି ଏ ସକଳ ।୧୫୦
ବିଦେଶକୁ ଯାଇ ଏ ଦେଶରୁ କେତେ ଭାଇ
ଆପାତ ମଧୁର କଥା ଶୁଣି ହେଲେ ବାଇ ।
ପାଞ୍ଚନ୍ତି ଭାରତେ ଆଣି ସେ ମଞ୍ଜି ପୋତିବା
ଗଛ ହେଲେ ଫଳ ଖାଇ ସୁଖରେ ରହିବା ।
ନାନା ବିଦେଶୀ ଦରବ ଭାରତେ ଆସିଲା
ସୁନ୍ଦର ରୂପ ଦେଖାଇ ମନ ମୋହି ନେଲା ।
ଘରେ ଘରେ ପ୍ରବେଶିଲା ସେ ସବୁ ଦରବ
ସାର ବାଛି ନେଇ ଘରୁ କଲାକ ଗରିବ ।୧୫୪
ତେଣୁ କହେ ହେ ଭାରତ ହୁଅ ସାବଧାନ
ଆଗ ପଛକୁ ବିଚାର କର ହେ ସୁଜନ । ୧୫୫
ଆପାତ ମଧୁର ରୂପ ବଚନ ଶୁଭୁଛି
ଶୁଣୁ ଶୁଣୁ ଭୋଳ ହୋଇ ନ ହୁଅ ହେ ଘାରି ।
ଯେ ଯାହା ବଡ଼ିମା ପଣ ସେହୁ ଦେଖାଇବେ
ମଧୁର ବଚନ କହି ତାଙ୍କ ଦଳେ ନେବେ ।
ଖାଲ ଖଣାରେ ପଡ଼ିଲେ କେହି ନାହିଁ ସାହା
ପଛନ୍ତେ ଖୋଜି ବୁଲିବ କାହିଁ ଅଛି ରାହା ।୧୫୮
ଆଜୀବନ ତପସ୍ୟାରେ ସିଦ୍ଧ ଯେଉଁ ଗାନ୍ଧି
ତାଙ୍କୁ ଛାଡ଼ି ଦେଲେ ମରୁଥିବ ହୋଇ ଧନ୍ଦି ।

ଆଜ ଯେତିକ ଆଦର ସମ୍ମାନ ପାଉଛ
ଗାନ୍ଧି ତପସ୍ୟାର ଫଳ ବୋଲି ମନେ ପାଅ ।
ସାମ୍ୟବାଦ, ଅଗ୍ରଗାମୀବାଦ ଆଦି ଯେତେ
ମହାକାଳ ଫଳ ପରି ଦିଶନ୍ତି ସମସ୍ତେ । ୧୬୧
ସୁନ୍ଦର ରୂପ ଦେଖିଣ ଭୁଲିଯାଅ ନାହିଁ
ଭାଙ୍ଗି ତା ଭିତର ଦେଖ କିସ ଅଛି ଭାଇ ।
ଦୀନ ଜଗବନ୍ଧୁ ବୋଲେ ନ ଭାବ ଏମନ୍ତ
ଜ୍ଞାନବୃକ୍ଷ ମୂଳେ ବସି କହୁଛି ଏମନ୍ତ । ୧୬୩
ଏକା ନାହାରେ ବସିଛି ତୁମ୍ଭ ସଙ୍ଗେ ଭାଇ
ମୋ ଜ୍ଞାନ କେତେ କି ମୁହିଁ କଳି ପାରୁନାହିଁ ।
ଅଜ୍ଞାନ ଅନ୍ଧାରେ ସର୍ବେ ଘାଣ୍ଟି ହେଉଥାଇଁ
ମୁଁ ଜ୍ଞାନୀ ମୁଁ ବଡ଼ ବୋଲି ବନ୍ଧା ବନ୍ଧ ହୋଇ ।
ଆସ ପ୍ରଭୁ ଜଗନ୍ନାଥ ଆସ ଅବତରି
ଉଚିତ ପଥ ଦେଖାଅ ଦୀନବନ୍ଧୁ ହରି । ୧୬୬

ଇତି ଶ୍ରୀ ଭାରତ-ଚରିତାମୃତେ ସାମ୍ୟବାଦ ଚରିତ ବର୍ଣ୍ଣନେ ଊନଅଶୀ ଅଧ୍ୟାୟଃ ।



# ଅଶୀ ଅଧ୍ୟାୟ

ଶ୍ରୀ ବଳଭଦ୍ର ଉବାଚ

ଭାରତର ଯେତେ କଥା କହିଲେ ଆପଣ
ଲଭିଲି ବହୁତ ଜ୍ଞାନ ସେ ସବୁ ଶୁଣିଣ । ୧
ଭାରତକୁ ଛାଡ଼ି ପୃଥିବୀର ଆନ ଦେଶେ
ଲୋକେ କିପରି ଅଛନ୍ତି କହନ୍ତୁ ବିଶେଷେ । ୨
କି ପ୍ରକାର ରାଜନୀତି ଚଳୁଛି ସେଠାରେ
ନାନା ଉନ୍ନତି କଲେଣି ବିଜ୍ଞାନ ବଳରେ । ୩
ସଂକ୍ଷେପେ କହନ୍ତୁ ଗୁରୁ ସେ ସବୁ ଚରିତ
ଶୁଣିଲେ କର୍ଣ୍ଣ ମୋହର ହୋଇବ ପବିତ୍ର । ୪

## ଜଡ଼ଭରତ ଉବାଚ

ରବୀନ୍ଦ୍ର ଠାକୁର ଜଣେ ବଙ୍ଗ ଦେଶ କବି
ଉଇଁଛନ୍ତି ସାହିତ୍ୟ ଆକାଶେ ଯଥା ରବି । ୫
ପୃଥିବୀରେ ତାଙ୍କ ନାମ ହୋଇଛି ବିଖ୍ୟାତ
ନୋବେଲ ପୁରସ୍କାର ସେ ପାଇଛନ୍ତି ସତ । ୬
ଦେଶ ବିଦେଶକୁ ଯାଇଁ ହେଲେ ପରିଚିତ
ଇଉରୋପର ବହୁଲୋକ ଜାଣନ୍ତି ନିଶ୍ଚିତ । ୭
କେତେ ଜ୍ଞାନୀ ସେ ଦେଶରୁ ତାଙ୍କୁ ଲେଖୁଛନ୍ତି
କି ଉପାୟେ ଲଭି କରିପାରିବେ ସେ ଶାନ୍ତି ।୮
ସେମାନେ କହନ୍ତି ଆମ୍ଭେ ଦେଖୁଛୁଁ ନିଶ୍ଚିତ
ଏ ସଭ୍ୟତା ଅଚିରେ ହୋଇବ ଭସ୍ମୀଭୂତ । ୯
ସେ କଥାକୁ ଲକ୍ଷ କରି ଶାନ୍ତି ନିକେତନେ
କ୍ଷିତିମୋହନ କହିଲେ କେତେ କଥା ଦିନେ ।
ବୋଇଲେ ଶୁଣ ସୁଜନେ ଦେଇ ମନ କର୍ଣ୍ଣ
ସୁନସେପ ନାମେ ଥିଲା ବ୍ରାହ୍ମଣ ସନ୍ତାନ । ୧୧
ସେ ଦେଶ ରାଜାର ନରବଳୀ ଲୋଡ଼ା ଥିଲା
ନର ଏକ ତେଣୁ ଖୋଜା ଖୋଜି ଲାଗିଥିଲା ।
ସୁନସେପ ପିତା ବଡ଼ ଦରିଦ୍ର ବ୍ରାହ୍ମଣ
ଧନ ଲୋଭେ ରାଜାକୁ ବିକିଲା ତା ସନ୍ତାନ ।୧୩
ସୁନସେପ ଯାଇ କାରାଗାରେ ବନ୍ଧ ହେଲା
କେଉଁଦିନ ପ୍ରାଣ ଯିବ ଅପେକ୍ଷାରେ ଥିଲା ।୧୪
ଦିନେ ସୁନସେପ ମନେ ପାଞ୍ଚିଲା ଏମନ୍ତ
ପିତା ;ଅଟେ ସନ୍ତାନର ରକ୍ଷକ ନିଶ୍ଚିତ । ୧୫
ସେ ତ ବିକି ଦେଲେ ମତେ ଧନ ଲାଳସାରେ
ରାଜା ବା ରକ୍ଷା କରନ୍ତେ ସେ ଦେବେ ବଳିରେ
ଦେବତାମାନେ ରକ୍ଷକ ସିନା ମାନବର
ସେମାନଙ୍କ ପାଇଁ ବଳି ହେବ ମୁଁ ନିକର ।୧୭

ପିତା ରାଜା ଦେବତା ଏ ରକ୍ଷି ନ ପାରିଲେ
କିଏ ତେବେ ମୋ ରକ୍ଷକ ମୁଁ ବୁଝି ନ ପାରେ ।
ନବ ବିଶ୍ୱକୁ ପାଶ୍ଚାତ୍ୟ ସଭ୍ୟତା ଗ୍ରାସିଛି
ସୁନ୍ଦରପଣ ପରି ତାର ଅବସ୍ଥା ହୋଇଛି । ୧୯
ଉଚ୍ଚେ କ୍ରନ୍ଦନ କରୁଛି ଧ୍ୱଂସେ ତ୍ରାହି ତ୍ରାହି
କେ ଅଛ ରକ୍ଷକ ମୋତେ କରିପାର ସାହି । ୨୦
ନୀତିଶୂନ୍ୟ ରାଜ୍ୟ ଅଟେ ୟୁରୋପ ଜଗତେ
ସେଦେଶରୁ ପଳାଇଅଛି କେତେକେତେ । ୨୧
ଦିନେ ଇଉରୋପ ଥିଲା ଧର୍ମର ଅଧୀନ
ଧର୍ମଶକ୍ତି କରୁଥିଲା ସେ ଦେଶ ଶାସନ । ୨୨
ବହୁକାଳ ଆପଣା ମଧ୍ୟରେ ହାଣ ମାର
ନରହତ୍ୟା ଲୀଳା ଖେଳା କରୁଛି ନିକର । ୨୩
ଏହି ମହାପାପେ ପଡ଼ି ଧାଣ୍ଡି ହେଉଅଛି
ରଣଚଣ୍ଡୀ କରାଳ କବଳେ ପଡ଼ିଅଛି । ୨୪
ତେଣୁ ସେ ଦେଶରୁ ଧର୍ମ ବିଦାୟ ନେଇଛି
ଲୁଚି ବସି ଏ ତାଣ୍ଡବ ନୃତ୍ୟ ଦେଖୁଅଛି । ୨୫
ଧର୍ମ ଛାଡ଼ି ବିଜ୍ଞାନର ଆଶ୍ରୟ ସେ ନେଲା
ବିଜ୍ଞାନର ଉନ୍ନତିରେ ମନ ଧ୍ୟାନ ଦେଲା । ୨୬
ଅସୀମ ଉତ୍ସାହେ ସେହି ଦିଗେ ମନ ଦେଲା
ନବୀନ ସନ୍ନ୍ୟାସୀ ପରି ଉଦ୍ୟମୀ ହୋଇଲା ୨୭
ବିଜ୍ଞାନ ଅଟଇ ବଡ଼ ଉତ୍ତମ ସେବକ
କିନ୍ତୁ ସେ ଅଟଇ ଅତି ଅଧମ ମାଲିକ । ୨୮
ଉତ୍ପନ୍ନଇ ଅବା ଲଣ୍ଠନ ଭିତର ଅନଳ
ଅତି ଉପକାରୀ ପୁଣି ଅଭାବେ ଅଚଳ । ୨୯
ସେହି ଅନଳକୁ ନେଇ ରଖ ଗୃହ ପରେ
ପୋଡ଼ିଜାଳି ଧ୍ୱଂସକରି ଲୋକନଷ୍ଟ କରେ । ୩୦
ବିଜ୍ଞାନର କାର୍ଯ୍ୟାବଳୀ କର ନିରୀକ୍ଷଣ
କେବେ ଉପକାରୀ କେବେ ଅପକାରୀ ପୁଣ । ୩୧

ରେଳ ଜାହାଜ ଭିତରେ ଥିଲା ଯେତେଞ୍ଜିନେ
ସମସ୍ତ ଦୂରତା ଉଣାକଲା ଅବହେଳେ । ୩୨
ବେତାର ଯନ୍ତ୍ର ଭିତରେ ସମ୍ବାଦ ଆଣିଲା
ବିଶ୍ୱ ଏ ମୁଣ୍ଡୁ ସେ ମୁଣ୍ଡ ଯାଏ ବିସ୍ତାରିଲା । ୩୩
ଅସଂଖ୍ୟ ପ୍ରକାରେ କଲା ଲୋକ ଉପକାର
ଉତ୍ତମ ସେବକ ହେଲା ମାନବ ଜାତିର । ୩୪
ଯେ ସେବକ ଏତେକାଳ ଉପକାର କଲା
ସେହି ଏବେ ଘର ଗ୍ରାମ ନଗର ପୋଡ଼ିଲା । ୩୫
ସେବକର ବେଳୁଁ ବେଳ ବଢ଼ିଲା ଶକତି
ବୃଦ୍ଧି ହେଲା ତାର ନାନା ପ୍ରକାର ବିଭୂତି । ୩୬
କ୍ରମେ କ୍ରମେ ଭୂତଳୁଁ ଆକାଶେ ଗତିକଲା
ସେଠାରେ ନିଜ ପ୍ରଭୁତ୍ୱ ଯାଇ ଦେଖାଇଲା । ୩୭
ଶୂନ୍ୟରୁ ଶବ୍ଦବାଣମାନ ପକାଇଲା
କୋଟିକୋଟି ଲୋକଙ୍କୁ ସେ ମାରିପକାଇଲା । ୩୮
ବିଷବାଷ୍ପେ ବିମୋହିତ କଲା ବହୁଜନ
ସାବଧାନ ନ ହୋଇଣ ହାରିଲେ ପରାଣ । ୩୯
ଭୟଙ୍କର ରୂପକୁ ସେ ସାଜିଅଛି କେବେ
ଉପାୟ ନାହିଁ ତାଠାରୁ ନିସ୍ତାର ପାଇବେ । ୪୦
ଜଡ଼ ବିଜ୍ଞାନ ମାଳିକ ଅଟନ୍ତି ଇରୋପରେ
ଲାଗିଅଛି ନିତ୍ୟ ନରହତ୍ୟା କାରବାରେ । ୪୧
ମଣିଷ ମରା ଉପାୟ ଖୋଜା ଲାଗିଅଛି
ନୂତନ ନୂତନ ଅସ୍ତ୍ର ବିଜ୍ଞାନ ଦେଉଛି । ୪୨
ମଣିଷ ମାରିବାପାଇଁ ହାତ ହତିଆର
ସୃଜନ ହେଉଛି ନିତି ହଜାର ହଜାର । ୪୩
ସବୁ ବୁଦ୍ଧି ବିଦ୍ୟା ଲାଗିଅଛି ଏ କାମରେ
ଅନ୍ୟ କିଛି ଚିନ୍ତା ନାହିଁ କାହାରି ମନରେ । ୪୪
ଏକ ରାଜ୍ୟ ଚାହେଁ ଅନ୍ୟ ରାଜ୍ୟ ନେଇଯିବା
ଲୋକେ ବାଧା ହେଲେ ତାଙ୍କୁ ପ୍ରାଣେ ମାରିଦେବା

ଉପରିକୁ ଥରାଇ ପ୍ରାଣେ ମାରି ରାଜ୍ୟ ନେବା
ସୁଖେ ଖାଇ ପିଇ ଆମ୍ଭ ରାଜ୍ୟ ଚଳାଇବା । ୪୬
ନରହତ୍ୟା ମହାପାପ ଅଟେ ଭାରତରେ
ଜଣେ ଜଣକୁ ମାରିଲେ ଫାସୀ ପାଇପାରେ ।୪୭
ଭାରତରେ ନରହତ୍ୟା ମହାପାପ ଅଟେ
ଇଉରୋପରେ ନରହତ୍ୟା ପୁଣ୍ୟ ପରକଟେ ।୪୮
ସେ ଦେଶ ରାଜ୍ୟମାନଙ୍କରେ ହଜାର ହଜାର
ନରହତ୍ୟା କଲେ କିଛି ପାପ ନାହିଁ କାର ।୪୯
ଜଣେ ଯାଇ ଜଣକୁ ମାରିଲେ ବିନା ଦୋଷ
ଫାସୀକାଠିରେ ଝୁଲିବ ସେ ଲୋକ ଅବଶ୍ୟ ।୫୦
ପଞ୍ଚାଶ ହଜାର ଲୋକେ ଏକ ଦେଶୁଁ ଯିବେ
ଅନ୍ୟ ଦେଶର ପଞ୍ଚାଶ ହଜାର ମାରିବେ । ୫୧
ଏ ନରହତ୍ୟାରେ କିଛି ଦୋଷ ନାହିଁ ଲେଶ
ମହାପୁଣ୍ୟ କାର୍ଯ୍ୟ ଏହା ବୀରତ୍ୱ ପ୍ରକାଶ । ୫୨
ଜଣକର ଧନ ଯେବେ ଆଉ ଜଣେ ନଏ
ଅତିଜଘନ୍ୟ ଚୋର ସେ ବୋଲାଣ ବୋଲାଏ ୫୩
ଲକ୍ଷେ ଲୋକ ଏକ ଦେଶୁଁ ଆନ ଦେଶେ ଯାଇ
ଲୁଟ ପାଟ କରି ଧନ ଆଣିପାରେ ବାହି । ୫୪
ଏମାନେ ନୁହନ୍ତି ଚୋର କିନ୍ତୁ ମହାବୀର
ପରମ ଦେଶ ସେବକ ଏମାନେ ନିକର । ୫୫
ଏ କଥା ଦେଖି ଏମନ୍ତ ମନକୁ ଆସୁଛି
ବଡ଼ ରହସ୍ୟ କଥା ମନେ ପଡ଼ୁଅଛି । ୫୬
ହମବେଲ ନାମେ ଜଣେ ସେନାପତି ଥିଲେ
ତାଙ୍କ ଅଧୀନରେ କେତେ କେତେ ସେନାଥିଲେ
ସୈନ୍ୟମାନେ ଥିଲେ ବଡ଼ ଧାର୍ମିକ ପୁରୁଷ
ବ୍ୟସନ ହଗରେ ମନ ନ ଦଅନ୍ତି ଲେଶ । ୫୮
ଗୀତ ବାଦ୍ୟ ନୃତ୍ୟ ଆଦି କେବେ ନ ଦେଖନ୍ତି
ବଡ଼ କଠିନ ମତରେ ସେମାନେ ଚଳନ୍ତି । ୫୯

କାମ ନ ଥିଲେ କପଟରେ କାଳ କଟାଇବେ
ଏଣୁ ତେଣୁ ଯାହା କଷ୍ଟ ଅବଶ୍ୟ କରିବେ ।୬୦
ବଳେଇ ଯୋଡ଼ିଏ ଆଣି ତା ସଙ୍ଗେ ଖେଳିଲେ
ଲାଙ୍ଗୁଡ଼କୁ ଲାଙ୍ଗୁଡ଼ରେ ଯତନେ ବାନ୍ଧିଲେ ।୬୧
ଭିଡ଼ା ଓଟରା ହୋଇଣ ଦୁହେଁ କଳି କଲେ
ସୈନ୍ୟମାନେ ଦେଖି ଏହା ଆନନ୍ଦିତ ହେଲେ ।
ନମଟେଲ ଆସିବାର ସମ୍ବାଦ ମିଳିଲା
ବିରାଡ଼ିଙ୍କି ଫିଟାଇ ଦେବାର ଚେଷ୍ଟା ହେଲା ।୬୩
ବହୁ ଚେଷ୍ଟା ହେଲା ଗଣ୍ଠି କେବେ ନ ଫିଟିଲା
ଜଣେ ତରବାରି ଧରି ଲାଞ୍ଜ କାଟି ଦେଲା ।୬୪
ଲାଞ୍ଜ ଦୁଇଖଣ୍ଡ ପଡ଼ି ରହିଲା ସେଠାରେ
ବିରାଡ଼ି ଦୁଇଟି ଯେଝା ବାଟେ ପଳାଇଲେ ।୬୫
ନମଟେଲ ଆସି ତତକ୍ଷଣେ ପ୍ରବେଶିଲେ
ଲାଙ୍ଗୁଡ଼ କାହୁଁ ଆସିଲା ବୋଲି ପଚାରିଲେ ।୬୬
ସୈନ୍ୟ ବୋଇଲେ ଦୁଇଟି ବିରାଡ଼ି ଲଢ଼ିଲେ
ଦୁହେଁ କଳିକରି ଦୁହେଁ ଦୁହିଙ୍କି ଖାଇଲେ । ୬୭
ଲାଞ୍ଜ ଦ୍ୱିଖଣ୍ଡ କେବଳ ପଡ଼ି ରହିଅଛି
ସେନାପତି ବୁଝିଲେ କି କାଣ୍ଡ ଘଟିଅଛି । ୬୮
ବୋଇଲେ ଭବିଷ୍ୟତକୁ ହୁଅ ସାବଧାନ
କରିବ ନାହିଁ ଏପରି ସର୍ବନାଶ କାମ । ୬୯
ଇରୋପର ଦଶା ସେହି ବିରାଡ଼ିଙ୍କ ପରି
ପରସ୍ପର ଲାଗିଅଛି ଓଟରା ଓଟରେ । ୭୦
ଯାବତ ପୂର୍ଣ୍ଣମାତ୍ରାରେ ଧ୍ୱଂସ ନ ହୋଇବେ
ତାବତ ଏ ଦ୍ୱନ୍ଦରୁ ସେ ବିରତ ନହେବେ । ୭୧
ରତ୍ନାକର ବୋଲି ଡାକୁଛନ୍ତି ଭାରତକୁ
ଏ କଥା ଶୁଣି ଏମନ୍ତ ଆସୁଛି ମନକୁ । ୭୨
ଖ୍ରୀଷ୍ଟାନ ଲୋକଙ୍କ ଧର୍ମ୍ମ ଶାସ୍ତ୍ର ବାଇବେଲ
ନାନା ଉପାଖ୍ୟାନ ଅଛି ତହିଁରେ କେବଳ । ୭୩

କହିବି ତହିଁରୁ ଶୁଣ ଉପାଖ୍ୟାନ ଏକ
ବହୁତ ଲାଭ ହୋଇବ ଶିଖିବ ଅନେକ । ୭୪
ମହା ପ୍ରଳୟର କଥା ଯେ କାଳେ ଆସିଲା
ନବା ନାମେ ଏକ ଲୋକ ମନେ ବିଚାରିଲା ।୭୫
ଏ ବନ୍ୟାରେ ଏ ସଂସାର ହୋଇଯିବ ନାଶ
ସଭ୍ୟତାର ନ ରହିବ କିଛି ଅବଶେଷ । ୭୬
ନଉକା ଖଣ୍ଡିଏ ନେଇ ତହିଁରେ ବସିଲା
ସବୁ ପ୍ରକାରର ପ୍ରାଣୀ ତହିଁରେ ରଖିଲା । ୭୭
ବହୁ ପ୍ରକାର ଉଦ୍ଭିଦ ରଖିଲା ତହିଁରେ
ଭାସିଲା ନଉକା ସେହି ପ୍ରଳୟ ଜଳରେ । ୭୮
କେତେକାଳ ପରେ ପୁଣି ବନ୍ୟା ଛାଡ଼ିଗଲା
ସେହି ନଉକା ଭିତରୁ ସୃଷ୍ଟି ଆରମ୍ଭିଲା । ୭୯
ଇଉରୋପରୁ ଯେଉଁ ସବୁ ପତ୍ର ଆସୁଅଛି
ତହିଁରେ ଏପରି କଥା ଆଭାଷ ମିଳୁଛି । ୮୦
ଭବିଷ୍ୟତ ଏକ ଅବା ଦୁଇ ଶତାବ୍ଦିରେ
ଇଉରୋପ ସଭ୍ୟତା ଧ୍ୱଂସହୋଇବ ସମୂଳେ ।୮୧
ଲେଖକ ଆଶା କରନ୍ତି ସେ କାଳେ ଭାରତ
ନବା ପରିକାର କାର୍ଯ୍ୟ କରିବ ନିଶ୍ଚିତ । ୮୨
ସତେ କି ଭାରତ ଭାଗ୍ୟେ ଏମନ୍ତ ଘଟିବ
ଭାରତ ଏପରି ଆଶା ସତେ କି କରିବ । ୮୩
ବିଶ୍ୱ ସଭ୍ୟତା ସାହିତ୍ୟେ ଏମନ୍ତ ଘଟିବ
ଭାରତ ନବା ନଉକା କାମ କି କରିବ । ୮୪
ଶାରୀରିକ, ମାନସିକ, ନୈତିକ ଉନ୍ନତି
ଭାରତର ଲଭିଅଛି ନିତାନ୍ତ ଦୁର୍ଗତି । ୮୫
ରାଜନୀତି କ୍ଷେତ୍ରରେ ଭାରତ ପରାଧୀନ
ଏହା ଅଟେ ଭାରତର ଅରେକ ଦୁର୍ଗୁଣ । ୮୬
ଅଥଚ ବିଦେଶୀଙ୍କର ଆଶା ତୁଟୁନାହିଁ
ଆଶାକରି ପତ୍ର ଲେଖୁଛନ୍ତି ତାହି ତାହି । ୮୭

ଆମ୍ଭ ଦେଶେ ଧରମର ହୋଇଛି ଦୁର୍ଗତି
ମତାନ୍ତରେ ମନାନ୍ତରେ ଲୋକ ମାତିଛନ୍ତି । ୮୮
ନାନା ଶାଖା ସମ୍ପ୍ରଦାୟେ ହୋଇଛି ବିଭକ୍ତ
ମତଭେଦେ ବିଦ୍ଧା ବିଦ୍ଧ ହୁଅନ୍ତି ନିୟତ । ୮୯
ଏସବୁ ଛାଡ଼ି ଏ ଯେବେ ଏକା ପଥେ ଯିବେ
ଏକ ପୁରାଣ ପରମ ଈଶ୍ୱର ସେବିବେ । ୯୦
ଧର୍ମ କ୍ଷେତ୍ରେ ଏକତା ଥାଯିବେ ଯେଉଁଦିନ
ଶାଖା ସମ୍ପ୍ରଦାୟ ଭେଦ ତେଜିବେ ସଘନ । ୯୧
ଏକ ଈଶ୍ୱରଙ୍କୁ ପୂଜି ଏକାଠି ହୋଇବେ
ଭେଦାଭେଦ ଭାବମାନ ମନରୁ ତେଜିବେ ।୯୨
ବିଶ୍ୱଗୁରୁ ସେହିଦିନ ହୋଇବ ଭାରତ
ସଂସାରର ଧରାକୁ ଏ କରିବ ଦୀକ୍ଷିତ । ୯୩
ଭାରତରେ ନାହିଁ ଆଜି ଜାତୀୟ ଜୀବନ
ନାନା ଜାତି ନାନା ଧର୍ମ ସର୍ବେ ଭିନ୍ନଭିନ୍ନ ।୯୪
ଯେ ଯାହାର ଦଳ ଗୋଷ୍ଠୀ ନେଇ ଏସବୁ ବ୍ୟସ୍ତ
ଆନଦଳ ଗୋଷ୍ଠି ସଙ୍ଗେ ନାହିଁ ଏକମତ ।୯୫
ସମଗ୍ର ଭାରତ ଚିନ୍ତା କାହା ମନେ ନାହିଁ
ଚିନ୍ତାଧାର ବୋହିଯାଏ ଭିନ୍ନଭିନ୍ନ ହୋଇ ।୯୬
ପ୍ରତ୍ୟେକେ ଭାରତବାସୀ ଅଟୁଁ ଆମ୍ଭେମାନେ
ଭାରତ ହିତ ପାଞ୍ଚିବା ଶୟନେ ସ୍ୱପନେ । ୯୭
ଭାରତ ଅଟେ ଆମ୍ଭର ଏକା ଜନ୍ମଭୂମି
ଏକଥା ନ ବୁଝି ଆମ୍ଭେ ହେଉଥାଇଁ ଭ୍ରମି ।୯୮
ଜାତି ଧର୍ମ ବର୍ଣ୍ଣ ହେଲେ ହେଉ ଭିନ୍ନ ଭିନ୍ନ
ସକଳ ଭାରତବାସୀ ଭାରତ ସନ୍ତାନ । ୯୯
ଭାରତ ଉନ୍ନତି ପାଇଁ ଆମ୍ଭେ ସର୍ବେ ଦାୟୀ
ଏକମାତାର ସନ୍ତାନ ଆମ୍ଭେ ସର୍ବେ ଭାଇ ।୧୦୦
ଦୁଃଖେ ସୁଖେ ଆପଦେ ବିପଦେ ଏକା ହେବା
ସମସ୍ତେରେ ଈଶ୍ୱରଙ୍କୁ ଡ଼ାକ ପକାଇବା । ୧୦୧

ଏକାଁମନେ ଏକ ଚିତ୍ତେ ଭାରତ ସେବାରେ
ଲାଗିବା ଦିବସ ରାତ୍ତି କର୍ମ୍ମ କରିବାରେ । ୧୦୨
ଭାରତ ଜାତି ହିତରେ ମନପ୍ରାଣ ଦେବା
ସ୍ୱଦେଶ ଉନ୍ନତି ପାଇଁ ସକଳେ ଲାଗିବା ।୧୦୩
ଯେତେବେଳେ ସକଳ ଭାରତବାସୀ ମନେ
ଏ ଭାବ ଜାଗି ଉଠିବ ଶୟନେ ସ୍ୱପନେ ।୧୦୪
ଜାଣିବ ଯେ କାଳେ ହେଲା ଜାତୀୟ ଜୀବନ
ଭାରତବାସୀ ହୃଦରେ ହେଲା ଉଦ୍‌ଗମନ । ୧୦୫
ଜାତୀୟ ଜୀବନ ଦିଏ ଶତସିଂହ ବଳ
ଜାତିର ଅଟେ ଏ ଧନ ପ୍ରଧାନ ସମ୍ବଳ । ୧୦୬
ଏହି ବଳେ ଦେଶ ଜାତି କରଇ ଉନ୍ନତି
ଜାତିର ଅଟଇ ଏହା ପ୍ରଧାନ ସମ୍ପତ୍ତି । ୧୦୭
ହଜାରେ ଗୃହ ବିବାଦ ଘରେ ଥିଲେ ଥାଉ
ଜାତିକଥା ପଡ଼ିଲେ ସେସବୁ ଦୂରେଯାଉ ।୧୦୮
ସହଜେ ମଇଁଷି ଶିଙ୍ଗ ଅଟଇଟି ଫଟା
ଯୁଝିଲା ବେଳକୁ ସେହି ହୋଇଯାଏ ଗୋଟା ।
ଏହି ମତି ଧରି ସର୍ବେ ଏକମେଳ ହୁଅ
ଭାରତ ହିତ ଚିନ୍ତାରେ ସର୍ବେ ମନ ଦିଅ ।୧୧୦
ଯେ ଯେଉଁ କର୍ମ୍ମକ୍ଷେତ୍ରରେ ଯାଇ କର୍ମ୍ମ କର
ସଦାବେଳେ ଏହିକଥା ମନରେ ବିଚାର ।୧୧୧
ଖଣ୍ଡାଧାରେ ବାଟ ଚାଲି କର୍ତ୍ତବ୍ୟ କରିବ
ଅନ୍ୟାୟ ପଥରେ କେବେ ପାଦ ମୁଁ ନଦେବ ।
ଅନ୍ୟାୟ ଅକର୍ମ୍ମ କଲେ ନିନ୍ଦିଥିବେ ଲୋକ
ମୋ ନିନ୍ଦାରେ ଉଣାହେବ ମୋ ଜାତିର ଟେକ ।
ଉପବାସେ ରହି ପଛେ ମୋର ଦିନ ଯାଉ
ମୋ ଜାତିନାମେ କଳଙ୍କ ନରଖନ୍ତୁ କେହି ୧୧୪
ବ୍ୟକ୍ତିମାନଙ୍କ ସମଷ୍ଟି ନାମ ଅଟେ ଜାତି
ବ୍ୟକ୍ତି ଉତ୍ତମ ହୋଇଲେ ଏଡ଼େ ଜାତି ଖ୍ୟାତି ।

ଅଧିକାଂଶ ଲୋକ ଯେବେ ହେବେ ସୁ-ସନ୍ତାନ
ଲକ୍ଷେ ଗୁଣରେ ବଢ଼ିବ ଜାତିର ସମ୍ମାନ ।୧୧୬
ଚରିତ୍ରବାନ ପୁତ୍ର ଯେତେ ବେଶି ହେବେ
ଜନମଭୂମିର ଟେକ ତେତେ ବଢାଇବେ ୧୧୭
ବ୍ୟକ୍ତି ଯେତେ ଦୂର ସ୍ପୃହା କରିବ ଉନ୍ନତି
ସେ ସବୁ ଅଟଇ ଆମ୍ଭ ଜାତୀୟ ସମ୍ପତ୍ତି । ୧୧୮
ବ୍ୟକ୍ତିର ଉନ୍ନତିମାନ ଜାତି ସାଇତିବ
ଜାତୀୟ ଇତିହାସରେ ସେ ସବୁ ଲେଖିବ ।୧୧୯
ବ୍ୟକ୍ତିମାନଙ୍କର ଗୁଣ ଗାଏ ଇତିହାସ
ସେ ସବୁ ଅଟେ ଜାତିର କୀର୍ତ୍ତି ବା ଯଶ ।୧୨୦
ଏ ଜ୍ଞାନ ଯାହା ମନରେ ଉଦିତ ହୋଇବ
ସେ କେବେ ଚରିତ୍ରହୀନ ହୋଇ ନ ପାରିବ।୧୨୧
ଈର୍ଷା ହିଂସା ଦ୍ୱେଷତା ମନରୁ ଦୂର ହେବ
ଲୋକଙ୍କ ମଙ୍ଗଳବାଞ୍ଛା ସତତ କରିବ । ୧୨୨
ନିଜସ୍ୱାର୍ଥ ପାଇଁ ଯେହୁ ହୁଏ ସଦା ଖାଣ୍ଟି
ପାଞ୍ଚୁଥାଏ କପଟେ ଚିପିବ ଆନ ତଣ୍ଟି । ୧୨୩
ଯେ ପାଞ୍ଚିବ ସକଳେ ଅଟନ୍ତି ତାର ଭାଇ
କାହା ତଣ୍ଟି ଚିପିବ କିପରି ଯାଇ ସେହି ।୧୨୪
ସକଳେ ତାପରି ଯେବେ ଉନ୍ନତ ହୋଇବେ
ଜାତିର ମାନ ମହତ୍ତ୍ୱ ବଢ଼ିଯିବ ତେବେ । ୧୨୫
ଭାରତରେ ଘୋଟିଅଛି ମହାଘୋର ଦଶା
ବିବାଦ ରାକ୍ଷସ ଏଠି କରିଅଛି ବସା । ୧୨୬
କେହି କାହା ଶିରି ଦେଖି ପାରୁନାହିଁ ଭଲେ
ପରସ୍ପର ବନ୍ଧା ବନ୍ଧି ହୁଅନ୍ତି ସକଳେ । ୧୨୭
ପରନିନ୍ଦା ପରଚର୍ଚ୍ଚା ପର ଅପବାଦ
ଅଧିକାଂଶ ଲୋକଙ୍କର ପରମ ସମ୍ପଦ । ୧୨୮
ଈର୍ଷାନଳେ ଜଳି ପୋଡ଼ି ଯାଉଛନ୍ତି ମରି
କେହି ଭଲେ ଦେଖିପାରୁନାହିଁ କାର ଶିରି ୧୨୯

କେ ଯାହାର ସ୍ୱାର୍ଥପାଇଁ କରୁଛନ୍ତି କନ୍ଦଳ
ଏକା ନ ପାରିଲେ ଗଢ଼ୁଅଛନ୍ତି ନିଜ ଦଳ । ୧୩୦
ଏ ଦଳ ସେ ଦଳ ସଙ୍ଗେ କରୁଛନ୍ତି ବିବାଦ
ନୁହେଁ ଏ ଶୁଭ ଲକ୍ଷଣ ଶୁଣ ହେ କୋବିଦ ।୧୩୧
ସାହେବମାନେ ଏକଥା ଦେଖି ହସୁଛନ୍ତି
ଏମାନେ ଅଯୋଗ୍ୟ ବୋଲି କହି ଦେଉଛନ୍ତି ।
ଶାସନ କରିବା ପାଇଁ ଅଯୋଗ୍ୟ ଏମାନେ
ମନ ନାହିଁ ଏହାଙ୍କର ଗୁଣ ଅରଜନେ । ୧୩୩
ଭୁଙ୍ଗା ମାଠିଆରୁ ଶବ୍ଦ ବାହାରେ ବହୁତ
ଭାରତବାସୀର ଅଟେ ସେପରି ଚରିତ । ୧୩୪
ମୁହଁ ଟାଣ କରି ଖାଲି କହନ୍ତି ବଚନ
କାର୍ଯ୍ୟରେ ଦେଖିଲେ ନାହିଁ କାହାର ଗୁଣ ।
ସାହେବ କହିଲେ ବୋଲି ଦୋଷ ନାହିଁ କିଛି
ନିଜ ଦୋଷ ନିଜେ ଯେବେ ନ ପାରିବାବାଛି ।
କାଳେକାଳେ ଆମ୍ଭେ କିଛି ଶିଖି ନ ପାରିବା
ନିଜେ ଖାତ ଖୋଳି ନିଜେ ତହିଁରେ ପଡ଼ିବା ।
ଏ ସବୁ କଥାକୁ ମନ ତଳେ ଦେଇ ଧ୍ୟାନ
ବେଳହୁଁ ଭାରତବାସୀ ହୁଅ ସାବଧାନ । ୧୩୮
ବଡ଼ହେଲେ ପୁଣ୍ୟ ଭବେ ସ୍ୱରାଜ୍ୟ ପାଇବ
ଶକ୍ତି ଆସିଲେ କପରି ତାହାକୁ ରଖିବ । ୧୩୯
ତହିଁ ପାଇଁ ଲୋଡ଼ାହେବ ପରା ନାନା ଗୁଣ
ସେ ଗୁଣ ମାନ ବେଳହୁଁ କର ଅରଜନ । ୧୪୦
ବୋଲେ ଦୀନ ଜଗବନ୍ଧୁ ଦିଅ ପ୍ରଭୁ ଜ୍ଞାନ
ତବ କଳା ନ ପାଇଲେ ସବୁ ଅକାରଣ ।୧୪୧

ଇତି ଶ୍ରୀ ଭାରତ-ଚରିତାମୃତେ ପୃଥ୍ୱୀଙ୍କ ଚରିତ ବର୍ଣ୍ଣନେ ଅଣୀ ଅଧ୍ୟାୟଃ ।



## ଏକୋଅଶୀ ଅଧ୍ୟାୟ

ବଳଭଦ୍ର ଉବାଚ

ଆଉ କଥାଏ ପୁଚ୍ଛିବି ଗୁରୁଦେବ ଶୁଣ
ଉତ୍କଳ ଦଶା କି ହେଲା କହନ୍ତୁ ଆପଣ । ୧
ଭାରତେ ଯେଉଁ କଂଗ୍ରେସ ଆନ୍ଦୋଳନ ହେଲା
ଉତ୍କଳ ଦେଶେ କିପରି ସେ ସ୍ରୋତ ବହିଲା ।୨
ଉତ୍କଳରେ କଲା କିଏ ସେ କଥା ପ୍ରଚାର
କି କାର୍ଯ୍ୟ ହେଲା ଉତ୍କଳେ କହନ୍ତୁ ନିକର ।୩

ଜଡ଼ଭରତ ଉବାଚ

ଗୋପବନ୍ଧୁ ନାମେ ଥିଲେ ବ୍ରାହ୍ମଣ ସନ୍ତାନ
ଭାର୍ଗବୀ କୂଳେ ସୁଆଣ୍ଡ ଗ୍ରାମରେ ଜନମ । ୪
ପୁରୀ ଜିଲ୍ଲାରେ ନିବାସ ଥିଲା ତାହାଙ୍କର
ନାତି ଉଚ୍ଚ ନାତି ଖର୍ବ ବପୁ ମନୋହର । ୫
ସଦା ପ୍ରସନ୍ନ ବଦନ ମଧୁର ବଚନ
ପିଲାଦିନୁ ଲୋକ ହିତେ ଥିଲା ତାଙ୍କ ମନ । ୬
କେତେକାଳ ବିଦ୍ୟାଳୟେ ବିଦ୍ୟାଭ୍ୟାସ କଲେ
ବି.ଏ. ପରୀକ୍ଷାରେ ଯେହୁ ଉତ୍ତୀର୍ଣ୍ଣ ହୋଇଲେ ।୭
ନ ଥିଲେ ଅତି ଧନୀ ବା ଦରିଦ୍ର ଲେଖାରେ
ଓକିଲାତି ପରୀକ୍ଷାରେ ଜୟଯୁକ୍ତ ହେଲେ । ୮
କବିତ୍ୱ ଶକତି ପିଲାଦିନୁ ଦେଖାଗଲା
ବଡ଼ ବଡ଼ ଲେଖକଙ୍କ ଦୃଷ୍ଟିରେ ପଡ଼ିଲା । ୯
ପାଠପଢ଼ା ଶେଷ କରି ଓକିଲାତି କଲେ
ପୁରୀ ଜିଲ୍ଲା ଅଦାଲତ କାର୍ଯ୍ୟ ଆରମ୍ଭିଲେ ।୧୦
ମୟୂରଭଞ୍ଜକୁ ଗଲେ କେତେ କାଳ ପରେ
ସେଠାରେ ମହାରାଜାଙ୍କ ଓକିଲ ହୋଇଲେ ୧୧
ଓକିଲାତି କାମେ ତାଙ୍କ ମନ ନ ଲାଗିଲା
ଦେଶସେବା ଦିଗେ ସଦା ମନ ଦଉଡ଼ିଲା । ୧୨

ସତ୍ୟବାଦୀଠାରେ ଏକ ବିଦ୍ୟାଳୟ କଲେ
ବହୁତ ସଂଖ୍ୟକ ଛାତ୍ର ସେଠାରେ ପଢ଼ିଲେ । ୧୩
ଖୋଲା ସ୍ଥାନେ ଛାତ୍ରମାନେ ଅଧ୍ୟୟନ କଲେ
ବକୁଳ ଛୁରିଅନାର ନିକୁଞ୍ଜ କାନନେ । ୧୪
ଗୋଟା ଖାଇ ମୋଟା ପିନ୍ଧି ପିଲାଏ ପଢ଼ିବେ
ବିଳାସ ବ୍ୟସନଠାରୁ ଦୂରରେ ରହିବେ । ୧୫
ଦେଶ ସେବା ଲୋକ ସେବା ପରମ ଧରମ
ଏଥିରେ ଦୀକ୍ଷିତ ହେବେ ଏଠା ଛାତ୍ରଗଣ । ୧୬
ଅଳପ ବ୍ୟୟରେ ବେଶି ପାଠ ପଢ଼ା ହେବ
ସରଳ ଭାବରେ ଛାତ୍ର ଜୀବନ ଗଢ଼ିବ । ୧୭
ବଡ଼ ବଡ଼ କୋଠା କଲେ ବହୁ ବ୍ୟୟ ହେବ
ଉତ୍କଳ ଗରିବ ଦେଶ କେଉଁଠୁ ପାଇବ । ୧୮
ବିଦ୍ୟାଳୟ ପାଶେ ପାଶେ ଛାତ୍ରାବାସ ଥିବ
ଛାତ୍ରାବାସେ ରହି ଛାତ୍ର ପଠନ କରିବ । ୧୯
ଗୁରୁମାନେ ସେହି ଛାତ୍ରାବାସରେ ରହିବେ
ପ୍ରାଚୀନ ରୀତିରେ ସବୁ ଶିକ୍ଷା ଦୀକ୍ଷା ଦେବେ । ୨୦
ମୂଳମନ୍ତ୍ର ଉତ୍ତମ ଚରିତ୍ର ଗଢ଼ାଯିବ
ଚରିତ୍ର ବିହୁନେ ସବୁ ଶିକ୍ଷା ପଣ୍ଡ ହେବ । ୨୧
ଏମନ୍ତ ଆଦର୍ଶ ଧରି ଶିକ୍ଷା ଦିଆଯିବ
ଗୋପବନ୍ଧୁଙ୍କର ଥିଲା ସଦା ଏହି ଭାବ । ୨୨
ଏହି ମନ୍ତ୍ର ଧରି ବିଦ୍ୟାଳୟ ଗଢ଼ା ହେଲା
ଲାଟ ସାହେବଙ୍କ ଦୃଷ୍ଟି ଏଠାରେ ପଡ଼ିଲା । ୨୩
ଗୋପବନ୍ଧୁଙ୍କର କେତେ ସହପାଠୀ ଥିଲେ
ଏହି ବିଦ୍ୟାଳୟେ ଆସି ଶିକ୍ଷକ ହୋଇଲେ । ୨୪
ନବ ଉଦ୍ୟମ ଉତ୍ସାହ ଖେଳିଲା ଏଠାରେ
ବିଦ୍ୟୁତ ସମାନ ଛାତ୍ର ଶିକ୍ଷକ ମନରେ । ୨୫
ଦିଗ ଦିଗନ୍ତେ ସୁଖ୍ୟାତ ହେଲା ପ୍ରଚୁରିତ
ଦୂର ଦୂରାନ୍ତରୁ ଛାତ୍ର ଆସିଲେ ବହୁତ । ୨୬

ଉତ୍କଳ ସେ କାଳେ ବହାରର ସଙ୍ଗେ ଥିଲା
ସ୍ୱତନ୍ତ୍ର ଭାବେ ଓଡ଼ିଶା ପ୍ରଦେଶ ନ ଥିଲା । ୨୭
ପ୍ରଥମେ ଉତ୍କଳ ଥିଲା ବଙ୍ଗ ସହିତରେ
ପୁଣି ସେଠୁ ଆସି ମିଶିଥିଲା ବହାରରେ । ୨୮
ବହାର ଲାଟସଭାକୁ ଗୋପବନ୍ଧୁ ଗଲେ
ସେଠାରେଯାଇ ଲୋକଙ୍କ ଦୁର୍ଦ୍ଦଶା ଗାଇଲେ
ଚାହିଁଲେ ଲାଟ ସଭାରେ ପ୍ରତିନିଧି ହେବ
ପୂର୍ବସମସ୍ତ ନ ହେଲେ କି କାମ କରିବ । ୩୦
ଏହିହେତୁ ଓକିଲାତି ପେଶା ଛାଡ଼ି ଦେଲେ
ପୂର୍ଣ୍ଣଭାବେ ଦେଶସେବା କାମରେ ଲାଗିଲେ ।୩୧
ମହାଘୋର ଦୁର୍ଭିକ୍ଷ ପଡ଼ିଲା ଓଡ଼ିଶାରେ
ଶତ ଶତ ଲୋକ ଛଟପଟ ଅନାହାରେ । ୩୨
ଟଙ୍କାକୁ ଗୃହଗଉଣୀ ଧାନ ଦର ହେଲା
ଟଙ୍କା ଦେଇ କିଣିବାକୁ ଧାନ ନ ମିଳିଲା । ୩୩
ହାଡ଼ କଙ୍କାଳ ମାଳରେ ପୂରିଲା ଏ ଦେଶ
ହେଉଁଅଛନ୍ତି ଗୃହେ ଲୋକେ ପକାଇ ନିଶ୍ୱାସ ।୩୪
ପୁଅ ହାତରୁ ଛଡ଼ାଇ ମାଆ ଖାଇଗଲା
ଖାଇବାକୁ ମୁଠା ମୁଠି ଶାଗ ନ ମିଳିଲା । ୩୫
ଗୋପବନ୍ଧୁ ଦରବାରେ କଥା ପକାଇଲେ
ଦୁର୍ଭିକ୍ଷ ହେଲା ସାହାଯ୍ୟ ଦିଅ ଦାବି କଲେ ।୩୬
ମୁଠି ଶାଗ ଲୋକଙ୍କର ସଭାରେ ଥୋଇଲେ
ଦେଖି ସଭାଜନମାନେ ବୋଲିଣବୋଇଲେ ।୩୭
ନ ଖାଇ ନ ପିଇ ଯେବେ ଲୋକ ମରିଯିବ
ଏ ମହାପାପ ଏ ସଭା ମୁଣ୍ଡରେ ଲାଗିବ । ୩୮
ସରକାର ବୋଇଲେ ଦୁର୍ଭିକ୍ଷ ହୋଇନାହିଁ
ମହରଗ ହେତୁ ଧାନ ଧୂନା ନ ମିଳଇ । ୩୯
ଗୋପବନ୍ଧୁ ବୋଇଲେ ଏ କଥା ନୁହେଁ ସତ
ସରକାରୀ କର୍ମଚାରୀ ଲୁଚାନ୍ତି ସତତ । ୪୦

ଏ କଥା ସତ କି ମିଛ ପରୀକ୍ଷା କରିବା
ଲାଟ ସାହେବ ଆସନ୍ତୁ ସାଙ୍ଗହୋଇ ଯିବା । ୪୧
ଲାଟ ସାହେବ ସେ ହେତୁ ଉତ୍କଳେ ଆସିଲେ
ପୁରୀଜିଲ୍ଲା ଭିତର ଗ୍ରାମକୁ ଯାଇଥିଲେ । ୪୨
ଫେରିଯାଇ ଦୁର୍ଭିକ୍ଷ ପ୍ରଚାର କଲେ ଲାଟ
ଚାଉଳ ଧାନ ପଇସା ହେଲା ବାଣ୍ଟକୁଟ । ୪୩
ବେସରକାରୀ ସାହାଯ୍ୟ ପାଣ୍ଠି ଖୋଲାଗଲା
ଭାରତର ଚାରିଆଡ଼ୁ ସାହାଯ୍ୟ ଆସିଲା । ୪୪
ଭାରତ ସେବକ ସଙ୍ଘ ସେବକ ଠକର
ଏହି କର୍ମ କରିବାକୁ ହେଲେ ମୁକରର । ୪୫
ଉତ୍କଳର ପୁରୀ ପଲ୍ଲୀ ଗ୍ରାମରେ ବୁଲିଲେ
ବେସରକାରୀ ସାହାଯ୍ୟ ପାଣ୍ଠି ବ୍ୟୟ କଲେ ।
ଗାନ୍ଧିଜୀ ସାହାଯ୍ୟ ପାଇଁ କଲେ ନିବେଦନ
ଯେ ଯେଉଁଠି ଅଛ ସାହୁକାର ମହାଜନ । ୪୭
ଓଡ଼ିଶା ଲୋକଙ୍କୁ କର ଯଥାଶକ୍ତି ଦାନ
କର ଏ ବେଳରେ ମହାପୁଣ୍ୟ ଅରଜନ । ୪୮
ଗାନ୍ଧି ଏ ସମୟେ ପୁରୀଠାକୁ ଆସିଥିଲେ
ଦୁର୍ଭିକ୍ଷ ପୀଡ଼ିତ ନରକଙ୍କାଳ ଦେଖିଲେ । ୪୯
ବୋଇଲେ ଯାବତ ମୁହିଁ ଜୀବନେ ଅଛଇଁ
ଏ ଦାରୁଣ ଚିହ୍ନ କେବେ ମନୁ ଯିବନାହିଁ । ୫୦
ଦୁର୍ଭିକ୍ଷ ସମ୍ବନ୍ଧେ ଯାହା କଲେ ସରକାର
ମନ ନ ମାନିଲା ତହିଁ ଗୋପବନ୍ଧୁଙ୍କର । ୫୧
ଏ ବିଷୟେ ସରକାରଙ୍କର ଯାହା ନୀତି
ଦେଖି ଗୋପବନ୍ଧୁଙ୍କର ଜନ୍ମିଲା ବିରକ୍ତି । ୫୨
ଲୋକଙ୍କ ଅବସ୍ଥା ସରକାର ନ ବୁଝଇ
ପ୍ରତିନିଧି କଥାକୁ ବିଶ୍ୱାସ ନ କରଇ । ୫୩
ଅମଲାତନ୍ତ୍ର ଶାସନ ଯାବତ ରହିବ
ଲୋକଙ୍କ ଦୁଃଖ ଦୁର୍ଦ୍ଦଶା କେବେହେଁ ନ ଯିବ ।

ଶାସନ ଆଇନ ସିନା ହୋଇଲା ସଂସ୍କାର
ଲୋକଙ୍କ ଅଭାବ କରି ନ ପାରିବ ଦୂର । ୫୫
ଏ ପର୍ଯ୍ୟନ୍ତ ଓଡ଼ିଶାରୁ ଜଣେ ହେଲେ କେହି
କଂଗ୍ରେସ କାର୍ଯ୍ୟରେ ଯୋଗ ଦେଉଥିଲେ ନାହିଁ
ଭାରତ ରାଜନୀତିରେ ସଂଯୁକ୍ତ ନ ଥିଲା
ଉତ୍କଳରେ କଂଗ୍ରେସର ସମ୍ପର୍କ ନ ଥିଲା । ୫୭
ଉତ୍କଳଭାଷୀ ଅଞ୍ଚଳ ଏକତ୍ରିତ ହେବ
ଏକ ଶାସନ ଅଧୀନେ ଏ ସବୁ ରହିବ । ୫୮
ଏହି ଆନ୍ଦୋଳନ ଲାଗିଥିଲା ଓଡ଼ିଶାରେ
ଚାଲୁଥିଲା ତାହା ଅତି ମନ୍ଥର ଗତିରେ । ୫୯
କଂଗ୍ରେସ ନାମ ଶୁଣିଲେ ଲାଗୁଥିଲା ଭୀତି
କଂଗ୍ରେସ ସଭ୍ୟ ହେବାକୁ ନ ପଡ଼ାଏ ଛାତି ।୬୦
ଉତ୍କଳ ସମ୍ମିଳନୀର ସଭା ହେଉଥିଲା
ସ୍ଥାନେସ୍ଥାନେ ଏ ସଭାର ବଇଠକ ହେଲା ।୬୧
ସିଂହଭୂମି ଜିଲ୍ଲା ଚକ୍ରଧରପୁରଠାରେ
ସମ୍ମିଳନୀ ବଇଠକ ହେଲା ସେ କାଳରେ ।୬୨
ସିଂହ ଜଗବନ୍ଧୁ ସଭାପତି ହୋଇଥିଲେ
ଗୋପବନ୍ଧୁ ଯାଇ ସେସଭାରେ ଯୋଗଦେଲେ ।
ନାଗପୁରେ ତେତେବେଳେ କଂଗ୍ରେସ ବସିଲା
ଅସହଯୋଗ ବିଷୟ ସେଠାରେ ପଡ଼ିଲା । ୬୪
ଚକ୍ରଧର ପୁରଠାରେ ସେ କଥା ପଡ଼ିଲା
ବହୁତ ବାଦ ବିବାଦ ତହିଁ ଉପୁଜିଲା । ୬୫
ଗୋପବଂଧୁ ବୋଇଲେ ଭାରତ ସଙ୍ଗେ ଯିବା
ଭାରତଠାରୁ କିମ୍ପାଇ ଅଲଗା ରହିବା । ୬୬
ଅସହଯୋଗ ସମର ଲାଗିବ ଭାରତେ
ଉତ୍କଳ କିମ୍ପାଇ ଲୁଚି ରହିବ ଗୁପତେ । ୬୭
ଉତ୍କଳ ଯେବେ ଭାରତ ସଙ୍ଗେ ନ ଚାଲିବ
ଭାରତ ସହାନୁଭୂତି କେବେ ନ ପାଇବ । ୬୮

ଉତ୍କଳ ଭାରତ ଅଙ୍ଗ ଏକଥା ନିଶ୍ଚିତ
ଭାରତରୁ ପୃଥକ ରହିବା ଅନୁଚିତ । ୬୯
ଭାରତ ମହାଜାତୀୟ ଭାବ ନ ଛାଡ଼ିବା
ଭାରତ ସୁଖ ଦୁଃଖରେ ସମଭାଗୀ ହେବା । ୭୦
ଓଡ଼ିଶାର ମୁଖିଆ ମୁଖିଆ ଲୋକ ଥିଲେ
ଗୋପବନ୍ଧୁଙ୍କ କଥାରେ ପ୍ରତିବାଦ କଲେ । ୭୧
ବୋଇଲେ ଯେବେ କଂଗ୍ରେସ ସଙ୍ଗରେ ମିଶିବା
ଭାରତ ମହାଜାତୀୟ ସ୍ରୋତରେ ଭାସିବା । ୭୨
ସମ୍ମିଳନୀ ଦାବି କେବେ ନ ହେବ ପୂରଣ
ସବୁ ଓଡ଼ିଆ ଅଞ୍ଚଳ ନ ହେବ ମିଳନ । ୭୩
କଂଗ୍ରେସ ପରି ସଭାରେ ଯୋଗଦେବା ପାଇଁ
ଓଡ଼ିଶାର ଦିନ କାଳ ଏବେ ଆସିନାହିଁ । ୭୪
କଂଗ୍ରେସେ ଯୋଗ ଦେବାକୁ ଅଛି କିଏ ବୀର
ନାମ ଶୁଣି ସକଳେ ହୁଅନ୍ତି ଥର ହର । ୭୫
ସରକାର ବିରୁଦ୍ଧରେ ଆନ୍ଦୋଳନ ହେବ
ସରକାର ଦଣ୍ଡ ଦେଇ ଦମନ କରିବ । ୭୬
ଉତ୍କଳରେ କିଏ ଅଛି ତାହାଙ୍କ ପାଖର
ଚିହ୍ନା ପଡ଼ିବା ଉଚିତ ନୁହଇ ଆମ୍ଭର । ୭୭
ଏହିପରି ନାନା ଯୁକ୍ତି ତର୍କ ଦେଖାଇଲେ
କଂଗ୍ରେସ କଥା ଉତ୍କଳେ ନ ଆଣ ବୋଇଲେ ।
ସଭାପତି ଭାଷଣରେ ଏମନ୍ତ ବୋଇଲେ
ଭାରତ ସଙ୍ଗେ ମିଶିବା ଜଣାଯାଏ ଭଲେ । ୭୯
ସଭାରେ ଅଧିକ ମତେ ସିଦ୍ଧାନ୍ତ ହୋଇଲା
କଂଗ୍ରେସରେ ଯୋଗଦେବା କଥା ସ୍ଥିରହେଲା ।
କଂଗ୍ରେସ ବୀଜ ବପନ ହେଲା ଉତ୍କଳରେ
କେତେ ଲୋକ ସମ୍ମିଳନୀ ଛାଡ଼ି ଦେଇଗଲେ ।
ସମ୍ମିଳନୀ କେତେକ ବରଷ ବନ୍ଦହେଲା
କଂଗ୍ରେସ ଉପରେ ବଇଠକ ନ ବସିଲା । ୮୨

ଗୋପବନ୍ଧୁ ହେଲେ କଂଗ୍ରେସର କର୍ଣ୍ଣଧାର
ଉତ୍କଳେ ସ୍ୱରାଜ୍ୟ ବାର୍ତ୍ତା କଲେକ ପ୍ରଚାର ।୮୩
ଅସହଯୋଗ ପ୍ରଚାର କଲେ ଉତ୍କଳରେ
ଚମକି ଉଠିଲେ ସର୍ବେ ଏ ନୂଆ କଥାରେ ।୮୪
ନୁହଇ କେବଳ ନୂଆ କଥା ଭୟ ଅଛି
କଇଦ ଘରେ ଯିବାକୁ କେ ରାଜି ହେଉଛି ।୮୫
ଅସହଯୋଗ ଅଗ୍ନିରେ ଯେହୁ ଝାସ ଦେବ
ସରକାରଙ୍କର କୋପଦୃଷ୍ଟିରେ ପଡ଼ିବ । ୮୬
ଗୁପ୍ତ ପୁଲିଶ ବୁଲିବ ପଛେ ପଛେ ତାର
ଯାହା ଯେଉଁଠି କହିବ ଟିପିବେ ସକଳ । ୮୭
ମାରଧର କରି ହାଡ଼ ଗୋଡ଼ ଭାଙ୍ଗି ଦେବେ
କାରାଗାରେ ରଖି ଅତ୍ୟାଚାର କରାଇବେ । ୮୮
ଏ ସବୁ ଦେଖିଣ ଲୋକେ ହେଲେ ଭୟ ଭୀତ
କଂଗ୍ରେସ କର୍ମକୁ କାର ନ ବଳିଲା ଚିତ୍ତ । ୮୯
ପ୍ରଥମେ ପ୍ରଥମେ କେହି ସାହସ ନ କଲେ
ଗୋପବନ୍ଧୁ ଏକାମରେ ଅଗ୍ରଣୀ ହୋଇଲେ ।୯୦
ଜଗବନ୍ଧୁ ବୋଇଲେ ହେ ଏବେ କି କରିବା
କିପରି ଏ ଆନ୍ଦୋଳନ ଚଳାଇ ପାରିବା । ୯୧
ତୁମ୍ଭେ ଯଦି ଓକିଲାତି ବନ୍ଦ ନ କରିବ
ଆନକୁ କିପରି ଯାଇ ଏ କଥା କହିବ । ୯୨
ଛଅ ମାସ ବନ୍ଦକର ଯାହା ହେବ ହେବ
ତେଣିକି ଯେପରି ଇଚ୍ଛା ସେପରି କରିବ ।୯୩
ଗୋପବନ୍ଧୁ ବୋଇଲେ ଯା କହୁଅଛ ସତ
କେବଳ ମୁଖେ କହିବା ନୁହଇ ଉଚିତ । ୯୪
ଯେ ଯାହା କହିବ ତାହା କାର୍ଯ୍ୟରେ କରିବ
ନ କଲେ କଥାର କିଛି ମୂଲ୍ୟ ନ ରହିବ । ୯
ଏତେ ପାଞ୍ଚି ଛଅ ମାସ କାର୍ଯ୍ୟ ବନ୍ଦ କଲେ
ଦେଖୁ ଦେଖୁଁ ପୁରା ଦୁଇ ବରଷ ଛାଡ଼ିଲେ । ୯୬

ଗୋପବନ୍ଧୁ ପୁଣି କାରାବାସରେ ରହିଲେ
ବନ୍ଦୀ ଆତ୍ମକଥା ଗୀତ ସେଠାରେ ଲେଖିଲେ ।
ଧର୍ମପଦ, ଗୋ ମହାତ୍ମ୍ୟ, ଅବକାଶର ଚିନ୍ତା
ଲେଖିଥିଲେ ଆଉ କେତେଖଣ୍ଡ ସେ କବିତା ।
ଅସହଯୋଗ ଉତ୍କଳେ କଲେ ସେ ପ୍ରଚୁର
ସତ୍ୟବାଦୀ ବିଦ୍ୟାଳୟ ଭାଙ୍ଗିଲା ନିକର । ୯୯
ଜାତୀୟ ମତରେ ତାକୁ କରିବେ ଗଠନ
ଯାଞ୍ଚୁଥିଲେ ହୋଇ ନପାରିଲା ତା ପୂରଣ ।୧୦୦
ଲୋକ ସେବା କାର୍ଯ୍ୟେ ସେହୁ ଦେଲେ ମନଧ୍ୟାନ
ସମାଜ ନାମେ ଖବର କାଗଜ ମୁଦ୍ରଣ । ୧୦୧
ଆପଣାର ଭାବମାନ ସେଥିରେ ଲେଖିଲେ
ଦେଶବାସୀଙ୍କି ଆପଣା ଭାବ ଜଣାଇଲେ । ୧୦୨
ଧର୍ମପ୍ରାଣ ଲୋକ ସେହୁ ଥିଲେ ନିଷ୍ଠାପର
ଧର୍ମରେ ପୂର୍ଣ୍ଣ ବିଶ୍ୱାସ ଥିଲା ତାହାଙ୍କର ।୧୦୩
ଗୀତା ଭାଗବତ ନିତି ପାଠ କରୁଥିଲେ
ଭାଗବତ ବାଣୀମାନ କହନ୍ତି କଥାରେ । ୧୦୪
ପ୍ରାଣ ପ୍ରୟାଣ ସମୟେ ପୂର୍ଣ୍ଣଜ୍ଞାନ ଥିଲା
ଉପାସନା କରୁ କରୁ ପ୍ରାଣ ଉଡ଼ିଗଲା । ୧୦୫
ଭଗବାନଙ୍କୁ ସୁମରି ଯାର ପ୍ରାଣ ଯାଏ
ପୁଣ୍ୟବନ୍ତ ଲୋକ ସେହୁ ସଂସାରେ ବୋଲାଏ ।
ଦରିଦ୍ର ଲୋକଙ୍କ ପାଇଁ ସଦା ସେ ବ୍ୟାକୁଳ
କିପରି ଉନ୍ନତ ହେବ ଦରିଦ୍ର ଉତ୍କଳ । ୧୦୭
ଦେଶ ପାଇଁ ଦଶ ପାଇଁ ସଦା ଭାବୁଥିଲେ
ଲାଗିଥିଲେ ଦିବା ନିଶି ତାହାଙ୍କ ସେବାରେ ।
ତାଙ୍କ ବିୟୋଗରେ ଲୋକେ ଅତ୍ୟନ୍ତ ଦୁଃଖିତ
ତାହାଙ୍କୁ ମନେ ପକାଇ ହୁଅନ୍ତି ବ୍ୟଥିତ ।୧୦୯
ଉତ୍କଳରେ ଥିଲେ ଜଣେ ଆଦର୍ଶ ପୁରୁଷ
ଘୋଷି ହେଉଛି ଉତ୍କଳ ତାଙ୍କ ଆଦରଶ ।୧୧୦

କେତେ ଲୋକ ପାଞ୍ଚୁଛନ୍ତି ତାଙ୍କ ପରି ହେବେ
ଗୋପବନ୍ଧୁଙ୍କ ଆସନ କେଁହୁ ନ ପାଇବେ ।୧୧୧
ମନେ ମନେ ଖେଳୁଛନ୍ତି ଉଦ୍ଭଟ କଳନ
ଯେତେ ଚେଷ୍ଟାକରି ମିଳୁନାହିଁ ସେହିଫଳ ୧୧୨
ତାଙ୍କ ନାମ ନେଲେ ଖାଲି ଫଳ ନ ମିଳିବ
ନାମ ଅନୁରୂପ କାମ କଲେ ସିନା ହେବ ।୧୧୩
ଯେତେକାମ କର ଯେବେ ମନ ଅନିର୍ମଳ
ଉପୁଜେ ତହିଁରୁ ନିଷ୍ଟେ ବିଷମୟ ଫଳ । ୧୧୪
ଈଶ୍ୱର କଳା ବହନ ଅଟେ ଯେ ମାନବ
ଲୋକପ୍ରିୟ ହେବା ତାର ନୁହଇ ସମ୍ଭବ । ୧୧୫
ଗୋପବନ୍ଧୁଠାରେ କିଛି ଈଶ କଳା ଥିଲା
ତେଣୁ ତାଙ୍କୁ ଦେଶ ଲୋକପୂଜ୍ୟ କରାଇଲା ।
ସତ୍ତା କଚାଭାବ ବଳେ ଧରା ପଡ଼ିଯିବ
ଯେତେ ଘୋଡ଼ାଇ ରଖିଲେ ଫୁଟି ବାହାରିବ ।
ଲୋକ ପୂଜ୍ୟ ହେବା ନୁହେଁ . ସହଜ କରମ
ଭାଗ୍ୟ ବଳୁଁ ଲୋକ ପାଏ ଏମନ୍ତ ସମ୍ମାନ ।୧୧୮
ଭଗବାନ ଯାହାଠାରେ ହୁଅନ୍ତି ପ୍ରସନ୍ନ
ତାକୁ ମିଳଇ ଲୋକରେ ଏମନ୍ତ ସମ୍ମାନ । ୧୧୯
ତାଙ୍କଠୁ ବଡ଼ ପାଠୁଆ ପଣ୍ଡିତ ଧନିକ
ଅଛନ୍ତି ଉତ୍କଳ ପୁର ଗ୍ରାମରେ ଅନେକ । ୧୨୦
ଗୋପବନ୍ଧୁ ପରି ନାହିଁ ଜଣେ ଲୋକପ୍ରିୟ
ତାଙ୍କ ନାମେ ନାଚି ଉଠେ ସକଳ ହୃଦୟ ।୧୨୧
ଏହି ବିଶେଷତ୍ୱ ଥିଲା ଗୋପବନ୍ଧୁଠାରେ
ତେଣୁ ଆଜ ନମସ୍ୟ ସେ ଉତ୍କଳ ଭୂମିରେ ।୧୨୨
ଆଉ ଏକ ବଡ଼ଗୁଣ ଥିଲା ତାଙ୍କଠାରେ
ଆପଣା ଦୋଷ ଯେ ଅପେ ବୁଝିପାରୁ ଥିଲେ ।
ସରଳଭାବରେ ତ୍ରୁଟି ପ୍ରକାଶ କରନ୍ତି
"ଭୁଲଯାଅ କ୍ଷମାକର ବୋଲି ସେ ବୋଲନ୍ତି"।

ଏ ବଡ଼ ମହତ ଗୁଣ ଥିଲା ତାଙ୍କଠାରେ
ଦେଖି ଅଛୁ କେତେକେତେ ଘଟଣା ଚୟରେ ।
ଆପେ ଆପଣାକୁ ଅତି ହୀନ ମଣୁଥିଲେ
ମଧୁର ବଚନେ ଲୋକ ମନ ତୋଷୁଥିଲେ ।୧୨୬
ବିନୟୀ ନମ୍ର ସ୍ୱଭାବ ଥିଲା ତାହାଙ୍କର
ନ ଥିଲା ମନରେ କିଛି ଗର୍ବ ଅହଙ୍କାର ।୧୨୭
ଯୁକ୍ତି ଦେଖିଲେ କାହାର ଆହା ବୋଲୁଥିଲେ
ଭଗବାନ ସୁବୁଦ୍ଧି ଦିଅନ୍ତୁ କହୁଥିଲେ । ୧୨୮
ସଦାବେଳେ ହସ ହସ ପ୍ରସନ୍ନ ବଦନ
ନହଅନ୍ତି କାହାମନେ କେବେହେଁ କଷଣ ।୧୨୯
ଲୋକ ହିତପାଇଁ ସଦା ଅଣ୍ଟା ଭିଡ଼ିଥାନ୍ତି
ନ ଖାଇ ନ ପିଇ ସେହି କାମେ ଲାଗିଥାନ୍ତି ।୧୩୦
ଆଗଭର ହୋଇ ସବୁ କାମରେ ଲଗନ୍ତି
ପ୍ରାଣ ଉତ୍ସର୍ଗ କରି ସେ କାର୍ଯ୍ୟ କରୁଥାନ୍ତି ।୧୩୧
ନିଜ କାର୍ଯ୍ୟ ନିଜ ସ୍ମୃତି ଅଟେ ମାନବର
ଆନ ସ୍ମୃତି ରକ୍ଷା ସବୁ ଅଟଇ ଅସାର । ୧୩୨
ସ୍ୱର୍ଗ ହେଲା ଗୋପବନ୍ଧୁ ଚରିତ ଏପରି
ହେଉଛନ୍ତି ଲୋକମାନେ ତାଙ୍କ ଗୁଣ ଝୁରି ।
ଆସିଛି ମାନବ ଧନେ ଅବଶ୍ୟ ସେ ଯିବ
ଉମ୍ବାମୁଣ୍ଡ ବାନ୍ଧି କେହି ଭବେ ନ ରହିବ ।୧୩୪
ଏ ଭଲ ଏ ମନ୍ଦ ବୋଲି ଚିହ୍ନ ରହିଯାଏ
କୀର୍ତ୍ତି ଯଶ ସଦାକାଳେ ବଞ୍ଚି ରହିଥାଏ । ୧୩୫
ପ୍ରଭୁଙ୍କ କରୁଣା କଣା ଯେହୁ ଲଭିଥାଏ
ସୁନାମ ରଖି ସେ ଭବୁ ପାରି ହୋଇଯାଏ ।୧୩୬
ଏ ଭବ ବଡ଼ ବିଷମ ପଥ କଣ୍ଟାମୟ
ଚାଲିପାରିବ ଏ ପଥ ମନ କଲେ ଥୟ । ୧୩୭
ହେ ପ୍ରଭୁ ଜଗତନାଥ ହୁଅନ୍ତୁ ସଦୟ
ତବ କୃପାବାରିଧିରୁ କଣାମାତ୍ର ଦିଅ । ୧୩୮

ବୋଲେ ଜଗବନ୍ଧୁ ପ୍ରଭୁ ନ କଲେ କରୁଣା
ମୋପରି ସକଳ ଲୋକେ ହେବେ ବାଟବଣା ।
ଉତ୍କଳେ ବିଜେ କରିଛି ପ୍ରଭୁ ଜଗନ୍ନାଥ
ଉତ୍କଳବାସୀମାନଙ୍କୁ ଦେଖାଅ ସୁପଥ । ୧୪୦

ଇତି ଶ୍ରୀ ଭାରତ-ଚରିତାମୃତେ ଗୋପବନ୍ଧୁ ଚରିତ ବର୍ଣ୍ଣନେ ଏକାଅଶୀ
ଅଧ୍ୟାୟଃ ।



## ବୟାଅଶୀ ଅଧ୍ୟାୟ

ବଳଭଦ୍ର ଉବାଚ

ନୀଳାଚଳେ ବିଜେ କରିଛନ୍ତି ଜଗନ୍ନାଥ
ରଥଯାତ୍ରା ପ୍ରତିବର୍ଷ ହେଉଛି ନିପୂନ । ୧
ରଥଯାତ୍ରା ତତ୍ତ୍ୱ ମୋତେ କହନ୍ତୁ ଆପଣ
ବୁଝି ନ ପାରେ ମୁଁ କିଛି ଏଥିର କାରଣ । ୨
କେ ବୋଲେ ଭାରତବାସୀ ଧର୍ମ୍ମପ୍ରାଣ ହୋଇ
ବସିଲେ ନିଜ ହାତରେ ଭାରତ ହରାଇ । ୩
ଗୁଡ଼ ଏ ଧରମ କଥା ଈଶ୍ୱରଙ୍କୁ ପୋଡ଼ି
ଏ ଧର୍ମୀ ଲୋକଙ୍କ ମତ ବେଗେ ଏହା ଛାଡ଼ି ।୪
ଯାବତ ଭାରତବାସୀ ଧର୍ମ୍ମ ଧରିଥିବ
ତାବତ ଦରିଦ୍ର ହୋଇ ଦାଣ୍ଡେ ବୁଲୁଥିବ । ୫
ଧର୍ମୀ ଦରିଦ୍ର ଉପରେ କରେ ଅତ୍ୟାଚାର
ଧର୍ମ୍ମ ଦୋହି ଦେଇ ତାକୁ ଡରାଏ ନିକର । ୬
ଧର୍ମ୍ମ ଧର୍ମ୍ମ ହୋଇ ଲୋକେ ଭୀରୁ କାପୁରୁଷ
କ୍ଲୀବତ୍ତ ଲଭି ଆନର ହୋଇଛନ୍ତି ଦାସ । ୭
ସାମ୍ୟବାଦୀମାନେ ଏହା କହି ବୁଲୁଛନ୍ତି
ରୁଷିଆରେ ଈଶ୍ୱରଙ୍କୁ କେହି ନ ମାନନ୍ତି । ୮
ଏହି ପବନ ବୋହୁଛି ଏବେ ଭାରତରେ
କୋଡ଼ମାଡ଼ ଲଗିଅଛି ଧରମ ଉପରେ । ୯

ବିଧବା ବିବାହ କେହୁ ପସନ୍ଦ କରଇ
କେ ବୋଲେ ବିବାହ ପ୍ରଥା ଦିଅ ହେ ଉଠାଇ ।
ଅସବର୍ଣ୍ଣ ବିବାହ ଚଳାଅ ଅକାତରେ
ଯୁବତୀ ବିବାହ ହେଉ ସକଳ ବର୍ଣ୍ଣରେ । ୧୧
ଯାହା ଇଚ୍ଛା ତାହା ସଙ୍ଗେ କରୁ ସହବାସ
ଏଥିରେ କିଛି ନାହିଁ ପ୍ରାକୃତିକ ଦୋଷ । ୧୨
ଶାସ୍ତ୍ର ପୁରାଣ ସକଳ ପୋଡ଼ିପାଡ଼ି ଦିଅ
ନିଜ ଗୋଡ଼ ବଳେ ନିଜେ ଦମ୍ଭେ ଠିଆହୁଅ ।୧୩
କଳିକାଳ ନୁହେଁ ଏହା କଲକାଳ ଜାଣ
ଫଳ ଫଳିବ ଯେପରି ବୁଣିବ ବିହନ । ୧୪
ଧର୍ମଭାବ କ୍ରମେ ଊଣା ହୋଇ ଯାଉଅଛି
ଅଧର୍ମ ପ୍ରଭାବ କ୍ରମେ ଦେଶରେ ବଢ଼ୁଛି । ୧୫
ଭବିଷ୍ୟ ପୁରାଣେ ଯାହା ଯାହା ଲେଖାଅଛି
କ୍ରମେ କ୍ରମେ ସେ ସବୁ ଘଟଣା ଘଟୁଅଛି । ୧୬
ପ୍ରକୃତ ତଥ୍ୟ କହନ୍ତୁ ବୁଝାଇ ଆପଣ
ଶୁଣି ଅଜ୍ଞଜନେ ଲଭ କରୁ ଦିବ୍ୟଜ୍ଞାନ । ୧୭

ଜଡ଼ଭରତ ଉବାଚ

ଆଚ୍ଛା କଥା ଏ ପୁଚ୍ଛିଲୁ ବଳଭଦ୍ର ତୁହି
ଧର୍ମର ନିଗମ ତତ୍ତ୍ୱ କି କହିବି ମୁହିଁ । ୧୮
ଧର୍ମତତ୍ତ୍ୱ ଅତି ସୂକ୍ଷ୍ମ କେହି ନ ବୁଝନ୍ତି
ନାନା ମୁନିମାନେ ନାନା ମତ ଦେଉଛନ୍ତି ।୧୯
ନିବିଡ଼ ଗୁହା ମଧ୍ୟରେ ଅଛି ଧର୍ମତତ୍ତ୍ୱ
ମନ ଧ୍ୟାନ ଦେଲେ ବୁଝି ପାରିବ ନିଗୂଢ଼ ।୨୦
ଉପର ମନରେ ଯେବେ ବିଚାର କରିବ
ଲେଶମାତ୍ର ଧର୍ମତତ୍ତ୍ୱ ବୁଝି ନ ପାରିବ । ୨୧
ଜଗନ୍ନାଥ ମହାପ୍ରଭୁ ଜଗତର ନାଥ
ଜଗତ ତାଙ୍କ ବିହୁନେ ହୋଇବ ଅନାଥ । ୨୨

ଯାହାଙ୍କ ହେତୁ ଏ ବିଶ୍ୱ ହୋଇଛି ଉତ୍ପନ୍ନ,
ସେହି ପିତା ଏକମାତ୍ର ଜଗତ କାରଣ । ୨୩
ତାଙ୍କ ବନୁ ହୋଇଥାଏ ଲୟ ଏ ଜଗତ
ଇଚ୍ଛା କଲେ ସରଜନ କରନ୍ତି ନିୟତ । ୨୪
ପିଣ୍ଡ ବ୍ରହ୍ମାଣ୍ଡ ସେ ଏକ ବୁଝ ମନଦେଇ
ବ୍ରହ୍ମାଣ୍ଡେ ଯା ଅଛି ତାହା ପିଣ୍ଡରେ ଅଛଇ ।୨୫
ପିଣ୍ଡ ବ୍ରହ୍ମାଣ୍ଡର ଯେହୁ ଅଟନ୍ତି କାରଣ
ସେହି ଏ ପିଣ୍ଡ ବ୍ରହ୍ମାଣ୍ଡ କରନ୍ତି ଧାରଣ । ୨୬
ସେହି ଧାରଣର ନାମ ଅଟଇ ଧରମ
ଧରମ ବିହୁନେ ବିଶ୍ୱ ଶବ ହେବ ଜାଣ । ୨୭
ସମଗ୍ର ପିଣ୍ଡ ବ୍ରହ୍ମାଣ୍ଡେ ଯେହୁ ବ୍ୟାପିଅଛି
ମଣିଗଣ ମଧ୍ୟେ ସୂତ୍ର ରୂପେ ଯେ ରହିଛି । ୨୮
ସେହୁ ଅଟେ ଧାରଣା ଏ ବିଶ୍ୱ ଜଗତର
ଧରମ ଅଟଇ ସେହୁ ଜାଣିଥା ନିକର । ୨୯
ତେଜପୁଞ୍ଜ ଧୈର୍ଯ୍ୟ ବୀର୍ଯ୍ୟ ଓଜ ଯେ ବୀରତ୍ୱ
ଧର୍ମ୍ମରୁ ଏ ସବୁ ଗୁଣ ହୁଏ ଉପଜାତ । ୩୦
ଧର୍ମ୍ମ ଛାଡ଼ିଗଲେ ଲୋକ ହୁଏ ଧର୍ମ୍ମ ଛଡ଼ା
ଅତି ମନୋହର ବପୁ ହୋଇଯାଏ ମଡ଼ା । ୩୧
ଧର୍ମ୍ମ ନିତ୍ୟ ସନାତନ କାଳେ କାଳେ ସତ୍ୟ
ଧର୍ମ୍ମ ସ୍ୱୟଂ ଭଗବାନ ବୁଝ ତୁ ନିୟତ । ୩୨
ଧର୍ମ୍ମର ଶକତି ଅଟେ ଅନାଦି ଅନନ୍ତ
ଧର୍ମ୍ମ ଅଟେ ମହାବୀର ମହା କର୍ମ୍ମବନ୍ତ । ୩୩
ଧର୍ମ୍ମ କ୍ଲୀବ କାପୁରୁଷ ଭୀରୁ ଯେ ବୋଲଇ
ପାଗଳ ପ୍ରଳାପ ବୋଲି ଶୁଣ ନାହିଁ କେହି । ୩୪
ଧର୍ମ୍ମ ପ୍ରଭାବ ଯାହାକୁ କିଛି ଜଣା ନାହିଁ
ସେହି ଏକା ଧରମକୁ ନିନ୍ଦା କରୁଥାଇ । ୩୫
ଯାବତ ଧର୍ମ୍ମ ଧାରଣା ରହିଥିଲା ଶକ୍ତ
ତାବତ ଥିଲା ଭାରତେ ଭାରତ ବୀରତ୍ୱ । ୩୬

ଯେଉଁ ଦିନୁ ଧର୍ମକୁ ଭୁଲି ଅବାଟରେ ଗଲା
ସେ ଦିନୁ ଭାରତ ଭୀରୁ କାପୁରୁଷ ହେଲା । ୩୭
ସେ ଦିନୁ କ୍ଲୀବତ୍ୱ ଲାଭ କରିଛି ଭାରତ
ଅତ୍ୟାଚାର ଏଡ଼ିବାକୁ ନାହିଁକ ତାକତ । ୩୮
ସୀତାଙ୍କୁ ହରାଇ ନେଲା ରାକ୍ଷସ ରାବଣ
ଦ୍ରୌପଦୀଙ୍କି ଦୁଃଶାସନ କଲା ବିବସନ । ୩୯
ଜଣେ ଜଣେ ନାରୀପରେ ହେଲା ଅତ୍ୟାଚାର
ସ୍ୱର୍ଣ୍ଣମୟ ପୁରୀ ଲଙ୍କା ହେଲା ଛାରଖାର । ୪୦
ପ୍ରତାପୀ ରାବଣ ହେଲା ସବଂଶେ ନିଧନ
ବୀର ରାମଚନ୍ଦ୍ର କରିଥିଲେ ଘୋର ରଣ । ୪୧
ଦ୍ରୌପଦୀର ବିବସନ ଯେକାଳେ ହୋଇଲା
ପ୍ରବଳ ପ୍ରତାପୀ କୁରୁକୁଳ ନାଶ ଗଲା । ୪୨
ମହାଭାରତ ସମର ହେଲା ତହିଁ ଫଳ
ନାଶ ହୋଇଲା ଭାରତୁଁ ସବୁ କ୍ଷାତ୍ର କୁଳ ।୪୩
ରାମଚନ୍ଦ୍ର ଥିଲେ ପରା ଧର୍ମ ଅବତାର
ଆଜ ତାଙ୍କ ପ୍ରତୀକ ଯେ ପୂଜାର ସମ୍ଭାର । ୪୪
ମହାଭାରତ ସମରେ କୃଷ୍ଣ ଯୋଗଦେଲେ
ଭଗବାନ୍ ରୂପେ ଅର୍ଜୁନଙ୍କୁ ଦୀକ୍ଷା ଦେଲେ ।୪୫
ଗୀତାରେ ବୋଇଲେ କ୍ଲୀବପଣ ଉଚିତନାହିଁ
ଏକାଳରେ ଭବମୋହ ଶୋଭା ପାଉନାହିଁ ।୪୬
ଯେଉଁ ଧର୍ମ ଶାସ୍ତ୍ର କହେ କ୍ଲୀବ ହୁଅନାହିଁ
କ୍ଲୀବ କଲା ଭାରତକୁ ଧରମ କିମ୍ପାଇଁ । ୪୭
ହିନ୍ଦୁ ଧର୍ମର ପ୍ରତୀକ ଯେତେ ଦେବୀ ଦେବ
ସେମାନେ କି ଭୀରୁ କାପୁରୁଷ ଅବା କ୍ଲୀବ । ୪୮
ରାମ ହସ୍ତେ ଧନୁଶର ଅସ୍ତ୍ର ଶୋଭାପାଏ
ବିଷ୍ଣୁ ହସ୍ତେ ଗଦା ସୁଦର୍ଶନ ଚକ୍ର ଥାଏ । ୪୯
ଦୁର୍ଗା ହସ୍ତେ ଖଣ୍ଡା ଖର୍ପର ନରମୁଣ୍ଡ
କାଳୀ ହସ୍ତେ ଶୋଭାପାଏ ଖଡ୍ଗ ପ୍ରଚଣ୍ଡ । ୫୦

ଶିବ ହସ୍ତେ ତ୍ରିଶୂଳ ଗଣେଶ ହସ୍ତେ ପାଶ
ଅନ୍ୟ ହସ୍ତେ ଶୋଭାପାଏ ଆଉର ଅଙ୍କୁଶ । ୫୧
ହିନ୍ଦୁ ଧରମର ଇଷ୍ଟ ଦେବ ଦେବୀ ଯେତେ
ଅସ୍ତ୍ର ଶସ୍ତ୍ରରେ ଭୂଷିତ ଅଛନ୍ତି ସମସ୍ତେ । ୫୨
ଦୁଷ୍ଟଦଳି ଶିଷ୍ଟପାଳି ରକ୍ଷିବେ ଜଗତ
ଏଥିପାଇଁ ଅସ୍ତ୍ର ଶସ୍ତ୍ରେ ଭୂଷିତ ସତତ । ୫୩
ଅତ୍ୟାଚାର ଅନ୍ୟାୟ ବଢ଼ିବ ଯେତେବେଳେ
ଧର୍ମ୍ମ ଗ୍ଲାନିହେଲା ବୋଲି ଜାଣ ତେତେବେଳେ ।
ଭଗବାନ ଅବତରି ଆସିବେ ସେକାଳେ
ଦୁଷ୍ଟ ଦଳି ଅନ୍ୟାୟକୁ ଫିଙ୍ଗିଦେବେ ଦୂରେ ।
ଧର୍ମ୍ମ ରାଜ୍ୟ ଥାପି ପୁଣି ଯିବେ ନିଜପୁର
ଯୁଗେ ଯୁଗେ ହୁଏ ଏହିପରି ଅବତାର । ୫୬
ଏ ଧର୍ମ୍ମଜ୍ଞାନ ଭାରତେ ଥିଲା ଯେତେବେଳେ
ଭୀରୁ କାପୁରୁଷ କ୍ଲୀବ ଜଣେ କେ ନଥିଲେ ।୫୭
କାହାରି ଉପରେ କେହି ହେଲେ ଅତ୍ୟାଚାର
ପ୍ରତିଶୋଧ ନେଇ ତାକୁ କରନ୍ତି ସଂହାର । ୫୮
ଧର୍ମ୍ମ ଆଗେ ସାନ ବଡ଼ ସକଳ ସମାନ
ସବୁ ନର ନାରୀଙ୍କର ସମାନ ସମ୍ମାନ । ୫୯
ଦୁର୍ବଳ ପରେ ପ୍ରବଳ କଲେ ଅତ୍ୟାଚାର
କଳଙ୍କ ରଟନା ହେବ ଜଗତେ ଧର୍ମ୍ମର । ୬୦
ଧାର୍ମିକ ଲୋକର ଧର୍ମ୍ମ ଅଟଇ ନିୟତ
ପ୍ରାଣପଣେ ରଖିବ ସେ ଧର୍ମ୍ମର ମହତ୍ତ୍ୱ । ୬୧
ଧର୍ମ୍ମ ଆଗେ ପ୍ରବଳ ଦୁର୍ବଳ ଭେଦ ନାହିଁ
ଅନ୍ୟାୟ ଦୂର କରିବ ପ୍ରାଣବଳି ଦେଇ । ୬୨
ଏକମାତ୍ର ଧର୍ମ୍ମ ଭୟ ରହିଛି ଯାବତ
ଚଳନ୍ତି ସକଳ ଲୋକ ହୋଇଣ ସଂଯତ । ୬୩
ଧର୍ମ୍ମ ପଥ ଛାଡ଼ି ଯେବେ ଅନ୍ୟାୟ କରିବ
ଧର୍ମ୍ମ ତତକ୍ଷଣି ତାକୁ ଯୁକ୍ତ ଦଣ୍ଡ ଦେବ । ୬୪

ଅନ୍ୟାୟୀ ଅତ୍ୟାଚାରୀଙ୍କୁ ବାଧା ଦେବାପାଇଁ
ଧରମ ଏକା ଏ ଭବେ ସକ୍ଷମ ଅଟଇ । ୬୫
ଧର୍ମ ଭୟ ଲୋକ ମନୁ ଯେବେହୁଁ ନାଶିବ
ମହାଘୋର ଅନ୍ଧକାରେ ସମାଜ ବୁଡ଼ିବ । ୬୬
ଅଜୀର୍ଣ୍ଣ ବ୍ୟାଧି ଘୋଟିବ ସମାଜ ମଧ୍ୟରେ
ହଣାହଣି ମରାମରି ହେବ ପରସ୍ପରେ । ୬୭
ଇଉରୋପେ ଘୋଟିଅଛି ଆଜି ଏହି ଦଶା
ଅଜୀର୍ଣ୍ଣ ବ୍ୟାଧି ସେ ଦେଶେ କରିଅଛି ବସା ।୬୮
ଧନ ଲୋଭେ ହଣା ମରା ଲାଗିଛି ନିୟତ
ସେ ଦେଶେ ହେଉଛି ପୁରା ଅଶାନ୍ତ ରାଜତ୍ୱ ।୬୯
ଧର୍ମ ଭୟ ଈଶ ଭୟ ନାହିଁ କାରୁ ମନେ
ପଶୁପରି ହଣା ମରା ହୁଅଇ ସଘନେ । ୭୦
ଏ ଅଧର୍ମ ଲୀଳା ଯାଙ୍କୁ ଲାଗୁଅଛି ସୁଖ
ସେ ମୂରୁଖମାନେ ଧର୍ମ ଈଶ୍ୱର ବିମୁଖ । ୭୧
ଧର୍ମ ଈଶ୍ୱର ବିମୁଖ ହେଲେ କି ଚଳିବ
ହାତେ ହାତେ ତାର ଫଳ ଆପଣେ ଭୋଗିବ ।
ଧରମ ନୀତି ନିୟମ ବଡ଼ଇ କଠିନ
ଲଙ୍ଘିଲେ ଭୋଗିବ ସଜା ଏହା ଧ୍ରୁବ ଜାଣ ।୭୩
ମୂର୍ଖ ପାଷାଣ୍ଡ ପାପିଷ୍ଠ ପ୍ରାଣୀଛନ୍ତି ଯେତେ
ସେହିମାନେ ଧରମକୁ ନିନ୍ଦନ୍ତି ନିୟତେ । ୭୪
ଧର୍ମ ଜ୍ଞାନ ଭାରତରେ ଲଭିଅଛି ଗ୍ଲାନି
ଭୀରୁ କାପୁରୁଷ କ୍ଳୀବ ହୋଇଛନ୍ତି ପ୍ରାଣୀ । ୭୫
ନାହିଁ ପୂର୍ବ ଶୌର୍ଯ୍ୟ ବୀର୍ଯ୍ୟ ଦେଶ ଅଭିମାନ
ଅଜ୍ଞାନ ଅନ୍ଧାରେ ହୋଇଅଛନ୍ତି ମଗନ । ୭୬
ମୁଁ ମୋର ଭାବରେ ସର୍ବେ ହେଉଛନ୍ତି ଘାରି
ନୀଚ ସ୍ୱାର୍ଥ ସକଳ ହୃଦରେ ଅଛି ପୂରି । ୭୭
ଧର୍ମ ବଳେ ବଳୀ ଯେହୁ ସେ ସିନା ଉତ୍କୃଷ୍ଟ
ହରାଇ ଧରମବଳ ହେଲେଣି ନିକୃଷ୍ଟ । ୭୮

ପ୍ରଜ୍ୱଳିତ ହେବ ଧର୍ମଭାବ ଯା ହୃଦୟେ
ସେ କି ଅନ୍ୟାୟ ଅଧର୍ମ କେବେ ସହିପାରେ ।
ଶତ ଶତ ନାରୀ ପରେ ହୁଏ ଅତ୍ୟାଚାର
ପ୍ରତିରୋଧ କରିବାକୁ ବଳ ନାହିଁ କାର । ୮୦
ଶତ ଶତ ଅତ୍ୟାଚାର ଅପମାନ ସହି
ଆଜି ମୁଣ୍ଡପୋତି ହିନ୍ଦୁଜାତି ଅଛି ରହି । ୮୧
ସମ୍ପ୍ରଦାୟ ଭେଦ ଭାବ ଘୋଟିଛି ଭାରତେ
ବୃଥା ଧର୍ମ ଅଭିମାନେ ମାତିଛନ୍ତି ସମସ୍ତେ । ୮୨
ଜଣେ ଏ ଧର୍ମର ମୂଳ ନାହିଁ କାର ଜ୍ଞାନ
ତେଣୁ ସକଳେ ମଣନ୍ତି ପ୍ରତିଶାଖା ଭିନ୍ନ । ୮୩
ଗୋଟାଏ ଗଣ୍ଡିରୁ ନାନା ଶାଖା ବାହାରିଲା
ଗଣ୍ଡିଠାରୁ ଶାଖା ଭିନ୍ନ କିପରି ହୋଇଲା । ୮୪
ପରମ ପିତା ପରମେଶ୍ୱର ଯେବେ ଏକ
ତାଙ୍କଠାରୁ ଜନମିଲେ ସନ୍ତାନ ଅନେକ । ୮୫
ସେମାନଙ୍କ ଗୁଣ କର୍ମ ହୋଇପାରେ ଭିନ୍ନ
ବେଭାରେ ସେମାନେ ଏକ ପିତାର ସନ୍ତାନ ।୮୬
ବାହାର ନିଶାଣ ନେଇ ଲାଗିଛି ବିବାଦ
ଭିତର କଥା ବୁଝିଲେ ନାହିଁ କିଛି ଭେଦ ।୮୭
ଧର୍ମର ଅସଲ ମର୍ମ ନବୁଝନ୍ତି କେହି
କଳି କରୁଛନ୍ତି ସର୍ବେ ଧର୍ମଦୋହି ଦେଇ । ୮୮
ଯେଉଁ ଦେଶେ ଲକ୍ଷ୍ମଣ ପରିଏ ଥିଲା ଭାଇ
ସେଦେଶେ ଆଜି ଭାଇକି ଭାଇ ନ ସହଇ । ୮୯
ଯେତେ ଭାଇ ତେତେ ଘର ହେଲାଣି ପ୍ରବାଦ
ଧନ ଲୋଭେ ହଣା ମରା ଲାଗିଛି ବିବାଦ ।୯୦
ଭାଇ ଭାଇ ମଧ୍ୟରେ ବିଶ୍ୱାସ ଲେଶ ନାହିଁ
ଆଉ ଅନ୍ୟ କଥା ଅବା କହିବା କିମ୍ପାଇ । ୯୧
ହିନ୍ଦୁଜାତି ସଂଖ୍ୟାବଳ ହେଉଅଛି ଊଣା
ଆନଠାରୁ ଏଥିପାଇଁ ଶୁଣୁଛି ଗଞ୍ଜଣା । ୯୨

ଧର୍ମ୍ମଗ୍ଲାନି ହେତୁ ଅନାଚାର ଅତ୍ୟାଚାର
ଗଦା ହେଲାଣି ସମାଜେ ପାହାଡ଼ ଆକାର । ୯୩
ଗୋଟି ଗୋଟି କରି ଯେବେ ତାକୁ ସୁଧାରିବା
ତହିଁର କୂଳ କିନାରା କେବେ ନ ପାଇବା । ୯୪
ଶୁଣିଥିଲି ଏକ ଦେଶେ ଥିଲା ଘୋଡ଼ାଶାଳ;
ଘୋଡ଼ା ଲଣ୍ଡି ଜମିଗଲା ପାହାଡ଼ ଆକାର । ୯୫
କେହି ତାକୁ ପରିଷ୍କାର କରି ନ ପାରିଲେ
ଆକାର ପ୍ରକାର ଦେଖି ସାହସ ନକଲେ । ୯୬
ପୂତିଗନ୍ଧେ ଦୂଷିତ ହୋଇଲା ସାରା ଦେଶ
ଥିଲେ ଜଣେ ନାମ ଅଟେ ହରକଉଲିଶ । ୯୭
ଦେଖି ଦେଖି ସେହୁ ଏକ ବୁଦ୍ଧି ଏ ପାଞ୍ଚିଲେ
ମଇଳା ଥାନରୁ ନଦୀ ଥିଲା ବହୁଦୂରେ । ୯୮
ନଦୀଠାରୁ ସେ ପର୍ଯ୍ୟନ୍ତ ନାଳ କାଟି ଦେଲେ
ନଦୀ ସ୍ରୋତ ପ୍ରବେଶିଲା ସେ ନାଳେ ପ୍ରଖରେ ।
ମଇଳାରେ ସ୍ରୋତ ବାଜି ସବୁ ଧୋଇନେଲା
ଅଳପ ଦିନରେ ସବୁ ପରିଷ୍କାର ହେଲା । ୧୦୦
ହିନ୍ଦୁ ସମାଜର ଦଶା ହୋଇଛି ତେମନ୍ତ
ଧର୍ମ୍ମଗ୍ଲାନିରୁ ମଇଳା ଜମିଛି ବହୁତ । ୧୦୧
ଗୋଟି ଗୋଟି ସଂସ୍କାର କେ କରି ନ ପାରିବ
କରିବାକୁ ଚେଷ୍ଟା କଲେ କରି ନ ପାରିବ । ୧୦୨
ଅନନ୍ତକାଳ ଲାଗିବ ସୁଧାରିବା ପାଇଁ
ଅସଂଖ୍ୟକ ସଂସ୍କାରକ ମିଳିବେ ବା କାହିଁ । ୧୦୩
ଶ୍ରୀମୁଖ ବଚନ ପାଳି ଯେବେ ଭଗବାନ
ଅବତାର ହେବେ ପ୍ରଭୁ ସୃଦୟା ବହନ । ୧୦୪
ନିଜ ଶକ୍ତିବଳେ ନିଜେ ଧରତେ ଆସିବେ
ସନାତନ ଧର୍ମ୍ମ ସ୍ରୋତ ପୁଣି ବୁହାଇବେ । ୧୦୫
ସେ ସ୍ରୋତରେ ଭାସିଯିବ ସବୁଯାକ ମଳ
ଭାରତ ସମାଜ ତେବେ ହେବ ସୁନିର୍ମଳ । ୧୦୬

ସବୁ ପାପ ତାପମାନ ହୋଇଯିବ ଦୂର
ଶାନ୍ତି ଶୃଙ୍ଖଳା ରହିବ ସମାଜେ ନିକର ।୧୦୭
ଧର୍ମ ବଳେ ବଳୀୟାନ ହୋଇବ ଭାରତ
ବିଶ୍ୱବାସୀ ଗୁରୁ ହୋଇ ଦେବ ମହାମନ୍ତ୍ର ।୧୦୮
ରଥଯାତ୍ରା ତତ୍ତ୍ୱ ଯୋଗେ ପଚାରିଲ ଯାହା
ସାର ମରମ କହୁଛି ବଳଭଦ୍ର ତାହା । ୧୦୯
ଭାରତରେ ରଥଯାତ୍ରା ଆନ ଦେଶେ ନାହିଁ
ହିନ୍ଦୁଜାତି କଳ୍ପନା କରିଛି ତାହିଁ ପାଇଁ । ୧୧୦
କି ମହତ୍ତ୍ୱ ତତ୍ତ୍ୱ ଅଛି ଏଥିରେ ନିହିତ
କହୁଛି ହେ ବଳଭଦ୍ର ଶୁଣ ଦେଇ ଚିତ୍ତ ।୧୧୧
ଏ ବିଶ୍ୱଜଗତ ଅଟେ ପ୍ରକାଣ୍ଡ ଦେଉଳ
ଜଗତନାଥ କରନ୍ତି ତହିଁ ମଧ୍ୟେ ଖେଳ । ୧୧୨
ଦେଉଳେ ଦେଅ ନ ଥିଲେ ପଡ଼ିଥାଏ ଶୂନ୍ୟ
ଶୂନ୍ୟ ଦେଉଳ ଅଟଇ ଶ୍ମଶାନ ସମାନ । ୧୧୩
ଶରୀର ଅଟେ ଦେଉଳ ଆତ୍ମା ଦେବ ତହିଁ
ଶରୀରେ ଆତ୍ମା ଦେବତା ତେମନ୍ତ ଖେଳଇ ।
ଆତ୍ମା ନ ଥିଲେ ଶରୀର ଶ୍ମଶାନକୁ ଯାଏ
ଶୂନ୍ୟ ଦେଉଳ ଆଦର ନ କରଇ କେଏ ।୧୧୫
ଯେତେ ଶରୀର ଅଛି ଏ ଜଗତ ମଧ୍ୟରେ
ପରମାତ୍ମା ଦେବତା ଖେଳଇ ସବୁଥିରେ ।୧୧୬
ଅସଂଖ୍ୟ ଦେଉଳ କିନ୍ତୁ ଦେବତା ଗୋଟିଏ
ସବୁ ଦେଉଳ ମଧ୍ୟରେ ବ୍ୟାପି ରହିଥାଏ ।୧୧୭
ସବୁ ଶରୀର ଏକାଠି ଅଟେ ଏ ଜଗତ
ଗୋଟିଏ ଦେବତା ତହିଁ ହୁଏ ଆତଯାତ ।୧୧୮
ଦେଖିବାକୁ ଭିନ୍ନ ଭିନ୍ନ ଶରୀର ଦିଶଇ
ଏକତା ସୂତ୍ରରେ ଗୁନ୍ଥା ହୋଇଅଛି ସେହି ୧୧୯
ଯେ ଏକତା ସୂତ୍ର ଅଟେ ପରମ ଈଶ୍ୱର
ପରମାତ୍ମା ପରମ ପିତା ସେ ଜଗତର । ୧୨୦

ସକଳ ମାନବ ଅଟେ ତାହାଙ୍କ ସନ୍ତାନ
ସବୁ ଭେଦଭାବ ଯିବ ଭଲେ ତାଙ୍କୁ ଚିହ୍ନ । ୧୨୧
କାର୍ଯ୍ୟଭେଦେ ନାନା ରୂପ କାରଣ ଯେ ଏକ
ଏକରୁ ଅନେକ ପୁଣି ଅନେକରୁ ଏକ । ୧୨୨
ତେଣୁ ହିନ୍ଦୁ ଲଭିଥିଲା ଦିବ୍ୟ ତତ୍ତ୍ୱ ଜ୍ଞାନ
ବସୁଧାକୁ ମଣିଥିଲା କୁଟୁମ୍ବ ସମାନ । ୧୨୩
କେବଳ କଳ୍ପନା କରି ନ ଥିଲା ନିଶ୍ଚିନ୍ତ
ଏ ଭାବକୁ ନିତ୍ୟକର୍ମେ କଲା ପରିଣତ । ୧୨୪
ତର୍ପଣ ଅଟଇ ନିତ୍ୟ କରମ ହିନ୍ଦୁର
ଜଗତ ପ୍ରାଣୀକି ତର୍ପଣରେ ଦିଏ ଜଳ । ୧୨୫
ଏ ମହାଉଦାର ଧର୍ମ ଥିଲା ଯେ ଜାତିର
ଆଜ ସେ ଅସଭ୍ୟବୋଲି ପାଏ ତିରସ୍କାର ।୧୨୬
ଉଚ୍ଚ ଉର୍ବର ମସ୍ତିଷ୍କ ଥିଲା ଯେ ଜାତିର
ସାକ୍ଷାତ ଦର୍ଶନ ଲଭିଥିଲା ଈଶ୍ୱରର । ୧୨୭
ସେହି ମସ୍ତିଷ୍କ ପ୍ରସୂତ ରଥଯାତ୍ରା ଅଟେ
ଏକତା ମହାମନ୍ତ୍ରର ଏ ଯାତ୍ରା ପ୍ରକଟେ । ୧୨୮
ହିନ୍ଦୁଜାତି ମଥାମଣି ଜଗତର ନାଥ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚାରିହସ୍ତ ।୧୨୯
ତାଙ୍କ ପାଶେ ନାହିଁ ଉଚ୍ଚ ନୀଚ ବଡ଼ ସାନ
ସ୍ୱହସ୍ତେ ଛେରାପହରା କରନ୍ତି ରାଜନ । ୧୩୦
ସକଳର ହୃଦୟସ୍ଥ ଦେବତା ଚିନ୍ତାମଣି
ସର୍ବେ ଏକତ୍ରି ତହୋଇ ନେବା ରଥଟାଣି ।୧୩୧
ଜାତି ବର୍ଣ୍ଣ ନିର୍ବିଶେଷେ ଏ ରଥ ଟାଣିବା
ଭେଦାଭେଦ ଭାବମାନ ସକଳ ଭୁଲିବା ।୧୩୨
ଧନୀ ଦରିଦ୍ର ସକଳେ ହୋଇ ଏକମେଳ
ଏକାଠି ମିଳିଲେ ଉପୁଜିବ ମହାବଳ । ୧୩୩
ସେହି ବଳେ ଭିଡ଼ିନେବା ଏ ରଥ ଦଉଡ଼ି
ଆସ ଏକତା ସୂତ୍ରରେ ସର୍ବେ ଯିବା ଜଡ଼ି ।୧୩୪

ଜଣେ ସିନା ରଥ ଟାଣିନେଇ ନ ପାରିବ
ସକଳେ ଏକାଠି ହେଲେ ଅକ୍ଳେଶରେ ଯିବ ।
ମନ ପ୍ରାଣ ଦେଇ ସର୍ବେ ଏକତ୍ରିତ ହେଲେ।
ଅସାଧ୍ୟ ସାଧନ କରିପାରିବାଟି ହେଲେ । ୧୩୬
ରଥରେ ଅଛନ୍ତି ଯେହ୍ନେ ପ୍ରଭୁ ଭଗବାନ
ସବୁରି ହୃଦରେ ସେହ୍ନେ ଅଛନ୍ତିଟି ଜାଣ । ୧୩୭
ତାଙ୍କୁ ଟାଣି ନେବାକୁ ସେ ହୃଦେ ବଳ ଦେବେ
ଏମନ୍ତ ସକଳେ ଚିନ୍ତା କରନ୍ତେ ପାରିବେ ।୧୩୮
ଏହି ମହାମନ୍ତ୍ର ଶିକ୍ଷା କର ସର୍ବଜନ
ସକଳ କାର୍ଯ୍ୟରେ ହୁଅ ଏକମନ ପ୍ରାଣ । ୧୩୯
ହିନ୍ଦୁଜାତିର ଦୁର୍ଗତି ଯେବେ ହେବ ଦୂର
ସକଳ ମିଳି ଏକାଠି ଦୃଢ଼େ ପଣ କର । ୧୪୦
ହିନ୍ଦୁଜାତି ରଥ ଦଉଡ଼ିକ ସର୍ବେ ଧର
ଏକମନେ ଏକପ୍ରାଣେ ତାହାକୁ ଓଟାର ।୧୪୧
ଦଳ ଦେଇ ଅନାଚାର ଅତ୍ୟାଚାର ଯେତେ
ଚାଲିଯିବ ରଥ ଚିନ୍ତା ନ କର କହିଁତେ । ୧୪୨
ଧର୍ମବଳେ ବଳୀୟାନ ହେବା ଯେବେ ଭାଇ
ଅଜ୍ଞାନ ଅନ୍ଧାର ଯିବ ମନକୁ ପଳାଇ । ୧୪୩
ଯେ ଯେଉଁ ଇଷ୍ଟ ଦେବତା ଭଜଇ ପୂଜଇ
ସେ ଦେବଙ୍କ ମତ ଧର୍ମ ସେହ୍ନେ ଆଚରଇ ।୧୪୪
ବୈଷ୍ଣବ ସମ୍ପ୍ରଦାୟର ନାନା ଶାଖା ଅଛି
ବିଷ୍ଣୁଙ୍କର ଆରାଧନା କେହି ନ ଛାଡ଼ୁଛି । ୧୪୫
ରାମକୃଷ୍ଣ ଉପାସ୍ୟ ଦେବତା ତାହାଙ୍କର
ସେମାନେ କି ହୀନ ବୀର୍ଯ୍ୟ ପୁଣି ହୀନବଳ ।୧୪୬
ଯେଉଁ ଧର୍ମାଚାର୍ଯ୍ୟମାନେ ମହାଶୂର ବୀର
ସେମାନଙ୍କ ଭକ୍ତ କିମ୍ପା ହେବେ ହୀନବଳ ।୧୪୭
ଭକ୍ତ ସଦା ଭଗବାନ ପ୍ରିୟକାର୍ଯ୍ୟ କରେ
ଭଗବାନଙ୍କର ମତ ଧରମ ଆଚରେ । ୧୪୮

ସର୍ବଶକ୍ତିମାନ ଯେହ୍ନୁ ଜଗତ ମଧ୍ୟରେ
ତାଙ୍କୁ ସେବି ହୀନବଳ କେ ହୋଇ ନପାରେ ।
ଅର୍ଜ୍ଜୁନ ପରମ ଭକ୍ତ ଥିଲେ ଶ୍ରୀକୃଷ୍ଣର
ଥିଲେ ଯୋଦ୍ଧା ମହାଧନୁର୍ଦ୍ଧର ମହାବୀର ।୧୫୦
ତ୍ରିପୁର ବିଜୟୀ ପାର୍ଥ ନାମ ଥିଲା ଖ୍ୟାତ
ଥିଲେ ବିଷ୍ଣୁଙ୍କର ଯେହ୍ନୁ ପରମ ଭକତ । ୧୫୧
ପ୍ରହ୍ଲାଦ ହରି ଭକ୍ତ ମହାବୀର ଥିଲା
ଅହିଂସା ଅସହଯୋଗ ଆଚରଣ କଲା । ୧୫୨
ପିତା ଦେଲେ ପ୍ରହ୍ଲାଦକୁ ନାନାବିଧ କଷଣ
ଅମ୍ଳାନ ବଦନେ ସବୁ ସହିଲେକ ପୁଣ । ୧୫୩
ନଥିଲା ସେ ଭୀରୁ କାପୁରୁଷ ଅବା କ୍ଲୀବ
ମହାବୀର ଥିଲା ଯେହ୍ନୁ ସହିଲା ସରବ । ୧୫୪
ଧର୍ମକୁ ନିନ୍ଦିବା କିଛି ଉଚିତ ନୁହଇ
ଧର୍ମ୍ମ ବିହୁନେ ମାନବ ପଶୁତ୍ୱ ଲଭଇ । ୧୫୫
ଆହାର, ନିଦ୍ରା, ମୈଥୁନ, ଭୟ ଚାରି କାମ
ମାନବ ପଶୁ ମଧ୍ୟରେ ଅଟଇ ସମାନ । ୧୫୬
ଏ ଚାରି କାମ ପାଇଁକି ପଶୁ ଯାହା କରେ
ମାନବ ସେହି ପ୍ରବୃତ୍ତି ପ୍ରେରେ ବେଶିରେ ।୧୫୭
ପଶୁଠାରୁ ହୀନ ବୃତ୍ତି ସମୟେ କରଇ
ଏ ଚାରି କରମ କରି ପ୍ରଧାନ ନୁହଇ । ୧୫୮
ଯେଉଁ ହେତୁ ଏ ମାନବ ପଶୁଠୁଁ ପ୍ରଧାନ
ତାହା ଅଟେ ମାନବର ସଚ୍ଚା ଧର୍ମଜ୍ଞାନ । ୧୫୯
ଗୀତାରେ ଏ ମହାତତ୍ତ୍ୱ ହୋଇଛି ବ୍ୟାଖ୍ୟାନ
ହିନ୍ଦୁଜାତିର ବିଶ୍ୱକୁ ଏହା ମହାଦାନ । ୧୬୦
ଏହି ଆଦର୍ଶରେ ହିନ୍ଦୁ ଯେବେ କାର୍ଯ୍ୟକରେ
ପତନ ନାହିଁ ହିନ୍ଦୁର ଏ ବିଶ୍ୱ ସଂସାରେ ।୧୬୧
ଏ ଆଦର୍ଶ ଭୁଲି ହିନ୍ଦୁ ଜ୍ଞାନ ହରାଇଛି
ଘୋର ଅନ୍ଧକାରେ ପଡ଼ି ଘାଣ୍ଟି ହେଉଅଛି ।

ବୋଲେ ଧନ ଜଗବନ୍ଧୁ ପ୍ରଭୁ ଦଇତାରି
ଆଲୋକ ଦେଖାଇ ଦିଅ ଦୂରିତ ନିବାରି ।୧୬୩

ଇତି ଶ୍ରୀ ଭାରତ-ଚରିତାମୃତେ ଧର୍ମତତ୍ତ୍ୱ ବର୍ଣ୍ଣନେ ବୟାଅଶୀ ଅଧ୍ୟାୟଃ ।



# ତେୟାଅଶୀ ଅଧ୍ୟାୟ

ବଳଭଦ୍ର ଉବାଚ

ଶୁଣ ଆହେ ଗୁରୁଦେବ ମୋର ନିବେଦନ
ଭାରତ ଚରିତାମୃତ କହିଲେ ଆପଣ । ୧
ବହୁତ ଚରିତ ଗୁରୁ କହିଲେ ଆପଣ
ପାଠକଲେ ପାଠକେ ଲଭିବେ ବହୁଜ୍ଞାନ । ୨
ଭାରତେ ନୂଆ ସଭ୍ୟତା ପ୍ରବେଶ ଲଭିଲା
କେତେ କେତେ ନୂଆ କଥାମାନ କରାଇଲା ।୩
ଯାହା ଆଖି ଦେଖି ନ ଥିଲା ଏ ଭାରତରେ
ଦେଖାଗଲା ତାହା ସବୁ ଦୁଇ ନୟନରେ । ୪
ବହୁ ବିଚିତ୍ର କଥା ଏ ଭାରତ ଦେଖିଲା
ଦେଖି ତାହା ସବୁ ତା'ର ଆଖି ନିଷାଇଲା । ୫
କଳ୍ପନା ଧାରଣା ଶକ୍ତି ନାହିଁ ଭାରତର
କାଳକ୍ରମେ କ୍ଷୀଣ ହୋଇ ଗଲାଣି ସକଳ । ୬
ଆଶ୍ଚର୍ଯ୍ୟ ହୋଇ ସକଳ ବିଷୟ ଦେଖୁଛୁ
କିପରି ହେଲା ବୋଲି ତା କଳି ନ ପାରୁଛୁ ।୭
ବିଦେଶୁଁ ଯାହା ଆସିଲା ତାହା ସବୁ ଭଲ
ନିଜ ଦେଶ କଥାମାନ ମଣୁଅଛୁ ସଲ । ୮
ଭାରତେ ଇଂରେଜୀ ଭାଷା ପ୍ରବଳ ହୋଇଲା
ନିଜ ଭାଷା ସାହିତ୍ୟ ସକଳ ଲୁଚିଗଲା । ୯
ସେ ଦେଶ ଭାଷାରେ ବହୁ ପୁସ୍ତକ ପଢ଼ିଲେ
ସେ ଦେଶର ହାଲଚାଲ ସକଳ ବୁଝିଲେ । ୧୦

ସେ ଦେଶର ଯେତେ ଯେତେ ମନ୍ଦ କଥାମାନ
ଭାରତବାସୀ ମନକୁ କଲା ଆକର୍ଷଣ । ୧୧
ସେ ଦେଶର ଭଲକଥା ଶିଖି ନ ପାରିଲେ
ବାହାର ଗୃଳ ଚଳନ କେତେକ ଶିଖିଲେ ।୧୨
ଶିଖିଲା ବୁଦ୍ଧି କି କେବେ ଆମକୁ ଆସଇ
ମାଗି ଆଣିବା ଭିଉଣେ ପେଟ ନ ପୂରଇ । ୧୩
ଭାରତର ଦଶା ଏବେ ହୋଇଛି ସେପରି
କାକ ହୁଏ ଯଥା ମୟୂରର ପୁଚ୍ଛଧାରୀ । ୧୪
ଦେଶ କାଳ ପାତ୍ର ବିବେଚନା ନଦାରଦ
ଉହୁଳ ବିକଳ ଦେଖି ପରର ସମ୍ପଦ । ୧୫
ମୂଳରୁ ଚଢ଼ିଲେ ସିନା ଡ଼ାଳରେ ଉଠିବ
ଏକା କୁଦାକେ ଡ଼ାଳକୁ କପରି ଚଢ଼ିବ । ୧୬
ଉଠି ନ ପାରି ପଡ଼ିଲେ ଗୋଡ଼ ଭାଙ୍ଗିଯିବ
ଏହିପରି ଦଶା ହାତେ ହାତେ ଅରଜିବ । ୧୭
ଶ୍ୱେତଦ୍ୱୀପ ନାରୀମାନେ ଭାରତେ ଆସିଲେ
ସ୍ୱର୍ଗ ଅପସରୀ ପରି ଭାରତେ ବୁଲିଲେ । ୧୮
ଶ୍ୱେତଦ୍ୱୀପ ବରଫ ଆବୃତ ସଦା ଥାଏ
ମହାଘୋର ଅନ୍ଧାଦେଶ ମେଘାଚ୍ଛନ୍ନ ହୁଏ । ୧୯
ସେ ଦେଶରେ ନର ନାରୀ ସଦା ଶୀତ ଭୀତ
ନାନା ଉଷ୍ଣ ପରିଚ୍ଛଦେ ସତତ ଆବୃତ । ୨୦
ଗୋଡ଼ଠାରୁ ମୁଣ୍ଡଯାଏ ପୋଷାକ ପିନ୍ଧନ୍ତି
ଶୀତରୁ ଶରୀରମାନ ରକ୍ଷା କରିଥାନ୍ତି । ୨୧
ନାନା ପ୍ରକାର ବସନ ଲୋଡ଼ା ତାହାଙ୍କର
ନିତ ନିତ କାଟଗ୍ଣ୍ଠ ବଦଳେ ନିକର । ୨୨
ଯେତେ କାଟଗ୍ଣ୍ଠ ସବୁ ନିତ ନୂଆ ନୂଆ
ନାନା ପରକାର କାରିଗରି ତହିଁ ଥୁଆ । ୨୩
ବସନ ରସିକା ଶ୍ୱେତଦ୍ୱୀପ ନାରୀଗଣ
ଅଳଙ୍କାର ଉପରେ ଥାଏନାହିଁ କେବେ ମନ ।୨୪

ନାକ କାନ ଫୋଡ଼ା ହୁଏନାହିଁ ତାହାଙ୍କର
ସେ ଥାନମାନଙ୍କୁ ଲୋଡ଼ା ନାହିଁ ଅଳଙ୍କାର ।୨୫
ମୁଣ୍ଡପରେ ଟୋପି ଗୋଡ଼ ଖାଲି ହାତ ରଣ୍ଡ
ଗୁରିଆଡ଼େ ବୁଲୁଛନ୍ତି ଯଥା ଶିବ ଷଣ୍ଢ । ୨୬
ସେ ଦେଶରେ ଇଣ୍ଡ୍ରୋଲ ପରିବାର ନାହିଁ
କାହାକୁ ପୋଷିବା ପାଇଁ କେହି ନୁହେଁ ଦାୟୀ ।
ଧରମ ବନ୍ଧନ କିଛି ନାହିଁ ବିବାହରେ
ଛାଡ଼ପତ୍ର ହୋଇପାରେ ମନ ନ ମିଳିଲେ ।୨୮
ସ୍ତ୍ରୀ ଶ୍ରୀ ମନ ନ ମାନିଲେ ସ୍ୱାମୀକୁ ଛାଡ଼ିବ
ସ୍ୱାମୀ ମନ ନ ମାନିଲେ ପତ୍ନୀକୁ ତେଜିବ ।୨୯
ଛାଡ଼ପତ୍ର ଅଦାଲତ ସେ ଦେଶେ ବସିଛି
ଶତ ଶତ ମକଦ୍ଦମା ବର୍ଷର ଲାଗିଛି । ୩୦
ରମଣୀମାନେ ସେ ଦେଶେ ଅତ୍ୟନ୍ତ ସ୍ୱାଧୀନ
ନିଜେ ନିଜେ କାମକରି ପୋଷନ୍ତି ଜୀବନ ।୩୧
ପାଠ ପଢ଼ି ଏଠି ସେଠି ଚାକିରି କରନ୍ତି
ସକଳ କାମକୁ ସଦା ପାରଗ ଅଟନ୍ତି । ୩୨
ଇଚ୍ଛାବରଣ ସେ ଦେଶେ ବିବାହ ଚଳଇ
ଯେ ଯାହାକୁ ଇଚ୍ଛାକଲା ସେ ତାକୁ ବରଇ ।୩୩
ଦୁହେଁ ଯାଇ ପୁରୋହିତ ଆଗେ ଜଣାଇବେ
ପୁରୋହିତ ତାହାଙ୍କ ପୋଥିରେ ଟିପି ନେବେ ।
ପୋଥିରେ ଲେଖା ସରିଲେ ବିବାହ ସରିଲା
ଫୁଲମାଳ ଦେଇ ଯେ ଯାହାର ଘରେ ଗଲା ।୩୫
ଏହି ଦେଶାଚାର ପ୍ରଥା ସେ ଦେଶେ ଚଳଇ
କାହାର ପାଇଁ କି ଆନ କେହି ନୁହେଁ ଦାୟୀ ।୩୬
ସକଳେ ମଜୁରି ଖଟି ଖାଇବେ ପିଇବେ
ଆନ ଜଣକ ଆଶ୍ରୟେ କେହି ନ ଚଳିବେ । ୩୭
ଦ୍ୱାରେ ଦ୍ୱାରେ ବୁଲି କେହି ଭିକ୍ଷା ନ ମାଗିବ
ମାଗିଲେ ଦଣ୍ଡିତ କାରା ମନ୍ଦିରକୁ ଯିବ । ୩୮

ସେ ଦେଶ ରମଣୀ ନୁହେଁ ପୁରୁଷ ଅଧୀନ
ପୁରୁଷ ସଙ୍ଗେ ତାହାର ସମାନ ଆସନ । ୩୯
ଚାଲି ଚଳନ ଆଚାର ବ୍ୟବହାର ମାନ
ଇତ୍ୟାଦି ବିଷୟେ ନାରୀ ଅଟନ୍ତି ସ୍ୱାଧୀନ । ୪୦
ସେ ଦେଶ ରମଣୀମାନେ ଭାରତେ ଆସିଲେ
ଭାରତ ରମଣୀମାନେ ତାହାଙ୍କୁ ଦେଖିଲେ ।୪୧
ଭାରତର ସ୍ଥାନେ ସ୍ଥାନେ ବିଦ୍ୟାଳୟ ହେଲା
ବାଳିକାମାନଙ୍କ ଶିକ୍ଷା ସେଠାରେ ହୋଇଲା ।୪୨
ଯୁବକ ଯୁବତୀମାନେ ଏକା ବିଦ୍ୟାଳୟେ
ପାଠ ପଢାପଢ଼ି କଲେ ଅନେକ ସମୟେ । ୪୩
ବିଲାତି ପବନ ଆସି ଅନ୍ତପୁରେ ପଶି
ଭାରତ ପରଦା ପ୍ରଥା ଦେଲାକ ବିନାଶି । ୪୪
ଅସୂର୍ଯ୍ୟମ୍ପଶ୍ୟା ରମଣୀ ଥିଲେ ଯେଉଁମାନେ
ଦାଣ୍ଡେ ହାଟେ ବିପରଦା ବୁଲିଲେ ସେମାନେ ।
ସଭା ସମିତିରେ ବସି ବକ୍ତୃତା କଲେଣି
ଲୋକ ସଭାମାନଙ୍କରେ ସଦସ୍ୟା ହେଲେଣି । ୪୬
ଚାକିରୀ କଲେଣି ଯାଇ ସରକାର ଘରେ
କେତେ ଯାଇ ବୁଲିଲେଣି ବିଲାତ ଦେଶରେ ।
ସାହାବାଣୀ ପରି ବେଶଭୂଷା ହୋଇଲେଣି
ସାହେବମାନଙ୍କ ସଙ୍ଗେ ନୃତ୍ୟ କଲେ ପୁଣି ।୪୮
ଭାରତୀୟ ଅଳଙ୍କାର ବସନ ଭୂଷଣ
ବଦଳି ଗଲାଣି ସବୁ ଚାଲି ବା ଚଳନ । ୪୯
ନାରୀ ସ୍ୱାଧୀନତା ଅର୍ଥ କିଛି ନ ବୁଝନ୍ତି
ସ୍ୱାଧୀନତା ଦିଅ ବୋଲି ଡାକ ଦେଉଛନ୍ତି ।୫୦
ବୋଲନ୍ତି ପୁରୁଷମାନେ ବଡ଼ ସ୍ୱାର୍ଥପର
ଦାସୀ କରି ରଖିଛନ୍ତି ନାରୀଙ୍କି ନିକର । ୫୧
ହାଣ୍ଡିଶାଳେ ଭାତ ରାନ୍ଧି ରାନ୍ଧି ଦିନ ଯିବ
ଘର କୋଣେ ପୁରାଇଣ ସଡ଼ାଇ ମାରିବ । ୫୨

ଏ କଥା ଏଣିକ ଆଉ ହୋଇ ନ ପାରିବ
ପରଦା ଛାଡ଼ି ପଦାକୁ ବାହାରି ପଡ଼ିବ । ୫୩
ଓଢ଼ଣା ପକାଇ କମ୍ପା ନଇଁ ଚାଲୁଥିବ
ଏଣିକ ସେ ମୁଣ୍ଡ ଟେକି ତରାଠି ଚାହିଁବ । ୫୪
ମରହଟି କଣ୍ଠାପଡ଼ା ଶାଢ଼ୀ ନ ପିନ୍ଧିବ
ବଡ଼ି, ସେମିଜ, ସାୟା ସେ ଏଣିକ କିଣିବ ।୫୫
ହଳଦି ଲଗା ଛାଡ଼ିଣ ସାବୁନ କିଣିବ
ପାଉଡ଼ର ପୋମେଟମ୍ ମୁଖେ ଲଗାଇବ । ୫୬
ଅର୍ଦ୍ଧ ଉଲଗ୍ନ ପରାଏ ବେଶଭୂଷା ହେବ
ଜାତୀୟ ସମରେ ନାରୀ ଯାଇ ଯୋଗଦେବ ।୫୭
ନାରୀ ଯାଇ ସଭା ସମିତିରେ ଯୋଗଦେବେ
ପାଚକ ନଥିଲେ ଆପେ ହାତରେ ରାନ୍ଧିବେ ।୫୮
ପାଠ ପଢ଼ୁ ପଢ଼ୁ ତାଙ୍କୁ ଦିନ ନ ଅଣ୍ଟିବ
ଘର ଆଟେରଦଳ ପାଇଁ ବେଳ ନ ମିଳିବ । ୫୯
ପୁରୁଷେ ଯେବେ ସନ୍ତାନ ଜନମ କରନ୍ତେ
ନାରୀ ତେବେ ସେ କାମରୁ ରକ୍ଷା ପାଇଯାନ୍ତେ ।
ପାଠ ପଢାରେ ମସ୍ତିଷ୍କ ଖଟାଇବେ ଯେତେ
ସନ୍ତାନ ଜନମ ଶକ୍ତି ଊଣାହେବ ତେତେ । ୬୧
ଶାରୀରିକ ପରିଶ୍ରମ ଯେତେ ଊଣା ହେବ
ସହଜେ ପ୍ରସବ କେବେ କରି ନ ପାରିବ । ୬୨
ଧାଈ ଡାକତରମାନେ ଶୂଳ ନ ଧରିଲେ
ସ୍ତ୍ରୀମାନେ ପ୍ରସବ କରିବେ ନାହିଁ ଭଲେ । ୬୩
ଭବିଷ୍ୟ ପୁରାଣକାର ଲେଖିଅଛି ଯାହା
ଏ କାଳକୁ ସବୁକଥା ଘଟିଲାଣି ତାହା । ୬୪
ସାମ୍ୟବାଦୀ କହୁଛନ୍ତି ବିବାହ ଉଠାଅ
ଯାହା ରୁଚି ଯାକୁ ତାକୁ ସେ ହେଉ ବିବାହ ।୬୫
ନାରୀମାନଙ୍କୁ ଏ କଥା ଲାଗୁଅଛି ଭଲ
ବିବାହ ବନ୍ଧନକୁ ସେ ମଣିଲେଣି ସଲ । ୬୬

ସେ ଦେଶେ ରହିବ ସିନା ସେ ଫଳ ଖାଇବ
ଆନ ଦେଶ ଫଳ ଦେଖି କମ୍ପା ଡେଇଁ ହେବ ।
ଭାରତ ରମଣୀମାନେ ହୋଇଥିଲେ ଦେବୀ
ଏବେ ଇଚ୍ଛା କରୁଛନ୍ତି ହେବାକୁ ସେ ମାନବୀ ।୬୮
ଯେଉଁମାନେ ଗୃହ ଲକ୍ଷ୍ମୀ ଅର୍ଦ୍ଧାଙ୍ଗିନୀ ଥିଲେ
ଦେବୀ ବୋଲି ସ୍ୱରାଜ୍ୟରେ ନାମ ଲଭିଥିଲେ ।୬୯
ଅମୁକର ସ୍ତ୍ରୀ ଶ୍ରୀ ନାମ କଲେ ଚସ ଧାରଣ
ପାଇଲେ କି ଅଧିକ ସେ ଗୌରବ ସମ୍ମାନ ।୭୦
ସଦାକାଳେ ଦେବୀଙ୍କର ଥିଲା ଅଗ୍ରାସନ
ଦେବପାଶେ ଦେବୀ ସଦା ଲଭନ୍ତି ଆସନ । ୭୧
ଆଗେ ଦେବୀ ନାମ ପଛେ ଦେବ ନାମ ଥିଲା
ସୀତାରାମ ରାଧାକୃଷ୍ଣ ପଦ୍ଧତି ହୋଇଲା । ୭୨
ନାରୀମାନଙ୍କର ପୂଜା ହୁଏ ଯେ ଗୃହରେ
ଦେବୀ ଆଗମନ ସଦା ହୁଏ ସେହିଠାରେ । ୭୩
ନାରୀର ମାନ ମହତ୍ତ୍ୱ ରଖିବା କାରଣ
ଦେଇଥିଲେ କେତେଲୋକ ନିଜନିଜ ପ୍ରାଣ ।୭୪
ଆପଣା ମହତ୍ତ୍ୱ ଦାଣ୍ଡେ ଗଲେ ପଛେ ଯାଉ
ସ୍ତ୍ରୀର ମହତ୍ତ୍ୱ ପରେ କଳଙ୍କ ନହେଉ । ୭୫
ସତୀ ସାଧ୍ୱୀ ନାରୀ ପ୍ରିୟବାଦିନୀ ହିନ୍ଦୁର
ସହଧର୍ମ୍ମିଣୀ ସତତ ଅଟେ ପୁରୁଷର । ୭୬
ସକଳ ଧର୍ମ୍ମ କାର୍ଯ୍ୟରେ ସହାୟ ରମଣୀ
ବିପତ୍ନୀକ ଧର୍ମ୍ମକାର୍ଯ୍ୟ ନ କରିବ ପୁଣି । ୭୭
କି ଉଚ୍ଚ ଉଦାର ଭାବ ଥିଲା ଏ ହିନ୍ଦୁର
ଗୃହଲକ୍ଷ୍ମୀ ପଦବୀ ଯେ ଥିଲା ନାରୀଙ୍କର । ୭୮
ଭାର୍ଯ୍ୟା ନ ଥିଲେ ଗୃହର କିଛି ମୂଲ୍ୟ ନାହିଁ
ଦେଉଳେ ଦିଅଁ ନଥିଲେ ଶୋଭା ନଦିଶଇ ।୭୯
ଯେଉଁ କାମକୁ ଯେ ଯୋଗ୍ୟ ସେ ତାହା କରିବ
ସୁଖ ଶାନ୍ତି ଶୃଙ୍ଖଳାରେ ସଂସାର ଚଳିବ । ୮୦

ବାହାରର ଯେତେ କାର୍ଯ୍ୟ ପୁରୁଷ କରିବ
ଅନ୍ତଃପୁର ପୂର୍ଣ୍ଣ ନାରୀ ଆୟତ୍ତେ ରହିବ । ୮୧
ଧନ ଅରଜିବା ଭାର ଥିଲା ପୁରୁଷର
ଅନ୍ତଃପୁରେ ବ୍ୟୟଭାର ଥିଲା ନାରୀର । ୮୨
ଲକ୍ଷ୍ମୀ ଗୃହଲକ୍ଷ୍ମୀ ରାଜଲକ୍ଷ୍ମୀ ଅନ୍ନପୂର୍ଣ୍ଣା
ନାନା ପ୍ରକାରେ ନାରୀର ଥିଲା ବର୍ଣ୍ଣନା । ୮୩
ଏ ଉଚ୍ଚ ଆଦର୍ଶମାନ ଦେଇ ଜଳାଞ୍ଜଳି
ସ୍ୱାଧୀନ ହେବାକୁ ନାରୀ କରୁଅଛି କଳି । ୮୪
ଅଛେଦ୍ୟ ବନ୍ଧନ ଥିଲା ବିବାହ ବନ୍ଧନ
ହାତଗଣ୍ଠି ପଡ଼ିଲେ ହୋଇବ ଏକ ପ୍ରାଣ । ୮୫
କାମାନ୍ଧ ହୋଇ କାହାକୁ କେବେ ଯେ ଛାଡ଼ିବ
ମହାଘୋର ପାତକବୋଲି ସେ ବୋଲାଇବ । ୮୬
ନାନା ଉପାଖ୍ୟାନ ଅଛି ଧରମ ଶାସ୍ତ୍ରରେ
ସତୀ ରମଣୀର ଖ୍ୟାତି ଥିଲା ସବୁଠାରେ । ୮୭
ଯେଉଁ ସଭ୍ୟତା ପବନ ବିଦେଶରୁ ଆସିଲା
ଭାରତର ରୀତି ନୀତି ବଦଳାଇ ଦେଲା । ୮୮
ସେହି ଛୁଟଙ୍କେ ତିଳାହେଲା ଆଇନ କାନୁନ
ବିଧବା ବିବାହ ଆଜି ହେଲା ପଣ ପଣ । ୮୯
ବ୍ରାହ୍ମଣ କ୍ଷତ୍ରୀୟ ବୈଶ୍ୟ ଏ ତିନି ବର୍ଣ୍ଣରେ
ବିଧବା ବିବାହ ନ ଥିଲା ଭାରତରେ । ୯୦
ଏବେ ବିଧବା ବିବାହ ଚଳିଲା ତାଙ୍କର
ଯୁବତୀ ବିବାହ ହେଲା ବ୍ରାହ୍ମଣ ବୈଶ୍ୟର । ୯୧
ରଣପା ପରି ବୁଲିଲେ ଦାଣ୍ଡରେ ଯୁବତୀ
ଲାଜ ଶରମ ତେଜି ଦେଇ ଦାଣ୍ଡରେ ବୁଲନ୍ତି । ୯୨
ସରକାର ଘରେ ଯାଇ କଲେ ନଉକରି
ଏ ଦିଗରେ ପୁରୁଷଙ୍କ ସଙ୍ଗେ ସମସରି । ୯୩
ପୁରୁଷ ପାଠ ପଢ଼ିବେ ନାରୀଏ ପଢ଼ିଲେ
ଏ ଦିଗରେ ଦୁଇଜାତି ସମାନ ହୋଇଲେ । ୯୪

ପୁରୁଷ ଦାଣ୍ଡ ହାଟରେ ବୁଲନ୍ତି ଯେମନ୍ତ
ନାରୀଏ ଅବାଧେ ବୁଲୁଅଛନ୍ତି ତେମନ୍ତ । ୯୫
ସଭାରେ ବସି ବକ୍ତୃତା କରିବାର ହେଲା
ଏ ସବୁଦିଗେ ସମାନ ସ୍ୱାତନ୍ତ୍ର୍ୟ ମିଳିଲା । ୯୬
ଭାରତ ରମଣୀ ଯାଇ ବିଲାତ ଦେଶରେ
ସାହେବମାନଙ୍କ ସଙ୍ଗେ ସ୍ୱଚ୍ଛନ୍ଦେ ବୁଲିଲେ । ୯୭
ନାରୀ ଇଚ୍ଛାକରେ ହେବ ପୁରୁଷ ସମାନ
ପୁରୁଷ ଯେ କାର୍ଯ୍ୟକରେ କରିବ ସେମାନ ।୯୮
ଈଶ୍ୱର ବିଧି ବିଧାନ ନୁହଇ ସମାନ
ଦୁହିଁଙ୍କ ଶରୀର ଯନ୍ତ୍ର ଅଟେ ଭିନ୍ନ ଭିନ୍ନ । ୯୯
ସୃଷ୍ଟି ଆରମ୍ଭରୁ ନାରୀ ପ୍ରସବ କରଇ
ପୁରୁଷ ଏ କର୍ମ କେବେ କରି ନପାରଇ । ୧୦୦
ଏ ଦିଗେ କିପରି ଦୁହେଁ ହୋଇବେ ସମାନ
ପୁରୁଷ କେବେ ଜନମ କରିବ ସନ୍ତାନ । ୧୦୧
ଏକଥା ଦେଖିଲେ ମନୁ ସଂଶୟ ତୁଟିବ
ବିଷମ ସମସ୍ୟା ତେବେ ପୂରଣ ହୋଇବ । ୧୦୨
କିଏ କହେ ବିଭାହେବା ଆବଶ୍ୟକ ନାହିଁ
ପଶୁ ପକ୍ଷୀ ପରି ନ ଚଳିବା କାହିଁପାଇଁ । ୧୦୩
କେ ବୋଲେ ବିବାହ ପ୍ରଥା ପୂର୍ବପରି ରହୁ
ଛାଡ଼ପତ୍ର ଅଧିକାର ଦୁହିଙ୍କର ରହୁ । ୧୦୪
କେ ବୋଲେ ହେଲା ବିବାହ ପ୍ରଥା ରହିଥାଉ
ଅଚ୍ଛେଦ୍ୟ ବନ୍ଧନ ଛାଡ଼ି ଅସ୍ଥାୟିତା ହେଉ । ୧୦୫
ଦୁଇ ତୃରି ବରଷ ନିର୍ଦ୍ଦିଷ୍ଟକାଳ ଥାଉ
ମିଆଦ ପରେ ଯେ ଯାହା ଇଚ୍ଛାରେ ସେ ଯାଉ ।
ଯେତେ ବରଷ ପାଇଁକି ମିଆଦ କରିବ
ମିଆଦ ପୂରିଲେ ସେ ବନ୍ଧନ ତୁଟିଯିବ । ୧୦୬
ତାପରେ ଦୁହେଁ ସେ ବନ୍ଧନରୁ ମୁକ୍ତ ହେବେ
ଆ ବର କନ୍ୟା ଖୋଜ ପୁଣି ବିଭା ହେବେ ।

ବହୁପ୍ରକାର ବିବାହ ଥିଲା ଭାରତରେ
ପୂର୍ଣ୍ଣ ନାରୀ ସ୍ୱାଧୀନତା ଥିଲା ଏହିଠାରେ । ୧୦୯
ଭାରତେ ବିବାହ ପ୍ରଥା ପ୍ରଥମେ ନଥିଲା
ରାଜରାଜା ବେଭାରରେ କାମ ଚଳୁଥିଲା । ୧୧୦
ରାଜା ଶ୍ୱେତକେତୁ ବହୁକାଳ ପୂର୍ବେ ଥିଲେ
ପିତାଙ୍କପାଖରେ ଦିନେ ସେହୁ ବସିଥିଲେ ।୧୧୧
ମାତା ଅନ୍ୟ ପୁରୁଷ ସଙ୍ଗତେ ଚଳିଗଲେ
ଶ୍ୱେତକେତୁ ଦେଖି ଏହା ବିସ୍ମିତ ହୋଇଲେ ।
କହ ଏଥିର କାରଣ ପିତାଙ୍କୁ ପୁଚ୍ଛିଲେ
ଅସଙ୍ଗତ କଥା ଦେଖି ସହି ନ ପାରିଲେ ।୧୧୩
ପିତା ବୋଇଲେ ଏଥିରେ କିଛୁ ଦୋଷନାହିଁ
ଏପରି ଏ ଦେଶରେ ଯେ ଚଳନ ଅଛଇ । ୧୧୪
ଶ୍ୱେତକେତୁ ବୋଇଲେ ଏ କଥା ଅସଙ୍ଗତ
ଅତି ଅସୁନ୍ଦର କଥା ଅଟେ ଏ ନିଶ୍ଚିତ । ୧୧୫
ପତି ଆଗେ ପତ୍ନୀ ଯେବେ ଆନ ସଙ୍ଗେ ଯିବ
ରକ୍ତ ମାଂସ ଶରୀର କି ଏକଥା ସହିବ । ୧୧୬
ଯେ ଯାର ପତ୍ନୀ ହୋଇବ ତାର ସେ ନିଶ୍ଚିତ
ଏମନ୍ତେ ବିବାହ ପ୍ରଥା କଲେ ପ୍ରଚଳିତ । ୧୧୭
ନାନା ପ୍ରକାର ବିବାହ ପରୀକ୍ଷା ହୋଇଲା
କେଉଁଥିରେ ସମାଜର ମନ ନ ମାନିଲା । ୧୧୮
ଗୃହସ୍ଥାଶ୍ରମ ଅଟଇ ପ୍ରଧାନ ଆଶ୍ରମ
ଏ ଆଶ୍ରମେ କରାଯିବ ସବୁ ଧର୍ମ କର୍ମ । ୧୧୯
ପତ୍ନୀ ଏହି ଆଶ୍ରମର ଅଟଇ ଗୃହିଣୀ
ଆଶ୍ରମ କାର୍ଯ୍ୟରେ ସେହୁ ଅଟେ ଗୃହରାଣୀ ।୧୨୦
ଶାନ୍ତ ଶୃଙ୍ଖଳାରେ ଯେବେ ଚଳିବ ଆଶ୍ରମ
ମର୍ତ୍ତ୍ୟପୁରେ ବଇକୁଣ୍ଠ ବୋଲି ତାକୁ ଜାଣ ।୧୨୧
ଗୃହିଣୀ ଯେବେ ଗୃହର କରମ ତେଜିବ
ଆନ ଆନ କର୍ମ ନେଇ ବାହାରେ ରହିବ ।୧୨୨

ମନମୁଖି ହୋଇ ଯେବେ ଦାଣ୍ଡରେ ବୁଲିବ
ସନ୍ତାନମାନଙ୍କ କଥା କିଏସେ ବୁଝିବ । ୧୨୩
ସନ୍ତାନମାନଙ୍କ ଶିକ୍ଷା ରକ୍ଷା ହେବନାହିଁ
ସେମାନେ ଅବହେଳାରେ ଯିବେ ନଷ୍ଟହୋଇ ।
ମାଇପଙ୍କ ସଙ୍ଗେସଙ୍ଗେ ପିଲାଏ ବୁଲିବେ
ପାଠ ପଢ଼ା ଛାଡ଼ିଦେଇ ଅମନସ୍କ ହେବେ ।୧୨୫
ସାନ ସାନ ଦିନୁ ଯେବେ ନ ହେବେ ସଂଯତ
ବଡ଼ହେଲେ ନ ହେବେ କାହାର ଆୟତ୍ତ ।୧୨୬
ନାରୀମାନଙ୍କୁ କହିଲେ କିଛି ନ ମାନିବେ
ମୂର୍ଖପଣେ ନାନା ଯୁକ୍ତିତର୍କ କରିବେ । ୧୨୭
କଥା କଥାକେ କ୍ରୋଧରେ ହେବେ ଜରଜର
କଠୋର ବଚନ କହିନେବେ ସେଉତ୍ତର ।୧୨୮
ପୁରୁଷମାନେ ଲାଜରେ ମରି ସରି ଯିବେ
ଆପଣା ମହତ୍ତ୍ୱ ଜଗି ତୁନିତାନି ହେବେ । ୧୨୯
ଚଣ୍ଡି ଚାମୁଣ୍ଡି ପରାଏ ହେବେ ନାରୀମାନେ
କେ ବଳି ପାରିବ ତାଙ୍କୁ ବଚନ କଥନେ ।୧୩୦
ଅତି ପ୍ରବଳା ହୋଇବେ ରମଣୀଏ ଯେବେ
ମହାଘୋର କଳିକାଳ ହେଲା ଜାଣ ତେବେ ।
ପାଶ୍ଚାତ୍ୟ ଦେଶ ନାରୀଏ ହେଲେଣି ଏଭଳି
ପୁରୁଷମାନେ ରହିବେ ତାଙ୍କୁ ଡ଼ରି ଥରି ।୧୩୨
ଜର୍ମାନୀ ଦେଶରେ ନାରୀ ଅଛନ୍ତି ଏମନ୍ତ
ସେମାନେ ମନ ଇଚ୍ଛାରେ ହୋଇଲେ ସ୍ୱତନ୍ତ୍ର ।
ହିଟଲର ଅଛନ୍ତି ସେ ଦେଶ ସଭାପତି
କର୍ମକ୍ଷେତ୍ରେ ଏକଛତ୍ର ରାଜା ସେ ଅଛନ୍ତି । ୧୩୪
ନାରୀଙ୍କ ଚରିତ୍ର ଦେଖି ହୋଇଲେ ବିସ୍ମିତ
କି ଉପାୟେ ଏଥିପାଇଁ ହୋଇଲେ ଚିନ୍ତିତ ।୧୩୫
ଜାରି କଲେ ଆଦେଶ ସେ ଜର୍ମାନୀ ଦେଶରେ
ବୋଇଲେ ରମଣୀମାନେ ମେରିଯାଅ ଘରେ ।

ପୁରୁଷର କାମ ଯେବେ ନାରୀଏ କରିବେ
ଗୃହକର୍ମମାନଙ୍କରେ ସେ ମନ ନଦେବେ ।୧୩୭
ନାରୀମାନେ କଷ୍ଟା ଆସି ଗୃହକର୍ମ କରିବ
ସନ୍ତାନ ପାଳନ କାର୍ଯ୍ୟ ପରହାତେ ଦେବା
ନାରୀମାନଙ୍କର କର୍ମକ୍ଷେତ୍ର ହାଣ୍ଡିଶାଳ
ଫେରି ଯାଅ ସେ କ୍ଷେତ୍ରକୁ ନାରୀଏ ଚଞ୍ଚଳ ।
ଏ କଡ଼ା ଆଦେଶ ଶୁଣି ନାରୀଏ ଫେରିଲେ
ପୁଣି ଯାଇ ଅନ୍ତଃପୁର କର୍ମକ୍ଷେତ୍ର କଲେ । ୧୪୦
ଭାରତରେ କେବେ କେହୁ ଜନମ ହୋଇବ
ହିଟଲର ପରି ସବୁ ସଂହାର କରିବ । ୧୪୧
ବିଦେଶୀ ପଣ୍ଡିତମାନେ ଭାରତେ ଆସନ୍ତି
ଭାରତର ରୀତି ନୀତି ପରଖି ଦେଖନ୍ତି । ୧୪୨
ସେମାନେ ବୋଲନ୍ତି ଭାରତର ରୀତି ଭଲ
ଆମ୍ଭେ ବୋଲୁଥାଉଁ ଆମ୍ଭ ରୀତିମାନ ସ୍ଥଳ ।
ଏହିପରି ଗଣ୍ଡଗୋଳ ଲାଗିଛି ଭାରତେ
ନୂଆ ନୂଆ ରୀତି ନୀତି ଦେଖାଯାଏ କେତେ !
ସମାଜ ନୀତି ନିୟମ ହେଲାଣି ଦୁର୍ବଳ
ଧର୍ମଭାବମାନ ହୋଇଲାଣି ହୀନବଳ । ୧୪୫
ଗାନ୍ଧି ବୁଢ଼ା କେବଳ କହନ୍ତି ଧର୍ମ ନାମ
ସତ୍ୟ ଅହିଂସା ପ୍ରଚାର କରୁଛନ୍ତି ଜାଣ । ୧୪୬
ଆନ କେତେକ ବୋଲନ୍ତି ବିପ୍ଳବ କରିବା
ବିପ୍ଳବ ନକଲେ ଆମ୍ଭେ ସ୍ୱାଧୀନ ନହେବା ।୧୪୭
ରାଜନୀତି ଶିକ୍ଷାନୀତି ବା ସମାଜନୀତି
ସବୁଠାରେ ହେଉ ବିପ୍ଳବର ପରିସ୍ଥିତି । ୧୪୮
ଯେତେବେଳେ ଯାହା ଆବଶ୍ୟକ କରାଯିବ
ଶାନ୍ତି ଶୃଙ୍ଖଳାର ନାମଗନ୍ଧ ନରହିବ । ୧୪୯
ବାମ ଡ଼ାହାଣ ବିପକ୍ଷ କଂଗ୍ରେସର ହେଲା
ଅଗ୍ରଗାମୀ ଦଳ ପୁଣି ତହିଁ ବାହାରିଲା । ୧୫୦

ମୂଳଦଳ ବୋଲି ଆଉ ଏକ ଦଳ ହେଲା
ଦଳସୃଷ୍ଟି କ୍ରମେ କ୍ରମେ ଭାରତେ ବ୍ୟାପିଲା ।୧୫୧
ମହେନ୍ଦ୍ରନାଥ ଭୃଷ୍ଟାଚ୍ଚି ଦଳ ନେତା ହେଲେ
ତାଙ୍କ ଦଳ ମତିକଥା ସେ ଗାଇ ବୁଲିଲେ ।୧୫୨
ନାରୀମାନେ ଦଳଦଳ ହୋଇ ସଭାକଲେ
ସ୍ୱେଚ୍ଛାସେବକା ସାଜିଣ ସେବା କାମକଲେ ୧୫୩
ବୋଲେ ଧନ ଜଗବନ୍ଧୁ ଅହେ ଜଗନ୍ନାଥ
ବଡ଼ଦାଣ୍ଡେ ଚଳାଉଛ ନନ୍ଦଘୋଷ ରଥ ।୧୫୪
ଘରଆଡ଼ୁ ଆସୁଛନ୍ତି କେତେ ଭକ୍ତ ଜନ
ଜାତି ବର୍ଣ୍ଣ ନିର୍ବିଶେଷେ ହୋଇ ଏକମନ ।୧୫୫
ଟାଣି ନଅନ୍ତି ସହଜେ ସେ ରଥ ଦଉଡ଼ି
ଚାଲିଯାଏ ବଡଦାଣ୍ଡେ ରଥ ଗଡ଼ି ଗଡ଼ି । ୧୫୬
ଭାରତବାସୀଙ୍କି ଦିଅ ସେହିପରି ମନ
କଂଗ୍ରେସ ପତାକା ତଳେ ହୁଅନ୍ତୁ ମିଳନ ।୧୫୭
ମନାନ୍ତର ଭେଦ ବୁଦ୍ଧି ମନୁ ଛାଡ଼ଦେଇ
ସ୍ୱରାଜ୍ୟ ରଥକୁ ସର୍ବେ ନଅନ୍ତୁ ଚଳାଇ । ୧୫୮
ଏହି ନିବେଦନ ପ୍ରଭୁ ତବ ପାଶେ ମୋର
ଭାରତବାସୀଙ୍କୁ ପ୍ରଭୁ ଦିଅ ଏହି ବର । ୧୫୯

ଇତି ଶ୍ରୀ ଭାରତ-ଚରିତାମୃତେ ନୂତନ ସଭ୍ୟତା ବର୍ଣ୍ଣନେ ତେୟାଅଶୀ ଅଧ୍ୟାୟଃ ।



# ଚୌରାଅଶୀ ଅଧ୍ୟାୟ

ବଳଭଦ୍ର ଉବାଚ

ଭାରତେ ଲାଗିଛି ପରା ଚାଷୀ ଆନ୍ଦୋଳନ
କହ ଗୁରୁଦେବ ତାର ସ୍ୱରୂପ ଲକ୍ଷଣ । ୧
କଂଗ୍ରେସ ଅଟଇ ପରା ସବୁଜାତି ମେଳା
ଚାଷୀ ପୁଣି ହେଉଛନ୍ତି କମ୍ପା ଭେଳାଭେଳା ।୨

କଂଗ୍ରେସ ବୁଝୁନାହିଁ କି ଚାଷୀଙ୍କ ବିଷୟ
ଚାଷୀ ହେଉଅଛି ପୁଣି କାହିଁକି ଅଥୟ । ୩
ଚାଷୀ ମୂଲିଆ ରାଜ ଗଢ଼ିବେ ବୋଲନ୍ତି
ଚାଷୀ ମୂଲିଆକୁ ଜୟ ଜୟ କହୁଛନ୍ତି । ୪

## ଜଡ଼ଭରତ ଉବାଚ

ମାଡ଼ି ଆସୁଅଛି ମହାଘୋର କଳିକାଳ
ଲାଗିବ ମହୀରେ ମହାଘୋର କୋଳଗୋଳ । ୫
ଅଶାନ୍ତି ବ୍ୟାଧି ଘୋଟିବ ଏ ସାରା ମହୀରେ
ସକଳେ ପଡ଼ିବେ ଅଜ୍ଞାନର ଅନ୍ଧକାରେ । ୬
କାହାଠାରେ କାହାର ବିଶ୍ୱାସ ନ ରହିବ
ହିଂସା ଈର୍ଷା ଅନଳ ଏ ଜଗତେ ଜଳିବ । ୭
ଅଜ୍ଞାନ ମଦରେ ମତ୍ତ ହୋଇବେ ସକଳ
ଅହଙ୍କାର ବିଷ ପିଇ ସର୍ବେ ହେବେ ଭୋଳ ।୮
ସାନ ବଡ଼ ଜ୍ଞାନ ଆଉ କିଛି ନ ରହିବ
ସାନ ତୁଣ୍ଡେ ବଡ଼ ବଡ଼ କଥା ଶୁଣାଯିବ । ୯
ଅଳପ ଜାଣି ବହୁତ ବଖାଣିବ ଲୋକ
ଜ୍ଞାନୀ ଅଜ୍ଞାନୀ ସମାନ ପଣ୍ଡିତ ମୂରୁଖ । ୧୦
ଗୁରୁ ଶିଷ୍ୟ ପିତା ପୁତ୍ର ସାନ ବଡ଼ ଭାଇ
ପତି ପତ୍ନୀ ମାନ୍ୟ ବା ମହତ୍ତ୍ୱ ଥିବ ନାହିଁ । ୧୧
ଧର୍ମ କଥାମାନ କେହି କିଛି ନ ଶୁଣିବେ
ପାପ କଥାକୁ ସକଳେ ବଳେ କାନ ଦେବେ ।
ପଶୁବଳ ଜଗତରେ ହେବ ସାର ବଳ
ଧନ କ୍ଷମତା ଲୋଭରେ ହେବେ ମତୁଆଲ ।୧୩
ଧନ ପାଇଁ ଧର୍ମ ନୀତି ଦେବେ ଜଳାଞ୍ଜଳି
ପରସ୍ପର ମଧ୍ୟରେ ଲାଗିବ ଘୋର କଳି । ୧୪
ଫିସାଦିଆ ଜାଲିଆ ମିଛୁଆ ହେବେ ଲୋକ
ଧନ କ୍ଷମତା ଲୋଭରେ କରିବେ ଅନେକ ।୧୫

ଯେ ଯାହାକୁ ବଳେ ହାଣି ମାରି ପକାଇବ
ସେ ଯାଇଁ ସେ ରାଜ୍ୟ ବଳେ ଦଖଲ କରିବ ।୧୬
କୃଷୀ ମୂଲିଆ ବୋଲିବେ ହେବେ ସେହୁ ରାଜା
ଶାସନ କ୍ଷମତା ପାଇଁ ପାଳିବେ ପରଜା । ୧୭
ପେଟ ପାଇଁ ଦୁନିଆରେ ଲାଗିଛି ଏ ନାଟ
ପେଟ ପାଇଁ ସକଳେ ହୁଅନ୍ତି ଛଟପଟ । ୧୮
ଭାରତବରଷ ନୁହଁ ଦୁନିଆ ବାହାର
ଦୁନିଆର ଧକ୍‌କା ଆସି ପଡ଼େ ତା ଉପର ।୧୯
ସେ ଧକ୍‌କା ପାଇ ଭାରତ ହୁଏ ଟଳମଳ
ଦୁନିଆରୁ ବହି ଆସେ କଳହ ଅନଳ । ୨୦
ଭାରତ ଲୋକଙ୍କ ମନ ଯାଏ ଦୋହଲିଇ
ଭାରତର ଅସ୍ଥି ମଜ୍ଜା ଭୁଷୁଡ଼ି ପଡ଼ଇ । ୨୧
ଅଜ୍ଞାନ ଅନ୍ଧାରେ ପଡ଼ି ହୁଡ଼ି ହତାହତ
ଅନୁକରଣ କରିବା ପାଇଁ ଉତ୍ତେଜିତ । ୨୨
ମାଗି ଆଣିବା ବୁଦ୍ଧିରେ କାମ ନ ଚଳଇ
ମାଗି ଆଣିବା ଡଉଣେ ପେଟ ନ ପୂରଇ । ୨୩
ନିଜ ଦେଶ ଖାଳ ପାସ ନ ହୁଏ ଦଗୁର
ଆନ ଦେଶ ଖାନ୍ତ ମାନ୍ତ ହେଉଛି ଆଦର । ୨୪
ନିଜ ଦେଶର ଅବସ୍ଥା କହୁଅଛି ଶୁଣ
ନିରକ୍ଷର ଅଟନ୍ତି ଦେଶରେ ବାରପଣ । ୨୫
କୃଷୀ ମୂଲିଆଙ୍କ ଦଶା କହିଲେ ନ ସରେ
ଚଳନ୍ତି ସକଳେ ଅତି ମଳିନ ବେଶରେ । ୨୬
ପରିଷ୍କାର ପରିଚ୍ଛନ୍ନ ଜ୍ଞାନ ନଦାରଦ
ରୋଗ ହେଲେ ନ ମିଳଇ ପାନେ ଔଷଧ ।୨୭
ଖତଗଦା ମାଳ ମାଳ ଦୁଆର ମୁହଁରେ
ଗ୍ରାମ ଦାଣ୍ଡ ପୂରିଥାଏ ନାନା ଅଳିଆରେ ।୨୮
ଗ୍ରାମ ପୁଷ୍କରିଣୀ ପୂର୍ଣ୍ଣ ହୋଇଛି ଦଳରେ
ସ୍ନାହାନ, ପାନ, ଶଉଚ ହୁଏ ସେ ଜଳରେ ।୨୯

କେଉଁ ଗ୍ରାମେ ଗ୍ରୀଷ୍ମକାଳେ ଜଳ ନ ମିଳଇ
ଲୋକମାନେ ଚଳୁଥାନ୍ତି ପଙ୍କଜଳ ପିଇ । ୩୦
ଗ୍ରାମ ଦୁଇମୁଣ୍ଡ ଅଟେ ଅତି ଅନିର୍ମଳ
ଗ୍ରାମ ଲୋକଙ୍କର ତାହା ମଳତ୍ୟାଗ ସ୍ଥଳ । ୩୧
ଜଳ ପବନ ଲାଗି ଏ ଦେହ ଅଛି ରହି
ଏ ଦୁହେଁ ଦୂଷିତ ହେଲେ ଏ ଦେହ ନ ରହି ।
ବିଶୁଦ୍ଧ ଜଳ ପବନ କଲେ ବ୍ୟବହାର
ପୂର୍ଣ୍ଣ ସୁସ୍ଥ ନିରୋଗୀ ସେ ହୋଇବ ନିକର ।୩୩
ଜଳ ପବନ ଯେବେ ବା ହେବ ଅନିର୍ମଳ
ଜନମ କରିବ ରୋଗ ନାନା ପରକାର । ୩୪
ରୋଗ ହେଲେ ଏ ଶରୀର ବିନାଶ ହୋଇବ
ତେଣୁ କିଛି ଧର୍ମ କର୍ମ କରି ନ ପାରିବ । ୩୫
ଶରୀର ରକ୍ଷା ଅଟଇ ପରମ ଧରମ
ଶରୀର ରକ୍ଷକ ଅଟେ ଜୀବନ ପବନ । ୩୬
ଜଳ ପବନ ବିଶୁଦ୍ଧ ରଖିବ ସତତ
ସ୍ୱାସ୍ଥ୍ୟ ଅଭିବୃଦ୍ଧି ଦେଶେ ହୋଇବ ନଯୂତ ।୩୭
କୂପ, ବାପି, ପୁଷ୍କରିଣୀ, ପୋଖର ନାଳ ଆଦି
ପରିଷ୍କାର କରି ସଦା ରଖିବ ସମ୍ପାଦି । ୩୮
ଗ୍ରାମ ଦାଣ୍ଡ ଆଦି ସଦା କର ପରିଷ୍କାର
ଗୃହ ନିକଟରେ କେବେ ନ ରଖ ଗୋବର ।
ଛିଣ୍ଡାକନା ହେଉ ପଛେ କର ପରିଷ୍କାର
ମଳିନ ବସନ କରନାହିଁ ବ୍ୟବହାର । ୪୦
ଯେଉଁ ଗ୍ରାମ, ଯେଉଁ ଦେଶ ଅବା ଯେଉଁ ଘରେ
ପରିଷ୍କାର ପରିଚ୍ଛନ୍ନ ନ ଥାଏ ବେଭାରେ । ୪୧
ସେ ଥାନରେ ଲକ୍ଷ୍ମୀଦେବୀ ବିଜେ ନ କରନ୍ତି
ଅଲକ୍ଷ୍ମୀର ବାସସ୍ଥାନ ହୁଏ ତା ସନ୍ତତ । ୪୨
ଯେତେବଡ଼ ଦରିଦ୍ର ହେଲେହେଁ ଲୋକ ହେବ
ବାସିଓଳିକ ପଛକେ ଦାନା ନ ମିଳିବ । ୪୩

ପରିଷ୍କାର ପରିଚ୍ଛନ୍ନ ଥିବ ପ୍ରତିଦିନ
କେବେହେଁ ନହେବ ଲୋକ ମେଲେଚ୍ଛ ମଳିନ ।
ଦେଶ ଲୋକମାନେ ଏଣେ ମନ ନ ଦିଅନ୍ତି
ଅତି ମଳିନ ବସନ ନିତି ପିନ୍ଧୁ ଥାନ୍ତି । ୪୫
କୃଷୀ ମୂଲିଆ ଅଟଇ ଦେଶ ମୂଳଭିତ୍ତି
ଖରା ବରଷା ଖାଇ ସେ ସକଳ କରନ୍ତି । ୪୬
ମୁଣ୍ଡଝାଳ ତୁଣ୍ଡେ ମାରି କରେ ଅରଜନ
ନାନାଜାତି ଶସ୍ୟ ସେହୁ କରେ ଉତ୍ପାଦନ ।୪୭
ଯେତେ ଯାହା କାମକାର୍ଯ୍ୟ ଆଖିରେ ଦେଖୁଛୁ
କୃଷୀ ମୂଲିଆର ହାତ ତହିଁରେ ରହିଛୁ । ୪୮
ଦେଉଳ ଅଟ୍ଟାଳି ରାଜ ପ୍ରାସାଦ କୁଟୀର
ସବୁଠି ମୂଲିଆ ହାତ ଦିଶଇ ସୁନ୍ଦର । ୪୯
ଶ୍ୟାମଳ ଶସ୍ୟ କେଦାର ଉପବନ ଯେତେ
ସବୁଠି କୃଷୀର କରାମତି ଦେଖ କେତେ । ୫୦
ଏତେ କଥା କରେ ଯେଉଁ ଚଷା ଭାଇ ମୋର
ତା କୁଡ଼ିଆ ଘରଖଣ୍ଡ ନହୁଏ ଛପର । ୫୧
ତାର ଘରେ ହୁଏ ନିତି କୁଳଦେଇ ଉଷା
ଚୂଲି ଭିତରେ ତାହାର ବୁଢ଼ିଆଣୀ ବସା । ୫୨
କୁଟୁମ୍ବ ଜଞ୍ଜାଳ ନିତି କରେ ହରବର
ସାହୁକାର ଭୟେ ଛାତି ହୁଏ ଥରହର । ୫୩
ଖଜଣା ଭୟରେ ନିତି ଲୁଚି ବୁଲୁଥାଏ
ଜମିଦାର ପିଆଦାକୁ ଦେଖି ମରି ଶୁଏ । ୫୪
ଯେତେ ଯାହା ଅରଜିଲା କିଛି ନ ଅଣ୍ଟିଲା
ଖଜଣା ଗଣ୍ଡାକ ସୁଖେ ଦେଇ ନ ପାରିଲା । ୫୫
ଜମିବାଡ଼ି ବାକିଭାଙ୍ଗି ସକଳ ସରିଲା
ଘରଖଣ୍ଡ ଅବଶେଷେ ନିଲାମରେ ଗଲା । ୫୬
ଅବଶେଷେ ବୃକ୍ଷମୂଳ ହେଲା ତାର ବସା
ଚିଲା କମ୍ବଳକୁ ନେଇ ବାସକଲା ଚଷା । ୫୭

ମୂଳ ଗଉଣୀଏ ଆଣି କୁଟୁମ୍ବ ପୋଷଇ
କାହାକୁ ଗୁଣ୍ଡାଏ ମିଳେ କାକୁ ନ ମିଳଇ । ୫୮
ତୋରାଣି ସଙ୍ଗକୁ ଲୁଣ କାହାକୁ ନମିଳେ
ପେଟ ବିକଳରେ ଛୁଞ୍ଛା ଭାତ କଞ୍ଚ ଗିଳେ । ୫୯
କରମକୁ ଠୁଙ୍କି ଡ଼ାକେ ପରମେଶ୍ୱର
କାହିଁକ ଏ ଗରିବକୁ କର ହରବର । ୬୦
ଦିନୁ ଦିନ ଚଷା କୁଳ ହୁଅନ୍ତି ଦୁର୍ବଳ
ଗୋଡ଼ୁଁ ଶିରାମଇ ଉଠି କରେ ଟଳମଳ । ୬୧
ଗୃହଲେ ଗୋଡ଼ରେ ଗୋଡ଼ ବାଜେ ଠାଇ ଠାଇ
ହଳ କରିବାକୁ ବଳ ତାର ଆଉ ନାହିଁ । ୬୨
ବଳଦ ଅବସ୍ଥା ଅଟେ ଚଷାଠୁ ଅଧିକ
ହାଡ଼ ଗଣି ହୋଇ ଦିଶେ ନପାଇ ଖୋରାକ ।୬୩
ବିଲ ପାଣି ବିଲ ଘାସ ରଖିଛି ଜୀବନ
ହଳରେ ଯୋଗ୍ୟ ହୋଇଲେ ହୁଏ ଅଧାପ୍ରାଣ ।
ଯେପରି ଚଷା ସେପରି ବଳଦ ତାହାର
ଟଣା ଓଟରରେ ଦୁହେଁ ହୁଅନ୍ତି ବାହାର । ୬୫
କ୍ଷେତ୍ରରେ ପ୍ରବେଶ ହୋଇ ଜମି ହଳ କରେ
ବଳହାନି ହୁଏ ବେଳ ନ ହେଉ ପହରେ ।୬୬
ହଂସା ଉଡ଼ଯାଏ ତାର ଗୋଡ଼ ନ ଚଳଇ
ହାଆଁ ଶୋଷ ହାଆଁ ଭୋକେ ଘରକୁ ଫେରଇ
ଏହିପରି ଆଜକାଲ ହଳୁଆଙ୍କ ଦଶା
ଏଥିରେ କପରି ସୁଖୀ ହୋଇପାରେ ଚଷା ।୬୮
ମାଣକୁ ପାଞ୍ଚ ଭରଣ ଜମି ଫଳୁଥିଲା
ଏବେ ମାଣକୁ ଭରଣେ ଫଳ ନ ଘଟିଲା । ୬୯
ବାହନ ବାଛି ରଖିବା ପ୍ରଥା ଉଠିଗଲା
ଗୋବର ଘସି ହୋଇଣ ଚୁଲିଜାଳ ହେଲା ।୭୦
ଖତଗାତେ ଖତ ରଖିବାର କାହିଁ ଗଲା
ପାହିଁଶ ଗୋରୁ ଚହଲୀ ଦାଣ୍ଡେ ଜମା ହେଲା ।୭୧

ଖରା ବରଷା ଖାଇଣ ଗ୍ରାମ ମରିଗଲା
ସେ ଖତରେ ଆଉ କିଛି ସାର ନ ରହିଲା ।୭୨
ଖତ ମାଟି ହେଉନାହିଁ ଏବେ ଭଲେ ଜାଣ
ସାତ ଓଡ଼ ଗୃଷ ହେଉନାହିଁ କରଷଣ । ୭୩
ଏଥିରେ ଅଧିକ ଫଳ କପରି ଫଳିବ
ଚଷା ଦଶା ମନ୍ଦ ନୋହି ଆଉ କସ ହେବ ।୭୪
ଆୟ କମିଗଲା ବ୍ୟୟ ଅଧିକ ବଢ଼ିଲା
ଚଷା ତେଣୁ ସାଉକାର ଦ୍ୱାରେ ଠିଆ ହେଲା ।
ଯାହା ବା କରଜ କଲା ସୁଝି ନ ପାରିଲା
ସୁଧ ବୃଦ୍ଧି ହୋଇ ଋଣ ଚତୁର୍ଗୁଣ ହେଲା ।୭୬
ଯେତେ ଦେଲା ତେତେ ହେଲା ସୁଧକୁ ନଅଣ୍ଟ
ଋଣ ଜାଲେ ପଡ଼ି ଚଷା ହେଲା ଛଟ ପଟ । ୭୭
ଅବଶେଷେ ଜମି ଘର ଦ୍ୱାର ବିକା ହେଲା
ତଥାପି ସାଉକାରର ଋଣ ନ ସରିଲା । ୭୮
ଚଷା ବୋଲେ ଜମିଦାର ମହାଜନ ମିଶି
ସକଳ ରକତ ତାର ନେଇଗଲେ ଶୋଷି । ୭୯
ଯେତେ ଯାହା ଅରଜିଲୁଁ ଏହି ଦୁହେଁ ନେଲେ
ଯାନ ଆସନ ତାହାର ସବୁ ବିକାଇଲେ । ୮୦
ଏ ଦୁହିଙ୍କି ମଣେ ଚଷା ଅସଲ ବଇରି
ଦେଖିପାରୁ ନାହିଁ ଭଲେ ଏ ଦୁହିଙ୍କ ଶିରୀ ।୮୧
ବୋଲେ ଏମାନେ ଆମ୍ଭର ସର୍ବନାଶ କଲେ
ଯାହା ଅରଜିଲୁଁ ସବୁ ଏହିମାନେ ନେଲେ ।୮୨
ଆମ ଝାଳବୁହା ଧନ ନେଇ ହେଲେ ଠିକ
ଆମ୍ଭେ ଦ୍ୱାରେ ଠିଆ ହେଲେ ନ ମିଳଇ ଭିକ ।
ପଲ୍ଲୀଗ୍ରାମେ ଖେଳୁଅଛି ଏ ଭାବ ପବନ
ସ୍ୱାହା ସ୍ୱାହା କରୁଛନ୍ତି ତାକୁ କେତେଜଣ ।୮୪
ଆକାଶ ଫଟାଇ ଦାଣ୍ଡେ ବକ୍ତୃତା କରନ୍ତି
ଶୁଣି ଲୋକଙ୍କର କୁଣ୍ଡେ ହୋଇଯାଏ ଗ୍ଲାନି ।୮୫

ପାଉନ୍ତି ଏ ବାବୁମାନେ ଆମ୍ଭ ହିତକାରୀ
ଏମାନଙ୍କୁ ଭେଟ ଦେଲେ ଦୁଃଖ ଯିବ ସରି ।୮୬
ବାଜା ବଜାଇ ଆଣନ୍ତି ତାହାଙ୍କୁ ପାଛୋଟି
ଫୁଲ ମାଳ ପକାଇ ଜୁହାର କୋଟି କୋଟି ।୮୭
ଗାଡ଼ି ମଞ୍ଚରେ ବସାଇ ହୁଏ ପହଁଆର
ଖିଆ ପିଆ ବେଳେ ହୁଏ ବହୁତ ସମ୍ଭାର ।୮୮
ବଚନ ଶୁଣୁଣି ବଳେ କଣନ୍ତି ଲୋକଙ୍କୁ
ବୋଲନ୍ତି ସରଗ ଚନ୍ଦ ହାତରେ ଦେବାକୁ ।୮୯
ବୋଲନ୍ତି କୃଷକ ଭାଇମାନେ ହେଜ୍ଜୁକର
ଧମୀ ବଡ଼ଲୋକ କେବେ ନୁହନ୍ତି ତୁମ୍ଭର ।୯୦
ଆମ କଥା ମାନି ଯେବେ ସକଳେ ଚଳିବ
ଧମୀ ଜମିଦାର ଦ୍ୱାର କେବେ ନ ମାଡ଼ିବ ।୯୧
ଜମିଦାରୀ ମହାଜନୀ ପ୍ରଥା ଧ୍ୱଂସ ହେଉ
ଯେତେ ମଠ ଧନଅଛି ତେତେ କୋଠ ହେଉ ।
ପଲ୍ଲୀଗ୍ରାମେ ପଡ଼ିଅଛି ଏପରି କୁହୁଳ
ପରସ୍ପର ଅବିଶ୍ୱାସ ମହା ଗଣ୍ଡଗୋଳ । ୯୩
ଅଟାଳୀ ବାଧି ଘୋଟିଛି ସକଳ ପ୍ରାନ୍ତରେ
ଚାଷୀ ଚାଲୁଅଛି ଗୁଡ଼ ଫୁଲାଇ ଦାଣ୍ଡରେ । ୯୪
କେତେ ମାଲିମକଦ୍ଦମା ଉପୁଜେ ଏଥିରୁ
ସାରୁ ଖୋଳୁ ଖୋଳୁ କେତେ ବାହାରୁଛି ମାରୁ ।
କେତେ ଧନ ଅପବ୍ୟୟ ହେଉଛି ଏଥିରେ
କେତେ ମାମଲତକାର ରାଜ ଦରବାରେ ।୯୬
ବରଗଛ ମୂଳେ ବସି କରୁଛନ୍ତି ଧ୍ୟାନ
କପରି ଆସିବେ ବନ୍ଧୁ ପଲ୍ଲୀବାସୀ ଜନ । ୯୭
ଧାନ ବିକ ଧନ ଆଣି ଦେବେ ଏଠି ପଣି
ଅଣ୍ଟା ଖୋସଣିରୁ କାଢି ନେଇ ଯିବା ଗଣି ।୯୮
ବାଇସି ପାବଛ ଖଞ୍ଜା ଅଛି ଦରବାରେ
କେତେ ଲୋକ ରୁନ୍ଧି ବସି ଅଛନ୍ତି ନିକଟରେ ।

ଯାହାକୁ ବୋଲ ମୋ କଥା ବୁଝି ଦେବ ବାବୁ
ସେ ବୋଲିବ ବୁଝିଦେବ କେତେ ଟଙ୍କା ଦେବୁ !
ସେ ଯାହା ଫିକର କରି ଯେତେ ନେଇ ଯିବ
ଗୃହିଣୀଠାରୁ ନେଇ ନିଜ କୁଟୁମ୍ବ ପୋଷିବ ।୧୦୧
ମାମଲି ନିଶା ପିଇ ଯେ ହତଜ୍ଞାନ ହେଲି
ତା ଘରୁ ମାଇପ ହାତୁ ଖଡ଼ୁ ବିକା ହେଲି ।
ସର୍ବସ୍ୱାନ୍ତ ହେବା ପରେ ନିଶା ଛାଡ଼ିଯାଏ
ତେତେ ବେଳକୁ କିଛି ହିଁ ଉପାୟ ନ ଥାଏ ।
ମାମଲାରେ ଉଡ଼ିଗଲେ ସବୁ ଉଡ଼ିଯିବ
ରାଜ ରକବାରେ ଇଟଅ ହେଲେ କେ ନଦେବ ।
ମାମଲତକାରିମାନେ ଦେଉଥିବେ ଟ୍ୟାହି
ଜଳନ୍ତା ନିଆଁରେ ଘିଅ ଦେବେ ସେ ପକାଇ ।
ଗ୍ରାମକେ ଅଛନ୍ତି ଏହିପରି କେତେ ଜଣ
ନିଖ ଘସି ଦ୍ୱନ୍ଦ୍ୱ ଲୁଆଇବା ତାଙ୍କ ଗୁଣ । ୧୦୭
କଂଗ୍ରେସ ପ୍ରସାଦରୁଁ ସେହିମାନେ ନେତା ହେଲେ
କର୍ମକର୍ତ୍ତାମାନ ହୋଇ ନାମ ଲେଖାଇଲେ ।
ସେମାନଙ୍କ ଫିଟ୍ଟାଘରି ରହିଛନ୍ତି ଲୋକ
ସେମାନେ ପଲ୍ଲୀ ଗ୍ରାମର ବଡ଼ ଧର୍ମବକ ।୧୦୮
ସରଳ ପଲ୍ଲୀ ନିବାସୀ ରାଜନୀତି କୂଟ
ବୁଝି ନ ପାରଇ କିଛି ଛନ୍ଦ ବା କପଟ ।୧୦୯
ସରଳ ପ୍ରାଣରେ ସବୁ ବିଶ୍ୱାସ କରଇ
ସ୍ୱରଗ ଗୃହ ପାଇବ ବୋଲି ହୁଏ ବାଇ ।୧୧୦
ସଭା ସମିତିକି ଗଲେ ହୋଇଯିବେ ସୁଖୀ
ତେଣୁ ନେତା ପଛେ ଧାଏଁ ହୋଇ ମହା ଦୁଃଖୀ ।
କି କାମ କଲେ ତାହାର ଦୁଃଖ ନାଶଯିବ
କ୍ରମେ ଯାଇ ସ୍ୱରାଜ୍ୟ ଦୁଆରେ ପ୍ରବେଶିବ ।୧୧୨
ସେ କାମ କରିବା ପାଇଁ ନ ବଳାଏ ମନ
ନବୁଝେ କମାଇ ତାର କାହିଁଯାଏ ଧନ । ୧୧୩

ଗାନ୍ଧି ଯାହା କହିଛନ୍ତି କାମେ ନ କରଇ
ଭୂଆଁ ବୁଲୁଅଛି ଗାନ୍ଧି ଜୟ ଜୟ କହି । ୧୧୪
ଗାନ୍ଧି ସିନା ଥିଲେ ଦେଶେ ଏକଇ ନାୟକ
ମାନୁଥିଲେ ତାଙ୍କମାନ୍ତ ଦେଶରେ ଅନେକ ।୧୧୫
ବହୁ ନାୟକ ଏଣିକି ଦେଶେ ଦେଖା ଦେଲେ
ଯେ ଯାହାର ସ୍ୱାର୍ଥସିଦ୍ଧି ପାଇଁ ବାହାରିଲେ ।୧୧୬
ଭେଦ ବୁଦ୍ଧି ଜନ୍ମାଇଲେ ଲୋକଙ୍କ ମନରେ
ଟଣା ଓଟରା କରନ୍ତି ଯେ ଯାହାଁ ରାସ୍ତାରେ ।୧୧୭
ଯେ ଯାହାର ବାକ୍ୟ ଜାଲ ପକାଇ ଦେଶରେ
କେ କେତେ ଅଧିକ ଲୋକ ଘୁରାଇ ତହିଁରେ ।
ଭୋଟ ବେଳକୁ ଏ ଜାଲ କାମରେ ଲଗିବ
ଯା ଜାଲେ ଅଧିକ ଥିବେ ସେ ଭୋଟେ ଜିଣିବ ।
ଜଣକେ ଗୋଟିଏ ବାଦ ମାନ୍ତ ଧରିଛନ୍ତି
ବଚନ ଚାତୁରୀ ବଳେ ତାକୁ ଗାଉଛନ୍ତି ।୧୨୦
କି ସାଧ ପଲ୍ଲୀବାସୀର ବୁଝିବ ଏ ବାଦ
ମୋଟରେ ବୁଝଇ ସେହୁ ଲଗିବ ବିବାଦ ।୧୨୧
ମାୟା ମରୀଚିକା ଦେଖି ଗୋଡ଼ାଏ ପଛରେ
ହଂସା ଉଡ଼ି ଧାଉଅଛି ପ୍ରବଳ ତୃଷ୍ଣାରେ । ୧୨୨
ଧାଇଁ ଧାଇଁ କେତେ ଦୂର ଦେଖେ ଜଳନାହିଁ
ଅବଶ ହୋଇ ପଛକୁ ପଡ଼ଇ ଧକାଇ । ୧୨୩
କାମକଲେ ସିନା ତାର ପୁରନ୍ତା ବାସନା
କାମ କଲେ ଅକ୍ଲେଶେ ମିଳନ୍ତା ଦାନା କନା ।
କଂଗ୍ରେସ ମାନ୍ତ ନୟମ ବଡ଼ଇ କଠିନ
ଅବଶ୍ୟ ସିଦ୍ଧି ମିଳିବ କଲେକ ସାଧନ । ୧୨୫
ସେ ଦିଗକୁ ଲୋକଙ୍କର ମନ ଧ୍ୟାନ ନାହିଁ
କି ଫଳ ମିଳିବ କଂଗ୍ରେସର ନାମ ନେଇ ।୧୨୬
ଚାରିଅଣା ଦେଲେ ହେବ କଂଗ୍ରେସ ମେମ୍ବର
ଏ କଥା ଅଟଇ ବଡ଼ ସହଜ ବ୍ୟାପାର । ୧୨୭

ଦୁଇଟି ପଇସା ଦେଲେ କୃଷକ ମେମ୍ବର
ଏ ତ ଆହୁରି ସହଜ ସରଳ ବେଭାର । ୧୨୮
ଏତିକରେ ଲୋକେ ଯେବେ ସ୍ୱରାଜ୍ୟ ପାଇବେ
ଏତେ ଭାବନା ପଡ଼ନ୍ତି କାହିଁପାଇ ତେବେ ।
ଲୋକମାନଙ୍କୁ ବୁଝାଅ ବୁଝ ହେ ସୁଜନ
ସ୍ୱରାଜ୍ୟ ନୁହଇ ଧୂଳି ଖେଳର ସମାନ । ୧୩୦
ଗାନ୍ଧି ଯାହା କହୁଛନ୍ତି ମନଦେଇ ବୁଝ
ସତ୍ୟ ଅହିଂସା ସହିଲେ ମିଳିବ ସ୍ୱରାଜ୍ୟ । ୧୩୧
ନିଜ ଛାତି ପରେ ହାତ ଦେଇ ଭାଇ ଦେଖ
କହୁଛ କି ସତକଥା ହୃଦକୁ ପରଖ । ୧୩୨
ହିଂସା, ଈର୍ଷା, କ୍ରୋଧ, ରାଗ ମନରେ କି ନାହିଁ
ଆପଣା ମନ ପରଖି ଦେଖ ଥରେ ଭାଇ ।୧୩୩
କ୍ରୋଧର କାରଣ ଆସି ଯେବେ ଦେଖା ଦେବ
ମନରୁ ସେ କାଳେ ହିଂସା ହେବ କି ନହେବ ।
ଲେଶମାତ୍ର ହିଂସା ଭାବ ହୋଇଲେ ମନରେ
ଜାଣିବ ଅହିଂସାଭାବ ନାହିଁ ତୁମ୍ଭଠାରେ । ୧୩୫
ପ୍ରାଣ ଗଲେ ଯିବ ପଛେ ମିଥ୍ୟା ନ କହିବ
ଜାଣିବ ତୁମ୍ଭଠି ହେଲା ସତ୍ୟର ପ୍ରଭାବ । ୧୩୬
ନିଜ ମନକୁ ପରର ସଂଶୟ ତୁଟିବ
ଆନ ସଙ୍ଗେ କାହିଁ ପାଇଁ କଳି ଦ୍ୱନ୍ଦ ହେବ ।୧୩୭
ସତ୍ୟ ପ୍ରଭାବ ଯେ କାଳେ ଫୁଟିବ ହୃଦରେ
ସାତ୍ତ୍ୱିକଭାବ ସକଳ ଉପୁଜିବ ବଳେ । ୧୩୮
ମାୟାମୋହ ଅଜ୍ଞାନ ଅନ୍ଧାର ଦୂରେ ଯିବ
ହିଂସା ଦ୍ୱେଷ ଈର୍ଷା ମନୁ ବିନାଶ ଭଜିବ ।୧୩୯
ସମଭାବ ଦେଖା ଦେବ ସେ କାଳେ ହୃଦରେ
କାହାଠାରେ ବୈରଭାବ ନ ହେବ ଭ୍ରମରେ ।
କଳିଗୋଳ ଦ୍ୱନ୍ଦ ଆଉ କେବେ ନ ହୋଇବ
ସାଇ ପଡ଼ିଶାରେ ଭାତୃଭାବ ଜନମିବ । ୧୪୧

ସକଳେ ମିଳି ଚିନ୍ତିବେ ଗ୍ରାମର ମଙ୍ଗଳ
ଗ୍ରାମବାସୀ ଲୋକେ ତେବେ ହେବେ ଏକମେଳ ।
ଗ୍ରାମ ଉନ୍ନତି ଚିନ୍ତାରେ ଦେବେ ମନ ଧ୍ୟାନ
ଗ୍ରାମର ଅଭାବମାନ କରିବେ ପୂରଣ । ୧୪୩
ଏପରି କଲେ ହୋଇବ ଗ୍ରାମ ସଂଗଠନ
କୃଷି ଶିଳ୍ପ ବାଣିଜ୍ୟର ଉନ୍ନତି ସାଧନ । ୧୪୪
କଂଗ୍ରେସ ନୀତି ନିୟମ କରିବେ ପାଳନ
କଂଗ୍ରେସର ସଭ୍ୟ ହୋଇ କରିବେ ଏ ମାନ ।
ଆପଣା ଚଳିବା ପାଇଁ ଯାହା ଦରକାର
ଗ୍ରାମରେ ସକଳ ଦ୍ରବ୍ୟ କରିବେ ନିକର ।୧୪୬
ଆସନ ବସନ ଭୋଗ ବିଳାସ ଦରବ
ଗ୍ରାମେ ଗ୍ରାମେ ଉତପନ୍ନ ହୋଇବ ସରବ ।୧୪୭
ଏହି ଅନୁକ୍ରମେ କାର୍ଯ୍ୟ ହେବ ଯେତେବେଳେ
ଜାଣିବ କଂଗ୍ରେସ କାର୍ଯ୍ୟ ହେଲା ତେତେବେଳେ
ଗାନ୍ଧି କହୁଛନ୍ତି ଏହିପରି କାର୍ଯ୍ୟ କର
ସ୍ୱରାଜ୍ୟ ମିଳିବ କେବେ ସଂଶୟ ନ କର ।୧୪୯
ବୋଲେ ଦୀନ ଜଗବନ୍ଧୁ ହେ ଜଗନ୍ନାଥ ସାଇଁ
ଭାରତ ଲୋକଙ୍କୁ ବୁଦ୍ଧି ଦିଅ ହେ ଗୋସାଇଁ ।
ଅନୁପ୍ରାଣିତ ହୁଅନ୍ତୁ ସର୍ବେ ଦେଶ ଭାବେ
ସତ୍ୟବାଦୀ ଜିତେନ୍ଦ୍ରିୟ ହୁଅନ୍ତୁ ସରବେ । ୧୫୧
ବୈରଭାବ କାହାଠାରେ କାହାର ନ ରହୁ
ଧରମରେ ଏ ଭାରତ ଆଚଯାତ ହେଉ ।୧୫୨
ନ୍ୟାୟ ପଥେ ଚଳାଚଳ ହୁଅନ୍ତୁ ସରବେ
ଆପଣା ମଧ୍ୟରେ ଦ୍ୱନ୍ଦ ନକରନ୍ତୁ କେବେ ।୧୫୩
ସାକ୍ଷର ହୋଇ ସର୍ବେ ଲେଖା ପଢ଼ା ଶିଖ
ଅତି ମହାପାପୀ ଯେହୁ ଅଟଇ ମୂରୁଖ । ୧୫୪
ଏହି ବର ଦିଅ ପ୍ରଭୁ ଦେବ ଜଗନ୍ନାଥ
ତବ ଶ୍ରୀଚରଣେ ସଦା ଥାଉ ମୋର ଚିତ୍ତ ।୧୫୫

ଇତି ଶ୍ରୀ ଭାରତ-ଚରିତାମୃତେ ଗାନ୍ଧୀ ଚରିତ ବର୍ଣ୍ଣନେ ଚଉରଣୀ ଅଧ୍ୟାୟଃ ।

# ପଞ୍ଚାଅଶୀ ଅଧ୍ୟାୟ

ଉନବିଂଶଶତ ଅଣତ୍ରିଂଶ ସାଲରେ
ଜୁଲାଇ ମାସର ଏକତିରିଶ ଦିନରେ । ୧
ବଡ଼ସିଂହଦ୍ୱାର ଶେଷରେ ଜଗନ୍ନାଥ ଗଲେ
ଅଷ୍ଟରତ୍ନ ପଲଙ୍କରେ ପ୍ରଭୁ ପହୁଡ଼ିଲେ । ୨
ଚାଉଁ ପହୁଡ଼ ସମୟେ ଲକ୍ଷ୍ମୀ ବିଜେକଲେ
ଜଗନ୍ନାଥଙ୍କର ପାଦପଦ୍ମ ମଞ୍ଚାଳିଲେ । ୩
ବୋଇଲେ ଆଜ ସକାଳେ ବୁଲି ଯାଇଥିଲି
ନଗର ଭ୍ରମଣ କରି ଯାହା ମୁଁ ଦେଖିଲି । ୪
ସିଂହଦ୍ୱାରଠାରୁ ବଡ଼ ଦାଣ୍ଡ ଦୁଇ ପାଶ
ମାଳମାଳ ପତାକାରେ ହୋଇଛି ସୁବେଶ । ୫
ଠାବେ ଠାବେ ବସିଅଛି ସୁନ୍ଦର ତୋରଣ
ପୂର୍ଣ୍ଣ କୁମ୍ଭ ରମ୍ଭା ବୃକ୍ଷ ଦିଶେ ଶୋଭାବନ । ୬
ଏମାର ମଠ ହୋଇଛି ସୁନ୍ଦର ମଣ୍ଡଣି
ଦର୍ଶକର ମନ ବଳେ ନେଉଅଛି କିଣି । ୭
ପୁରୀରାଜାଙ୍କ ନବର ହୋଇଛି ମଣ୍ଡିତ
ନାନା ବିଚିତ୍ର ଚିତ୍ରରେ ହୋଇଛି ଶୋଭିତ । ୮
ଲୋକମାନେ ଦଳ ଦଳ ହୋଇ ବୁଲୁଛନ୍ତି
ନଗର ମଣ୍ଡଣି ଶୋଭାମାନ ଦେଖୁଛନ୍ତି । ୯
ଆହୁରି ଦେଖିଲି ପ୍ରଭୁ ତାଳଧ୍ୱଜ ରଥ
ମଣ୍ଡଣି ହୋଇ ଦିଶୁଛି ବଡ଼ ସୁଶୋଭିତ । ୧୦
ଆଉ ଥରେ ରଥ ଯାତ୍ରା ହୋଇବ କି ଦେବ
ଭାଇ ଭଉଣୀଙ୍କି ସଙ୍ଗେ ଘେନି କି ଚଢ଼ି ଯିବ । ୧୧
ଦେଖି ନ ଥିଲି ପୂରୁବେ ରଥଯାତ୍ରା ବେଳେ
ନଗର ମଣ୍ଡଣି ହୁଏ ଏହି ପରକାରେ । ୧୨
କାହିଁକି ନଗରେ ଆଜ ଏମନ୍ତ ସମ୍ଭାର
କହନ୍ତୁ ହେ ପ୍ରଭୁ ମୋତେ କାରଣ ଏଥିର । ୧୩

ପ୍ରଭୂ ବଢ଼େ କଲେ ଯାତ୍ରା ନ ହୁଏ ନଗରେ
ଆଜ କମ୍ପା ମାଡିଛନ୍ତି ଲୋକେ ଏ ବେଭାରେ ।

### ଶ୍ରୀ ଜଗନ୍ନାଥ ଉବାଚ

ବରୁଣ ନନ୍ଦନୀ ଶୁଣ ପଚାରିଲ ଯାହା
ଠିକେ ଠିକେ କେତେ କଥା କହିବ ମୁଁ ତାହା ।
ଥରେ ସିନା ରଥଯାତ୍ରା ହୁଅଇ ମୋହର
ଶାସ୍ତ୍ର ବିଧି ନୁହେଁ ହେବ ବର୍ଷକେ ଦିଥର । ୧୬
ଶୁଣିଥିବ ଶ୍ୱେତଦ୍ୱୀପେ ଅଛନ୍ତି ଇଂରେଜ
ମୋ ବର ଲଭି ପାଇଲେ ଭାରତ ସାମ୍ରାଜ୍ୟ ।୧୭
ଷଷ୍ଠ ଜରଜ ଭାରତ ସମ୍ରାଟ ଅଟନ୍ତି
ବିଲାତେ ତାହାଙ୍କ ଘର ସେଠାରେ ଅଛନ୍ତି ।୧୮
ବହୁଦୂରେ ରାଜା ଥାଇ ଚଳାନ୍ତି ଶାସନ
ରାଜା ପ୍ରତିନିଧି ଜଣେ ଭାରତେ ରଖିଣ । ୧୯
ବଡ଼ଲାଟ ନାମ ଅଟେ ପ୍ରତିନିଧିଙ୍କର
ନୂତନ ଦିଲ୍ଲୀରେ ଅଟେ ତାଙ୍କ ବାସଘର । ୨୦
ଲିନଲିଥିଗୋ ନାମଟି ଅଟଇ ତାଙ୍କର
ଚଳାନ୍ତି ଭାରତେ ସେହୁ ଶାସନର କଳ । ୨୧
ପାଞ୍ଚ ବରଷରେ ଥରେ ବଦଳି ହୁଅନ୍ତି
ନୂଆ ବଡଲାଟ ଜଣେ ଆବର ଆସନ୍ତି । ୨୨
ଲିନ୍‌ଲିଥିଗୋଙ୍କ କାର୍ଯ୍ୟକାଳ ସରିନାହି
ଭାରତ ଗାଦିରେ ଏବେ ଅଛନ୍ତି ସେହି । ୨୩
ଓଡ଼ିଶାକୁ ଆସୁଛନ୍ତି ସେହି ପ୍ରତିନିଧି
ଦେଖିବେ ଏ ପ୍ରଦେଶର ସବୁ ଆଧି ବ୍ୟାଧି । ୨୪
କଟକରେ ଦିନେ ରହି ପୁରୀକୁ ଆସିବେ
କାଲି ଦିନ ଦ୍ୱିପ୍ରହରେ ଏଠି ପ୍ରବେଶିବେ । ୨୫
ତାଙ୍କ ଶୁଭ ଆଗମନ ପାଇଁ ଏ ସମ୍ଭାର
ପୁର ମଣ୍ଡଣି କିନାଇଛି ନାନା ପରକାର । ୨୬

ଏଠାରେ ଦ୍ୱଦିନ ରହି ପୁଣି ଫେରି ଯିବେ
ପୁଣିଦୁଇ ତିନ ଦିନେ ଦିଲ୍ଲୀ ପ୍ରବେଶିବେ । ୨୭
ରଜାଘରେ ମୁହୂର୍ତ୍ତେ ରହିବେ ସେହୁ ଜାଣ
ଦୁଇଗୁରୁ କଥା ସେ କରିବେ ସମ୍ଭାଷଣ । ୨୮
ସେଠାରୁ ଆସି ଏମାର ପ୍ରାସାଦ ଉପରେ
ଦେଖିବେ ଆମ୍ଭ ଦେଉଳ ନଜର ନଳରେ । ୨୯
ଦୁଇ ଗୁରୁ ଦଣ୍ଡ ଦେଖି ଓହ୍ଲାଇ ଆସିବେ
ରଘୁନନ୍ଦନ ପୁସ୍ତକ ଆଳୟ ଦେଖିବେ । ୩୦
ମହନ୍ତ କରିବେ ତାଙ୍କୁ ବହୁ ସମାଦର
ଲମ୍ବାଇଦେବେ ଗଳାରେ ଦିବ୍ୟ ଫୁଲହାର ।୩୧
ହବକ ଶାସନକର୍ତ୍ତା ତାଙ୍କ ସଙ୍ଗେ ଥିବେ
ଶରୀର ରକ୍ଷକମାନେ ପଛେ ପଛେ ଯିବେ । ୩୨
ବଡ଼ ବଡ଼ କର୍ମଗୁରୁ ଥିବେ ଗହଣରେ
ରାଜୋଚିତ ବେଶରେ ଏ ଚଳିବେ ସକଳେ ।୩୩
ଫୁଲ କର୍ପୁର ମାଳ ସକଳ ଗଳାରେ
ଲମ୍ବାଇ ଦେବେ ମହନ୍ତ ଅତି ଆଦରରେ ।୩୪
ରାଜା ଘରେ ଏହିପରି ସମ୍ବର୍ଦ୍ଧନା ହେବ
ପୁରୀ ରଜା ବାଟରୁ ପାଛୋଟି ନେଇଯିବ । ୩୫
ଉପାଧିକାରୀମାନଙ୍କୁ ବାଛି ଡ଼କାଇବେ
ଆଉ କେତେ ରାଜା ଜମିଦାରମାନେ ଯିବେ ।
ଗୁହା ପାନ ହେବ ପୁଣି ଲାଟ ଭବନରେ
ସକଳେ ଯାଇ ଭୁଞ୍ଜିବେ ତାଙ୍କ ସହିତରେ ।୩୭
କପର ଅଛ ପଦଏ ଚଗୁରିବେ ଥରେ
ସରିବ ସେ ଗୁହା ପାନ ଦଣ୍ଡକ ଭିତରେ । ୩୮
ପ୍ରଦେଶ ଲାଟଙ୍କଠାରୁ ସକଳ ବୁଝିବେ
ଦେଶ ହାଲଚାଲମାନ ଠିକେ ଟିପି ନେବେ ।୩୯
କଟକରେ ହୋଇଥିଲା ଏପରି ସମ୍ଭାର
ଚକତେ ରାଜା ମହାରାଜା ହୋଇଥିଲେ ଠୁଳ ।

ଲୋକମାନେ ଶ୍ରଦ୍ଧା ଦେଇ କଲେ ଏ ସମ୍ଭାର
କେତେ ଘଣ୍ଟାପାଇଁ ବ୍ୟୟ ହଜାର ହଜାର ।୪୧
ଶୋଷୀ ଭୋକ ମାଗିଲେ ତ କଉଡ଼ାଏ ନ ଦେବେ
ଶହ ଶହ ଟଙ୍କା ସେଥୁ ଗଣିଦେଲେ ଏବେ ।୪୨
ଭକ୍ତି ଥାଉ ବା ନ ଥାଉ ଭୟେ ଗଣି ଦେଲେ
ସାକ୍ଷାତ ଲଭି ନିଜକୁ ଧନ୍ୟ ମନେକଲେ । ୪୩
ବହୁ ସହସ୍ର ଦର୍ଶକ ରହି ଦେଖୁଥିଲେ
ଦେଖି ବଡ଼ଲାଟଙ୍କୁ ସେ ହରିବୋଲ ଦେଲେ ।
ବଡ଼ଲାଟ ଲେଉଟାଇ ନମସ୍କାର କଲେ
ଭାରି ପ୍ରୀତ ବୋଲି ଇଙ୍ଗିତରେ ଜଣାଇଲେ ।୪୫
ପ୍ରାସାଦ ଉପରେ ବୃକ୍ଷ ଡାଳେ ଜଗି ବସି
ବଡ଼ଲାଟଙ୍କୁ ଦେଖିଣ ଲୋକେ ହେଲେ ଖୁସି ।
ଚଉହତା ମରଦ ସେ ପ୍ରସନ୍ନ ବଦନ
ହସ ହସ ବଦନରେ କଲେକ ସଲାମ । ୪୭
ଏହି ସାମାନ୍ୟ କଥାରେ କିଣି ନେଲେ ମନ
ସକଳେ ବୋଇଲେ ଜଣେ ଏ ଉତ୍ତମ ଜନ ।୪୮
ରଥଯାତ୍ରା ପରି ଲୋକେ ରୁଣ୍ଡ ହୋଇଥିଲେ
ନାରୀମାନେ ଘରୁ ଯାଇ ଦାଣ୍ଡରେ ଦେଖିଲେ ।
ଏ ସମ୍ଭାର ଦେଖି ବଡ଼ଲାଟ ଖୁସି ହେବେ
ପ୍ରଜାଙ୍କର ରାଜଭକ୍ତି ପସନ୍ଦ କରିବେ । ।୫୦

ଶ୍ରୀ ଲକ୍ଷ୍ମୀ ଉବାଚ

ଶୁଣ ମହାପ୍ରଭୁ ପୁଣି ପୁଚ୍ଛିବି କଥାଏ
ପୂର୍ବେ ଆଉ ବଡ଼ଲାଟ ଆସିଥିଲେ କିଏ । ୫୧
ଏ ପୁରୀ ଧାମକୁ ସେମାନେ କି ଆସିଥିଲେ
ଏ ସମ୍ଭାର ହୋଇଥିଲା କି ସେ ସମୟରେ ।୫୨

ଶ୍ରୀ ଜଗନ୍ନାଥ ଉବାଚ

ଲର୍ଡ଼ କରଜନ ନାମେ ବଡ଼ଲାଟ ଥିଲେ
ଆଉ ଜଣେ ଇରବିନ୍ ଏଠା ଆସିଥିଲେ । ୫୩

ହାର୍ଡିଞ୍ଜ ନାମରେ ଯେଉଁ ବଡ଼ଲାଟ ଥିଲେ
କଟକ ନଗରୀକୁ ସେ ଥରେ ଆସିଥିଲେ । ୫୪
ତେତେବେଳେ ହୋଇଥିଲା କେତେକ ସମ୍ଭାର
ସବୁଠାରୁ ସାଜସଜ୍ଜା ବଳଚ୍ଛି ଏଥର । ୫୫
ମହାପ୍ରତାପୀ ଅଟଇ ଇଂରେଜ ରାଜନ
ତା ରାଜ୍ୟରେ ସୂର୍ଯ୍ୟ ଅସ୍ତ ନ ହୁଅନ୍ତି ଜାଣ ।୫୬
ପୃଥିବୀର ସବୁ ମହାଦେଶ ରାଜ୍ୟ ତାର
ତେଣୁ ତା ରାଜ୍ୟକୁ କେବେ ନ ହୁଏ ଅନ୍ଧାର ।
ସବୁ ମହାଦେଶରେ ତା ରାଜ୍ୟ ଅଚ୍ଛି ରହି
ତେଣୁ ସୂର୍ଯ୍ୟାଲୋକ ସବୁଦେଶରେ ପଡ଼ଇ ।
ଯେଉଁ ବଡ଼ଲାଟ ପୁରୀଧାମେ ଆସିଥିଲେ
ତାହାଙ୍କ ଘର ଅଟଇ ବିଲାତ ଦେଶରେ । ୫୯
କୃଷି କାର୍ଯ୍ୟ ଉନ୍ନତ ଦିଗରେ ତାଙ୍କ ମନ
ଗୋବଂଶ ବୃଦ୍ଧିରେ ତେଣୁ ଦେଲେ ମନଧ୍ୟାନ ।
ଉତ୍ତମ ଷଣ୍ଢ କପରି ସବୁଠି ରହିବେ
ଭାରତର ଗୋରୁବଂଶ ଉନ୍ନତ କରିବେ । ୬୧
ବଡ଼ ବଡ଼ ଗାଈମାନ ସବୁଠି ରହିବେ
ଭାରତବାସୀ ବହୁତ ଗୋରସ ପାଇବେ । ୬୨
ବଡ଼ ଷଣ୍ଢ ବଡ଼ ଗାଈ ସବଳ ବଳଦ
ହେବେ ଶୁଣି ଲୋକମାନେ ହୋଇଲେ ଆନନ୍ଦ ।
ବଡ଼ ବଡ଼ ଗୋରୁ ଗାଈ ବହୁତ ଖାଇବେ
ଏତେ ଖାଦ୍ୟ ଲୋକମାନେ କେଉଁଠୁ ପାଇବେ ।
ଦୁଇ ଓଳ ପେଟ ପୂରି ଅନ୍ନ ନ ମିଳଇ
ଗାଈ ଗୋରୁଙ୍କୁ ବହୁତ ଦେବେ ଧନ କାହିଁ ।୬୫
ଏଥିପାଇଁ କିଛିମାତ୍ର ବ୍ୟବସ୍ଥା ନ ହେଲା
ଷଣ୍ଢ ପୋଷିବା ପ୍ରସ୍ତାବ ପୋଥିରେ ରହିଲା ।୬୬
ଧନୀ ଲୋକ କେହି କେହି ଗୋଟାଏ ରଖିଲେ
ଲୋକ ସାଧାରଣ ଷଣ୍ଢ କିଣି ନ ପାରିଲେ ।୬୭

ଘୋଡ଼ା ଛ ଟଙ୍କାକୁ ହେଲା ବାଘର ନ ଟଙ୍କା
ଏହା ଦେଖି ଲୋକଙ୍କର ମୁହଁ ହେଲା ବଙ୍କା ।୬୮

ଶ୍ରୀ ଲକ୍ଷ୍ମୀ ଉବାଚ

ଶୁଣ ଆହେ ପ୍ରଭୁ ଏବେ ପୁଚ୍ଛିବି କଥାଏ
ସୁଭାଷ ଜୟପ୍ରକାଶ ଅଟନ୍ତି ସେ କଏ ! ୬୯
ପୁରୀ ଧାମକୁ ସୁଭାଷ ଆସୁଛନ୍ତି ଧାଇଁ
ବହୁ ଆୟୋଜନ ଲାଗିଅଛି ତାଙ୍କପାଇଁ । ୭୦
ଆସି ପୁରୀବାସୀଙ୍କି ସେ କେଉଁ ନିଧି ଦେବେ
ଏତେ ଆୟୋଜନ କରି କି ଫଳ ପାଇବେ ।

ଶ୍ରୀ ଜଗନ୍ନାଥ ଉବାଚ

ଜାନକୀ ନାମେ ଉକୀଲ ଓଡ଼ିଶାରେ ଥିଲେ
ବଙ୍ଗଳା ଦେଶରୁ କାଳେ ସେହି ଆସିଥିଲେ ।୭୨
ଓକିଲାତି କରି ବହୁଧନ ଅରଜିଲେ
ପୁରୀ କଟକରେ ଇଟା ପ୍ରାସାଦ ଗଢ଼ିଲେ । ୭୩
ଅନେକ ଗୁଡ଼ିଏ ପୁଅ ସନ୍ତାନ ତାଙ୍କର
ସୁଭାଷ ତାହାଙ୍କ ପୁଅ ଜାଣ ହେ ନିକର । ୭୪
ସୁଭାଷ ଏ ଓଡ଼ିଶାରେ ଜନ୍ମ ଲଭିଥିଲେ
ବହୁତ ଗୁଡ଼ିଏ ପାଠ ପଢ଼ି ଯୋଗ୍ୟ ହେଲେ ।
ବିଲାତ ଦେଶକୁ ଯାଇ ପାଠ ପଢ଼ୁଥିଲେ
କଲେଟର ହେବାପାଇଁ ଯୋଗ୍ୟତା ଲଭିଲେ ।
ଚାକିରୀ ନ କରି ଦେଶ ସେବାରେ ଲାଗିଲେ
କେତେଥର କାରାଗାର ଭୋଗ କରିଥିଲେ ।୭୭
କଟକରେ ଯେଉଁ ଘର ଥିଲା ତାହାଙ୍କର
କଂଗ୍ରେସ ଆଶ୍ରମ ପାଇଁ ଦେଲେ ସେ ନିକର ୭୮
ଓଡ଼ିଶାରୁ ଯାଇ ରହିଲେଣି ବଙ୍ଗଳାରେ
ଆସିଥିଲେ ଯେଉଁ ଦେଶୁ ସେ ଦେଶକୁ ଗଲେ ।
କଂଗ୍ରେସର ସଭାପତି ଥରେ ହୋଇଥିଲେ
ଦ୍ୱିତୀୟ ଥରକୁ ହୋଇ ପୁଣି ଛାଡ଼ିଦେଲେ ।୮୦

ଗାନ୍ଧିଙ୍କ ସହିତ ତାଙ୍କ ମତ ନ ମିଳିଲା
ବାଧହୋଇ ସଭାପତି ନ ହେବାର ହେଲା ।୮୧
ତେଣୁ ସେ ପାଞ୍ଚିଲେ ନିଜ ପଥେ ସେହୁ ଯିବେ
ନୂଆଗୋଷ୍ଠି ବାନ୍ଧି ସେହୁ କରମ କରିବେ ।୮୨
ଅଗ୍ରଗାମୀ ଦଳ ନାମେ କରୁଛନ୍ତି ଦଳ
ସବୁ ପ୍ରଦେଶକୁ ଯାଇ କରନ୍ତି ପ୍ରଚାର ।୮୩
ବୋଲୁଛନ୍ତି ଦେଶବାସୀ ତାଙ୍କ କଥା ମାନ
ଚବିଶ ଘଣ୍ଟା ମଧ୍ୟରେ ହୋଇବ ସ୍ୱାଧୀନ ।୮୪
ଗାନ୍ଧିଙ୍କ ମତରେ ଯେବେ କରମ କରିବ
ସ୍ୱରାଜ୍ୟ ପାଇବା ଆଶା ବହୁ ଦୂରେ ଯିବ ।୮୫
କଂଗ୍ରେସ ଡାହାଣ ଦଳ ମାହା ହୋଇଲେଣି
ମନ୍ତ୍ରୀପଦ ପାଇ ଲୋକେ ହେଲେ ଭୁଇଁତାନ ।
କଂଗ୍ରେସରେ ଲଢ଼ିବା ଶକତି ଆଉ ନାହିଁ
ଗୃହକଷ୍ଟ ପାଇ ସକଳେ ହୋଇଲେଣି ବାଇ ।୮୭
ଭାରତ ଶାସନ ଯନ୍ତ୍ର ଭାଙ୍ଗିବାକୁ ଗଲେ
ସେହି ଯନ୍ତ୍ରେ ପଶି ତହିଁ ଅଟକି ରହିଲେ ।୮୮
ପ୍ରସ୍ତୁତ ହେଲାଣି ଦେଶ ସତ୍ୟାଗ୍ରହ ପାଇଁ
ନେତାମାନଙ୍କର କିନ୍ତୁ ନିଦ ଭାଙ୍ଗୁ ନାହିଁ ।୮୯
କଂଗ୍ରେସ ଡାହାଣ ପନ୍ଥୀ ନେତା ଯେତେଯେତେ
ଗୃହକର୍ମ ସୁଆଦ ପାଇ ଭୁଲିଲେ ସମସ୍ତେ ।୯୦
ଗାନ୍ଧି କହୁଛନ୍ତି ଦେଶ ନୁହଇ ପ୍ରସ୍ତୁତ
ସତ୍ୟାଗ୍ରହ ପାଇଁ କେହି ନୁହେଁ ଉପଯୁକ୍ତ ।୯୧
ଗାନ୍ଧିଙ୍କର ଏ ଉକତି ନୁହେଁ କେବେ ସତ୍ୟ
ଦେଶ ବାସୀମାନେ ସର୍ବେ ହେଲେଣି ପ୍ରସ୍ତୁତ ।
ଡାହାଣ ପନ୍ଥୀ ନେତାଏ ହୁଅନ୍ତୁ ଅଗ୍ରଣୀ
ତାଙ୍କ ପଛେ ଲୋକମାନେ ବାହାରିବେ ପୁଣି ।
ନିଜେ କରି ନ ପାରିଲେ ବାଟ ଛାଡ଼ି ଦିଅ
ତାଙ୍କ ଦଳ ସତ୍ୟାଗ୍ରହ କରିବେ ନିଷ୍ଚୟ ।୯୪

ନାନା ସ୍ଥାନେ ଯାଇ ଏହା କରନ୍ତି ପ୍ରଚାର
କିପରି ପୁଷ୍ଟ ହୋଇବ ତାଙ୍କ ନିଜ ଦଳ । ୯୫
ପାଣି କଣ୍ଟୁଛନ୍ତି ବୁଲି ନାନା ପ୍ରଦେଶରେ
ବେ-କଂଗ୍ରେସ ଲୋକମାନେ ଅଛନ୍ତି ପଛରେ ।
ବୋଲନ୍ତି ବଚନେ ସୁଭାଷଙ୍କ ଦଳେ ଯିବା
କି ନୂଆ ତାମସା ହେବ ଆବର ଦେଖିବା ।୯୭
ସୁକଠ ଦେଖା ପଞ୍ଝାଏ ଅଛନ୍ତି ଏମନ୍ତ
ନିଖ ଘସୁଛନ୍ତି ବସି ଦେଖିବାକୁ ନୃତ୍ୟ । ୯୮
କଂଗ୍ରେସ ଭିତରେ ଯେବେ ହେବ ଦଳା ଦଳି
କଂଗ୍ରେସ ପ୍ରତାପ ବଳେ ଯିବ ସେ ମଉଳି ।୯୯
କଂଗ୍ରେସ ବିରୋଧୀଙ୍କର ସଦା ଏହି ପାଞ୍ଚ
ସୁବିଧା ପାଇଲେ ଖିଞ୍ଚି ହେଉଛନ୍ତି ପେଞ୍ଚ ।
ସୁଭାଷ ନାନା ପ୍ରଦେଶ କରନ୍ତି ଭ୍ରମଣ
ଦିଗ ବିଜୟ କରିବା ପାଇଁ ତାଙ୍କ ମନ । ୧୦୧
ଯେଉଁଠାକୁ ଗଲେ ସେଠି ସଭା ଡାକୁଛନ୍ତି
ନ ବୁଝି ନ ସୁଝି ଲୋକେ ତୁଣ୍ଡ ହେଉଛନ୍ତି ।
କଥାକେ କଥାକେ ଦେଉଛନ୍ତି କରତାଳି
ଜୟ ନିନାଦରେ ସଭା ପଡ଼ଇ ଉଛୁଳି । ୧୦୩
ସୁଭାଷଙ୍କ ମନ କୁଣ୍ଢେ ହେଉଅଛି ମୋଟ
ଦରକାର ବେଳେ ସେ ପାଇବେ ବେଶି ଭୋଟ ।
ବଡ଼ ଦମ୍ଭ ଅହଙ୍କାରେ କହନ୍ତି ବଚନ
ଶୁଣି ଯୁବକ ଦଳର ମୋଟ ହୁଏ ମନ । ୧୦୪
ଆଗ ପଛ ନ ବିଚାରି ବହୁତ କହନ୍ତି
ଲୋକଙ୍କ ବଳ ନ ଜାଣି କଥା କହୁଛନ୍ତି । ୧୦୬
ବିପ୍ଳବ କରିବା ପାଇଁ ଦିଅନ୍ତି ଆଦେଶ
ବିନା ବିପ୍ଳବେ ସ୍ୱରାଜ କରନାହିଁ ଆଶ । ୧୦୭
ବୋଲୁଛନ୍ତି ଚାଲ ଚାଲ ଆଗବଢ଼ି ଚାଲ
ନପାଞ୍ଚ ଆଗରେ ଅଛି ଡିପ ଅବା ଖାଲ ।୧୦୮

ଏ ମତ ଗାନ୍ଧି ତଳେ ପସନ୍ଦ ନ କରନ୍ତି
ତେଣୁ ତାହାଙ୍କ ସହିତ ନ ମିଳଇ ଯତି ।୧୦୯
ଦେଶକାଳ ପାତ୍ର ଦେଖି କରିବା ସକଳ
ଗାନ୍ଧିଙ୍କର ମତ ଏହା ଅଟେ ଯିନା ସାର ।୧୧୦
କଂଗ୍ରେସରେ ଯେଉଁ କଥା ହେଲା ନିର୍ଦ୍ଧାରଣ
ସୁଭାଷ ମାନଲେ ନାହିଁ ସେ ସବୁ ବିଧାନ ।୧୧୧
କଂଗ୍ରେସର କର୍ତ୍ତାମାନେ ସବୁ ବିଚାରିଲେ
ସୁଭାଷଙ୍କ ପ୍ରତି ଦଣ୍ଡବିଧାନ ସେ କଲେ । ୧୧୨
ତିନ ବରଷ ପର୍ଯ୍ୟନ୍ତ କଂଗ୍ରେସରୁ ଯିବେ
କଂଗ୍ରେସର କର୍ମକର୍ତ୍ତା ହୋଇ ନ ପାରିବେ ।
ଏ ଦଣ୍ଡ ବିଧାନ ଆଜ୍ଞା ହେଲା ଯେତେବେଳେ
ଚହଳ ପଡ଼ୁଛି ଏବେ ବଙ୍ଗଳା ଦେଶରେ ।୧୧୪
ଜୟପ୍ରକାଶ ଅଟନ୍ତି ବିହାର ନିବାସୀ
ସାମ୍ୟବାଦୀ ନେତା ସେହି ବୋଲନ୍ତି ବିଶେଷି ।
ସେ ଆସି ଉତ୍କଳ ଦେଶେ ହୋଇଲେ ପ୍ରବେଶ
ଜୟ ଜୟକାର ନାଦ ଘୋଟିଲା ଆକାଶ ।୧୧୬
କି ବର ଦେବେ ବୋଲି ସେ ଲୋକେ ଦଉଡ଼ିଲେ
ବହୁତ ଖରଚ କରି କଟକକୁ ଗଲେ । ୧୧୭
କଟକ ସହରେ ହେଲା ବହୁତ ସମ୍ଭାର
ଛାତ୍ରମାନେ ହୋଇଛନ୍ତି ପୁଣି ଦୁଇ ଦଳ ।୧୧୮
ଦଳେ ସୁଭାଷଙ୍କୁ ଦଳପତି କରିଥିଲେ
ଆଉ ଦଳେ ଜୟପ୍ରକାଶଙ୍କୁ ଯେ ବରିଲେ ।୧୧୯
ସାମ୍ୟବାଦ ମତ ଏହି କରନ୍ତି ପ୍ରଚାର
ସକଳେ ସମଭାବରେ ଚଳିବେ ନିକର । ୧୨୦
ସଭାପତି ପଣେ ସେ ଆସିଲେ ଯେତେ ବେଳେ
ମଟର ଗାଡ଼ିରେ ଚଢ଼ି ସଭାକୁ ଆସିଲେ । ୧୨୧
ଆଉ ଲୋକ ସାଧାରଣ ପଛେ ପଛେ ଥାଇ
ଡାକନ୍ତି ଆମେ ଲଢ଼ିବୁଁ ହୁଅ ଭାଇମାନେ ।୧୨୨

ଠେଙ୍ଗା ଖଣ୍ଡେ ଖଣ୍ଡେ ଲୋକେ କାନ୍ଧରେ ପକାଇ
ଆଗେ ଆଗେ ଚାଲିଥାନ୍ତି ଧାଡ଼ି ଧାଡ଼ି ହୋଇ ।
ପ୍ରାଚୀନ ଢାଲ ବା ପଠା କାତି ହାତେ ଧରି
ପଲ୍ଲୀ ଯୁବକ ଚାଲନ୍ତି ମସ୍ତକକୁ ପରି । ୧୨୪
ନାନା ପ୍ରକାର ବାଜା ବାଜୁଛି ଆଗରେ
ସଭାପତି ପଛେ ଆଉ ଚାଲିଛି ସମ୍ଭାରେ । ୧୨୫
ଫୁଲ କର୍ପୂର ମାଳ ହୃଦେ ମାଳମାଳ
ଯୁବକ ବୃନ୍ଦ ଚାଲନ୍ତି ପକାଇଣ ତାଳ । ୧୨୬
ସେ ଯାଇ ଉଚ୍ଚ ଆସନେ ସଭାରେ ବସିଲେ
ଦୀର୍ଘ ବକ୍ତୃତା ଶୁଣାଇ ଉପଦେଶ ଦେଲେ ।
ଭାରତ ବିରତେ ଶ୍ରେଣୀ ବିଭାଗ ନ ରହୁ
ଖଜଣା ଟିକସ ସବୁ ବନ୍ଦ କରିଯାଉ । ୧୨୭
ଶାସନ ବିଭାଗ ନୂଆ ବସାଅ ଦେଶରେ
ତେବେ ଯାଇ ଏ ଦେଶ ସ୍ୱାଧୀନ ହୋଇପାରେ ।
ଆଗ ପଛ ନ ବିଚାରି ବହୁତ କହିଲେ
ନିକଟରେ ଥିବା ଲୋକେ ସକଳ ଶୁଣିଲେ ୧୩୦
ତାଳି ଜୟ ଜୟ ଧ୍ୱନି ଶୁଭିଲା ବହୁତ
ଶେଷ ହୋଇଗଲା ପରେ ଏସବୁ ଚରିତ । ୧୩୧
ପୂର୍ବ ଗାନ୍ଧିବାଦୀ ପୁଣି ଯେଉଁମାନେ ଥିଲେ
ତହିଁରୁ କେତେକ ଫିଟି ଯାଇଛନ୍ତି ଭଲେ ।
ମନ୍ତ୍ରୀମାନଙ୍କ ଉପରେ ତାଙ୍କ ଆକ୍ରମଣ
ବୋଲନ୍ତି ଏ ମନ୍ତ୍ରୀମାନେ ନୁହନ୍ତି ଉତ୍ତମ । ୧୩୩
ମନ୍ତ୍ରୀ ନିନ୍ଦା ଗୀତଗାଇ ଏମାନେ ବୁଲନ୍ତି
ତାଙ୍କୁ ନ ବିଚାରି ମନ୍ତ୍ରୀ କାମ କରୁଛନ୍ତି । ୧୩୪
ଇର୍ଷା ପରବଶ ହୋଇ ସକଳ କହନ୍ତି
ପରାର୍ଥ ବଚନ ଦେଇ ସ୍ୱାର୍ଥକୁ ଲୁଚାନ୍ତି । ୧୩୫
କଂଗ୍ରେସ ବିରୋଧୀ ଲୋକ ସଙ୍ଗତରେ ମିଳି
ସୁଭାଷ ପୂଜା ଅର୍ଚ୍ଚନା କରନ୍ତି କି ଭଳି । ୧୩୬

ଏହି ସ୍ୱାର୍ଥମେଧ ଯଜ୍ଞ ଲଗିଛି ଭାରତେ
ସ୍ୱାର୍ଥ ନାଟ ଲଗିଅଛି କେତେ ଏହିମତେ ।
ସୁଭାଷ, ଜୟପ୍ରକାଶ, ସହଜ ଆନନ୍ଦ
ପ୍ରଚାର କରନ୍ତି ଦେଶେ ନିଜ ମତବାଦ । ୧୩୮
ଗାନ୍ଧିବାଦକୁ ପସନ୍ଦ ନ କରନ୍ତି ସେହି
ପୁରୁଣା ମାନ୍ଦା ବୋଲଣ ଯାଉଛନ୍ତି କହି ।
ଏ ମହା ବିଭ୍ରାଟ ଲଗିଅଛି ଭାରତରେ
ନାନା ମତଭେଦ ଦେଖ ଆପଣା ଭିତରେ ।
ଦଳ ସୃଷ୍ଟି କରିବାକୁ ସକଳେ ବ୍ୟାକୁଳ
ନିଜ ମଧ୍ୟରେ ଲଗିଛି ଭୁମ୍ଲ କନ୍ଦଳ । ୧୪୧
ଯେ ଯାହାର ମତବାଦ ତାକୁ କରେ ବଡ଼
ବୋଲେ ତା ପନ୍ଥରେ ଗଲେ ଜିଣିପାର ଗଡ଼ ।
ଲୋକମାନେ ଶୁଣୁଛନ୍ତି ଆବା କାବା ହୋଇ
ବକ୍ତୃତା ସ୍ରୋତ ଦେଶରେ ଯାଉଅଛି ବହି ।
ସେ ସ୍ରୋତରେ ଭାସି କେତେ ଯାଉଛନ୍ତି ଚାଲି
ଗୋଡ଼ ଧୋଳା ହେଉଅଛି ଏଣେତେଣେ ବୁଲି ।
କେତେ ଜଣ ଏଥିରେ ସୁବିଧାବାଦୀ ଛନ୍ତି
କେଉଁ ପଥେ ଯିବେ କିଛି ବାରି ନ ପାରନ୍ତି ।
ମନ୍ତ୍ରୀ ମଣ୍ଡଳ କ ଗାଳି ଦିଅନ୍ତି ସଭାରେ
ନାହିଁ କରନ୍ତି ଆଦର ଦରକାର ବେଳେ ।୧୪୬
କେହୁ ଇର୍ଷା ପରବଶ କ୍ରୋଧେ ଜରଜର
ଦେଶ ହିତ ଛଳେ କାନ୍ଧପକାଏ ନକର ।୧୪୭
ବିଷକୁମ୍ଭ ପୟୋମୁଖ ଦଳର ଏମାନେ
କାହା ଶିରୀ ଦେଖି ନପାରନ୍ତି ମନେ ମନେ ।୧୪୮
ପରନିନ୍ଦା ପରଚର୍ଚ୍ଚା ଏମାନଙ୍କ କାମ
ନକଲେ ଏପରି ଅନ୍ନ ନହୁଏ ହଜମ । ୧୪୯
ପର ଶିରୀ ଦେଖି ମନେ ଯାଉଛନ୍ତି ଜଳି
ଚୁଲି ବାଡ଼ିକୁ ଦେଖାଇ କରୁଥାନ୍ତି କଳି । ୧୫୦

ଏମନ୍ତ ଲୋକମାନଙ୍କୁ ଦୂରୁ ନମସ୍କାର
ସୁବୁଦ୍ଧି ଦିଅନ୍ତୁ ତାଙ୍କୁ ଜଗତଈଶ୍ୱର । ୧୫୧
ବୋଲେ ଧନ ଜଗବନ୍ଧୁ ହେ ଜଗତନାଥ
ତୁମ୍ଭେ ସକଳ ଅନାଥ ଲୋକଙ୍କର ନାଥ । ୧୫୨
ଦିଅ ବୁଦ୍ଧି ଦିଅ ବଳ ଦିଅ ଦିବ୍ୟ ଜ୍ଞାନ
ସମ ଦରଶି ହୁଅନ୍ତୁ ଏ ଭାରତ ଜନ । ୧୫୩

ଇତି ଶ୍ରୀ ଭାରତ-ଚରିତାମୃତେ ବଡ଼ଲାଟ ପୁଣି ଦର୍ଶନ-ଚରିତ ବର୍ଣ୍ଣନେ ପଞ୍ଚାଅଶୀ ଅଧ୍ୟାୟଃ



## ଛୟାଅଶୀ ଅଧ୍ୟାୟ

ଶୁଣ ହେ ସୁଜନ ଜନେ ଦେଇ ମନ କର୍ଣ୍ଣ
କଂଗ୍ରେସ ଭିତରେ ଭେଦ ଭାବ କି କାରଣ ।୧
କଂଗ୍ରେସର ଦାବୀ ଦେଶ ସ୍ୱାଧୀନ ହୋଇବ
ନିଜ ଦେଶ ଶାସନ ସେ ନିଜେ ଚଳାଇବ । ୨
ଏହି ସଂଘର୍ଷ ଚାଲିଛି ଇଂରେଜ ସହିତ
କେତେକାଳେ ଦେଇଛନ୍ତି କ୍ଷମତା କିଞ୍ଚିତ । ୩
ଯେଉଁ ନୂତନ ଶାସନ ଆଇନ ହୋଇଲା
ଭାରତବାସୀଙ୍କ ମନ ସନ୍ତୁଷ୍ଟ ନ ହେଲା । ୪
ବିନା ଯୁଦ୍ଧେ ଏ କଥା କି ଅଟଇ ସମ୍ଭବ
ଇଂରେଜ ସହଜେ ସବୁ କ୍ଷମତା ନ ଦେବ । ୫
ମୂଳ ଲକ୍ଷ ଯେବେ କିଛି ନାହିଁ ମତ ଭିନ୍ନ
କର୍ମଯୋଜନା ଯେବେଣ ମତ ଭିନ୍ନ ଭିନ୍ନ । ୬
ଗାନ୍ଧି ବୋଲନ୍ତି ଅହିଂସା ସତ୍ୟ ମହାବଳ
ଲୋକମାନେ ଏ ସାଧନା କରନ୍ତୁ କେବଳ । ୭
ଯେବେ ଏ ସାଧନା ଲୋକେ କରି ନ ପାରିବେ
ସତ୍ୟାଗ୍ରହ ସମରକୁ ସମର୍ଥ ନ ହେବେ । ୮
ଦେଖି ଲୋକଙ୍କର ବର୍ତ୍ତମାନ ମତିଗତି
ପ୍ରସ୍ତୁତ ନୁହନ୍ତି ଲୋକେ ଗାନ୍ଧି କହୁଛନ୍ତି । ୯

ସୁଭାଷ ପ୍ରମୁଖ ଦେଶ ଯୁବକ ସମାଜ
ଦେଶ ପ୍ରସ୍ତୁତ ହେଲାଣି ନେତା ହୁଅ ସଜ ।୧୦
ଗାନ୍ଧି ବୋଲନ୍ତି ଏ କଥା ନୁହେଁ କେବେ ସତ୍ୟ
କଂଗ୍ରେସର ସଭ୍ୟ ସଂଖ୍ୟା ବଢ଼ିଛି ବହୁତ । ୧୧
ଚାରିଅଣା ଦେଇ ସଭ୍ୟ ହେବାର ସହଜ
ଏତ ନୁହେଁ ଖେଳଘର ମେଳା ବା ମଉଜ ।୧୨
କଂଗ୍ରେସ ମତ ନିୟମ କାର୍ଯ୍ୟରେ ପାଳିଲେ
ସତ୍ୟାଗ୍ରହ ସମରକୁଁ ଯୋଗ୍ୟ ହେବ ଭଲେ ।୧୩
ସତ୍ୟପାଇଁ ପ୍ରାଣ ଦେବ ଅମ୍ଳାନ ବଦନେ
ଲେଶମାତ୍ର ହିଂସାଭାବ ନ ଥିବ ଯା ମନେ ।୧୪
ଏମନ୍ତ ଭାବରେ ଯେବେ ସାଧକ ହୋଇବ
ସେହି ଦିନ ସତ୍ୟାଗ୍ରହୀ ସଇନିକ ହେବ । ୧୫
ଚଉଳି ଲୋକମାନଙ୍କୁ ଏହି ନିକଟରେ
ପ୍ରସ୍ତୁତ ନୁହଇ ଦେଶ ଗାନ୍ଧି କହିଦେଲେ । ୧୬
ସତ୍ୟାଗ୍ରହ ଯୁଦ୍ଧପାଇଁ ଆସିନାହିଁ ବେଳ
ଦେଶକୁ ପ୍ରସ୍ତୁତ କର ସମ୍ଭାଳ ସମ୍ଭାଳ । ୧୬
ଗଠନ ମୂଳକ କାର୍ଯ୍ୟ ଦେଶେ ହେଉନାହିଁ
ତତ୍କାଳିକ ଉନ୍ମାଦରେ ଲୋକେ ହୋନ୍ତି ବାଇ ।
ସଭା ସମିତିରେ ଯେଉଁ ଗାଉଣା ଶୁଣନ୍ତି
ଏ କାନେ ପୁରାଇ ସବୁ ସେ କାନେ ଛାଡ଼ନ୍ତି ।୧୯
ତାଳମାରି ଗାନ୍ଧି ଜୟ ଶବଦ କରନ୍ତି
କାମରେ ସେ କଥାମାନ କିଛି ନ କରନ୍ତି ।୨୦
କପା କେହି କଲେ ନାହିଁ ଖଦ ନ ପିନ୍ଧିଲେ
ନିଶା ଖାଅନାହିଁ ମନା କେହି ନ ମାନିଲେ ।୨୧
ଏଠି ମନା କଲେ ଦୂରୁ ଆଣନ୍ତି ଚୋରାଇ
ସରିଗଲେ ଏ ଦେଶର ଲୋକେ ନିଶାଖାଇ ।୨୨
ଏ ଦୁଇ ପ୍ରଧାନ କଥା କେହି ନ ପାଳିଲେ
କି ହେବ କଂଗ୍ରେସ ସଭ୍ୟ ଲୋଷ ହେଲେ ।

ସତ୍ୟ ଅହିଂସା ପାଳିବା ଦୁରୂହ ବ୍ୟାପାର
କେତେ ଜଣ ପାଳୁଛନ୍ତି ଏ ଧରମ ସାର । ୨୪
ତେଣୁ ଗାନ୍ଧି ବୋଲନ୍ତି ନିଗୂଢ କଥା ସତ୍ୟ
ଦେଶ ହୋଇ ନାହିଁ ଯୁଦ୍ଧ ପାଇଁକି ପ୍ରସ୍ତୁତ ।୨୫
ଯେଉଁମାନେ ଦେଉଛନ୍ତି ମତ ବିପରୀତ
ଦେଶର ପ୍ରକୃତ ତଥ୍ୟ ନୁହନ୍ତି ସେ ଜ୍ଞାତ ।୨୬
ଭାରତ ଲୋକପ୍ରକୃତି ତାଙ୍କ ଜଣା ନାହିଁ
ଅନ୍ୟ ଦେଶ କଥା ଦେଖି ହେଉଛନ୍ତି ବାଇ ।
ଦେଶକାଳ ପାତ୍ର ବିବେଚନା ନ କରନ୍ତି
ଆନ ଦେଶ କଥାମାନ ନକଲ କରନ୍ତି । ୨୮
ଗଣତନ୍ତ୍ର ଶାସନ ଏ ଭାରତେ ନ ଥିଲା
ସାମ୍ୟବାଦ ମତ ରୁଷିଆରୁ ଅଣାଗଲା । ୨୯
ଯେତେ ପରକାର ବାଦ ହେଉଛି ପ୍ରଚାର
ବିଦେଶରୁ ଆମଦାନି ହେଉଛି [illegible] । ୩୦
ଶିକ୍ଷିତ ଯୁବକମାନେ ଶୁଣି ସମାଚାର
ବିଚାରନ୍ତି ଅଟନ୍ତି ଏହା ବଡ ହିତକର । ୩୧
ସେହି ସ୍ରୋତ ମୁଖେ ପଡ଼ି ଭାସି ଯାଉଛନ୍ତି
ଆଗ ପଛ ସେମାନେ ବିଚାର ନ କରନ୍ତି । ୩୨
କେଉଁ ଦେଶ ଲୋକଙ୍କର କପର ଚରିତ
ସେ ଦେଶ ଜଳବାୟୁକୁ ହୋଇପାରେ ହିତ ।
ଭାରତ ଜଳ ବାୟୁକୁ ହିତ ବା ଅହିତ
କେହି ନ ବିଚାରେ ଭାରତର ମତ ତଥ୍ୟ ।୩୪
ଜାତୀୟ ଜୀବନ କଥା ବିଦେଶୁ ଆସିଛି
ଇଂରେଜ ପାଠୁଆମାନେ ଅର୍ଥ ବୁଝିଅଛି । ୩୫
ଜାତୀୟ ଜୀବନ ବୋଲି ଉଠୁଅଛି ଦୁଆ
ଲୋକମାନେ ଏହା ଶୁଣି ବୁଲୁଛନ୍ତି ଭୂଆଁ ।୩୬
ଜାତୀୟ ଜୀବନ କଥା ନ ହୁଏ ଧାରଣା
ତେଣୁ ଲୋକମାନେ ହେଉଛନ୍ତି ପଥବଣା ।୩୭

ମୋର ଏ ଭାରତ ମୁହିଁ ଅଟେ ଭାରତର
ଭାରତ ପାଇଁ ବଞ୍ଚିବ ମରିବ ନିକର । ୩୮
ସକଳ ଭାରତବାସୀମାନେ ଅଟୁଁ ଭାଇ
ସର୍ବେ ପ୍ରାଣଦେବା ଭାରତର ମୁକ୍ତି ପାଇଁ ।୩୯
ଲୋକ ସାଧାରଣ ମନେ ନାହିଁ ଏହି ଭାବ
ଜାଣିପୁ ଜୀବନ କଟାଇବା ସମ୍ଭବ । ୪୦
ଯାବତ ଏ ଭାବ ନାହିଁ ଏକତା ନ ହେବ
ଏକତା ବିନୁ ସ୍ୱାଧୀନ ହେବା ଅସମ୍ଭବ । ୪୧
ବିଦେଶୀ ଭାବ ସକଳ ଶୁଣୁଅଛି କାନ
ପାଣି ଫୋଟକା ପରାଏ ହୋଇଯାଏ ଲୀନ ।୪୨
ଭାରତ ନାଡ଼ୀ ନକ୍ଷତ୍ର ଅଲଗା ପ୍ରକାର
ଖାପ ଖାଉନାହିଁ ଯେତେ ବିଦେଶୀ ବ୍ୟାପାର ।
ବିଦେଶୀ ମତ ନିୟମ ଯେତେ ଉଚ୍ଚରନ୍ତି
ନିଜେ ଆପଣା ସ୍ୱାର୍ଥରେ ତାହା ନ ପାଳନ୍ତି ।
ଆଚରଣ ଧର୍ମ ଅଟେ ସବୁଠାରୁ ସାର
ପୋଥିଗତ ବିଦ୍ୟାମାନ ପୋଥିରେ କେବଳ ।
ଗଣତନ୍ତ୍ର ଶାସନ ଏ ଭାରତେ ନ ଥିଲା
ରାଜା ମୂଳେ ରାଜ୍ୟ ହାନି ଲାଭ ସବୁ ଥିଲା ।୪୬
ରାଜ୍ୟ ପାପ ରାଜା ମୁଣ୍ଡେ ଥିଲାକ ନିୟତ
ପ୍ରଜା ସୁଖ ପାଇଁ ରାଜା କରିବ ରାଜତ୍ୱ । ୪୭
ଗଣତନ୍ତ୍ର କଥା ଏବେ ବିଦେଶୁ ଆସିଛି
ଭାରତ ପ୍ରକୃତି ସଙ୍ଗେ ଖାପ ନ ଖାଉଛି । ୪୮
ରାଜ୍ୟ ଶାସନ ନୁହଇ ପିଲା ଧୂଳି ଖେଳ
ରାଜ ସିଂହାସନ ସଦା ବିପଦ ସଙ୍କୁଳ । ୪୯
ରାଜ୍ୟ ଶାସନ କଳକୁ ଯେହୁ ଚଳାଇବ
ସମଦରଶୀ ନ ହେଲେ ଚଳି ନ ପାରିବ ।୫୦
ସକଳ ପ୍ରଜାଙ୍କୁ ସମ ଚକ୍ଷୁରେ ଦେଖିବ
ସକଳର ହିତ ପାଇଁ କରମ କରିବ । ୫୧

ଆପଣା ସ୍ୱାର୍ଥକୁ ସଦା ପଛେ ପକାଇବ
ପ୍ରଜାର ମଙ୍ଗଳ ପାଇଁ ସକଳ କରିବ । ୫୨
ବିଶାରଦ ମନ୍ତ୍ରୀମାନେ ରାଜା ପାଖେ ଥିବେ
ନ୍ୟାୟ୍ୟ ମତ ପରାମର୍ଶ ସଦା ଦେଉଥିବେ । ୫୩
ସୁଦକ୍ଷ ବିଶାରଦଙ୍କୁ ରାଜା ବାଛି ନେବ
ସେମାନଙ୍କ ପରାମର୍ଶେ ସକଳ କରିବ । ୫୪
ଏହିପରି ରାଜନୀତି ଥିଲା ଭାରତରେ
ରାଜ ଧର୍ମ ନୀତି ଅଛି ମହାଭାରତରେ । ୫୫
ହିନ୍ଦୁ ସ୍ୱାଧୀନ ରାଜତ୍ୱ ଯେ କାଳୁ ଗଲାଣି
ସେକାଳୁ ଏ ରାଜନୀତି ଲୁପ୍ତ ରହିଲାଣି । ୫୬
ବହୁ କାଳୁଁ ବିଦେଶୀ ଶାସନ ତଳେ ରହି
ଭାରତର ନିଜତ୍ୱ କିଛିହିଁ ଆଉ ନାହିଁ । ୫୭
ବିଦେଶୀ ଦର୍ପଣେ ସଦା ଦେଖୁଅଛି ମୁଖ
ବାରି ପାରୁନାହିଁ କିସ ସୁଖ ଅବା ଦୁଃଖ । ୫୮
ଶିକ୍ଷିତ ଲୋକଙ୍କଠାରେ ଏ ରୋଗ ଅଧିକ
ଅଶିକ୍ଷିତ ଜାଣିଶୁଣି ଅଟଇ ମୂରୁଖ । ୫୯
ବିଦେଶୀ ଶିକ୍ଷାରେ ଯେହୁ ହୋଇଲେ ଶିକ୍ଷିତ
ଆଗ ହରାଇ ବସିଲେ ନିଜର ନିଜତ୍ୱ । ୬୦
ମୌଳିକ ଚିନ୍ତା ଧାରଣା କରି ନ ପାରନ୍ତି
ବିଦେଶୀ ଭାବକୁ ସଦା ନକଲ କରନ୍ତି । ୬୧
ଏହି ମହା ବ୍ୟାଧି ଘୋଟିଅଛି ଭାରତରେ
କେ ଔଷଧି ଦେଇ ରୋଗ ଭଲ କରିପାରେ ।
ଗଣତନ୍ତ୍ର ଶାସନରେ ଅଛି ବହୁଦୋଷ
ତହିଁକି ପାତର ନୁହେଁ ଏ ଭାରତ ଦେଶ । ୬୩
ଜାତୀୟ ଜୀବନ କଥା ବିଦେଶୁ ଆସିଛି
ଭାରତବାସୀ ମନରେ ଧାରଣା ନୋହୁଛି । ୬୪
ଏକତା ହୋଇବା ତେଣୁ ଅଟେ କଷ୍ଟକର
ବିଭିନ୍ନତା ପ୍ରକୃତି ଅଟଇ ଭାରତର । ୬

ନାନା ଧର୍ମ ନାନା ଜାତି, ନାନା ଭାଷା ଭାବ
ଉଚ୍ଚ ନୀଚ ସ୍ପର୍ଶ୍ୟାସ୍ପର୍ଶ୍ୟ ଅନ୍ତ ନ ମିଳିବ । ୬୬
ଜାତି ଅଭିମାନ ପୂରି ମାନବରେ ରହିଛି
ମାନବ ପ୍ରତି ମାନବ ଘୃଣା କରୁଅଛି । ୬୭
ଶୂଦ୍ର ଛୁଇ ପଡ଼ିଲେ ବ୍ରାହ୍ମଣ ଅପବିତ୍ର
ବୃଥା ଅଭିମାନେ ପୂରିଅଛି ଏ ଭାରତ । ୬୮
କର୍ପୂର ଉଡ଼ି ଯାଇଛି ଅଛି ମାତ୍ର କନା
ଗୁଣ ହରାଇ ସକଳ ହୋଇଛନ୍ତି ପଥବଣା । ୬୯
ଗୁଣ ହେତୁ ଭାରତ ଜଗତ ଗୁରୁ ଥିଲା
ଗୁଣ ହରାଇ ଭାରତ ପରାଧୀନ ହେଲା । ୭୦
ଗୁଣ କର୍ମ ନଷ୍ଟଭ୍ରଷ୍ଟ ହୋଇଲା ଭାରତେ
ବୃଥା ଜାତି ଅଭିମାନ ଖେଳିଲା ପୁରତେ । ୭୧
ମୁଁ ବଡ଼ ମୁଁ ବଡ଼ ହୋଇ ମାତିଲେ ସକଳେ
ଗୁଣ କର୍ମ ମନ ଧ୍ୟାନ ନ ଦେଲେକ ତିଳେ।୭୨
ବ୍ରାହ୍ମଣ କୁଳରେ ଜନ୍ମ ମୁଁ ଅଟେ ବ୍ରାହ୍ମଣ
ନ ଥିଲେ ନ ଥାଉ ପଛେ ବ୍ରାହ୍ମଣର ଗୁଣ ।୭୩
ସକଳ ଭାବର ଏହି ମନୋଭାବ ହେଲା
ଫଳରେ ଭାରତ ଅଧୋଗତି ପ୍ରାପ୍ତ ହେଲା ।୭୪
କାହା ମନ କାଏ ପାଉନାହିଁ ଏ ଭାରତେ
ଗଣତନ୍ତ୍ର ଏକତା ହୋଇବ କେଉଁମତେ । ୭୫
ବିଦେଶୀ ସ୍ରୋତରେ ପଡ଼ି ଭାସି ଯାଉଥିଲା
ଗାନ୍ଧି ସ୍ରୋତମୁଖେ ରହି ପଛକୁ ଠେଲିଲା । ୭୬
ଗାନ୍ଧି ବୋଇଲେ ରହ ହେ ମୋ ଭାରତବାସୀ
ବିଦେଶୀ ସ୍ରୋତରେ ପରା ଯାଉଅଛ ଭାସି ।୭୭
କି ଥିଲ କି ହେଲ ମନେ ଭାବୁନାହଁ ତିଳେ
ଅଜ୍ଞାତରେ ଭାସି ଯାଉଅଛ ଅବହେଳେ । ୭୮
ଭାସିଯାଇ ବିଦେଶୀ ସମୁଦ୍ରେ ବୁଡ଼ିଯିବ
ଉଦ୍ଧାର ପାଇଁକି ଥଳକୂଳ ନ ପାଇବ । ୭୯

ସ୍ୱଦେଶୀ ବ୍ୟାମୋହ କଣ୍ଠରେ ଧୁଆଇଲେ
ଜ୍ଞାନାଞ୍ଜନ ଶଳାକାରେ ଚକ୍ଷୁ ଫିଟାଇଲେ । ୮୦
ଅଳପଲୋକ ବୁଝିଲେ ଗାନ୍ଧି ଜ୍ଞାନଯୋଗ
ଅଧିକାଂଶ ତାଙ୍କାଙ୍କ ଉନ୍ମାଦନା ଭୋଗ । ୮୧
ଗାନ୍ଧି ତପସ୍ୟା ଫଳରେ ମତି ବଦଳିଲା
ଭାରତବାସୀଙ୍କି କିଛି କ୍ଷମତା ମିଳିଲା । ୮୨
କିଛି କ୍ଷମତା ମିଳିଲା ଅଧିକା ମିଳିବ
ନିରାପଦରେ ସେ ସବୁ କିପରି ରଖିବ । ୮୩
ଯାବତ ଗୃହବିବାଦ ଲାଗି ରହିଥିବ
ତାବତ ଶାସନ ଯନ୍ତ୍ର ଚଳି ନ ପାରିବ । ୮୪
ଗୁଣକର୍ମ ଉନ୍ନତିରେ ନ ଦେଲେକ ମନ
ସ୍ୱରାଜ୍ୟ ଲାଭ କଳ୍ପନା କେବଳ ସ୍ୱପନ । ୮୫
ସ୍ୱାଧୀନ ହେବାପାଇଁକି ଯେବେ କର ପଣ
ଅର୍ଜନ କର ଭାଇ ସବୁ ସାଧୁଗୁଣ । ୮୬
ସ୍ୱେଚ୍ଛାଚାରୀ କେବେ କିଛି କରି ପାରଇ
ଆପଣା ଗୋଷ୍ଠିକ ଯେହ୍ନ ଆପେ କାଟୁଥାଇ । ୮୭
ଯାବତ କଂଗ୍ରେସ ଅନୁଷ୍ଠାନରେ ପଶିବ
ତାବତ ତହିଁର ନୀତି ନିୟମ ମାନିବ । ୮୮
ନୀତି ନିୟମକୁ ଯେବେ କେହି ନ ମାନିବ
ଗଣତନ୍ତ୍ର ଶାସନ ବା କିପରି କରିବା । ୮୯
ସୁଭାଷଙ୍କୁ କଂଗ୍ରେସ ଯେପରି ଶାସ୍ତି ଦେଲା
ଅନେକ ବୋଲନ୍ତି ଏହା ଉଚିତ ନ ହେଲା । ୯୦
ଗାନ୍ଧି ବୋଲନ୍ତି ଏ ଶାସ୍ତି ଅଟଇ ବିହିତ
ନିଜେ ସେ ବ୍ୟବସ୍ଥା ଲେଖି ଦେଇଛନ୍ତି ସତ ।
ତାଙ୍କ ମତେ ଶାସ୍ତି ଅଟେ ଅତ୍ୟନ୍ତ କୋମଳ
ଏଥିପାଇଁ କାହା ଏତେ ଲାଗିଛି ଚହଳ । ୯୨
ମୋତେ କହିବାରୁ ମୁଁ ବ୍ୟବସ୍ଥା ଲେଖିଦେଲି
ସେହିପରି କାମ କର କହିଲି ନ ଥିଲି । ୯୩

କାର୍ଯ୍ୟକାରୀ ସମିତି ମାନଟଲ ମାନିଥାନ୍ତା
ନ ମାନଟଲେ ଆନ ପରକାର କରିଥାନ୍ତା । ୯୪
ତାଙ୍କର କର୍ତ୍ତବ୍ୟ ଅଟ୍ଟ ଶୃଙ୍ଖଳା କରିବେ
ନ କରି ଏପରି ଆଜ କ ଅବା କରିବେ । ୯୫
ସୁଭାଷଙ୍କୁ ଶାସ୍ତି ଯେବେ ଖରାପ ଲଗିଲା
ପ୍ରତିକାର ପାଇଁ ଆନ ପନ୍ଥା କ ନ ଥିଲା । ୯୬
ନଖିଳ ଭାରତ ସଭା ଆଗରେ ପକାଇ
ବ୍ୟବସ୍ଥାର ଯଥାଯଥ ବିଚାରନ୍ତେ ନୟି । ୯୭
ସେ ସଭା ଯେବେ ତାହାଙ୍କ କଥା ନ ଶୁଣିବ
କଂଗ୍ରେସ ବଇଠକରେ ଆପତ୍ତି କରିବ । ୯୮
ଏଥିରେ ସୁଭାଷଙ୍କର ମାନହାନି ନାହିଁ
ଏକଥା ନ କରି ଦଳଫଟା ହେଲେ ଯେହି ।୯୯
ଯାବତ ଗୋଟିଏ ଗୋଷ୍ଠି ଭିତରେ ରହିବ
ସେ ଗୋଷ୍ଠି ମାତ୍ର ନିୟମ ଅବଶ୍ୟ ମାନିବ ।୧୦୦
ଯେବେ ମାଝିଙ୍କୁ କେହି ଇଚ୍ଛା ନ କରିବ
ଦଳରୁ ଅଲଗା ହୋଇ ଯା ଇଚ୍ଛା କରିବ ।୧୦୧
ଏ କଥା ସୁଭାଷଙ୍କର ବୁଝିବା ଉଚିତ
ଯାକୁ ତାକୁ ଦୋଷଦେବା ଅଟେ ଅନୁଚିତ ।
ଗାନ୍ଧିଙ୍କ ବଚନ ଶୁଣି ବୋଲନ୍ତି ସୁଭାଷ
ଯାହା ଦଣ୍ଡ ଦେବ ଦିଅ ଦେଖି ଦୋଷାଦୋଷ ।
ଆହୁରି କଠିନ ଦଣ୍ଡ ଦିଅପଛେ ମତେ
ସମରକୁ ଆଗୁସାର ହୁଅ ହେ ତୁରିତେ । ୧୦୪
ଦେଖ ପଶ୍ଚିମ ଦେଶର ଅବସ୍ଥା କେମନ୍ତ
ଜର୍ମାନୀ ଋଷିଆ ମେଣ୍ଟ ବାନ୍ଧିଲେ ଏକନ୍ତ ।୧୦୫
ଛକା ପଞ୍ଝା ଖେଳ ଲଗିଅଛି ସେ ଦେଶରେ
ହିଟଲର କପଟ ଗୁଲଛି ଦେଖ ଥରେ । ୧୦୬
କଉଶଳ ଛଳ କପଟରେ କରେ କାମ
ଗୁହୁଁ ଗୁହୁଁ କେତେ ଦେଶ ନେଇଗଲା ପୁଣ ।

ଇଂରେଜ ଏ ବେଳେ ହୋଇଲେଣି ଏକୁଟିଆ
କୁହୁଳି ଉଠୁଛି ଯେମେ ଯେମେ ଯୁଦ୍ଧ ନିଆଁ ।୧୦୮
ଏତକବେଳ ସୁବିଧା ନେଇ ଏ ଭାରତ
ତହିଁପାଇଁ ଦେଶବାସୀ ହେଲେଣି ପ୍ରସ୍ତୁତ ।୧୦୯
ଗାନ୍ଧି ପ୍ରଭୃତି ନେତାଏ ହୁଅ ଅଗ୍ରସର
ପୂର୍ଣ୍ଣ ସ୍ୱାଧୀନ ହୋଇବ ଭାରତ ନିକର ।୧୧୦
ଏପରି କଲେ ସକଳ ବିବାଦ ତୁଟିବ
ମୁହୂର୍ତ୍ତକେ ସବୁ ଦଳ ମିଳାମିଶି ଯିବ ।୧୧୧
ହିଟ୍‌ଲର ଗାନ୍ଧି ମତ ପୁରା ବିପରୀତ
ହିଂସା ଅହିଂସା ଭିତରେ ଯେତିକି ତଫାତ ।
ଗାନ୍ଧିଙ୍କ ଅହିଂସା ମତ ଜଗତ ବିଖ୍ୟାତ
ସତ୍ୟ ପଛେ ଧାଇଁଛନ୍ତି ମହାତ୍ମା ନିୟତ ।୧୧୩
ହିଂସା ଅସତ୍ୟ ପଥରେ କେବେ ସେ ନ ଯିବେ
ସୁଭାଷ ଏ ଆଶା କମା କରୁଅଛ ଏବେ ।୧୧୪
ଏହି କାରଣରୁ ମତଭେଦ ସୃଷ୍ଟି ହେଲା
ହିଂସାନୀତି ଗାନ୍ଧିଙ୍କର ପସନ୍ଦ ନ ହେଲା ।୧୧୫
ସୁଭାଷ ଏ ଶାସ୍ତି ନିଜ ହାତେ ଅରଜିଲେ
କାର୍ଯ୍ୟକାରୀ ସମିତିର କଥା ନ ମାନିଲେ ।୧୧୬
ସମିତି ବୋଇଲା ତୁମ୍ଭେ ସେନାପତି ହୁଅ
ତୁମ୍ଭ ଇଚ୍ଛାରେ ତୁମ୍ଭର ସଙ୍ଗୀ କର୍ମୀ ନିଅ ।୧୧୭
ସେ କଥା ନ କରି ଯେବେ ପଛଘୁଞ୍ଚା ଦେଲ
ପୁଣି କାହିଁକି ପଛରେ ଏ ସୁଆଙ୍ଗ କଲ ।୧୧୮
ଗାନ୍ଧିଙ୍କର ହିଂସା ମତ ନୁହଇ ଧରମ
କରି ନ ପାରନ୍ତି କେବେ ସେ ହିଂସା କରମ ।
ଜୀବନବ୍ୟାପି ସାଧନା ଅଛି ତାହାଙ୍କର
ଅନ୍ତରାତ୍ମା ନିର୍ଦ୍ଦେଶରେ କରନ୍ତି ସକଳ ।୧୨୦
ସତ୍ୟ ଅହିଂସା ଧରମ ସେହୁ ଆଚରନ୍ତି
ଶତ୍ରୁ ମିତ୍ର ନ ବିଚାରି ସତ୍ୟ କହୁଥାନ୍ତି ।୧୨୧

ଅସତ୍ୟ କଥା ମନରେ ନ ଦିଅନ୍ତି ସ୍ଥାନ
ନିର୍ମଳ ଅନ୍ତଃକରଣ ପ୍ରସନ୍ନ ବଦନ । ୧୨୨
କେଜାଣି କି ଶକ୍ତି ଅଛି ତାହାଙ୍କ ବଚନେ
ଦେଶ ବିଦେଶରେ ମାନୁଛନ୍ତି ଗୁଣିଜନେ ।୧୨୩
ବୃଦ୍ଧ, ଶିଶୁ ତୁଲ୍ୟ ତାଙ୍କୁ ମାନନ୍ତି ବିଦେଶେ
ଯେତେ ଶତ୍ରୁ ହେଉ ସେହୁ କଥା ଶୁଣି ଲସେ ।
ଯେଉଁମାନେ ତାଙ୍କ କଥା ମାନି ଚଳୁଛନ୍ତି
ଗାନ୍ଧିବାଦୀ ବୋଲି ଲୋକେ ତାଙ୍କୁ କହୁଛନ୍ତି ।
ଦେଶକାଳ ପାତ୍ର ଜାଣି କାମ କରୁଛନ୍ତି
ଉକାଉକା ବାହାପିଆ କଥା ନ କହନ୍ତି ।୧୨୬
ଯେତେ ବଡ଼ ପ୍ରିୟ ଲୋକ ହେଲେ ତାହାଙ୍କର
ଦୋଷ ଦେଖିଲେ ପ୍ରତ୍ୟକ୍ଷ କହନ୍ତି ନିକର ।
ଏକଛତ୍ର କର୍ତ୍ତା ଜଣେ ଗାନ୍ଧି ତୁଲ୍ୟ ହେବ
ସେହି ଏକା ଭାରତକୁ ଉଦ୍ଧାର କରିବ । ୧୨୮
ବିପ୍ଳବରେ ହେବ ନାହିଁ ଭାରତ ଉଦ୍ଧାର
ବିପ୍ଳବ ପାଇଁ କି ଶକ୍ତି ଅଛି କି ଦେଶର ।୧୨୯
ହିଂସା ବିପ୍ଳବ ଅଗ୍ନିରେ ଯେବେ ଝାସ ଦେବ
ଝିଡ଼ିପୋକ ପରି ମୁହୂର୍ତ୍ତକେ ନାଶ ଯିବ ।୧୩୦
ଧର୍ମ ବଳ କୁଇନ୍ତାକୁ ଥିଲାପରି ଜଣା
ଗାନ୍ଧି ଦେଶବଳ ଜାଣେ କରିଛି କାମନା ।୧୩୧
ତେଣୁ କହୁଛନ୍ତି ସତ୍ୟାଗ୍ରହ ଯୁଦ୍ଧ ପାଇଁ
ଭାରତ ଆଜ ଅବଧି କ୍ଷମ ହୋଇନାହିଁ । ୧୩୨
ତାଙ୍କ କଥାକୁ ନ ମାନି କଲେ ଗଣ୍ଡଗୋଳ
ଭାରତବାସୀର କେବେ ନ ହେବ ମଙ୍ଗଳ ।୧୩୩
ଯାହା କଲେ ଭାରତର ମଙ୍ଗଳ ହୋଇବ
ଦେଶକାଳ ଜାଣି ଗାନ୍ଧି ସକଳ କରିବ ।୧୩୪
ସତ୍ୟାଗ୍ରହ ସମରର ଗାନ୍ଧି ଯେ ଜନକ
ତାଙ୍କଠାରୁ ଏକଥା ଶୁଣିଲେ ଆନଲୋକ ।୧୩୫

ସତ୍ୟାଗ୍ରହ ପାଇଁ ଡ଼ର ନାହିଁ ତାହାଙ୍କର
ଦୋଷାରୋପ କରନାହିଁ ବୃଥାରେ କେବଳ ।
ଭାରତ ମଙ୍ଗଳ ପାଇଁ ଯାହା ଯେତେବେଳେ
ଆବଶ୍ୟକ ପଡ଼ିବ ସେ କରିବେଟି ହେଲେ ।୧୩୭
ତାହାଙ୍କଠାରେ ବିଶ୍ୱାସ ରଖି କାମ କର
ପ୍ରୟୋଗ କରିବେ ବଳେ ଉଦ୍ଧାର ମନ୍ତ୍ର ।୧୩୮
ଯେ ଯେତେ ପାରୁଛ ବଚନରେ ଯାଅ କହି
ଗାନ୍ଧି ତୁଲ୍ୟ ସାଧକ କାହାକୁ ଦେଖୁନାହିଁ । ୧୩୯
ଧାନ ଜଗବନ୍ଧୁ ବୋଲେ ମୋ ଦୋଷ ନ ଘେନ
ଏକଥା କହିଲି ଯାହା କହିଲା ମୋ ମନ ।୧୪୦
ଇତି ଶ୍ରୀ ଭାରତ-ଚରିତାମୃତେ କଂଗ୍ରେସ ପରିସ୍ଥିତି ବର୍ଣ୍ଣନେ ଛୟାଅଶୀ ଅଧ୍ୟାୟଃ ।



# ସତାଅଶୀ ଅଧ୍ୟାୟ

ଶୁଣନ୍ତୁ ସୁଜନେ ଜନେ ଅପୂର୍ବ ଚରିତ
ଦଳାଦଳି କନ୍ଦଳରେ କମ୍ପୁଛି ଭାରତ । ୧
ଏହି କାଳେ ଇଉରୋପେ ଲାଗିଲା ସମର
ଜର୍ମାନୀ ଚଢ଼ାଉ କଲା ପୋଲାଣ୍ଡ ଉପର । ୨
ଜାପାନ ସଙ୍ଗେ ଚୀନ କରୁଛି ଲଢ଼ାଇ
କେତେକାଳ ହେଲା ଯୁଦ୍ଧ ଶେଷ ହୋଇନାହିଁ ।
ପୋକ ମାଛି ପରି ଲୋକ ମରୁଛନ୍ତି କେତେ
ମଣିଷ ମାରିବା ଲୀଳା ଲାଗିଛି ଜଗତେ । ୪
ପୋଲାଣ୍ଡ ନାମରେ ଖଣ୍ଡେ ଶ୍ରେଷ୍ଠ ରାଜ୍ୟ ଥିଲା
ଜର୍ମାନୀ ନଜର ତାହା ଉପରେ ପଡ଼ିଲା । ୫
ଜର୍ମାନୀ ରୁଷିଆ ଅଧୀନରେ ଆଗେ ଥିଲା
କେତେ କାଳ ହେଲା ସେ ସ୍ୱାଧୀନ ହୋଇଥିଲା ।

ଜର୍ମାନୀ ଶାସକ ହିଟିଲରଙ୍କର ପଣ
ଯେଉଁ ଯେଉଁ ରାଜ୍ୟ ଥିଲା ଜର୍ମାନୀ ଅଧୀନ । ୭
ସେ ରାଜ୍ୟମାନଙ୍କୁ ସେହି କରିବ ଅଧୀନ
ରାଜରେ ନ ହେଲେ ବଳେ କରିବ ହରଣ । ୮
ଏହି ବଳେ କେତେ ଖଣ୍ଡ ରାଜ୍ୟ ମାରି ନେଲା
ପୋଲଣ୍ଡ ଉପରେ ଏବେ ଆଖି ପକାଇଲା । ୯
ରୁଷିଆ ଜାର୍ମାନୀ ଦୁହେଁ ଏକମେଣ୍ଟ ହେଲେ
ପୋଲଣ୍ଡ ଉପରେ ଦୁହେଁ ଆକ୍ରମଣ କଲେ ।
ଏହା ଦେଖି ଫ୍ରାନ୍‌ସ ବ୍ରିଟିଶ ଯୋଗଦେଲେ
ପୋଲଣ୍ଡକୁ ସାହା ହେବେ ବୋଲି ପଣକଲେ ।
ଏଣୁ ମହା ଘୋର ଯୁଦ୍ଧ ଆରମ୍ଭ ହୋଇଲା
ଇଉରୋପେ ସମରାଗ୍ନି ପ୍ରଜ୍ୱଳିତ ହେଲା । ୧୨
ତାଣ୍ଡବ ନୃତ୍ୟ ଆରମ୍ଭ କଲେ ରଣ ଚଣ୍ଡୀ
ଲହ ଲହ ଜିହ୍ୱାକରି ପକାନ୍ତି ଦଗଣ୍ଡି । ୧୩
ଜଳ ସ୍ଥଳ ଆକାଶ ମଣ୍ଡଳେ ଗତି କରି
ମଣ୍ଡି ପକାଇ ସକଳ ଦେଲେ ଧ୍ୱଂସ କରି ।୧୪
ପୂର୍ବକାଳେ ଖଣ୍ଡା ଖରପର ଧରିଥିଲେ
ସେ ଅସ୍ତ୍ର ଗୁଡ଼ି ଏ କାଳେ ଅଗ୍ନି ଆଶ୍ରାକଲେ ।
ନାନା ପ୍ରକାର ଆଗ୍ନେୟ ଅସ୍ତ୍ର ଧରି କରେ
ଧ୍ୱଂସ ଲୀଳା କରୁଛନ୍ତି ପ୍ରଚଣ୍ଡ ବେଗରେ । ୧୬
ଉପରୁ ଆଗ୍ନେୟ ଗୁଳା ଦିଅନ୍ତି ପକାଇ
ଗ୍ରାମ ନଗରମାନଙ୍କୁ ଦିଅନ୍ତି ପୋଡ଼ାଇ । ୧୭
କେତେ ସମୃଦ୍ଧ ନଗର ଗ୍ରାମ ଉପବନ
ମୁହୂର୍ତ୍ତକେ ଅଗ୍ନି ମୁଖେ ହୁଅଇ ଦହନ । ୧୮
ନରନାରୀ ଶିଶୁ ଯୁବା ପଶୁ ଆଦି କେତେ
ମୁହୂର୍ତ୍ତକେ ମୃତ୍ୟୁ ମୁଖେ ପଡ଼ନ୍ତି ସମସ୍ତେ । ୧୯
ବହୁତ ଆକାର ତୋପ ଗୁଳିଗୁଳା ମାନ
ମହାଭୟଙ୍କର ଅସ୍ତ୍ର ସାକ୍ଷାତ ସମନ । ୨୦

ବୁଡ଼ା ଜାହାଜରେ ବସି ସାଗର ଭ୍ରମଇ
ମୁହୂର୍ତ୍ତକେ ଧ୍ୱଏ କେତେ ଜାହାଜ ବୁଡ଼ାଇ ।
ମଣିଷ ମାରିବା ଯନ୍ତ୍ର ସରଜ ବହୁତ
ବିଜ୍ଞାନ ବଳରେ ରଣଚଣ୍ଡୀ ଉନମତ । ୨୨
ଅହରହ ଚିନ୍ତା ତାର କି କରି କରିବ
ଅଳପ ଆୟାସେ ବହୁ ମଣିଷ ମାରିବ । ୨୩
ବିଜ୍ଞାନ ବଳରେ କରେ ନାନା ଉଦ୍ଭାବନ
ନବ ନବ ମାରଣାସ୍ତ୍ର କରେ ସ୍ୱରଜନ । ୨୪
ମହାଭାରତ ସମରେ ମାତି ଗଲା କାହିଁ
ମଲ୍ଲଯୁଦ୍ଧ ସମ୍ମୁଖ ସମର ଦେଖା ନାହିଁ । ୨୫
ଏକାଳ ସମର ମାତି ଆନ ପରକାର
ଅନାୟତ୍ତେ ଅଜାଣନ୍ତେ ମରିବେ ସକଳ । ୨୬
ପଳାଇ ଯିବାକୁ କେହି ରାହା ନ ପାଇବ
ଉପରୁ ଆଗ୍ନେୟ ଗୁଳା ଖସି ପଡୁଥିବ । ୨୭
ପଡ଼ିବା ମାତ୍ରକେ ଫୁଟି ଅଗ୍ନି ବାହାରିବ
ଗୃହଁ ଗୃହଁ ଧନ ଜନ ଭସ୍ମ ହୋଇଯିବ । ୨୮
ବିଷାକ୍ତ ବାଷ୍ପୀୟ ଗୁଳା ପଡ଼ି ଫାଟିଯିବ
ବିଷାକ୍ତ ବାଷ୍ପ ବାହାରି ଅଜ୍ଞାନ କରିବ । ୨୯
ଯେତେ ମଣିଷଙ୍କୁ ମାରିପାରେ କଉଣଲେ
ବିଜୟ ପତାକା ତାର ଉଡ଼ିବ ଅଚିରେ । ୩୦
ଏହି ମାତିରେ ହେଉଛି ଏ କାଳେ ସମର
ଶୁଣିଲେ ବିସ୍ମୟ ଜାତ ହୋଇବ ନିକର । ୩୧
ଲୋମ ହରଷଣ କାଣ୍ଡ ଲଗିଛି ସେ ଦେଶେ
ସକଳେ ଜଡ଼ିତ ହୋଇଛନ୍ତି ଲୋଭ ପାଶେ ।୩୨
ଈଶ୍ୱର ଅଛନ୍ତି ବୋଲି କାର ଜ୍ଞାନ ନାହିଁ
ମରୁଛନ୍ତି ସର୍ବେ ବଳ କଷାକଷି ହୋଇ । ୩
ମୁଁ ବଡ଼ ମୁଁ ବଡ଼ ବୋଲି ଉଠେ ମହାରୋଳ
'ମୋର ହକ ତମାତେ ଧିଅ ଡ଼ାକେ ଛିଟିଲର ।

ଇଂରେଜ ଅଟନ୍ତି ଆମ ଭାରତର ରାଜା
ଉଚ୍ଚସ୍ୱରେ ଡାକୁଛନ୍ତି ଆସ ମୋ ପରଜା । ୩୫
ଧନ ଜନ ଦେଇ ଏ କାଳରେ ସାହା ହୁଅ
ଦେଖ ଜରମାନୀ ଅଟେ କେଡ଼େ ନରଦସ୍ୟୁ ।୩୬
ନିର୍ଦ୍ଦୋଷୀ ପୋଲାଣ୍ଡ ତାର ନାହିଁ କିଛି ଦୋଷ
ଜର୍ମାନୀ ବସିଛି ତାକୁ କରିବାକୁ ଗ୍ରାସ । ୩୭
ଆଜ ଯେବେ ଜରମାନୀ ପୋଲାଣ୍ଡକୁ ନେବ
ସଂସାରେ ଧର୍ମ ନ୍ୟାୟର ନାହିଁ ଆଉ ଠାବ ।୩୮
ଗଣତନ୍ତ୍ର ଶାସନର ଆଉ ସ୍ଥାନ ନାହିଁ
ସ୍ୱାଧୀନତା ଧନ ଆଉ ନ ପାଇବେ କେହି ।୩୯
ପଶୁବଳ ଅତ୍ୟାଚାର ହେବ ଏକାସାର
ଦୁର୍ବଳ ହେବ ଯେ ରାଜ୍ୟ ସ୍ଥାନ ନାହିଁ ତାର ।୪୦
ଜର୍ମାନୀ ସଙ୍ଗରେ ଯେହୁ ଲଢ଼ି ନ ପାରିବ
ଆତ୍ମ-ସମର୍ପଣ କରି ତା ଅଧୀନ ହେବ । ୪୧
ଜର୍ମାନୀର ଗର୍ବ ଖର୍ବ ନ ହୋଇବ ଯେବେ
ମନୁଷ୍ୟ ଜାତିର ସୁଖ ଶାନ୍ତି ନାହିଁ କେବେ ।୪୨
ଜର୍ମାନୀର ଅଧରମ ଅବସ୍ଥର ମତି
ସମୂଳେ ବିନାଶ ପାଇଁ ଏ ଇଂରେଜ ଜାତି ।୪୩
ଏ ସମରେ ବାଧ୍ୟ ହୋଇ କରୁଛନ୍ତି ଲଢ଼ାଇ
ଭାଙ୍ଗିବାକୁ ଜର୍ମାନୀର ଅଯଥା ବଡ଼ାଇ । ୪୪
ଭାରତର ବଡ଼ଲାଟ ଗାନ୍ଧିଙ୍କି ଡକାଇ
କହିଲେ ସକଳ କଥା ତାଙ୍କୁ ସମଜାଇ । ୪୫
ଭାରତବାସୀ ଏକାଳେ ସବୁ ସାହା ହୁଅ
ଧନ ଜନ ଯାହା ଲୋଡ଼ା ତାହା ସବୁ ଦିଅ । ୪୬
ଏ ସମର ଅନଳ କ୍ରମରେ ବ୍ୟାପି ପାରେ
ନିରାପଦ ନୋହିବ ଭାରତ ସେ କାଳରେ । ୪୭
ଭାରତ ରକ୍ଷାପାଇଁ କି ଆମ୍ଭେ ଅଟୁଁ ଦାୟୀ
ତେଣୁ ତୁମ୍ଭେମାନେ ସାହା ହୁଅ ବଳଦେଇ ।୪୮

ଦେଖ ଜର୍ମାନୀ କରୁଛି କେଡ଼େ ଅବଚ୍ଚର
କହିଲୁଁ ଯୁଦ୍ଧ ନ କର ତାକୁ ବାର ବାର ।୪୯
ପଞ୍ଚାୟତ କରି କଥା ନିଶାପ କରିବା
ଲୋକ କ୍ଷୟକାରୀ ଯୁଦ୍ଧ କମାଇ କରିବା । ୫୦
ନ ଶୁଣିଲା ହିଟିଲର ଯୁଦ୍ଧେ କଲା ମନ
ବିଚାରିଲା ପଶୁବଳ ଅଟଇ ପ୍ରଧାନ । ୫୧
ମାରିଲା ଘରରେ ଭୂତ ପଶେ ନାହିଁ କେବେ
ଏହି ମାତ୍ର ଧରିଅଛି ସଦର୍ପେ ଗରବେ । ୫୨
ନ୍ୟାୟବାନୀ ଧରି ଆମ୍ଭ ଜାତି ଠିଆ ହେଲା
ବାଧହୋଇ ପୋଲାଣ୍ଡ ପକ୍ଷରେ ଯୋଗ ଦେଲା ।
ଭାରତର ସ୍ୱତ୍ୱସଙ୍ଘ ସମସ୍ୟା ଏ କାଳେ
ବନ୍ଦ ରହୁ ପୁଣି ବିଚାରିବା ବେଳ କାଳେ ।୫୪
ଗାନ୍ଧି ବୋଇଲେ ସେ କଥା ମୁଁ ସିନା କହିବ
ସମଗ୍ର ଭାରତ କଥା କହି ନ ପାରିବ । ୫୫
ନ୍ୟାୟଦଣ୍ଡି ଧରି ତୁମ୍ଭେ କରୁଛ ସମର
ମୋର ନିଜ ମତ ତୁମ୍ଭ ପକ୍ଷରେ ନିକର । ୫୬
କଂଗ୍ରେସର ମତ ଗତି କହି ନ ପାରିବ
ପରାମର୍ଶ କରି ପରେ କଥା ଜଣାଇବ । ୫୭
ଏହା କହି ଗାନ୍ଧି ପୁଣ ସେଠାରୁ ଫେରିଲେ
ହିଟିଲରଠାକୁ ଏକ ପତ୍ର ପଠାଇଲେ । ୫୮
ଜାଣୁଛି ତୁମ୍ଭେ ମୋ କଥା କେବେ ନ ଶୁଣିବ
ତଥାପି ଲେଖୁଛି ଛାଡ଼ ଏ ଦମ୍ଭ ଗରବ । ୫୯
ପଞ୍ଚାୟତ ନିଶାପରେ ଏ କଥା ପକାଅ
ଅକାରଣ କରନାହିଁ କାଣ୍ଡ ଭୟାବହ । ୬୦
ୱାର୍ଦ୍ଧାଠାରେ କଂଗ୍ରେସର ବଇଠକ ହେଲା
ସକଳ ମତବାଦଙ୍କୁ ଡ଼କରା ପଡ଼ିଲା । ୬୧
ଜବାହରଲାଲ ସୁଭାଷ ସେଠାକୁ ଗଲେ
ଯୁଦ୍ଧ ବିଷୟରେ ବହୁ ଆଲୋଚନା କଲେ ।୬୨

ଭାରତର କି କର୍ତ୍ତବ୍ୟ ଅଛି ଏ ସମୟରେ
ବିନା ସର୍ତ୍ତରେ ଯୋଗ ଦେବ କି ଏଥିରେ ।
ଗାନ୍ଧି ତାଙ୍କ ମତ ଯାହା କହିଲେ ସକଳ
ବିଶ୍ୱର ଲାଗିଲା ସାତ ଆଠଦିନ କାଳ । ୭୪
ନିର୍ଦ୍ଦିଷ୍ଟ ଭାବରେ କିଛି ହେଲା ନାହିଁ ସ୍ଥିର
ଲାଗିଲା ତୁମୁଳ ଘମାଘୋଟିଆ ବିଶ୍ୱର । ୭୫
ଜହରଲାଲ ସଙ୍ଗରେ ହୋଇଲେ ଅଗ୍ରଣୀ
କାର୍ଯ୍ୟକାରୀ ସମିତିର ସଭ୍ୟ ହେଲେ ପୁଣି ।୭୬
ଲେଖି ଏକ ଚିଠାକରି କଲେକ ପ୍ରକାଶ
ସେହି କଥାରେ ମଙ୍ଗିଲେ ସଭ୍ୟ ଅଧିକାଂଶ ।୭୭
ବିନା ସର୍ତ୍ତେ ଭାରତ ଯୋଗ ଦେବ ନାହିଁ
ଗାନ୍ଧିଙ୍କ ଏ ମତକୁ ମଙ୍ଗିଲେ ନାହିଁ କେହି ।୭୮
ବୋଇଲେ ଇଂରେଜ ଜାତି କହନ୍ତୁ ଫିଟାଇ
କି ମତରେ ଏ ସମର କରୁଛନ୍ତି ସେହି । ୭୯
ଗଣତନ୍ତ୍ର ଶାସନର ମର୍ଯ୍ୟାଦା ରଖିବେ
ସାମ୍ରାଜ୍ୟବାଦ ବିରୁଦ୍ଧେ ଲଢ଼ାଇ କରିବେ ।୮୦
ଏଥିର ମରମ କିଛି ଜଣାଗଲା ନାହିଁ
ଭାରତ ପ୍ରତି ଏ ମତ କିପରି ଖଟଇ । ୮୧
ପୂର୍ଣ୍ଣ ଗଣତନ୍ତ୍ରବାଦ ଭାରତରେ ନାହିଁ
ବୋଲୁଛ ଭାରତ ଦେଶ ବିଦ୍ରୋହୀ ଅଟଇ ।୮୨
ଯୁଦ୍ଧ ହେବ ବୋଲି ନାନା କଟକଣା କଲ
ନୂଆ ନୂଆ ଆଇନ କେତେକ ଜାରି କଲ ।
ଭାରତବାସୀଙ୍କ ଦାବି କିଛି ନ ଶୁଣିଲ
ଯୁଦ୍ଧ ବ୍ୟସ୍ତ ମନ ଇଚ୍ଛା ମୁତାବକ କଲ ।୮୪
ତେଣୁ ସେ ସଙ୍ଗ କଂଗ୍ରେସ ସଭ୍ୟମାନେ ଯେତେ
ଯାଉ ନାହାନ୍ତି ସଙ୍ଗକୁ ଅଛନ୍ତି ନିର୍ଲିପ୍ତେ ।୮୫
ଭାରତ ଭାଗ୍ୟ ବିଧାତା ନୁହଇ ଭାରତ
ତହିଁ ଲାଗି ବୋଲି ଯେ ଭାରତ ଅସମର୍ଥ । ୮୬

ଭାରତ ଆଇନ ଏବେ ସଂଶୋଧନ କଲ
ଭାରତବାସୀଙ୍କି ପଦେ ପଚ୍ଛରି ନ ନେଲ ।୭୭
ଭାରତ ପାଇଁ ଭାରତ ଆଇନ ଗଢ଼ିବା
ଏକଥା ତବ ବିଚାରେ ହେଲା ଅସମ୍ଭବ । ୭୮
ଏପରି ଅବସ୍ଥା ଭୋଗୁଅଛି ଏ ଭାରତ
ଗଣତନ୍ତ୍ର ନିୟମେ ସେ ନ ହୁଏ ଶାସିତ । ୭୯
ଗଣତନ୍ତ୍ର କସ ତାର ମର୍ଯ୍ୟାଦା ବା କସ
ଭାରତ ଏଥିର ମର୍ମ ବୁଝି ନାହିଁ ଲେଶ । ୮୦
ଛିନ୍ନ ଭିନ୍ନ କରି ତେଣୁ ଦିଅ ହେ ବୁଝାଇ
କାହିଁକି ଇଂରେଜ ତୁମ୍ଭେ କରୁଛ ଲଢ଼ାଇ ।୮୧
ମନ ଖୋଲି କଥା କହ ତେବେ ବୁଝାପିବ
ପରେ ଭାରତବାସୀ ତା କର୍ତ୍ତବ୍ୟ କରିବ ।
କଂଗ୍ରେସ ବଇଠକରେ ଏହି କଥା ହେଲା
କି କରିବ ଭାରତ ସେ ଠିକଣା ନ ହେଲା ।୮୩
ଗାନ୍ଧି ବୋଇଲେ ମୋ କଥା କେହି ନ ମାନିଲେ
ବିନା ସରତେ ସାହାଯ୍ୟ କେବେ ନ ମିଳିଲେ ।
ମତେ ଏକୁଟିଆ କରିଦେଲେ ଏ କଥାରେ
ଜହରଲାଲ ଅଗ୍ରଣୀ ଥିଲେ ଏ ସଭାରେ । ୮୫
ଏବେ ତ ଜହରଲାଲ ଇଂରେଜଙ୍କ ପ୍ରିୟ
ଇଂରେଜ ଚାଲିଚଳନେ ଦକ୍ଷ ସେ ନିଶ୍ଚୟ ।୮୬
ଇଂରେଜଙ୍କ ଭାବଭଙ୍ଗି ତାଙ୍କୁ ଲାଗେ ସୁଖ
ଭାରତ ଭାବ ଭଙ୍ଗିରେ ବେଶି ସେ ବିମୁଖ ।୮୭
ସେ ତ ଏପରି କହିଲେ ଇଂରେଜଙ୍କ ପ୍ରତି
ସେହି କଥା ଶୁଣି ସଭାଜନେ ହେଲା ପ୍ରୀତି । ୮୮
ସାମ୍ରାଜ୍ୟବାଦୀ ନୀତିର ବିରୋଧୀ ଭାରତ
ଗଣତନ୍ତ୍ର ସପକ୍ଷରେ ହେଲା ତାଙ୍କ ମତ । ୮୯
ଯୁଦ୍ଧ ଫଳେ ସାମ୍ରାଜ୍ୟବାଦର ଯେବେ ଜୟ
ଭାରତ ତହିଁ ଅଲଗା ରହିବ ନିଶ୍ଚୟ । ୯୦

ସ୍ୱାଧୀନ ଗଣତନ୍ତ୍ରର ପକ୍ଷପାତି ସେହୁ
ଏ ବିଶ୍ୱ ସଂସାରେ ଏହି ନୀତି ରକ୍ଷା ହେଉ ।୯୧
ଭାରତ ଯେବେ ସ୍ୱାଧୀନ ହୋଇ ନ ପାରିବ
ଏତେ ଲଢେଇ କାମରେ ସେ କମ୍ପା ପଶିବ ।୯୨
ତାର ଦଶା ଯଥାତଥା ରହିବଟି ଯେବେ
ସେ କମ୍ପା ପରିଣ ଦେବ ଏ ମହା ଅହବେ ।୯୩
ଭାରତର ଇଚ୍ଛା ସର୍ବେ ହୁଅନ୍ତୁ ସ୍ୱାଧୀନ
କେଉଁ ଜାତି ନ ରହନ୍ତୁ କାହାର ପରାଧୀନ । ୯୪
କେଉଁ ଜାତି ଅର୍ଥ କେହୁ ଶୋଷଣ ନ କରୁ
କେଉଁ ଜାତି ନ ରହୁ ଏ ଜଗତରେ ଭୀରୁ ।୯୫
ସକଳ ବସୁଧା ଅଟେ କୁଟୁମ୍ବ ଆମ୍ଭର
ଏ ନୀତିରେ ଏ ଜଗତ ହେଉ ଚଳାଚଳ । ୯୬
ସବୁଜାତି ସୁଖୀ ହୋଇ କଟାନ୍ତୁ ଜୀବ
ସୋଦର ଭାବରେ ସର୍ବେ ରହନ୍ତୁ ସ୍ୱାଧୀନ ।୯୭
ଏ ସମଦରଶୀ ନୀତି ଅଟେ ଭାରତର
କାହା ପ୍ରତି କେହି ବଳ ପ୍ରୟୋଗ ନ କର ।୯୮
କେହି ଯେବେ ଏ ନୀତିରୁ ହେବ ବିଚଳିତ
ତା ବିରୁଦ୍ଧେ ଏ ଭାରତ ଲଢିବ ନିଶ୍ଚିତ । ୯୯
ଏହି ମହା ନୀତି ଧରି ଯେତେ କାମ ହେବ
ମନ ପ୍ରାଣ ଲଗାଇ ଏ ଭାରତ ଲଢ଼ିବ । ୧୦୦
ପୁଣି ସମିତି ବୋଇଲେ ଭାରତ ରାଜନ
ତୁମ୍ଭେମାନେ ବୋଲୁଛ ସହାୟ ହେବ ପୁଣ ।
ଧନ ଜନ ଦେଇ ଇଂରେଜଙ୍କ ସାଥି ହେବ
ଗଣତନ୍ତ୍ର ସପକ୍ଷରେ ସମରେ ଲଢିବ । ୧୦୨
ଗଣତନ୍ତ୍ର ଗଣତନ୍ତ୍ର ବୋଲୁଛ ମୁଖରେ
ଗଣତନ୍ତ୍ର ଅଛି କହେ ତବ ରାଇଜରେ । ୧୦୩
ଆଗେ ଗଣତନ୍ତ୍ର ତବ ରାଜ୍ୟରେ ଚଳାଅ
ଏକ ଛତ୍ରବାଦ ତବ ରାଜ୍ୟରୁ ଉଠାଅ । ୧୦୪

ତେବେ ଏକଥା କହିଲେ ସୁନ୍ଦର ଦିଶିବ
ପରୋପଦେଶେ ପାଣ୍ଡିତ୍ୟ ଅସୁନ୍ଦର ହେବ ।୧୦୫
ଜର୍ମାନୀ ଜାପାନ ଅବା ଆନ ଦେଶ ଲୋକ
ଭାରତ ଲୋକେ ନୁହନ୍ତି କାହାରି ବିପକ୍ଷ ।୧୦୬
ମାତ୍ର ନ୍ୟାୟମ ସହିତ ଲଢ଼ାଇ ଆମ୍ଭର
କେଉଁ ଜାତି ନୁହଇ ବଇରୀ ଭାରତର । ୧୦୭
ଭାରତର ଇଚ୍ଛା ସର୍ବେ ହୁଅନ୍ତୁ ସ୍ୱାଧୀନ
ବଳ ପ୍ରୟୋଗରେ କେହି ନୋହୁ କା ଅଧୀନ ।
ହିଂସା ମାତ୍ର ଲୋପ ହେଉ ଏ ବିଶ୍ୱ ଜଗତେ
ଚିର ସୁଖ ଶାନ୍ତି ଭୋଗି ଚଳନ୍ତୁ ସମସ୍ତେ ।୧୦୯
କାହା ନାଯ୍ୟ ଦାବି କେହୁ ନ କରୁ ହରଣ
ସର୍ବେ ନିରାମୟ ହୋଇ କାଟନ୍ତୁ ଜୀବନ ।୧୧୦
ହିଂସା ପ୍ରତିହିଂସା ଭୂତ ପିଶାଚ ସକଳ
ବିନାଶ ଲଭନ୍ତୁ ଜଗତୁ ଇଚ୍ଛା ଏ କେବଳ ।୧୧୧
ହେ ଭାରତବାସୀ ଅନ୍ତର୍ବିବାଦ ତୁଟାଅ
ଏ ବିପଦବେଳେ ସର୍ବେ ଏକମେଳ ହୁଅ ।
ଏକତା ମନ୍ତ୍ରର ଜପି ଦମ୍ଭେ ଠିଆହୁଅ
ଧୀର ସ୍ଥିର ଭାବେ କର ପ୍ରତିଜ୍ଞା ନିଶ୍ଚୟ ।୧୧୩
ଭାରତ ତଥା ଏ ବିଶ୍ୱ ହେଉ ହେ ସ୍ୱାଧୀନ
ଏ ମାତ୍ର ଆମ୍ଭର ସର୍ବେ କର ପାରାୟଣ । ୧୧୪
ଏହା କହି ବଇଠକ ହେଲା ସମାପତ
ଶେଷ ମୀମାଂସା କରୁହିଁ ନ ହେଲା ନିଶ୍ଚିତ ।
ଗାନ୍ଧି ରାଜେନ୍ଦ୍ର, ଜହରଲାଲ ପୁଣି ଯିବେ
ବଡ଼ଲାଟ ସଙ୍ଗେ ପୁଣି ବିଚାର କରିବେ । ୧୧୬
ଇଂରେଜ ଜାତି ଆବର କି ଦେବ ଉତ୍ତର
ତହିଁ ପରେ କି ମୀମାଂସା ହୋଇବ ନିକର ।
ବୋଲେ ଜଗବନ୍ଧୁ ଆହେ ପ୍ରଭୁ ଦଇତାରି
ଏ ବିପଦୁଁ ରକ୍ଷାକର ହେ ଦୁରିତହାରି । ୧୧୮

ଲୋକକ୍ଷୟ ଆବଶ୍ୟକ ପଡ଼ିଛି କି ଏବେ
ପୋକ ମାଛିପରି ଲୋକ ମରନ୍ତି ଆହବେ ।
ତବ ଇଚ୍ଛା ପୂର୍ଣ୍ଣ ହେଉ ଆଉ କି କହିବି
ତବ ପଦେ ସଦା ନିଉଛୁଳି କରୁଥିବି । ୧୨୦

ଇତି ଶ୍ରୀ ଭାରତ-ଚରିତାମୃତେ ଇଉରୋପ ସମର ଚରିତ ବର୍ଣ୍ଣନେ ସତାଅଶୀ ଅଧ୍ୟାୟଃ ।



# ଅଠାଅଶୀ ଅଧ୍ୟାୟ

ଘମାଘୋଟ ବିଗ୍ରହ ଲାଗିଛି ଭାରତରେ
କି କରିବ କଂଗ୍ରେସ ଏ ବିଷମ ବ୍ୟାପାରେ ।୧
କଂଗ୍ରେସ ତା ମନ କଥା ପ୍ରକାଶ କରିଛି
କି କହିବେ ଇଂରେଜ ରୁହିଁ ବସିଅଛି । ୨
ତେଣେ ଭୀମ ଭୟଙ୍କର ହେଉଛି ସମର
ରଣଭେରୀ ତୂରୀ ତାଳ ଉଠେ ବାରବାର । ୩
ରୁଷିଆ ସଙ୍ଗେ ଜାପାନ ବାନ୍ଧିଲାଣି ମେଣ୍ଟ
ପୋଲାଣ୍ଡରେ ଲାଗିଲା ସମର ଘମାଘୋଟ । ୪
ଦଶ ଦିନ ଯୁଦ୍ଧ ପରେ ପୋଲାଣ୍ଡ ହାରିଲା
ରୁହୁଁ ରୁହୁଁ ପୋଲାଣ୍ଡର ନାମ ଲୋପ ହେଲା ।
ପୋଲାଣ୍ଡ ରୁଷିଆ ଯେଉଁ ସନ୍ଧି କରିଥିଲେ
ସେ ସନ୍ଧି ସରତ କଥା ଲୋପ ହେଲା ବଳେ ।୬
ପୋଲାଣ୍ଡର ସରକାର ହାରି ପଳାଇଲେ
ରୋମାନିଆ ରାଇଜରେ ପଳାଇ ପଶିଲେ । ୭
ପୋଲାଣ୍ଡର ରାଜଧାନୀ ଓ୍ୟାରସାଆ ଥିଲା
ରୁଷିଆ ଜର୍ମାନୀ ମିଳି ତାକୁ ଧ୍ୱଂସ କଲା । ୮
ପୋଲାଣ୍ଡର ଶିକ୍ଷା ଶିଳ୍ପ ସଭ୍ୟତା ସକଳ
ଧ୍ୱଂସ ହୋଇଗଲା ସବୁ ଚିହ୍ନ ନାହିଁ ତାଂର । ୯

ଏ ପଟରୁ ରୁଷିଆ ସେ ପଟୁ ଜରମାନୀ
ଦୁଇପଟୁ ଦୁହେଁଯାକ କଲେ ଠଣାଠଣି । ୧୦
ଦୁଇ ବଇରୀ ପ୍ରତାପ ସମ୍ଭାଳି ନ ପାରି
ପୋଲଣ୍ଡର ସରକାର ପଳାଇଲା ଡରି । ୧୧
ରୁଷିଆ ବୋଇଲା ପୂର୍ବ ପୋଲଣ୍ଡ ତ ଗଲା
ସେଠାରେ ଶାନ୍ତି ଶୃଙ୍ଖଳା କିଛି ନ ରହିଲା ।୧୨
ତେଣୁ ରୁଷିଆ ପଶ୍ଚିମ ପଟୁ ଯୋଡ଼ି ଦେଲା
ପୋଲଣ୍ଡରେ ଶାନ୍ତିରକ୍ଷା କରିବ ବୋଇଲା ।୧୩
ରୁଷିଆ ଜର୍ମାନୀ ଗତି ଦେଖି ଆନମାନେ
ଭୟରେ ଶଙ୍କିତ ହୋଇ ରହିଲେଣି ମନେ ।୧୪
ରୁଷିଆକୁ ଲଗି କେତେ ଶ୍ରେଷ୍ଠ ରାଜ୍ୟ ଅଛି
ରୁଷିଆ ପ୍ରତାପ ଦେଖି ଭୟରେ କମ୍ପୁଛି । ୧୫
ରୁଷିଆ ତୁର୍କୀ ମନ୍ତ୍ରୀକି ଡ଼କାଇ ଆଣିଲା
ତାଙ୍କ ସଙ୍ଗେ ମେଣ୍ଟ ବାନ୍ଧିବାକୁ ବେଗ୍ରିଲା ।୧୬
ପୋଲଣ୍ଡକୁ ଦୁଇଭାଗ କରି ବାଣ୍ଟି ଦେବେ
ରୁଷିଆ ଜର୍ମାନୀ ଦୁହେଁ ଅଧେ ଅଧେ ନେବେ ।୧୭
ଏ ବ୍ୟାପାର ଦେଖି ସର୍ବେ ହୋଇଲେଣି ଚକିତ
ଜଗତ ଏ ମାତ ଦେଖି ହେଉଛି ବିସ୍ମିତ । ୧୮
ଜେକୋସ୍ଲୋଭିଆ ନାମରେ ଶ୍ରେଷ୍ଠ ରାଜ୍ୟ ଥିଲା
ରୁଷିଆ ସେ ରାଜ୍ୟ ସଙ୍ଗେ ସନ୍ଧି କରିଥିଲା । ୧୯
ଜର୍ମାନୀ ଭୟ ଦେଖାଇ ତାକୁ ନେଇଗଲା
ରୁଷିଆ ସେ କାଳେ ପଦେ ହେଲେ ନ କହିଲା ।
ଜର୍ମାନୀ ଶାସନକର୍ତ୍ତା ହର ହିଟ୍‌ଲର
ହରଙ୍କ ସମାନ କୋପ ଅଛଇ ତାହାର । ୨୧
ହୁଁକାର ଦେଇ ବୋଲଇ ହୁଅ ସାବଧାନ
ଜର୍ମାନୀରେ ଆଠକୋଟି ଲୋକଛନ୍ତି ଜାଣ । ୨୨
ସେମାନେ ଅବଶ୍ୟ ବଞ୍ଚି ରହିବେ ଜଗତେ
ବଞ୍ଚି ରହିବାକୁ ଇଚ୍ଛା କରନ୍ତି ସମସ୍ତେ । ୨୩

ସେଇଁମାନଙ୍କର ଇଚ୍ଛା କରିବେ ସମର
ଏ କଥାକୁ ସିଉକାର ନ ଥିବ ତାଙ୍କର । ୨୪
ସୁଖ ଲାଗୁ ବା ନ ଲାଗୁ ତାହାଙ୍କୁ ଏ କଥା
ଜର୍ମାନୀ ଲୋକେ ବାଞ୍ଛିବେ ନ ହେବ ଅନ୍ୟଥା ।୨୫
ଗଣତନ୍ତ୍ର ରାଜ୍ୟ କେବେ ନ ଥିଲା ପୋଲାଣ୍ଡ
ଅତ୍ୟାଗୃହରେ ହେଉଥିଲେ ସଦା ଲଣ୍ଡ ଭଣ୍ଡ ।୨୬
ସମାଧାନ କରିବାକୁ ବହୁ ଚେଷ୍ଟା ହେଲା
ପୋଲାଣ୍ଡ କେବେହେଁ ମୋର କଥା ନ ମାନିଲା ।
ଯେତେ ଯେତେ ପ୍ରସ୍ତାବ ମୁଁ କଲି ବାରବାର
ପୋଲାଣ୍ଡର ସରକାର କଲା ନାମଞ୍ଜୁର । ୨୮
ଓଲଟି ସମର ସାଜ ଭୟ ଦେଖାଇଲା
ତେଣୁ ପୋଲାଣ୍ଡ ଉପରେ ଆକ୍ରମଣ ହେଲା ।୨୯
ତଥାପି ସମାଧାନର ସମ୍ଭାବନା ଥିଲା
ମୁସୋଲିନି ପୁଣି ଥରେ ଅନୁରୋଧ କଲା । ୩୦
ଫ୍ରାନ୍‌ସର ମତ ଥିଲା ସମାଧାନ ପାଇଁ
ଇଙ୍ଗଲାଣ୍ଡ ଏକାବେଳେ କରିଦେଲା ନାହିଁ ।୩୧
ପୋଲାଣ୍ଡ ଚାହିଁଲା ଯୁଦ୍ଧ ହୋଇଲା ସମର
ତଲେମାନ ଦୋଷ ଏଥି ନାହିଁ ଜର୍ମାନୀର । ୩୨
ପୋଲାଣ୍ଡକୁ କହି ଦେଲେ କିଛି ଭୟ ନାହିଁ
ଜର୍ମାନୀକୁ ଜିଣିବାର ସହଜ ଅଟଇ । ୩୩
ଅଠର ଦିନରେ ଶିକ୍ଷା ପାଇଲା ପୋଲାଣ୍ଡ
ସହି ନ ପାରିଣ ଦାଉ ହେଲା ଲଣ୍ଡ ଭଣ୍ଡ । ୩୪
ପୁଣି ହିଟଲର ବୋଲେ ଶୁଣ ହେ ସୁଜନ
ନିଜ ଗୁଣେ ଅରଜିଲା ପୋଲାଣ୍ଡ ଏମାନ । ୩୫
ଗତକାଲି କୋଡ଼ିଏ ହଜାର ବନ୍ଦୀ ହେଲେ
ଆଜ ବେଳେ ପଞ୍ଚାଶ ହଜାର ପୁଣି ଗଲେ ।୩୬
ବର୍ତ୍ତମାନ ପର୍ଯ୍ୟନ୍ତ ବନ୍ଦୀ ହେଲେ କେତେ
ବନ୍ଦୀ ହେବେ ଅଳପ ଦିନରେ ଆଉ ଯେତେ ।

ପଶ୍ଚିମରେ ଗଣତନ୍ତ୍ର ବଦ୍ଧଛନ୍ତି ଯେତେ
ଉପଯୁକ୍ତ ଶିକ୍ଷା ଲଭ କରନ୍ତୁ ସମସ୍ତେ । ୩୮
ଗଗନ ବିହାରୀ ସେନାମାନଙ୍କୁ କହୁଛି
ଆବଶ୍ୟକ ନ ପଡ଼ିଲେ ନ କରିବ କିଛି । ୩୯
ସାମରିକ ଉଦ୍ଦେଶ୍ୟରେ ଯାହା ଲୋଡ଼ା ହେବ
ତେତିକ ମାତର ଶକ୍ତି ପ୍ରୟୋଗ କରିବ । ୪୦
ଏପରି କଠୋର ଆଜ୍ଞା ଦେଉଅଛି ମୁହିଁ
ମୋ ଆଦେଶ ଲଙ୍ଘିବ ସାହସ କାର ନାହିଁ ।
ପୂର୍ବ ପଶ୍ଚିମରେ ଯେତ୍ତୁ ଶତ୍ରୁ ଅଛି ମୋର
ଏ ଆଜ୍ଞାର ସୁବିଧା କେ ନ ନେବ ନିକର । ୪୨
ଯୁଦ୍ଧ ନିୟମ ମାନିବେ ମୋର ସେନାମାନେ
ଏପରି ଆଦେଶ ଦେଇଅଛି କାନେ କାନେ ।
ଏଥିରୁ ଅନ୍ୟଥା ଯେବେ ବଇରୀ ରୁହିଁବ
ସେହିପରି ଫଳମାନ ତାହାଙ୍କୁ ମିଳିବ । ୪୪
ଗୋଟିଏ ଗୁଳାକୁ ପାଞ୍ଚ ଗୋଟି ଅଛି ମୋର
ଏପରି ସଦମ୍ଭେ କହେ ହର ହିଟଲର । ୪୫
ବଲସେଭିବାଦ ଥିଲା ଋଷିଆ ରାଜ୍ୟରେ
ନାତ୍ସୀୟ ସାମ୍ୟବାଦର ମାତି ଜର୍ମାନୀରେ । ୪୬
ଋଷିଆ ଜର୍ମାନୀ ସରକାରମାନେ କେବେ
ପରସ୍ପର ଦୁହେଁ କେବେ ଯୁଦ୍ଧ ନ କରିବେ । ୪୭
ପାଶ୍ଚାତ୍ୟ ଦେଶର ଗଣତନ୍ତ୍ରବାଦ ହିତେ
ଏଦୁହେଁ ସମର ନ କରିବେ କଦାଚିତେ । ୪୮
ଇଂଲଣ୍ଡ ଫ୍ରାନସର ଭଦ୍ରଲୋକ ଗଣ
ଲେଖି ରଖିବ କି ଏହି କଥା ହେ ସୁଜନ । ୪୯
ଆତ୍ମ ସ୍ୱାର୍ଥ ପାଇଁ ଆମ୍ଭେ କରିଛୁଁ ଏପରି
ଯୁଦ୍ଧକରି ଦୁହେଁ କେବେ ନ ହେବୁ ବଇରୀ । ୫୦
ପାଶ୍ଚାତ୍ୟ ଗଣତନ୍ତ୍ରର ସ୍ୱାର୍ଥରକ୍ଷା ପାଇଁ
ଆମ୍ଭେମାନେ ସମର କରିବା ନ ଯୋଗାଇ । ୫୧

ସ୍ୱାଗତ ଇଂଲଣ୍ଡ ଆମ୍ଭ ସଙ୍ଗେ ଯୋଗଦିଅ
ଆମ୍ଭ ସଙ୍ଗେ ସେହିପରି ଚୁକ୍ତିକରି ନିଅ । ୫୨
ଏପରି କଲେ ତୁମ୍ଭର ଆଶଙ୍କା ନଥିବ
କାଳେ ଜର୍ମାନୀ ସାମ୍ରାଜ୍ୟ ବିସ୍ତାର କରିବ । ୫୩
ଜର୍ମାନୀ ଋଷିଆ ଦୁଇ ରାଜ୍ୟ ପୋଲଣ୍ଡର
ଭଲ ମନ୍ଦ ଦେଖିବା ପାଇଁକି ହକଦାର । ୫୪
ଇଂଲଣ୍ଡ ଫ୍ରାନସ ଦୁହେଁ ଭଲେ ହେତୁ କର
ଇଚ୍ଛାନାହିଁ ତୁମ୍ଭ ସଙ୍ଗେ କରିବୁଁ ସମର । ୫୫
ବହୁଚେଷ୍ଟା କଲ ଏମାନଙ୍କ ସଙ୍ଗେ ମୋର
ଶାନ୍ତିବନ୍ଧୁ ଭାବ ସ୍ଥାୟୀ ରହିବ ନକର । ୫୬
ଇଂରେଜ ଯେବେ ସମର ଇଚ୍ଛା ନ ଛାଡ଼ିବ
ତେବେ ତା ମରମ କଥା ପଦାରେ ପଡ଼ିବ ।୫୭
ଜର୍ମାନୀ ସଙ୍ଗେ ସମର କରିବ ଚାହୁଁଛି
ଏପରି କଲେ ଆମ୍ଭର କି ଉପାୟ ଅଛି । ୫୮
ତିନ ଚାରି ପାଞ୍ଚ ବର୍ଷ ଅବା ରଣ ହେବ
ଜର୍ମାନୀର ଏଥିପାଇଁ ନ ହେବ ଅଭାବ । ୫୯
ଜର୍ମାନୀ ଏଥିପାଇଁକି କରିଅଛି ପଣ
ବୁଝି ପାରୁଅଛୁଁ ଅମ୍ଭେ ଫଳ ଯେ ବିଷମ । ୬୦
କୋଟି କୋଟି ଲୋକ ଅକାରଣେ ନାଶ ଯିବେ
ପୋକ ମାଛି ପରି ଏ ସମରେ ବଳି ହେବେ ।
ଅତଏବ ହୀନ କର୍ମ ଏହା ମୁହିଁ ଜାଣେ
ସ୍ତ୍ରୀ ବାଳକ ବିରୁଦ୍ଧରେ ଇଙ୍ଗରାଜମାନେ । ୬୨
ସମର ଆରମ୍ଭ କରିଦେଲେଣି ସେମାନେ
ନଉବଳ ପ୍ରୟୋଗ କଲେକି ତତକ୍ଷଣେ । ୬୩
ବାଧ୍ୟ ହୋଇ ଜରମାନୀ କରିବ ସମର
ହୋଇପାରେ ଫଳ ଏହୁଁ ମହାଭୟଙ୍କର । ୬୪
ଏପରି ସମୟ ଆସି ପ୍ରବେଶ ହୋଇବ
ଜର୍ମାନୀ ଏପରି ଅସ୍ତ୍ର ବାହାର କରିବ । ୬

କାହାରିକୁ ଜଣାନାହିଁ ଏ ଅସ୍ତ୍ରର ନାମ
ଏଥିରେ ଆମ୍ଭର କ୍ଷତି ନ ହୋଇବ ପୁଣ ।୬୬
ସଦମ୍ଭେ ସଦର୍ପେ କହେ ହର ହିଟ୍‌ଲର
ଶୁଣ ହେ ଜଗତବାସୀ କହୁଛି ନିକର । ୬୭
ସେ ଅସ୍ତ୍ର ଧରିବା ପାଇଁ ନ ପଡୁ ସୁଯୋଗ
ବାଧ ନ କରନ୍ତୁ କେହି ଆସିବ ଏ ଯୋଗ ।୬୮
ଯଦି କେତେବେଳେ ଏହି ସୁଯୋଗ ପଡ଼ିବ
ଜର୍ମାନୀକୁ କେହି ତଳେମାନେ ନ ଦୋଷିବ । ୬୯
ମାନବ ଜାତି ସ୍ୱାର୍ଥକୁ କେହି ଦ୍ୱାହି ଦେଇ
ଜର୍ମାନୀକୁ କେହି କେବେ ଦୋଷ ଦେବ ନାହିଁ ।
କରିଛି ଜର୍ମାନୀ ପଣ ଜୟଯୁକ୍ତ ହେବ
ଜୟୀ ନ ହେବା ପର୍ଯ୍ୟନ୍ତ ଯୁଦ୍ଧ ନ ସରିବ ।୭୧
ଅନ୍ୟ ଜାତିମାନେ ତେଣୁ ହୁଅ ସାବଧାନ
ସୁବୁଦ୍ଧି ଦିଅନ୍ତୁ ଦୟାମୟ ଭଗବାନ । ୭୨
ପୁନର୍ବିଚାର କର ହେ ଏ ସବୁ ବିଷୟ
ନ ଘଟୁ ଜଗତେ ମହାକାଣ୍ଡ ଭୟାବହ । ୭୩
ଇଂରେଜ ବୋଲନ୍ତି ଯାହା କହେ ହିଟଲର
କଥା ମିଛ ବୋଲି ସବୁ ଜାଣ ହେ ନିକର ।
ବିଲାତର ପାଟମନ୍ତ୍ରୀ ନାମ ଚେମ୍ବରଲେନ
ଇଂରେଜଙ୍କ ତରଫରୁ କରନ୍ତି ବୟାନ । ୭୫
କାହିଁ ଭାରତ କାହିଁ ସେ ସବୁ ଦେଶମାନ
ସାତ ସମୁଦ୍ର ସେ ପାରେ ହେଉଅଛି ରଣ ।୭୬
ସମ୍ବାଦପତ୍ରରେ ଯାହା ପ୍ରକାଶ ପାଉଛି
ଭାରତବାସୀ ସେଥିରୁ ଖବର ଜାଣୁଛି । ୭୭
ଦୂର ଶବ୍ଦବାହିନୀ ଯନ୍ତ୍ରଟି ଯେବେ ଥିବ
ତତକ୍ଷଣ ସେଠାର ଖବର ମିଳିଯିବ ।୭୮
ସମର ବେଳେ ଅଛଇ ଏପରି ନିୟମ
ସବୁ ଖବର ପଦାରେ କେହି ନ ଜଣିମ । ୭୯

କାଠ ଗୁଣ୍ଡ ହୋଇଣ ଖବର ବାହାରିବ
ସେହି ଖବର ପଦାରେ ପ୍ରକାଶ ହୋଇବ ।୮୦
ଯାହା ଯାହା ଖବର ତହିଁରେ ବାହାରିଲା
ସେହି ସବୁ ଖବର ଏଥିରେ ଲେଖାଗଲା । ୮୧
ପାଠକେ ବୁଝିବ ଏଥୁଁ ସବୁ ହାଲଚାଲ
ଭଲ ଅବା ଭେଲ ନିଜ ବୁଦ୍ଧିରେ ତଉଲ । ୮୨
ଇଂରେଜ ବୋଲନ୍ତି ଜୟ ନ ହେବ ଯାବତ
ସେମାନେ ଯୁଦ୍ଧରୁ କ୍ଷାନ୍ତ ନହେବେ ତାବତ ।୮୩
ଉଭୟ ପକ୍ଷର ପଣ ଅଟେ ଭୟଙ୍କର
ବିଷମୟ ଫଳ ଏଥୁଁ ଫଳିବ କେବଳ । ୮୪
ଲକ୍ଷ ଲକ୍ଷ କୋଟି କୋଟି ଲୋକକ୍ଷୟ ହେବ
କେତେକେତେ ଘରଦ୍ୱାର ଧ୍ୱଂସ ହୋଇଯିବ ।
ବହୁକାଳର ସଞ୍ଚିତ ଧନ ଦ୍ରବ୍ୟମାନ
ଅଗ୍ନିମୁଖେ ଆହୁତ ହୋଇବ ତତକ୍ଷଣ । ୮୬
ନାନା ପ୍ରକାର ମାରଣ ଅସ୍ତ୍ର ସଞ୍ଚିଛନ୍ତି
କଷାକଷି ହେବେ ନିଜ ନିଜର ଶକତି । ୮୭
କରିଛନ୍ତି ବିଜ୍ଞାନରେ ଯେ ସବୁ ଉନ୍ନତି
ପରୀକ୍ଷା ହୋଇବ ଏବେ ସେ ସବୁ ଶକତି ।୮୮
କୋଟି କୋଟି ଟଙ୍କା ବ୍ୟୟ ହୋଇବ ସମରେ
ରକ୍ତନଦୀ ବହିଯିବ ପ୍ରବଳ ବେଗରେ । ୮୯
କୋଟି କୋଟି ନର ମୁଣ୍ଡ ଗଡ଼ିବ ଧରାରେ
ମେଦିନୀ କମ୍ପିବ ଗୁଳି ଗୁଳା ଶବଦରେ । ୯୦
ଲକ୍ଷ ଲକ୍ଷ ସ୍ତ୍ରୀ ରାଣ୍ଡ ହେବେ ଏ ସମରେ
ଗ୍ରାମ ନଗର ବହୁତ ଧ୍ୱଂସ ହୋଇପାରେ । ୯୧
ଘୋର ଅଶାନ୍ତି ଘୋଟିଛି ସେ ସବୁ ଦେଶରେ
ଶାନ୍ତିଦେବୀ ଲୁଚିଲେଣି ଯାଇ କେଉଁଠାରେ ।,
ସ୍ତ୍ରୀ ବାଳକ ବହୁତ ନଗରକୁ ଛାଡ଼ି
ଚାଲି ଯାଉଛନ୍ତି ଗ୍ରାମେ ଦଉଡ଼ି ଧାପଡ଼ି । ୯୩

ଏ ଶବ ଦେଖି ମନକୁ ଏମନ୍ତ ଆସୁଛି
ସାକ୍ଷାତରେ ରଣଚଣ୍ଡି ଉଦଣ୍ଡେ ନାଚୁଛି । ୯୪
କରାଳ ବଦନା ଜିହ୍ୱା କରେ ଲହଲହ
ଦେଖିବା ଲୋକ ମନରେ ଉପୁଜୁଛି ଭୟ ।୯୫
ପାଶ୍ଚାତ୍ୟ ଦେଶର ଲୋକେ ବଡ଼ ଧନବାନ
ନିଜ ବୁଦ୍ଧି ବଳେ ଅରଜନ୍ତି ବହୁଧନ । ୯୬
ସକଳ ଦେଶରେ କଲେ ବଣିଜ ବେପାର
ଜଳ ସ୍ଥଳ ଆକାଶରେ କରନ୍ତି ବିହାର । ୯୭
କେଉଁଠାରେ କିସ ଅଛି ସଦା ଧୁଣ୍ଡୁଛନ୍ତି
ପ୍ରାଣ ପଣ କରି ସଦା କର୍ମେ ଲାଗିଛନ୍ତି । ୯୮
ବୁଦ୍ଧି ଅଛି ଯାର ବଳ ଅଟଇ ତାହାର
ବଳ ହେଲେ କରେ ବଳେ ରାଜ୍ୟ ଅଧିକାର ।
ଯେ ଯାହାଠାରୁ ବଳରେ ଅଧିକ ଅଟଇ
ତାକୁ ଦେଖିଲେ ସେ ବଳେ ଭୟେ କମ୍ପୁଥାଇ ।
ସ୍ୱାଧୀନ ପରାଧୀନର ମୂଳ ଅଟେ ବଳ
ପରାଧୀନ ହୁଏ ସେହୁ ଯେହୁଟି ଦୁର୍ବଳ । ୧୦୧
ଧର୍ମଜ୍ଞାନ ବିହୁନରେ ବଳ ପଶୁବଳ
ନ୍ୟାୟ ଅନ୍ୟାୟ ବିଚାର ନଥାଏ ତାହାର ।୧୦୨
ହାବୁଡ଼େ ପଡ଼ିଲେ ଦୁର୍ବଳକୁ ଚିପିଦିଏ
ତା ଉପରେ ଅଧିକାର କରି ଧନ ନିଏ ।୧୦୩
ନିଜ ସ୍ୱାର୍ଥ ରକ୍ଷା ଅଟେ ତାର ମୂଳକଥା
ସେହି ଉଦ୍ଦେଶ୍ୟରେ କରେ ସକଳ ବ୍ୟବସ୍ଥା ।
ଆନ ଲୋକ ସୁଖ ଶାନ୍ତି ନ କରେ ବିଚାର
ନିଜ ସୁଖ ଲାଭପାଇଁ କରେ ଅତ୍ୟାଚାର । ୧୦୫
ମଣିଷ ମାରିବା ପାଇଁ ଲୋଡ଼ା ହେବ ଯେବେ
ଅକୁଣ୍ଠିତ ଭାବେ ଲକ୍ଷ ଲକ୍ଷ ମାରିଦେବେ ।୧୦୬
ନାନା ମାରଣାସ୍ତ୍ର କରି ସାଇତି ରଖନ୍ତି
ଆବଶ୍ୟକ ବେଳେ ସବୁ ପ୍ରୟୋଗ କରନ୍ତି ।

ପାଶ୍ଚାତ୍ୟ ଦେଶରେ ଲଗିଅଛି ଏହି ଲୀଳା
ଏ ନୀତି ନିୟମ ସେ ଦେଶରେ କରେ ଖେଳା ।
ଏହି ନୀତି ଅନୁସରି ଚଳନ୍ତି ସରବେ
କରମ କରନ୍ତି ସଦା ସଦମ୍ଭେ ଗରବେ । ୧୦୯
ମାରଣାସ୍ତ୍ର ଧରି ସଦା କରନ୍ତି ବିହାର
ଜଳ ସ୍ଥଳ ଆକାଶରେ ନାନା ପରକାର ।୧୧୦
ଯେଉଁ ଦେଶ ଲୋକଙ୍କର ଏ ଅସ୍ତ୍ର ନ ଥିବ
କି ସାଧ୍ୟ ତାର ତାହାଙ୍କ ସାଥିରେ ଲଢ଼ିବ ।
ଯାର ଥିବ ସେ ଲଢ଼ିବ ତାହାଙ୍କ ସହିତ
ବଳେ ଊଣା ହେଲେ ସେହୁ ହାରିବ ନିଶ୍ଚିତ ।
ପୋଲଣ୍ଡର ଦଶା ଆଜ ସେହି ପରକାର
ଜର୍ମାନୀ ହାବୁଡ଼େ ପଡ଼ି ହେଲା ଛାରଖାର ।୧୧୩
ସମାନ ସମାନ ବଳ ଅଟେ ଯେ ରାଜ୍ୟର
ମିଳିମିଶି ମେଣ୍ଟ ବାନ୍ଧି ବଢ଼ାଇଲେ ବଳ । ୧୧୪
ଶ୍ରେଷ୍ଠ ଦୁର୍ବଳ ରାଜ୍ୟକୁ କରି ଆକ୍ରମଣ
ମାରିପିଟି ଭାଗ ବାଣ୍ଟି ନିଅନ୍ତି ସମାନ । ୧୧୫
ଶ୍ରେଷ୍ଠ ରାଜ୍ୟର ଯେବେ କେ ସାହାପକ୍ଷ ହେଲା
ତାଙ୍କ ତାଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା ।୧୧୬
ସବୁତ ତାଙ୍କ ଭିଆଣ ପ୍ରଭୁ ଚକାଡୋଳା
ବୋଇଲେ ଜଗବନ୍ଧୁ ଅଟ ତୁମ୍ଭେ ଭବଭେଳା ।

ଇତି ଶ୍ରୀ ଭାରତ-ଚରିତାମୃତେ ଇଉରୋପ ସମର ବର୍ଣ୍ଣନେ ଅଷ୍ଟାଅଶୀ ଅଧ୍ୟାୟଃ ।



## ଅଣାନବେ ଅଧ୍ୟାୟ

ଶୁଣ ହେ ସୁଜନ ଜନେ ଅପୂର୍ବ ଚରିତ
ସ୍ୱର୍ଗରେ ଦେବତାମାନେ ହେଲେ ଏକ ଚିତ୍ତ ।୧

ନନ୍ଦନ କାନନେ ବସି ବଇଠକ ହେଲା
ସଂସାରର ହାଲଚାଲ ଚର୍ଚ୍ଚା ପଡ଼ିଲା । ୨
ଏ ସଭାରେ ବିଷ୍ଣୁ ଆସି ହେଲେ ସଭାପତି
ଆସି ପ୍ରବେଶିଲେ ମହାଦେବ ମହାପତି । ୩
ବିଷ୍ଣୁଙ୍କୁ ବିଧି ବିଧାନେ କଲେ ନମସ୍କାର
ବିଷ୍ଣୁ ତାହାଙ୍କୁ ସମ୍ମାନେ କଲେକ ଆଦର । ୪
ମହାଦେବ ବୋଇଲେ ସକଳ ଦେବେ ଶୁଣ
ସ୍ୱର୍ଗପୁରେ ଦେବମାନେ କଲେ ବେହରଣ । ୫
ମର୍ତ୍ତ୍ୟପୁର କଥା କେହି କିଛି ନ ବୁଝିଲା
ମର୍ତ୍ତ୍ୟପୁରେ ଅଧରମ ପ୍ରବଳ ହୋଇଲା । ୬
ପଶୁବଳ ମର୍ତ୍ତ୍ୟପୁରେ ହେଲାଣି ପ୍ରବଳ
ଧର୍ମ ଭୁଲି ଲୋକ ହେଉଛନ୍ତି ଖଳବଳ । ୭
ଧର୍ମର ଖୋଳ ରହିଛି ସାର ଲୁଚିଲାଣି
ଧର୍ମ ଧର୍ମ ହେଉଛନ୍ତି ମରମ ନ ଜାଣି । ୮
ବହୁକାଳ ହେଲା ମର୍ତ୍ତ୍ୟପୁରେ ଯାଇନାହିଁ
କରିବ କି ମର୍ତ୍ତ୍ୟପୁରେ ଆବର ପ୍ରଳୟ । ୯

## ଶ୍ରୀ ବିଷ୍ଣୁ ଉବାଚ

ଦେବ ଦେବ ମହାଦେବ କହୁଅଛ ଯାହା
ଅକ୍ଷରେ ଅକ୍ଷରେ ସତ୍ୟ ଅଟଇଟି ତାହା । ୧୦
ଚାଲ ଥରେ ବୁଲିଯିବା ତୁମ୍ଭେ ସଙ୍ଗେ ଯିବ
କେତେ କଉତୁକ କଥା ଆଖିରେ ଦେଖିବ । ୧୧
କଳି ରାଜା ହୋଇ ମର୍ତ୍ତ୍ୟେ କରୁଛି ବିହାର
ବହୁକାଳ ହେଲା ମର୍ତ୍ତ୍ୟେ କରେ କାରବାର । ୧୨
ଦେଖିବା କଳି ରାଜତ୍ୱ ଅଟେ କି ପ୍ରକାର
ରୀତିନୀତି ଲୋକଙ୍କର ଦେଖିବା ଆବର । ୧୩
ଚାଲ କାଲି ପ୍ରାତଃକାଳୁ ଯାତ୍ରା ଆରମ୍ଭିବା
ପୁଷ୍ପକ ବିମାନେ ଯାଇ ସକଳ ଦେଖିବା । ୧୪

ତୁମ୍ଭେ ଜାଣ ମର୍ତ୍ତ୍ୟପୁର ଖବର ଅନେକ
ଶିଖାଇ ଦେବ ସକଳ ମୋତେ ଏକ ଏକ ।୧୫

ଶ୍ରୀ ମହାଦେବ ଉବାଚ

ଆପଣ ବିଶ୍ୱପାଳକ ଆହେ ଜଗନ୍ନାଥ
କି କଥା ଅଜଣା ଅଛି ହେ ଜଗତ ତାତ ।୧୬
ଅନ୍ତର୍ଯ୍ୟାମି ଅନ୍ତରେତ ସବୁ ଅଛି ଜଣା
ତବ କରୁଣା ବିହୁନେ ବ୍ରହ୍ମା ହୋନ୍ତି ବଣା ।୧୭
ଆପଣଙ୍କଠାରୁ କି ଜଗତ ଅଟେ ଭିନ୍ନ
ଏ ବିଶ୍ୱ ଜଗତ ଅଟେ ତୁମ୍ଭର ଉଆଣ । ୧୮
ଜଗତ ସରଜି ତହିଁ ମଧ୍ୟେ ବିରାଜୁଛ
ଏକରୁ ଅନେକ ହୋଇ ପ୍ରକଟ ହୋଇଛ ।୧୯
ଅନାଦି ଅନନ୍ତ ଜଗତର ଆଦିମୂଳ
ବ୍ୟାପି ରହିଅଛ ପ୍ରଭୁ ଆକାଶ ପାତାଳ । ୨୦
ତୁମ୍ଭେ ପ୍ରବୃତ୍ତି ଆବର ତୁମ୍ଭେ ତ ନିବୃତ୍ତି
ପ୍ରବୃତ୍ତି ନିବୃତ୍ତି ଖେଳ ଲଗାଇଛ ନିତି । ୨୧
ସରଜି ଅଛ ହେ ପ୍ରଭୁ ବିଶ୍ୱ ରଙ୍ଗମଞ୍ଚ
ଆପଣେ ନାନାଦି ରୂପେ କରୁଅଛ ନାଚ ।୨୨
ନାନା ମୁଖା ପିନ୍ଧି ପ୍ରଭୁ କର ଅଭିନୟ
ଇନ୍ଦ୍ରଜାଲ କଉତୁକ ଭିଆଇ ନିଶ୍ଚୟ । ୨୩
ତୁମ୍ଭେ ଚଇତନ୍ୟ ଅଟ ସକଳ ଭୂତରେ
ତବ ବିହୁନେ ଜଗତ ମୁହୂର୍ତ୍ତିକେ ମରେ । ୨୪
ଜୀବନ ମରଣ ହେତୁ ଅଟ ତ ଆପଣ
ଭ୍ରୂଭଙ୍ଗିରେ କରୁଅଛ ପ୍ରଳୟ ସର୍ଜନ । ୨୫
ଉପରେ ଅନନ୍ତାକାଶ ତଳେ ପାରାବାର
ମଧ୍ୟରେ ମର୍ତ୍ତ୍ୟମଣ୍ଡଳ ବିଚିତ୍ର ବେଭାର । ୨୬
ଅନନ୍ତ ଆକାଶେ ଅସଂଖ୍ୟକ ତାରା ଗ୍ରହ
କିଏ କପର ଖଞ୍ଜିଛି ଅପୂର୍ବ ବିଷୟ । ୨୭

କୋଟି କୋଟି ନମସ୍କାର ତବ ଶ୍ରୀଚରଣେ
କେ ବର୍ଣ୍ଣି ପାରିବ ତବ ମହିମା ବଦନେ । ୨୮
ଅଜଣା କି ଅଛି ମୁହିଁ ଚହ୍ଲାଇଣ ଦେବି
ଅନୁଗ୍ରହ କଲେ ତବ ସଙ୍ଗତରେ ଯିବି । ୨୯
ହେ ବିଶ୍ୱ ବିଧାଣି ବିଶ୍ୱ କରି ସରଜନ
ପୁଣି ତାକୁ ଦେଖିବାକୁ ହେଲା ଯେବେ ମନ ।୩୦
ଚାଲନ୍ତୁ ଦେଖି ଆସିବା ଆପଣଙ୍କ ଲୀଳା
ଅଟ ତ ଆପଣ ସ୍ୱୟଂ ଏ ଭବର ଭେଳା ।୩୧
ଯୋଗଧ୍ୟାନେ ରତ ହୋଇ କେତେ ତପ କଲି
ଆପଣଙ୍କ ମହିମା ମୁଁ କଳି ନ ପାରିଲି । ୩୨
ଆପଣଙ୍କ ବିଭୂତି ଯେ ଅଟଇ ଅନନ୍ତ
ଅତି ଚମତ୍କାର ପୁଣି ଅତି ଅଦଭୂତ । ୩୩
ଯୋଗମାୟା ଗୁଣ ଅଟେ ଅତ୍ୟନ୍ତ ବିଚିତ୍ର
ଅଘଟନ ଘଟାଏ ସେ ସଂସାରେ ନିୟତ । ୩୪
ସକଳ ଭୂତର ବୀଜ ଅଟନ୍ତି ଆପଣ
ଯୋଗମାୟା ଗର୍ଭେ ପଡ଼ି ଧରେ ରୂପବର୍ଣ୍ଣ ।୩୫
ଆପଣାର କଳା କୁଶଳତା ଆପେ ଦେଖି
ଚାଲ ମହାପ୍ରଭୁ ଦେଖି ହେବ ଯେବେ ସୁଖୀ ।୩୬
ଦେଖିବି ମୁଁ ତବ ସଙ୍ଗେ ନୟନ ପୂରାଇ
ଭଗବତ ଲୀଳା ଦେଖି ହେବି ମୁହିଁ ବାଇ ।୩୭
ଏହା କହି ମହାଦେବ ହୋଇଲେ ମଉନ
ସ୍ମରଣ କଲେକ ବିଷ୍ଣୁ ଗରୁଡ଼ ବାହାନ । ୩୮
ରମ୍ୟକ ଦ୍ୱୀପରୁ ଆସି ହେଲା ପରବେଶ
ଦେଖି ପ୍ରଭୁ ବୋଇଲେ ହୋଇଣ ହସହସ ।୩୯
ନାରଦ ଆସି ପ୍ରବେଶ ହୋଇଲେ ଏ କାଳେ
ନୃତ୍ୟ କରି ଗୀତ ଗାଇ ବୀଣା ବଜାଇଲେ ।୪୦
ତହିଁପରେ ବିଷ୍ଣୁଙ୍କୁ ସେ କଲେ ନମସ୍କାର
ବିଷ୍ଣୁ ପଚାରିଲେ ତାଙ୍କୁ କୁଶଳ ବେଭାର ।୪୧

## ଶ୍ରୀ ବିଷ୍ଣୁ ଉବାଚ

ଶୁଣ ହେ ନାରଦ ଆମ୍ଭେ ବିଶ୍ୱ ବୁଲିଯିବୁ
ବିଶ୍ୱ ସମାଗ୍ରୀର ଦେଖି ତୁରିତେ ଫେରିବୁ ।୪୨
ଭୋଳାନାଥ ମହେଶ୍ୱର ଆମ୍ଭ ସଙ୍ଗେ ଯିବେ
ବିଶ୍ୱ ସମାଗ୍ରୀରମାନ ମୋତେ ଦେଖାଇବେ ।୪୩
ଚାଲ ହେ ନାରଦ ତୁମ୍ଭେ ଆମ୍ଭ ସଙ୍ଗେ ଯିବ
ତେବେ ରଙ୍ଗ ରହସ୍ୟରେ କାଳ କଟିଯିବ ।୪୪
ତୁମ୍ଭେ ନ ଥିଲେ ସଙ୍ଗତେ ମଜା ହେବନାହିଁ
ମହେଶ୍ୱର ରହିଥିବେ ସଦା ଭୋଳ ହୋଇ ।୪୫
ହେଉ ବୋଲି ନାରଦ ଯେ କଲେ ସିଉକାର
ଏ ଦାସ ପ୍ରତି କରୁଣା ହେଲା ଯେବେ ତୋର ।
ପରମ ସୌଭାଗ୍ୟ ମୋର ଭାବୁଅଛି ମୁହିଁ
କେତେ ଜନ୍ମ ତପସ୍ୟାରେ ଏ ଫଳ ମିଳଇ ।୪୭
ବିଷ୍ଣୁ ମହାଦେବ ଯେ ନାରଦ ତିନି ଜଣ
ଗରୁଡ଼ ବାହନେ ସର୍ବେ କଲେ ଆରୋହଣ ।୪୮
ମହାଘୋର ନାଦ କରି ବାହନ ଚଳିଲା
ଆକାଶ ପଥରେ ଅତି ବେଗେ ଚଳିଗଲା । ୪୯
ଘୁଉଘୁଉ ସୁଉସୁଉ ରଡ଼ିକରି ଯାନ
ଚଳିଯାଏ ଶୂନ୍ୟେ ଶୂନ୍ୟେ ପକ୍ଷୀଙ୍କ ସମାନ ।୫୦
ଶବ୍ଦ ଶୁଣି ପକ୍ଷୀମାନେ ଆପଦ ମଣନ୍ତି
ଭୟେ ଏଣେତେଣେ ପକ୍ଷୀ ଉଡ଼ିଯାଉଛନ୍ତି ।୫୧
ଘୋର ଘର୍ଘର ନିନାଦ କରେ ଉଡ଼ଯାନ
ଫୁଲ ପରି ଉଶ୍ୱାସ ସେ ଅଟଇ ପ୍ରମାଣ । ୫୨
ତେଣୁ ପୁଷ୍ପକ ବିମାନ ନାମ ଅଟେ ତାର
ଆକାର ଅଟଇ ତାର ଗରୁଡ଼ ପ୍ରକାର । ୫୩
ଉଡ଼ି ଉଡ଼ି ଗରୁଡ଼ ଯେ ଆକାଶେ ଚଳିଲା
ନିମିଷକେ ବହୁଦୂର ପଥ ଗମିଗଲା । ୫୪

ଶ୍ୱେତଦ୍ୱୀପ ନିକଟରେ ଯାଇ ପହଞ୍ଚିଲେ
ରଖି ବିମାନ ବୋଲଣି ବିଷ୍ଣୁ ଆଦେଶିଲେ ।୫୫

ଶ୍ରୀ ବିଷ୍ଣୁ ଉବାଚ

ଏ କେଉଁ ରାଜ୍ୟ ନାରଦ କହନ୍ତୁ ନିକର
କି ଶବଦ ଶୁଭୁଅଛି ମହା ଭୟଙ୍କର । ୫୬
ସ୍ତ୍ରୀ ବାଳକ କମ୍ପାଇଁ ସନ୍ତ୍ରସ୍ତ ହୋଇ
ନଗର ଛାଡ଼ି ସେମାନେ ଯାଆନ୍ତି ପଳାଇ । ୫୭

ଶ୍ରୀ ନାରଦ ଉବାଚ

ଇଙ୍ଗଲଣ୍ଡ ଅଟଇ ଏ ରାଇଜର ନାମ
ଏ ରାଜ୍ୟର ରାଜଧାନୀ ଅଟଇ ଲଣ୍ଡନ । ୫୮
ଇଂରେଜ ବୋଲି ଏ ଦେଶ ଲୋକଙ୍କୁ କହନ୍ତି
ମହାପ୍ରତାପୀ ଏ ଲୋକେ ସାହସୀ ଅଟନ୍ତି ।୫୯
ଶୁଭୁଛି ଯେଉଁ ନିନାଦ ଘୋର ଭୟଙ୍କର
ଗୁଳିଗୁଳା ନିନାଦ ସେ ଅଟଇ ନିକର । ୬୦
ଲାଗିଅଛି ମହାଘୋର ପୋଲାଣ୍ଡ ସମର
ମାରଣାସ୍ତ୍ର ବରଷା ହେଉଛି ନିରନ୍ତର । ୬୧
ବହୁ ପରକାର ମାରଣାସ୍ତ୍ର କରିଛନ୍ତି
ଆକାଶେ ଉଡ଼ନ୍ତି ପୁଣି ଜଳରେ ବୁଡ଼ନ୍ତି । ୬୨
ବୁଡ଼ାଜାହାଜରେ ବସି ଜଳରେ ଲୁଚନ୍ତି
ଲୁଚି ଲୁଚି ଯାଇ ଆନ ଜାହାଜ ଭାଙ୍ଗନ୍ତି । ୬୩
ଉଡ଼ାଜାହାଜରେ ବସି ଉଡ଼ି ବୁଲୁଥାନ୍ତି
ଉପରୁ ଗୁଳା ପକାଇ ନଗର ପୋଡ଼ନ୍ତି । ୬୪
ଲକ୍ଷ ଲକ୍ଷ ଲୋକ ମାରି ପକାନ୍ତି ଗୁଳିରେ
ବିଷାକ୍ତ ବାଷ୍ପୀୟବାଣ ମାରନ୍ତି ପ୍ରଖରେ । ୬୫
ସେ ବାଷ୍ପ ଯାହାର ନାକ ଭିତରେ ପଶିବ
ଶ୍ୱାସ ରୁଦ୍ଧହୋଇ ସେହୁ ପ୍ରାଣ ହରାଇବ । ୬୬
ବଡ଼ ବଡ଼ ତୋପମାନ ବସାଇ ମାରନ୍ତି
ପାଞ୍ଚ ସାତ କୋଶକୁ ଅଟଇ ତାର ଗତି । ୬୭

ଘୋର ଘର୍ଘର ଶବଦେ କମ୍ପାଏ ମେଦିନୀ
ଜନପୁର କମ୍ପୁଅଛି ସେ ନିନାଦ ଶୁଣି । ୬୮
ପୋଲଣ୍ଡ ଉପରେ ହେଉଅଛି ଅତ୍ୟାଚାର
ସେ ରାଜ୍ୟକୁ ନେବ ବୋଲି ଜର୍ମାନୀ ବର୍ବର ।୬୯
ଜର୍ମାନୀ ସଙ୍ଗେ ରୁଷିଆ ବାନ୍ଧିଅଛି ମେଣ୍ଟ
ତେଣୁ ଲଗିଛି ସମର ମହା ଘମାଘୋଟ । ୭୦
ପୋଲଣ୍ଡ ପକ୍ଷରେ ଲଢୁଛନ୍ତି ଇଙ୍ଗରେଜ
ଏହି ଦେଶ ଅଟଇ ସେ ଲୋକଙ୍କର ରାଜ୍ୟ ।୭୧
ଜର୍ମାନୀ ସଙ୍ଗେ ଇଂରେଜ ପକାଇଛି ମୁଣ୍ଡ
ତେଣୁ ଲଗିଅଛି ଏହି ମହାଘୋର କାଣ୍ଡ । ୭୨
ମଦ୍ୟ ମାଂସ ଖାଦ୍ୟ ଅଟେ ଏଠାରେ ପ୍ରଧାନ
ଏ ଦେଶରେ ଶୀତଋତୁ ଅଟଇ ପ୍ରଧାନ । ୭୩
ସଦା ଏହି ଦେଶ ଅଟେ ବରଫ ଆବୃତ
ଗରମ ଘରିଧାନ୍ତି ଏ ମିଛନ୍ତି ସନ୍ତତ । ୭୪

ଶ୍ରୀ ବିଷ୍ଣୁ ଉବାଚ

କହିଲ ନାରଦ ଯେଉଁ ଉତ୍ତମ ଚରିତ
ଶୁଣିଣ ସନ୍ତୋଷ ହେଲା ଏବେ ମୋର ଚିତ୍ତ ।୭୫
ଦେଖିଲ ପ୍ରଖର ବୁଦ୍ଧି ଏ ଦେଶ ଲୋକର
ବଡ଼ ବିଚକ୍ଷଣ କାମ କରନ୍ତି ନିକର । ୭୬
ଧନ ଅରଜନ କରି ଭୋଗ କରୁଛନ୍ତି
ରାଜଭୋଗ କରି ମହା ସୁଖରେ ଅଛନ୍ତି । ୭୭
ବେପାର ବଣିଜ ଶିଳ୍ପ କଳାରେ ଉନ୍ନତି
ଏ ଦେଶ ଲୋକେ ବିଶେଷେ କରି ପାରିଛନ୍ତି ।
ସୁସ୍ଥ ସବଳ ବଳିଷ୍ଠ ଦିଶନ୍ତି ଏମାନେ
ଧନ ଲୋଭେ କାର୍ଯ୍ୟ କରୁଛନ୍ତି ପ୍ରାଣପଣେ ।୭୯
ରାଜ୍ୟ ବିସ୍ତାର ପାଇଁକି ସଦା ତତପର
ସେହି ହେତୁ କରୁଛନ୍ତି ଏ ଘୋର ସମର ।୮୦

ଏ ରାଜ୍ୟ ନିକଟେ ଅଛି କେଉଁ କେଉଁ ଦେଶ
କହ ହେ ନାରଦ ମୋତେ ଏଥିର ସନ୍ଦେଶ ।୮୧

ଶ୍ରୀ ନାରଦ ଉବାଚ

ଏ ବିଶ୍ୱେ ଅଛଇ ଚାରି ମହାଦେଶ ଥିଆ
ଇଉରୋପ, ଆମେରିକା, ଆଫ୍ରିକା, ଆସିଆ ।
ଇଉରୋପେ ଏହି ଇଂଲଣ୍ଡ ଦେଶ ଅଛି
ଜର୍ମାନୀ, ଫ୍ରାନ୍‌ସ, ପୁଣି ଇଟାଲି ରହିଛି । ୮୩
ହଲାଣ୍ଡ, ବେଲଜିଅମ, ସ୍ପେନ୍‌ ଅଛି ଜାଣ
ରୁଷିଆକୁ ଘେନି କେତେ କ୍ଷୁଦ୍ର ରାଜ୍ୟ ପୁଣ ।୮୪
ଏକ ଆକୃର ବେଶର ଅଛି ଏ ଦେଶରେ
ସ୍ତ୍ରୀ ପୁରୁଷ ଚଳନ୍ତି ଏକଇ ବେଶରେ । ୮୫
ଏକ ପରକାର ଖାଦ୍ୟ ଅଟେ ଏହାଙ୍କର
ପିନ୍ଧନ୍ତି ବସନ ପୁଣି ନାନା ପରକାର । ୮୬
ସ୍ତ୍ରୀମାନେ ସ୍ୱାଧୀନଭର୍ତ୍ତୃକା ଏ ଦେଶରେ
ସେମାନଙ୍କ ରୁଚି ନାହିଁ ଆପ୍ତ ଅଳଙ୍କାରେ ।୮୭
ରଣପା ପରି ସେମାନେ ଜୋତା ପିନ୍ଧିଥାନ୍ତି
ଟେକା ଗୋଇଠିରେ ସେହୁ ସନ୍ତତ ଚାଲନ୍ତି ।୮୮
କେଶ ପରିପାଟି ବେଣୀ ନାହିଁ ତାହାଙ୍କର
କଏ ଲଣ୍ଡିମୁଣ୍ଡି କାର ଝିଲପି ଆବର । ୮୯
ବାଣିଜ୍ୟ ବଳେ ସକଳ ମହାଦେଶେ ରାଜା
ସବୁ ମହାଦେଶେ ଉଡ଼େ ଇଂରେଜ ଧ୍ୱଜା ।୯୦

ଶ୍ରୀ ବିଷ୍ଣୁ ଉବାଚ

ଚାଲ ହେ ଗରୁଡ଼ ଅନ୍ୟ ମହାଦେଶେ ଯିବା
ସେଠାର ଲୋକଙ୍କ ଚାଲିଚଳନ ଦେଖିବା ।୯୧
ଏହା ଶୁଣି ଗରୁଡ଼େ ଯେ ପକ୍ଷ ମେଲାଇଲା
ଆଫିରିକା, ଆମେରିକା ମହାଦେଶ ଗଲା । ୯୨
ନାରଦ ଯେଉଁଠି ଯେଉଁ ଦେଶ ଦେଖାଇଲେ
ସବୁ ମହାଦେଶ କଥା ବିସ୍ତାରି କହିଲେ । ୯୩

## ଶ୍ରୀ ନାରଦ ଉବାଚ

ଆଫ୍ରିକା ମହାଦେଶ ଏ ଭୂଖଣ୍ଡ ନାମ,
ନିଗ୍ରୋ ଜାତିଙ୍କର ଏହା ଥିଲା ବାସସ୍ଥାନ । ୯୪
ସେମାନେ ଏ ଦେଶର ଆଦିମବାସୀ ଥିଲେ
ଅତି ସରଳ ଭାବରେ କାଳ କାଟୁଥିଲେ । ୯୫
ଇଂରେଜମାନେ ଏ ଦେଶେ ହୋଇଲେ ପ୍ରବେଶ
ଦେଖିଲେ ଅତି ସୁନ୍ଦର ଅଟେ ଏହି ଦେଶ ।
ଏ ଦେଶେ ଉପନିବେଶ କଲେକ ସ୍ଥାପନ
ଛଳେବଳେ କଉଶଳେ କଲେକ ଶାସନ ।୯୭
କ୍ରୀତଦାସ କରି ନିଗ୍ରୋମାନଙ୍କୁ ରଖିଲେ
ତାଙ୍କ ଦ୍ୱାରା କାମ କାର୍ଯ୍ୟ ସବୁ କରାଇଲେ ।୯୮
ଇଜିପ୍ଟ ନାମେ ସେ ଦେଶରେ ରାଜ୍ୟ ଥିଲା
ସ୍ୱାଧୀନ ହୋଇ ସେ ଥିଲା ବହୁକାଳ ହେଲା ।୯୯
ଏ ରାଜ୍ୟ ଇଂରେଜଙ୍କର ହୋଇଲା ଅଧୀନ
ଏବେ ସ୍ୱାଧୀନ ହେବାକୁ ବଳାଇଲା ମନ ।୧୦୦
କେତେ ଲଢ଼ାଲଢ଼ି କରି ହୋଇଛି ମୁକତ
ଚାଲ ଆମେରିକା ଦେଶେ ଯିବାଟି ତୁରିତ ।୧୦୧
ଆଜ୍ଞା ପାଇ ଗରୁଡ଼ ଯେ ବେଗେ ଚଳିଗଲା
ଆମେରିକା ମହାଦେଶେ ପ୍ରବେଶ ହୋଇଲା ।
ନାରଦ ବୋଇଲେ ଆହେ ଜଗତ ଗୋସାଇଁ
ପୁରାଣେ ପାତାଳପୁର ଏ ଦେଶକୁ କହି ।୧୦୩
ମହାସମୃଦ୍ଧିଶାଳୀ ଏ ରାଜ୍ୟ ପ୍ରଭୁ ଜାଣ
କୁବେରପୁର ଏ ବୋଲି ଅଟଇ ପ୍ରମାଣ ।୧୦୪
ମହା ମହା ଧନୀମାନେ ଏ ଦେଶରେ ଛନ୍ତି
ଜଡ଼ ବିଜ୍ଞାନରେ କରିଅଛି ଏ ଉନ୍ନତି । ୧୦୫
ବହୁ କଳ କାରଖାନା କରନ୍ତି ଏମାନେ
ଗୋ ଦୁଗ୍ଧରେ ସ୍ନାହାନ କରନ୍ତି ନାରୀମାନେ ।

ଜଣେ ଧନବନ୍ତ ଲୋକ ଏ ଦେଶରେ ଥିଲ
ନବେକୋଟି ତା କନ୍ୟାକୁ ଯଉତୁକ ଦେଲ ।
ପୃଥିବୀରେ ଏଡ଼େବଡ଼ ଧନୀ କେହି ନାହିଁ
ଏତେ ଯଉତୁକ କେହି କେବେ ଦେଇନାହିଁ ।
ଅଷ୍ଟ୍ରେଲିଆ ପୁରଅଛି ଏହି ମହାଦେଶ
କୃଷୀ ଲୋକମାନେ ଧନୀ ଅଟନ୍ତି ବିଶେଷ । ୧୦୯
କୃତ୍ରିମ କଳ ଦ୍ୱାରା ହୁଅଇ ଏଠାରେ
ସୁଖ ସ୍ୱଚ୍ଛନ୍ଦରେ କୃଷୀ ଏଠି ବାସକରେ । ୧୧୦
ଶିଳ୍ପ ବାଣିଜ୍ୟ ପୁରଛି ଏ ଦେଶ ଭଣ୍ଡାର
ଏଠା ଲୋକେ ପାଇଛନ୍ତି ଶ୍ରେଷ୍ଠ ଅଧିକାର ।
ଇଂରେଜଙ୍କ ରାଜ୍ୟ ଅଛି ଏ ମହାଦେଶରେ
ବେପାର ବଣିଜ ଚଳେ ସକଳ ଦେଶରେ ।୧୧୨
ହୁଜୁଭେଲ୍ଟ ଅଟଇ ଶାସକଙ୍କ ନାମ
ମହାନ ଚତୁର ବୁଦ୍ଧି ଅତି ବିଚକ୍ଷଣ । ୧୧୩
ପୋଲଣ୍ଡ ସମରେ ସେହି ଯୋଗ ଦେଇନାହିଁ
ଶାନ୍ତିହୁଅ ଶାନ୍ତିହୁଅ ଡ଼ାକେ ତ୍ରାହି ତ୍ରାହି ।୧୧୪
ଏ ମହାଦେଶରେ ଇଂରେଜର ବାସ ଅଛି
କାନଡ଼ା ଉପନିବେଶ ଏଠାରେ ରହିଛି ।୧୧୫

ଶ୍ରୀ ବିଷ୍ଣୁ ଉବାଚ

ଦେଉଳ କିସ ଦିଶୁଛି ଏ ମହାଦେଶରେ
ଅଛନ୍ତିକି ଦେବ ମୂର୍ତ୍ତି ସେହି ଦେଉଳରେ ।୧୧୬
କି ଧର୍ମ ପାଳନ୍ତି ଏ ଦେଶର ଲୋକମାନେ
ପାନ ଭୋଜନ କରନ୍ତି କି ବିଧି ବିଧାନେ ।୧୧୭

ଶ୍ରୀନାରଦ ଉବାଚ

ନାନା ଜାତି ଏ ମହାଦେଶରେ ଛନ୍ତି ରହି
ଖ୍ରୀଷ୍ଟଧର୍ମ ଏ ଦେଶରେ ପ୍ରଧାନ ପଡ଼ଇ । ୧୧୮
ଇଂରେଜ ଜର୍ମାନୀ ଫ୍ରାନ୍‌ସର ଲୋକ ଯେତେ
ଖ୍ରୀଷ୍ଟଧର୍ମ ଅବଲମ୍ବୀ ଅଟନ୍ତି ସମସ୍ତେ । ୧୧୯

ନିରାକାର ପୂଜକ ଅଟନ୍ତି ସେହିମାନେ
ଗିରିଜାରେ ଉପାସନା କରନ୍ତି ସେମାନେ ।୧୨୦
ବାଇବଲ ଧର୍ମଶାସ୍ତ୍ର ଅଟଇ ତାଙ୍କର
ଧର୍ମଶାସ୍ତ୍ର ମତମାନ ଗଲାଣି ପାଶୋର । ୧୨୧
ଏ ଦେଶକୁ ହିନ୍ଦୁ ବଇଷ୍ଣବମାନେ ଆସି
ମନ୍ଦିର ନିର୍ମାଣ କରାଇଲେ ହୋଇ ଖୁସି । ୧୨୨
ଶ୍ରୀକୃଷ୍ଣ ମୂରତି ଥାପି ପୂଜା ଆରମ୍ଭିଲେ
ବଲଡରେ ଶିବଙ୍କ ମନ୍ଦିର କରାଇଲେ । ୧୨୩
ଜରମାନ ଆମେରିକାବାସୀ କେତେଜଣ
ହିନ୍ଦୁ ଧର୍ମରେ ଦୀକ୍ଷିତ ହେଉଛନ୍ତି ପୁଣ । ୧୨୪
ବଇଷ୍ଣବ ଦୀକ୍ଷା ନେଇ ସେମାନେ ଅଛନ୍ତି
ଝୁଲିମୁଣି ଧରି ନାମ ଜପ କରୁଛନ୍ତି । ୧୨୫
ସାହେବଙ୍କ ତୁଣ୍ଡେ ହରେକୃଷ୍ଣ ହରେରାମ
କଣ୍ଠରେ ଶୋଭା ପାଉଛି ତୁଳସୀ ଭୂଷଣ ।୧୨୬
ରାଧାକୃଷ୍ଣ ଛାପା ମାରି କପାଳରେ ଚିତା
ଏ ଅଭିନବ ବ୍ୟାପାର ମନେକର ଚିନ୍ତା । ୧୨୭
ବିଳାସ ବ୍ୟସନ ଦ୍ରବ୍ୟ ପୂରିଛି ଏ ଦେଶେ
ହାଟ ବଜାର ସାଜିଛି ମନୋହର ବେଶେ ।୧୨୮
ଶରୀରର ସୁଖପାଇଁ ଯାହା ଯେତେ ଲୋଡ଼ା
ସକଳ ପ୍ରକାର କରିଛନ୍ତି ଥୋଡ଼ା ଥୋଡ଼ା ।୧୨୯
ବାହ୍ୟ ଭୋଗ ବିଳାସରେ ଭାସୁଛି ଏ ଦେଶ
ଭୋଜନେ ପାନ କରନ୍ତି ନିତି ଷଡ଼ରସ ।୧୩୦
ଇଉରୋପ ଆମେରିକା ଆଫ୍ରିକା ଦେଶେ
ଚାଲିଚଳନ ସକଳ ଏକାପରି ଦିଶେ । ୧୩୧
ରମଣୀମାନେ ଏ ରାଜ୍ୟେ ଅଟନ୍ତି ସ୍ୱାଧୀନା
ପୁରୁଷ ସଙ୍ଗେ ଏମାନେ ଅଟନ୍ତି ସ୍ୱାଧୀନା ।୧୩୨
ନାରୀମାନେ ସକଳ କର୍ମରେ ସୁନିପୁଣା
ରାଜନୀତି କ୍ଷେତ୍ରେ ମଧ୍ୟ ଅଟନ୍ତି ପ୍ରବୀଣା । ୧୩୩

ନିଗଡ଼ ବନ୍ଧନ ବିବାହରେ କିଛି ନାହିଁ
ମନରାଜ ଅନୁକ୍ରମେ ବିବାହ ଚଳଇ । ୧୩୪
ମନ ନ ମାନିଲେ ଗୁଡ଼ପତ୍ର ଦିଆ ଚଳେ
ବିବାହ ରହେ ଯେତେକ ଦିନ ମନ ମିଳେ ।
ବେଶଭୂଷା ଶାନ୍ତମାନ୍ତ ସକଳ ବିଚିତ୍ର
ଦେଖିଲେ ଏ ଶବ ଖୋସି ହୋଇଯାଏ ନେତ୍ର ।
ଏ ଦେଶର ଲୋକମାନେ ଭାରି ବୁଦ୍ଧିମାନ
ବୁଦ୍ଧିବଳେ କରୁଛନ୍ତି ନାନା କଳମାନ । ୧୩୭
ନାନା ଦ୍ରବ୍ୟ ପ୍ରସ୍ତୁତ କରନ୍ତି ଏହିମାନେ
ନାନା ଦେଶ ଭ୍ରମଣ କରନ୍ତି ଜଳଯାନେ ।୧୩୮
ଦେଶ ବିଦେଶକୁ ଯାଇ ବାଣିଜ୍ୟ କରନ୍ତି
ନାନା ଦ୍ରବ୍ୟ ବିକି ଧନ ଘେନି ନେଉଛନ୍ତି ।୧୩୯
ଏ ଦେଶର ବହୁଲୋକ ଅଟନ୍ତି ସାକ୍ଷର
ସମ୍ବାଦପତ୍ରର ପଢ଼େ ଦାଣ୍ଡେ ମେହେନ୍ତର ।୧୪୦
ବହୁତ ପୁସ୍ତକ ଲେଖୁଛନ୍ତି ଦେଶ ଲୋକ
ଦେଶରେ ଅଛନ୍ତି ବହୁ ପାଠକ ଗ୍ରାହକ ।୧୪୧
ତୂଳତଳ୍ପ ଶଯ୍ୟା ପରେ କରନ୍ତି ଶୟନ
ଦୁଇ ତିନି ଗୃହ ପାଞ୍ଚ ତଳ କୋଠାମାନ ।୧୪୨
ଆହୁରି ଅଧିକ ତଳ କୋଠାମାନ ଅଛି
ସୁଖେ ଉଠିବାକୁ କଳ ଉଠାଣି ଲଗିଛି । ୧୪୩

ଶ୍ରୀ ବିଷ୍ଣୁ ଉବାଚ

ଏସିଆ ମହାଦେଶକୁ ଚାଲ ବେଗେ ଯିବା
ସେଠାରେ କପରି ଲୋକେ ଅଛନ୍ତି ଦେଖିବା ।
ଏହା ଶୁଣି ଗରୁଡ଼ ଯେ ବେଗେ ଚଳିଗଲା
ଆକାଶ ମାର୍ଗରେ ଉଡ଼ି ଏସିଆକୁ ଗଲା । ୧୪୫

ଶ୍ରୀ ନାରଦ ଉବାଚ

ଦେଖ ମହାପ୍ରଭୁ ଦେଖ ଚୀଇନା ପ୍ରଦେଶ
ଜାପାନ ଲଗିଛି ତାକୁ କରିବାକୁ ଗ୍ରାସ । ୧୪୬

ଚଇନା ଅଟଇ ଏକ ବୃହତ୍ତର ଦେଶ
ଜାପାନ ତା ତୁଳନାରେ କ୍ଷୁଦ୍ରଟି ଅବଶ୍ୟ ।୧୪୭
ଚିନା ଜାପାନ ସମର ଲାଗିଅଛି ଦେଖ
ସମରକ୍ଷେତ୍ରେ ମରନ୍ତି ଲକ୍ଷ ଲକ୍ଷ ଲୋକ ।୧୪୮
ଅଫିମ ଖାଇ ଚଇନା ଜ୍ଞାନ ହରାଇଲା
କ୍ରମେ କ୍ରମେ ଶକ୍ତି ତାର ଊଣା ହୋଇଗଲା ।
ଜାପାନ ଶକ୍ତି ସଞ୍ଚୟି କଲା କଉଶଳେ
ବହୁତ ଉନ୍ନତ କଲା ଶିଳ୍ପ ବାଣିଜ୍ୟରେ ।୧୫୦
ଶସ୍ତାରେ ସକଳ ଦ୍ରବ୍ୟ କଲା ନିରମାଣ
ବିଦେଶକୁ ନେଇ ସବୁ ବିକଲା ସେମାନ । ୧୫୧
ସୁଲଭ ମୂଲ୍ୟ ହେତୁରୁ ବେଶୀ ବିକ୍ରି ହେଲା
ବହୁତ ଧନ ବିଦେଶୁଁ ତା ଦେଶକୁ ଗଲା ।
ଆନ ଦେଶୁଁ ଶିଳ୍ପ ବିଦ୍ୟା ଦେଖି ଶିଖି ନେଲା
ଆପଣା ବୁଦ୍ଧି ଖଟାଇ ସବୁ ତିଆରିଲା । ୧୫୩
ଅଳପ କାଳରେ ବହୁ ଉନ୍ନତି ସେ କଲା
ଆନ ଦେଶପରି ସେହୁ ମସ୍ତକ ଟେକିଲା ।୧୫୪
ଚିନା ଜାପାନରେ ଚଳେ ବଉଦ୍ଧ ଧରମ
ଭାରତରୁ ଆସିଥିଲା ଏ ଧରମ ଜାଣ । ୧୫୫
ବୁଦ୍ଧଦେବଙ୍କୁ ଏ ଦେଶେ ପୂଜା କରୁଛନ୍ତି
ବଉଦ୍ଧ ବୋଲି ଏମାନେ ଚିହ୍ନିତ ହୁଅନ୍ତି ।୧୫୬
ଅହିଂସା ପରମଧର୍ମ ଅଟେ ବୁଦ୍ଧଙ୍କର
ବୁଦ୍ଧଙ୍କର ଶିଷ୍ୟ ଚିନା ଜାପାନ ନିକର । ୧୫୭
ମହାଘୋର ସମର ଲାଗିଛି ଦୁହିଙ୍କର
ବହୁ ଲୋକକ୍ଷୟ ହେଉଛନ୍ତି ଦି ପକ୍ଷର । ୧୫୮
ଚାଲ ଏହାପରେ ଭାରତକୁ ବେଗେ ଯିବା
ସେ ଦେଶ ଦେଖି ଅମରପୁରକୁ ଫେରିବା ।୧୫୯
ଏହା ଶୁଣି ଗରୁଡ଼ ଯେ ପକ୍ଷ ବିସ୍ତାରିଲା
ମହାଘୋର ନାଦକରି ଗଗନେ ଚଳିଲା ।୧୬୦

ଶ୍ରୀ ବିଷ୍ଣୁ ଉବାଚ

ଏ ପରା ରୁଷିଆ ରାଜ୍ୟ ଅଟେ ହେ ନାରଦ,
ଶୁଣିଛି କହ ହେ ମୁନି ଏ ରାଜ୍ୟ ସମ୍ବାଦ ।୧୬୧
ଏ ଦେଶର ରାଜା କିଏ କିସ ତା ଧରମ
ଏ ଦେଶ ଲୋକ କରନ୍ତି କେମନ୍ତ କରମ ।୧୬୨

ଶ୍ରୀ ନାରଦ ଉବାଚ

ଦେଶ ମଧ୍ୟରେ ରୁଷିଆ ଅଟେ ବଡ଼ ଦେଶ
ଜାର ନାମେ ଏ ଦେଶରେ ଥିଲେକ ନରେଶ ।
ବହୁ ଯୁଗରୁ ଏ ରାଜବଂଶ ରହିଥିଲା
ପ୍ରଜାମାନେ ମିଳି ତାର ବଂଶ ଧ୍ୱଂସ କଲେ । ୧୬୪
ଏକା ରାତିକେ ଏ ବଂଶ ଗଲା ଯମପୁର
ପରଦିନ ଚିହ୍ନ ତାର ନ ଥିଲା ନକର । ୧୬୫
ଧର୍ମ୍ମ କର୍ମ ଏ ଦେଶରେ କିଛିମାତ୍ର ନାହିଁ
ସକଳ ମାନବ ଏଥି ସମାନ ଅଟଇ । ୧୬୬
ବଳସେବୀ ଦଳ ନାମେ ଏ ଲୋକଙ୍କ ନାମ
ପ୍ରଜାଙ୍କ ଇଚ୍ଛାରେ ଏବେ ଚଳୁଛି ଶାସନ ।୧୬୭
ପ୍ରଜାମାନେ ମିଳିମିଶି ଯାକୁ ମତ ଦେବେ
ସଭାପତି କଳଶ ତା ମୁଣ୍ଡରେ ଢାଳିବେ ।୧୬୮
ସେହି ରାଜ୍ୟ ଚଳାଇବ ପ୍ରଜାଙ୍କର ହିତେ
ନ କଲେ ତାହାକୁ ଦୂର କରିବେ ତୁରିତେ ।
ଦେଶର ଧନ ଦରବ ଜମିବାଡ଼ି ଯେତେ
ରାଜସରକାରଙ୍କର ଅଧୀନ ସମସ୍ତେ । ୧୭୦
ସକଳେ ଦେଶ ହିତରେ ମଜୁରି ଖଟିବେ
ସବୁ ଅରଜନ ଆଣି ରାଜା ମୂଳେ ଦେବେ ।୧୭୧
ରାଜ ସରକାର ସକଳଙ୍କୁ ଖାଦ୍ୟ ଦେବ
ଯାହାର ଯା ଆବଶ୍ୟକ ତାକୁ ଯୋଗାଇବ ।
ଏହି ମତିରେ ଚଳୁଛି ଏଠା ସରକାର
ସାମ୍ୟବାଦ ମତି ତାର କହୁଛି ନକର । ୧୭୩

ଏଣେ ପୋଲଣ୍ଡ ଉପରେ କରେ ଆକ୍ରମଣ
ଏ କି ସାମ୍ୟବାଦ ମାତ୍ର ପ୍ରଭୁ ତୁମ୍ଭେ ଜାଣ ।୧୭୪
ଆରବ ପାରସ୍ୟ ତୁର୍କିସ୍ଥାନ ମନେ ଘେନ
ଆଫ୍ରିକା ଦେଶରେ ଅଛି କେତେ କେତେ ସ୍ଥାନ
ଏ ସବୁ ରାଜ୍ୟରେ ବହୁ ପଠାଣ ଅଛନ୍ତି
ସେ ଦେଶରେ ସେହିମାନେ ରାଜତ୍ୱ କରନ୍ତି ।
ସବୁଦେଶ ମଧ୍ୟଦେଇ ଗରୁଡ଼ ମିଳିଲା
ଅବଶେଷେ ଭାରତରେ ପ୍ରବେଶ ହୋଇଲା ୧୭୭
ଦେଖାଇ ଦେଲେ ନାରଦ ଆହେ ଜଗଦୀଶ
ଦେଖ ମହାପ୍ରଭୁ ତବ ଭାରତବରଷ । ୧୭୮
ଦେଖ ବିରାଜୁଛି ଶିରେ ହିମାଳୟ ଗିରି
ତ୍ରିଭୁବନେ ବିଖ୍ୟାତ ଅଟଇ ଯାର ଶିରୀ ।୧୭୯
ଯୋଗୀ ଋଷି ମୁନି ସାଧୁ ସନ୍ଥଙ୍କ ଆଶ୍ରମ
ବେଦ ମୁଖରିତ ଦେଶ ଏ ପରମ ଧାମ । ୧୮୦
ଏହି ପଥେ ଯୁଧିଷ୍ଠିର ମହାଯାତ୍ରା କଲେ
ସ୍ୱରଗରେ ସଶରୀରେ ଯାଇ ପ୍ରବେଶିଲେ ।୧୮୧
ହିମାଳୟୁ ଠାରୁ ବେଗେ ଗରୁଡ଼ ଚଳିଲା
ଦିଲ୍ଲୀ ନଗରୀରେ ଯାଇ ପ୍ରବେଶ ହୋଇଲା ।୧୮୨

ଶ୍ରୀ ବିଷ୍ଣୁ ଉବାଚ

ଦିଶୁଛି ଯେଉଁ ପ୍ରକାଣ୍ଡ ପ୍ରାସାଦ ସକଳ
କାହାର ଭବନ ଉଚ୍ଚ ଦିଶେ ସମୁଜ୍ଜ୍ୱଳ । ୧୮୩
ବହୁଲୋକ ସମାଗମ କାହିଁକି ଏଠାରେ
କି ବିଚାର ଲାଗିଅଛି ଏଡ଼େ ଗୁପତରେ । ୧୮୪

ଶ୍ରୀ ନାରଦ ଉବାଚ

ଅନ୍ତର୍ଯାମୀ ପ୍ରଭୁ ସବୁ ଜାଣତ ଆପଣ
ତବ ପ୍ରେରଣାରେ ହୁଏ ସକଳ କରମ । ୧୮୫
ତବ ପ୍ରେରଣା ବିହୁନେ କେ କିସ କରିବ
ନ ଥିଲେ ତବ କରୁଣା ବୁଦ୍ଧି ବଣା ହେବ ।

ଥିଲା ଏ ହସ୍ତିନାପୁର ଦ୍ୱାପର ଯୁଗରେ
ଯୁଧିଷ୍ଠିର ଅଭିଷେକ ହେଲେ ଏହିଠାରେ ।୧୮୭
ଭାରତର ରାଜସିଂହାସନ ପୀଠସ୍ଥାନ
ଅଳପ ଦୂରରେ କୁରୁକ୍ଷେତ୍ର ଅଛି ଜାଣ ।୧୮୮
କ୍ଷତ୍ରୀୟ କୁଳ ନିର୍ମୂଳ ସ୍ଥାନ ଅଟେ ସେହି
କୁରୁ ପାଣ୍ଡବ ସମର ହୋଇଥିଲା ତହିଁ । ୧୮୯
ଆପଣ ସାରଥି ହୋଇ ଅର୍ଜ୍ଜୁନ ରଥରେ
ଅଠରଦିନ ଭାରତ ସମର ଓଦେଖିଲେ । ୧୯୦
ଭାରତର ରାଜଧାନୀ ଅଟେ ଏ ନଗର
ମୟୂର ସିଂହାସନଟି ଆଉ ନାହିଁ ତାର । ୧୯୧
ଇଂରେଜ ଜାତି ଭାରତେ ହୋଇଛନ୍ତି ରାଜା
ଦେଖ ଫରଫର ଉଡ଼େ ସେମାନଙ୍କ ଧ୍ୱଜା ।୧୯୨
ଇଂରେଜ ରାଜାଙ୍କ ପ୍ରତିନିଧି ବଡ଼ଲାଟ
ଭାରତରେ ପ୍ରକାରନ୍ତେ ଅଟନ୍ତି ସମ୍ରାଟ ।୧୯୩
ତାହାଙ୍କ ବାସଭବନ ଅଟେ ଏ ପ୍ରାସାଦ
ଇନ୍ଦ୍ରଭବନ ସଦୃଶ ଦିଏ ଏ ଆନନ୍ଦ । ୧୯୪
ଦେଖ ଉପବନ ଯଥା ନନ୍ଦନ କାନନ
ମର୍ତ୍ତ୍ୟପୁରେ ଅଟଇ ଅଳକାପୁର ସମ । ୧୯୫
ଲାଗିଛି ଏଠାରେ ଘମାଘୋଟିଆ ବିଚାର
ଭାରତକୁ କିସ ନିଧି ମିଳିବ ଏଥର । ୧୯୬
ଗାନ୍ଧିଜୀ ଜହରଲାଲ ଆଦି ଆସିଛନ୍ତି
ବଡ଼ଲାଟ ତାଙ୍କ ସଙ୍ଗେ ମନ୍ତ୍ରଣା କରନ୍ତି । ୧୯୭
ବିଷମ ସଙ୍କଟ ପଡ଼ିଅଛି ବିଲାତରେ
ଜର୍ମାନୀ ସଙ୍ଗେ ସମର ବାଧିଛି ସେଠାରେ ।୧୯୮
ଜଗବନ୍ଧୁ ବୋଲେ ବେଳ ହେଲାଣି ଉଚ୍ଛୁର
ଆଜି ଏହିଠାରେ ଥାଉ ଏହି ସମାଚାର ।୧୯୯

ଇତି ଶ୍ରୀ ଭାରତ-ଚରିତାମୃତେ ଦେବଲୋକ ମର୍ତ୍ତ୍ୟ ଦର୍ଶନ ଚରିତ ବର୍ଣ୍ଣନେ
ଅଷ୍ଟାଦଶେ ଅଧ୍ୟାୟଃ ।

# ନବେ ଅଧ୍ୟାୟ

ଶ୍ରୀ ନାରଦ ଉବାଚ

ଶୁଣ ମହାପ୍ରଭୁ ଶୁଣ ମୋର ନିବେଦନ
ବଡ଼ଲାଟ ଘରେ ଗାନ୍ଧି କଲେ ପଦାର୍ପଣ । ୧
ବୋଇଲେ କାହିଁକି ମୋତେ କଲ ନିମନ୍ତ୍ରଣ
ବଡ଼ଲାଟ ବୋଲେ ଗାନ୍ଧି ଶୁଣ ମୋ ବଚନ ।୨
ଆମ୍ଭ ଦେଶରେ ଲାଗିଛି ମହାଘୋର ରଣ
ବିପଦେ ପଡ଼ିଛି ଆମ୍ଭ ଦେଶ ତୁମ୍ଭେ ଜାଣ । ୩
ଲୋକ ହିତପାଇଁ ଆମ୍ଭେ କରୁଛୁ ସମର
ଲେଶମାତ୍ର ସ୍ୱାର୍ଥଭାବ ନାହିଁଟି ଆମ୍ଭର । ୪
ହିଟଲର ଦମ୍ଭ ଦର୍ପ ଯେବେ ନ ଭାଜିବ
ପୃଥିବୀରେ ଶାନ୍ତି ଆଉ କିଛି ନ ରହିବ । ୫
ତୁମ୍ଭେ ଏ ବେଳେ ଆମ୍ଭଙ୍କୁ ହୁଅ ହେ ସହାୟ
ଭାରତର ଧନ ଜନ ଦେଇ ଠିଆହୁଅ । ୬
ଗାନ୍ଧି ବୋଇଲେ ମୋ କଥା ମୁଁ ସିନା କହିବ
ଆନମାନଙ୍କ ପାଇଁ ତ କହି ନ ପାରିବ । ୭
ସକଳ ଦଳରୁ ଡାକିଆଣ ଜଣେ ଜଣେ
କି କହିବେ ଶୁଣି ବୁଝ ମତାମତ ମନେ । ୮
ସେହିହେତୁ ବଡ଼ଲାଟ ଡାକି ପଠାଇଲେ
ହିନ୍ଦୁ ମୁସଲମାନ ସବୁ ଦଳରୁ ଆଇଲେ । ୯
ଜଣ ଜଣ ହୋଇ ତାଙ୍କ ପାଶକୁ ଯାଆନ୍ତି
ଗୁପତ କଥାବାରତା ହୋଇ ଫେରୁଛନ୍ତି । ୧୦
ସବୁ ମତ ନେଇ ବଡ଼ଲାଟ କଥାମାନ
ବିଲାତକୁ ଲେଖି ପଠାଇବେ ପରକ୍ଷିଣ । ୧୧
ବିଲାତ ଲୋକ ଯେ କଥା ବିଚାର କରିବେ
ଭାରତ ଦାବି ବିଷୟୁ ତ୍ରୁତି ଧ୍ୟାନ ଦେବେ । ୧୨
ପାର୍ଲିଆମେଣ୍ଟ ସଙ୍ଗରେ ଯାହା ସ୍ଥିର ହେବ
ଭାରତକୁ ସେ ସିଦ୍ଧାନ୍ତ ଘୋଷଣା କରିବ । ୧୩

ଏହି ବିଗ୍ରହ ଲାଗିଛି ବଡ଼ଲାଟ ଘରେ
ଆସୁଛନ୍ତି କର୍ତ୍ତାମାନେ ସେହି ଉଦ୍ଦେଶ୍ୟରେ ।୧୪
ଭାରତର ଦାବି ହେ ଇଂରେଜ ସଫା କହି
ଗଣତନ୍ତ୍ର ସପକ୍ଷରେ କରୁଛନ୍ତି କଳହ । ୧୫
ପୋଲାଣ୍ଡ ପାଇଁକି ଯେବେ ଲଢ଼ ଏଥିପାଇଁ
ଭାରତ ସେ ସ୍ୱାଧୀନତା ପାଇବ କି ନାହିଁ ।୧୬
ଗୋଳିଆ ନ ରଖି ସଫା ସଫା କହିଦିଅ
ଭାରତବାସୀ ମନରେ ନ ରହୁ ସଂଶୟ । ୧୭
ଏ ସଂଶୟ ତୁଟିଗଲେ ମନ ଆନନ୍ଦରେ
ଭାରତ ସାହାଯ୍ୟ ଦେବ ସବୁ ପରକାରେ ।୧୮
ଭାରତର ମନ୍ତ୍ରୀ ନାମ ଲର୍ଡ଼ ଜେଟଲାଣ୍ଡ
ବୋଲୁଛନ୍ତି ଏ କାଳେ ନ କର ଲଣ୍ଡଭଣ୍ଡ ।୧୯
ବିଲାତକୁ ଏତେବେଳେ ବିପତ୍ତି ପଡ଼ୁଛି
ଏ କାଳେ ତବ ଏ ଦାବି ଶୋଭା ନ ପାଉଛି ।
ବିନା ସରତରେ ଯେବେ ସାହାଯ୍ୟ କରିବ
ମଣିଷ ନୋହୁଁକି ଆମ୍ଭ ବିଗ୍ରହ ନୋହିବ । ୨୧
ଗାନ୍ଧି ବୋଲୁଛନ୍ତି ଛାଡ଼ ଏ ଗୁରୁଣା କଥା
ଭାଷା ସୂତ୍ରରେ ନ ବୁଣ ଭାରତ ବ୍ୟବସ୍ଥା । ୨୨
ଦୁଇ କଥାରୁ କଥାଏ କହି ହଇ ନାହିଁ
ସଫା ସତ୍ୟ କହିଦିଅ ବଚନ ଫିଟାଇ । ୨୩

ଶ୍ରୀ ବିଷ୍ଣୁ ଉବାଚ

ଜଣାଗଲା ସବୁକଥା ହେ ନାରଦ ଶୁଣ
ଭାରତ ରହୁଁଛି ପୁଣି ହୋଇବ ସ୍ୱାଧୀନ । ୨୪
ଦେଖାଯାଉ କି ବିଗ୍ରହ ଇଂରେଜ କରିବ
ଅଳପ ଦିନରେ ଫଳାଫଳ ଜଣାଯିବ । ୨୫
ଦେବଭୂମୀ ଭାରତ ଏ ପବିତ୍ର ପରମ
ବେଦ ମୁଖରିତ ଭୂମି ମୋ ପରମ ଧାମ । ୨୬

ଶୁଭୁନାହିଁ ବେଦ ଧ୍ୱନି କମ୍ପା ଭାରତରେ
ପ୍ରାଚୀନ ସଂସ୍କୃତି ଲୋପ ହେଲାକି ଏଠାରେ ।୨୭
ଦେବଭାଷା ସଂସ୍କୃତର ସୁମଧୁର ସ୍ୱନ
ଶୁଣାଯାଉ ନାହିଁ କାହିଁ ଶାମ ବେଦଗାନ । ୨୮

ଶ୍ରୀ ନାରଦ ଉବାଚ

ବିଶ୍ୱବ୍ୟାପକ ସଂସ୍କୃତ ଭାଷା ଦିନେ ଥିଲି
ଉଜ୍ଜ୍ୱଳ ପ୍ରତିଭା ଦଶ ଦିଶେ ବ୍ୟାପିଥିଲି । ୨୯
ଦେବଭାଷା ବୋଲି ଦିନେ ହୋଇଥିଲି ଖ୍ୟାତ
ବିଶ୍ୱ ବ୍ୟାପିଥିଲି ଦିନେ ସଂସ୍କୃତ ସାହିତ୍ୟ । ୩୦
ମହାବିସ୍ତୃତ କାନନ ସଂସ୍କୃତ ସାହିତ୍ୟ
ଦିବ୍ୟଜ୍ଞାନ ବିଜ୍ଞାନରେ ଥିଲି ସୁଶୋଭିତ । ୩୧
ବେଦ ବେଦାଙ୍ଗ ବେଦାନ୍ତ ସ୍ମୃତି ଶ୍ରୁତି ଆଦି
ଷଡ଼ଦର୍ଶନ ସାହିତ୍ୟ ଥିଲି ସେ ସମ୍ପାଦି । ୩୨
ଆୟୁର୍ବେଦ ଧନୁର୍ବେଦ ଜ୍ୟୋତିଷ ବ୍ୟବସ୍ଥା
ଅର୍ଥଶାସ୍ତ୍ର ତନ୍ତ୍ର ମନ୍ତ୍ର ନାଟ୍ୟକଳା କଥା । ୩୩
ସଂହିତା କାବ୍ୟ ନାଟକ ନ୍ୟାୟ ବ୍ୟାକରଣ
ସଂସ୍କୃତ ସାହିତ୍ୟ ବହୁମୁଖୀ ଥିଲି ଜାଣ । ୩୪
ଜ୍ଞାନଗୁରୁ ଥିଲି ଦିନେ ଭାରତ ବିଶ୍ୱରେ
ପ୍ରତିବିମ୍ବ ରହିଅଛି ସେହି ସାହିତ୍ୟରେ । ୩୫
ଜାତିର ସାହିତ୍ୟ ଅଟେ ନିର୍ମଳ ଦର୍ପଣ
ଜାତିର ସଂସ୍କୃତି ତହିଁ ଦେଖାଯାଏ ଜାଣ ।୩୬
ଯେତେ ଯେତେ ତଥ୍ୟ ଅବା ନୂତନ ସିଦ୍ଧାନ୍ତ
ପାଶ୍ଚାତ୍ୟ ଦେଶ ଦେଖାଇ କରୁଛି ଚକିତ ।୩୭
ସେ ସବୁ ତଥ୍ୟ ରଖିଛି ସଂସ୍କୃତ ସାହିତ୍ୟ
ତନ୍ନତନ୍ନ କରି ଦେଖ ପାଇବ ଯେ ସତ୍ୟ । ୩୮
ଜ୍ଞାନବୃକ୍ଷ ମୂଳେ ବସି ଦିନେ ଏ ଭାରତ
ଦେଖାଇଥିଲି ବିଶ୍ୱକୁ ସମସ୍ତ ସିଦ୍ଧାନ୍ତ । ୩୯

ରହିଛି ପ୍ରାଚୀନ ସ୍ମୃତି ଦେଶ ବିଦେଶରେ
ଲୁଚିଅଛି ମୂକସାକ୍ଷୀ ପରି ଭୂଗର୍ଭରେ । ୪୦
ବିଶ୍ୱ ସଂସ୍କୃତିରେ ତାର ଅତି ଉଚ୍ଚସ୍ଥାନ
ଅଛିବି ମହତ ପୁଣି ଅତି ଗରୀୟାନ । ୪୧
ଆଜି ଯୁଗମାତ୍ର ଅଟେ ଆନ ପରକାର
ସେହିରୁ ବଡ଼ ଯେହୁ ଯେତେ କରିବ ପ୍ରଚାର ।୪୨
ନିଜ ପ୍ରଶଂସା ମହତ୍ତ୍ୱ ଯେ ଦେଖାଇପାରେ
ତାର ସ୍ଥାନ ଅତି ଉଚ୍ଚ ଅଟେ ଏ ବିଶ୍ୱରେ ।୪୩
ଭାରତର ଦଶା ଆଜି ଅଟେ ବିପରୀତ
ସଂସ୍କୃତ ସାହିତ୍ୟ ଆଜି ବୋଲାଉଛି ମୃତ । ୪୪
ମୃତଭାଷା ବୋଲି ତାର ନାହିଁଟି ଆଦର
ପାଶ୍ଚାତ୍ୟ ଦେଶରେ ମୂଲ୍ୟ ବଢୁଛି ତାହାର ।୪୫
ସାହେବମାନେ ସଂସ୍କୃତ ପଢ଼ି ଆନନ୍ଦିତ
ଭାଷାନ୍ତର କରି ତାକୁ ପଢ଼ନ୍ତି ନିୟତ । ୪୬
ନିଜଘରେ ସଂସ୍କୃତରେ ନାହିଁକି ଆଦର
ଉଇ ଖାଇଯାଏ ପୋଥି ହଜାର ହଜାର । ୪୭
ଭଙ୍ଗା ତାଳପତ୍ର ଖଣ୍ଡେ ସାହେବ ପାଇଲେ
ଅତି ଆଦରରେ ଗୋଟାଇ ନେଉଛନ୍ତି ଭଲେ ।
ଉଚ୍ଚମୂଲ୍ୟ ଦେଇ ପୋଥି କିଣି ନେଉଛନ୍ତି
କେଜାଣି କି ଥିବ ବୋଲି ମନେ ବିଚାରନ୍ତି ।
ଭାରତ ସାହିତ୍ୟ ଦିନେ ଥିଲାକି ଉନ୍ନତ
କେଜାଣି କି ତଥ୍ୟ ତହିଁ ରହିଛି ଗୁପତ । ୫୦
ତହିଁରୁ ସୂଚନା ପାଇ ନିଜ ବୁଦ୍ଧି ବଳେ
କାର୍ଯ୍ୟରେ ଲଗାଉଛନ୍ତି ଅତି କଉଶଳେ । ୫୧
ଜଗତେ କୀର୍ତ୍ତିବାନା ଉଡୁଛି ତାଙ୍କର
କଲେବୋଲି ଏବେ ଚମତ୍କାର ଆବିଷ୍କାର ।୫୨
ଭାରତ ଲୋକେ ଇଂରାଜି ସାହିତ୍ୟ ପଢିଲେ
ପାଶ୍ଚାତ୍ୟ ସଭ୍ୟତା ସ୍ରୋତେ ପଡ଼ି ଭାସିଗଲେ ।

ନିଜଘର ସାହିତ୍ୟକୁ କଲେ ଅନାଦର
ବୋଇଲେ ଏ ସବୁ ଗାଳଗଳପ ନିକର । ୫୪
ଅତି ମରହଟ୍ଟୀ ଏ ସାହିତ୍ୟ ପୁରାତନ
ଏଥିରେ ନାହିଁ କିଛିହିଁ ଉନ୍ନତି ବିଧାନ । ୫୫
ଏ ସବୁ ପଢିଲେ କିଛି ନ ହେବ ଉନ୍ନତି
କି ଲଭ ଅଛି ଏ ପୋଥି କର୍ମରେ ସାଇତି ।୫୬
ପାଶ୍ଚାତ୍ୟ ସାହିତ୍ୟ ଦେଖ କପରି ଉନ୍ନତ
ନିତନିତ ଦେଖାଉଅଛନ୍ତି ନବ ତଥ୍ୟ । ୫୭
ଅଶ୍ରଦ୍ଧା ଜନ୍ମିଲା ଯେଣୁ ନିଜ ସାହିତ୍ୟରେ
କେ ଚର୍ଚ୍ଚା ନକଲା ତାକୁ କେବେହେଁ ଭ୍ରମରେ ।
ଇଂରେଜି ପଢ଼ିଲେ ବଡ଼ ଚାକିରି ମିଳିବ
ଶହ ହଜାର ବର୍ତ୍ତନ ମାସକୁ ମିଳିବ । ୫୯
ସଂସ୍କୃତ ସାହିତ୍ୟ ପଢ଼ି କି ଫଳ ମିଳିବ
କଡ଼ାଏ କଉଡ଼ି କେହି ହାତକୁ ନ ଦେବ । ୬୦
ରାଜ ସରକାରେ ତାର ନାହିଁ ତ ଆଦର
ଚାକିରି ମିଳିବା ପଥେ କଣ୍ଟକ ନିକର । ୬୧
ଟଙ୍କା ଲୋଭେ ରାଜଦ୍ୱାରେ ମୁଣ୍ଡ ବିକି ଦେଲେ
ନିଜ ଜାତିପୂତା ସବୁ ହରାଇ ବସିଲେ । ୬୨
ନିଜ ସାହିତ୍ୟ ସଂସ୍କୃତି ଆଚାର ବେଭାର
ପାଶ୍ଚାତ୍ୟ ସଭ୍ୟତା କଲା ସବୁ ନିରମୂଳ । ୬୩
ଅବଶେଷେ ହେଲେ ଲୋକ ଦାଣ୍ଡର ଫକିର
ଜଳୁଛି ସବୁଠି ଅନ୍ନଚିନ୍ତା ଦାବାନଳ । ୬୪
ସକଳ ସଂସ୍କୃତି ତାର ହୋଇଗଲା ନଷ୍ଟ
ମୂର୍ଖ ହୋଇ ପେଟଜ୍ୱାଳା କରେ ଛଟପଟ ।୬୫
ଭସିଯାଇ ହୋଇଥିଲେ ସମୁଦ୍ର ମଝିରେ
ଗାନ୍ଧି ଆସି ଠିଆହେଲେ ତାହାଙ୍କ ଆଗରେ ।
ଠେଲି ଦେଲେ ପଛକୁ ଯେ ବୁଡ଼ି ଯାଉଥିଲେ
ବୋଇଲେ ପଛକୁ ହଟିଯାଅ ହେ ସକଳେ ।୬୭

ପାଶ୍ଚାତ୍ୟ ସଭ୍ୟତା ଜଳେ ମରନାହିଁ ବୁଡ଼ି
ପହଁରୁଅଛ କମ୍ପାଇ ବୃଥାରେ କୁହୁଡ଼ି । ୬୮
ପାଶ୍ଚାତ୍ୟ ସଭ୍ୟତା ଅଟେ ମୃଗତୃଷ୍ଣା ସମ
ମସ୍ତିଷ୍କ ବିକାରେ କମ୍ପା ହେଉଅଛ ଭ୍ରମ । ୬୯
କାଟି ପିନ୍ଧି କୁଟି ଖାଅ ସୁଖେ ଦିନ ଯିବ
ଭଗବାନଙ୍କ କୃପାରୁ ସେ ଦିନ ଆସିବ । ୭୦
ଦୁଃଖ ପାଇ ଗଲ ବୋଲି ଚିନ୍ତା କମ୍ପା କର
ଥିଲ ଘରପୁଅ ଆମ୍ଭେ ଶୋଚନା ନ କର ।୭୧
ପୁଣି ଦିନେ ଗୁରୁସ୍ଥାନ ଲଭିବ ଭାରତ
ସନାତନ ଧରମ ତ୍ରିକାଳେ ଅଟେ ସତ୍ୟ । ୭୨
ଅଣ୍ଟାଭିଡ଼ି କର୍ମକ୍ଷେତ୍ରେ ବେଗେ ଯାଇ ପଶ
ଅଚିରେ ବଡ଼ ହୋଇବ ତେଜିଲେ ଆଳସ୍ୟ ।
ପ୍ରାଚୀନ ଭିତ୍ତି ଉପରେ ଗଢ଼ ହେ ପ୍ରାସାଦ
ଅଚିରେ ଲଭିବ ଚତୁବରଗ ସମ୍ପଦ । ୭୪
ପୁଣି ଜ୍ଞାନଗୁରୁ ହୋଇ ଭାରତ ଉଠିବ
ପୃଥିବୀ କି ସମୁଚିତ ଶିକ୍ଷା ଦୀକ୍ଷା ଦେବ । ୭୫
ଚଳନ୍ତି ଶିକ୍ଷା ପ୍ରଣାଳୀ ଦିଅ ବଦଳାଇ
ଆତ୍ମ ସଂସ୍କୃତି ମୂଳକ କର୍ମ କର ଯାଇ । ୭୬
ଥରେ ଏ ଦେଶ ପୁରୁଣା ଇତିହାସ ଦେଖ
ପିତୃ ପିତାମହ କେବେ ନ ଥିଲେ ମୂରୁଖ ।୭୭
ଯୋଗ୍ୟ ହୋଇ ଠିଆହେଲେ ମିଳିବ ସକଳ
ଅଟକାଇ ରଖିବାକୁ କାର ନାହିଁ ବଳ । ୭୮
ସତ୍ୟ ଅହିଂସା ଧରମ ଦୃଢ଼େ ପାଳ ଭାଇ
ଆପଣା ରାଜ୍ୟ ପାଇବ କଷ୍ଟ ହିନ୍ଦ ନାହିଁ । ୭୯
ସର୍ବେ ମିଳିମିଶି ଦେଶହିତେ ମନଦିଅ
ତ୍ରିରଙ୍ଗ କେତନ ଅତି ଉଚ୍ଚରେ ଉଡ଼ାଅ ।୮୦
ମହାତ୍ମା ଗାନ୍ଧିଙ୍କ ସୁମଧୁର ହିତବାଣୀ
ଦେଶପ୍ରାଣ ଲୋକଙ୍କର ମନ ନେଲା କିଣି ।୮୧

ପ୍ରାଣପଣେ ସେହିମାନେ ପତାକା ଧଇଲେ
ପ୍ରାଚୀନ ସଂସ୍କୃତି ଦିଗେ ସେହି ମନ ଦେଲେ ।୮୨
ଦେଶ ବିଦେଶକୁ ଯାଇ ଗବେଷଣା କଲେ
କେଉଁଠି କି ଅଛି ଯାଇ ଆଖିରେ ଦେଖିଲେ ।୮୩
ନିଜ ନିଜ ଭ୍ରମ ବୁଝି ହୋଇ ସାବଧାନ
ପ୍ରାଚୀନ ସଂସ୍କୃତି ଦିଗେ ଦେଉଛନ୍ତି ମନ । ୮୪
ଏବେ ବୁଝୁଛନ୍ତି ଆମ୍ଭେ କି ଥିଲୁଁ କି ହେଲୁଁ
ନିଜଘର ନ ଖୋଜି ଏ ଭ୍ରାନ୍ତପଥେ ଗଲୁଁ ।୮୫
ଅଛି ବିଦ୍ୟା ନିଜ ଘରେ ତାକୁ ନ ପଢ଼ିଲୁଁ
ଶୃଙ୍କଳା କରିବା ବିଦ୍ୟା ପଢ଼ି ଦିନ ନେଲୁ ।୮୬
ଦେଖ ଏବେ ବଡ଼ଲାଟ କହିଲେ ଫିଟାଇ
ଭାରତବାସୀ ସଂଶୟ କରୁଛ କମାଇ । ୮୭
ଗାନ୍ଧି ପ୍ରଭୃତିଙ୍କ ସଙ୍ଗେ ଯେତେ କଥା ହେଲା
ଭାରତର ମନକଥା ସବୁ ଜଣାଗଲା । ୮୮
ଅନେକ ଜଣଙ୍କ ସଙ୍ଗେ କଥାବାର୍ତ୍ତା ହେଲା
ସବୁକଥା ବୁଝାଇ ସୁଝାଇ ଜଣାଇଲା । ୮୯
ଜଣ ଜଣ କରି ସେହୁ ଦେଲେ ଯେ ଉତ୍ତର
ବୁଝିଲି ସେଥିରୁ ଅଛି ନାନା ମତାନ୍ତର । ୯୦
ଏକମତ ହୋଇ କେହି ଜବାବ ନ ଦେଲେ
ଯେ ଯାହାର ସ୍ୱାର୍ଥ ଜଗି କଥାଭାଷା କଲେ ।୯୧
ସବୁ ଆଲୋଚନା କରି କହୁଅଛି ଶୁଣ
ପଚାରୁଛ ଇଂରେଜ କାହିଁକି କଲେ ରଣ । ୯୨
କି ଲକ୍ଷ ରଖି ଇଂରେଜ କରୁଛି ଲଢ଼ାଇ
ପଚାରୁଛ କହିବାକୁ ସେ କଥା ଫିଟାଇ । ୯୩
ଯେଉଁ ଲକ୍ଷରେ ଇଂରେଜ କରୁଛି ଲଢ଼ାଇ
କହିନାହାନ୍ତି ସେ କଥା ସେ ନିଜେ ଫିଟାଇ ।୯୪
ବର୍ତ୍ତମାନ ପରିସ୍ଥିତି ହୋଇଛି ଯେପରି
ସମ୍ଭବ ନୁହେଁ ଫିଟାଇ କହିବେ କିପରି । ୯୫

ଯୁଦ୍ଧ ଶେଷବେଳକୁ ଏ କଥା ଜଣାଯିବ
ବିସ୍ତୃତଭାବେ ଏ ଲକ୍ଷ ଘୋଷିତ ହୋଇବ । ୯୬
ମିତ୍ରରାଜ୍ୟମାନେ ଛନ୍ତି ଇଂରେଜ ସହିତ
ଯେଉଁମାନେ ଏକମନେ ଲଢ଼ନ୍ତି ନିୟତ । ୯୭
ସକଳେ ବିଶ୍ୱର ସିନା ଘୋଷଣା କରିବେ
ଏକା ଇଂରେଜ କିପରି ଏ କଥା କହିବେ ।୯୮
ଯୁଦ୍ଧଫଳେ ହୋଇପାରେ ଅବସ୍ଥା ବିଭିନ୍ନ
କେ ଜାଣେ ପୃଥିବୀ ଦଶା ହେବ କି ଘଟନ ।୯୯
ସେ ଅବସ୍ଥା ଅନୁସରି ଲକ୍ଷ ସ୍ଥିର ହେବ
ଏ କଥା ଆଜହୁଁ କେହି କହି ନ ପାରିବ ।୧୦୦
ଯୁଦ୍ଧର ଉଦ୍ଦେଶ୍ୟ ଖାଣ୍ଟି ନାଣ୍ଟି ବିବରଣ
ପ୍ରଥମରୁ କହିଦେବା ନୁହେଁ ସମୀଚୀନ । ୧୦୧
ନୁହେଁ ସମ୍ଭବ ଉଚିତ ଏପରି କହିବା
ଯୁଦ୍ଧର ଏ ମାତ୍ର ଅବା କିପରି ଲଘିବା । ୧୦୨
କିନ୍ତୁ ଏଥିରୁ ଏମନ୍ତ ବୁଝନାହିଁ କେହି
ଆମ୍ଭ ମନରେ ଗୋଳଆଭାବ ଅଛି ରହି ।୧୦୩
ମୋଟାମୋଟି ଉଦ୍ଦେଶ୍ୟ ତୁମ୍ଭଙ୍କୁ ଅଛି ଜଣା
ତହୁଁ ଅଧିକ କି ଅବା କରିବି ଘୋଷଣା ।୧୦୪
କେତେଦିନ ତଳେ ମନ୍ତ୍ରୀ ଦେଇଛନ୍ତି କହି
ନିଜ ସ୍ୱାର୍ଥପାଇଁ ଆମ୍ଭ ଜାତି ଲଢ଼ୁନାହିଁ । ୧୦୫
ରାଜ୍ୟ ଲୋଭ ଧନଲୋଭ ନାହିଁ ତ ଆମ୍ଭର
କେବଳ ଜୟପାଇଁକି ନ କରୁ ସମର । ୧୦୬
ଆମ୍ଭେମାନେ ଶାନ୍ତି ଚାହୁଁ ଅନ୍ୟ ଜାତିପରି
ବାସ୍ତବ ଶାନ୍ତି ପ୍ରତିଷ୍ଠା ହୋଇବ କିପରି ।୧୦୭
ଶାନ୍ତି ବାହାନାରେ ଖାଲି କଥା କହୁଥିବା
ଅସ୍ତ୍ର ଧୃତ ହୋଇ ସଦା କାଳ କାଟୁଥିବା ।୧୦୮
ଏପରି ଶାନ୍ତି ଆମ୍ଭର ଆଉ ଲୋଡ଼ା ନାହିଁ
ସମର କରୁଛୁଁ ଆମ୍ଭେ ସ୍ଥାୟୀ ଶାନ୍ତିପାଇଁ ।୧୦୯

ମନ୍ତ୍ରୀଙ୍କ ଏ ଭାଷଣରୁ ବୁଝିବ ସକଳ
କେଉଁ ଲକ୍ଷ ରଖି ଆମ୍ଭେ କରୁଛୁଁ ସମର । ୧୧୦
ଭାରତର ଭବିଷ୍ୟତ କଥା ପଗ୍ଭୁରୁଛ
କପରି ଶାସନତନ୍ତ୍ର ହେବ ବୋଲୁଅଛ । ୧୧୧
ଗୁରୁତର ଏ ପ୍ରଶ୍ନଟି ଅଟଇ ନିକର
ଭାରତରେ ଅଛନ୍ତି ନାନାଦି ମତ ଦଳ । ୧୧୨
ସକଳ ଦଳର ସ୍ୱାର୍ଥ ବଜାଏ ରହିବ
ସେପରି ଶାସନତନ୍ତ୍ର ସୁବିଧା ହୋଇବ । ୧୧୩
ଚଳୁଛି ଯେଉଁ ଭାରତ ଶାସନ ଆଇନ
ଖିନ୍ନ ଭିନ୍ନ ହୋଇସବୁ ହୋଇଛି ବିଧାନ ।୧୧୪
ବହୁତ କ୍ଷମତା ଯେ ଆଇନ ନେଇଅଛି
ତାକୁ ଅନୁସରି ଏବେ ଶାସନ ଚଳୁଛି । ୧୧୫
ଉତ୍ତମ ପ୍ରକାରେ ଏବେ ଚଳୁଛି ଶାସନ
କାହିଁକି ଭାରତବାସୀ ଦ୍ୱିଧାକର ମନ । ୧୧୬
ରାଷ୍ଟ୍ରସଙ୍ଘ ବିଷୟ ତ ବନ୍ଦ ରହିଅଛି
ତେଣୁ ସେ ବିଷୟ ନେଇ କହୁନାହିଁ କିଛି ।୧୧୭
ପୂର୍ବେ କେତେଥର କହିଅଛୁଁ ଆମ୍ଭ ମତ
ସେଥିରୁ କି ବୁଝିନାହିଁ ଆମ୍ଭ ମତଗତ । ୧୧୮
ରାଜା ରାଜକର୍ମଚାରୀ ମନ୍ତ୍ରୀ ଆଦି ଯେତେ
କହିଛନ୍ତି ବାରବାର ସେ ମତ ସମସ୍ତେ ।୧୧୯
ଆମ୍ଭର ଉପନିବେଶ ରାଜ୍ୟ ଆଉ ଅଛି
ସେଠାରେ ଯେଉଁ ଶାସନ ପଦ୍ଧତି ଚଳୁଛି ।୧୨୦
ସେହି ଶାସନ ପଦ୍ଧତି ରୀତି ଅନୁସରି
ଇଚ୍ଛା ଆମ୍ଭର ଭାରତେ ହେବ ତାହା ଜାରି ।
ଏହି ମରମରେ ପୂର୍ବେ କହିଅଛୁଁ ଜାଣ
ଇଚ୍ଛା ନୁହଁଇ ଆମ୍ଭର ହେଉ ତହୁଁ ଆନ ।୧୨୨
ଇଚ୍ଛା ଅଛି ଯୁଦ୍ଧ ଅବସାନ ହେବା ପରେ
ଏ ସବୁ କଥା ଅବଶ୍ୟ ଆସିବ ବିଚାରେ । ୧୨୩

ଏହି ଇଚ୍ଛା ପୋଷଣ କରିଛୁଁ ଆମ୍ଭେମାନେ
ଭାରତର ଅଗ୍ରଗତି ଅଛି ଆମ୍ଭ ମନେ । ୧୨୪
ଯେତେବେଳେ ବେଳକାଳ ଆସି ପହଞ୍ଚିବ
ସବୁ ଦଳଙ୍କର ମତ ପୁଣି ଲୋଡ଼ା ହେବ ।୧୨୫
ଦେଖୁଛୁ ଭାରତେ ଅଛି ଭିନ୍ନ ଭିନ୍ନ ମତ
ଏ କ୍ଷେତ୍ରେ ଏପରି ମତାନ୍ତର ସୁନିଶ୍ଚିତ ।୧୨୬
ଅଛନ୍ତି ରାଜନ୍ୟବର୍ଗ ଭାରତ ଦେଶର
ଇଉରୋପ ମହାଦେଶ ଦେଶଙ୍କ ଆକାର ।୧୨୭
ବଡ଼ ବଡ଼ ଗୋଷ୍ଠି ପୁଣି ସାନ ସାନ କେତେ
ଭିନ୍ନ ଭିନ୍ନ ଦଳ ରହିଅଛନ୍ତି ଭାରତେ । ୧୨୮
ସକଳର ସ୍ୱାର୍ଥ ତେଣୁ ଅଟେ ଭିନ୍ନ ଭିନ୍ନ
କୋଟି କୋଟି ଲୋକଙ୍କର ସ୍ୱାର୍ଥ ଅଛି ଜାଣ ।
ଏହିସବୁ ଭିନ୍ନ ଭିନ୍ନ ମତ ମୂଳଭିତ୍ତି
ତହିଁ ଉପରେ ଗଢ଼ିବ ଶାସନ ପଦ୍ଧତି । ୧୩୦
ଭାରତ ମାନ ମର୍ଯ୍ୟାଦା ରହିବ ଯେପରି
ଅଗ୍ରଗତି ଶାସନ ଚଳିବ ସେହିପରି । ୧୩୧
ତେଣୁ କହୁଛି ସକଳେ ହୁଅ ସାବଧାନ
ଭାଷାଗତ ଯୁଦ୍ଧରେ ନ ଦିଅ କେବେ ମନ ।୧୩୨
ଏଥିରୁ ନ ବୁଝ କେହି ଆନ ପରକାର
ଇଂରେଜ ଜାତି ସଦୟ ହୋଇବ ନକର ।୧୩୩
ଭାରତର ଉଚ୍ଚ ଅଭିଳାଷ ଅଗ୍ରଗତି
ପୂର୍ଣ୍ଣ ସହାନୁଭୂତିରେ ବାଞ୍ଛେ ଆମ୍ଭ ଜାତି ।୧୩୪
ହେ ଭାରତବାସୀ କହୁଅଛି ବାରବାର
ଏକତା ପ୍ରତିଷ୍ଠା ଲାଗି ସର୍ବେ ଯତ୍ନକର । ୧୩୫
ଇଂରେଜ ଜାତିର ଇଚ୍ଛା ଅଭିପ୍ରାୟ ଶୁଣ
ଭାରତକୁ ବନ୍ଧୁଭାବେ କରିବ ଗ୍ରହଣ । ୧୩୬
ବ୍ରିଟିଶ ସାମ୍ରାଜ୍ୟ ମଧ୍ୟେ ଜଣେ ଅଂଶୀଦାର
ଭାରତ ପ୍ରତି ଏପରି କରିବ ବେଭାର । ୧୩୭

ମୋର ଇଚ୍ଛା ଗୋଷ୍ଠି ଏକ କରିବି ଗଠନ
ସକଳ ଦଳରୁ ପ୍ରତିନିଧି ଥିବେ ଜାଣ । ୧୩୮
ସେ ଗୋଷ୍ଠିର ସଭାପତି ମୁଁ ହୋଇବି ଜାଣ
ସେମାନଙ୍କ ମତନେଇ ହେବ ସବୁ କାମ ।୧୩୯
ଯୁଦ୍ଧ ବିଷୟରେ ଯାହା ହୋଇବ ଭାରତେ
ଜାଣିପାରିବେ ଏ ସଭା ସଦସ୍ୟ ସମସ୍ତେ ।୧୪୦
ପୂର୍ବଥର ଯୁଦ୍ଧବେଳେ ଭାରତର ଦାନ
ମହାମୂଲ୍ୟବାନ ପୁଞ୍ଜି ଅତୀବ ମହାନ । ୧୪୧
ସମଗ୍ର ପୃଥିବୀ ଦୃଷ୍ଟି କଲା ଆକର୍ଷଣ
ଭାରତବାସୀର ଅଟେ ଏ ମହତ ଗୁଣ । ୧୪୨
ଆଧ୍ୟାତ୍ମିକ ଦାନ ତାର ସବୁଠୁ ମହତ
ନ୍ୟାୟପକ୍ଷ ନ ଛାଡ଼ଇ କଦାଚ ଭାରତ । ୧୪୩
ଉତ୍ତମ ନ୍ୟାୟସଙ୍ଗତ ଯାହା ଟିଏ ବୁଝଇ
କରେ ଅକାତରେ ତାହା କୁଣ୍ଠିତ ନ ହୋଇ
ନ ହୁଅଇ ନ୍ୟାୟପଥୁଁ କେବେ ବିଚଳିତ
ଭାରତବାସୀର ଏହି ଗୁଣଟି ମହତ । ୧୪୫
ସାହାଯ୍ୟ କଲା ଦେଇଣ ଯାହା ଧନ ଜନ
ବିଶେଷ ଉଲ୍ଲେଖ୍ୟଯୋଗ୍ୟ ଅଟଇ ପ୍ରଧାନ ।୧୪୬
ଭବିଷ୍ୟତରେ ଅଧିକ ସାହାଯ୍ୟ ସେ ଦେବ
ଏପରି ଆଶା କରିବା ନୁହେଁ ଅସମ୍ଭବ । ୧୪୭
ତେଣୁ ଯୁଦ୍ଧ ବିଷୟରେ ନିତି ଯା ଘଟିବ
ଭାରତବାସୀ ସେ ସବୁ ଖବର ଜାଣିବ । ୧୪୮
ସେହିହେତୁ ଗୋଷ୍ଠି ଏକ ସଂଗଠିତ ହେବ
ଯୁଦ୍ଧ ବିଷୟ ସେ ସବୁ ବିଚାର କରିବ । ୧୪୯
ଆଉଥରେ ପୁଣି ମୁଁ କରୁଛି ନିବେଦନ
ସକଳ ଭାରତବାସୀ ହୁଅ ଏକମନ । ୧୫୦
ମତଭେଦ ଥିଲେ ଆଉ ଶୋଚନା ନ କର
ଭାରତର ଏକତାକୁ ମୂଳମନ୍ତ୍ର ଧର । ୧୫୧

ଦେଖି ପଡ଼ୁଛି ବିପତ୍ତି ବିଳାତ ଉପରେ
ଭାରତକୁ ଏ ବିପତ୍ତି ମାଡ଼ି ଆସିପାରେ । ୧୫୨
ସଙ୍କଟ ମୁଖରେ ଛିଡ଼ା ହୋଇଅଛୁ ଆମ୍ଭେ
ଭାରତବାସୀ ସହାୟ ହୁଅ ହେ ସରବେ ।୧୫୩
ଅନ୍ତର ସହିତ କରୁଅଛୁ ନିବେଦନ
ସକଳ ଭାରତବାସୀ ହୁଅ ଏକମନ । ୧୫୪
ନିଜ ନିଜ ଶକ୍ତି ଅନୁସାରେ 'ସାହାହୁଅ
ପଛଘୁଞ୍ଚା ଦେଇ କେହି କେବେହେଁ ନ ରହ ।
ପଡ଼ୁଛି ମହାସୁଯୋଗ କେବେ ଛାଡ଼ନାହିଁ
ଏକମନେ ଏକଠାରେ ଠିଆ ହୁଅ ଯାଇ ।୧୫୬
ଏକତା ସୂତ୍ରରେ ବନ୍ଧା ହୁଅ ସବୁଦଳ
ଏଥିପାଇଁ ପଡ଼ିଅଛି ଏ ମାହେନ୍ଦ୍ର ବେଳ ।୧୫୭
ଯେଉଁ ଆଦରଶ ପାଇଁ କରୁ ଆମ୍ଭେ ରଣ
ପାଇବ ଭାରତଠାରୁ ପୂର୍ଣ୍ଣ ସମର୍ଥନ । ୧୫୮
ପ୍ରାଚୀନ ଭାରତ ଇତିହାସ ଦେଖ ଫେଇ
ଏ ଆଦର୍ଶ ତହିଁ ସଙ୍ଗେ ସମାନ ଅଟଇ । ୧୫୯
ତେଣୁ ମୋର ଆଶା ସର୍ବେ ଏକମେଳ ହୋଇ
ଅଖଣ୍ଡ ସାହାଯ୍ୟ ଦେବା ଉଚିତ ଅଟଇ ।୧୬୦
ଜାଣୁଛି ଦେଶାତ୍ମବୋଧ ଅଛି ଭାରତର
ସର୍ବେ ମନ ପ୍ରାଣ ଦେଇ ହୁଅ ଅଗ୍ରସର ।୧୬୧
ବୋଲେ ଜଗବନ୍ଧୁ ସର୍ବେ କର ହେ ବିଚାର
ଏ ଯୁଦ୍ଧରେ କି କର୍ତ୍ତବ୍ୟ ଅଟଇ ତୁମ୍ଭର ।୧୬୨

ଇତି ଶ୍ରୀ ଭାରତ-ଚରିତାମୃତେ ବଡ଼ଲାଟ ଗାନ୍ଧିଭେଟ ଚରିତ ବର୍ଣ୍ଣନେ ନବେ ଅଧ୍ୟାୟଃ ।



# ଏକାନବେ ଅଧ୍ୟାୟ

ଶ୍ରୀ ନାରଦ ଉବାଚ
ବଡ଼ଲାଟଙ୍କ ଘୋଷଣା ପ୍ରଚ୍ଚର ପାଇଲା
ମୃତକ ପରି ଭାରତ ପ୍ରୁହିଁ ରହିଥିଲା । ୧
ସକଳେ ପଢ଼ି ଘୋଷଣା ହୋଇଲେ ଚକିତ
ଗାନ୍ଧି ବୋଇଲେ ଏ କଥା ନୁହଇ ଉଚିତ । ୨
ରୁଟି ଖାଇବାକୁ ଭାରତର ଦାବି ଥିଲା
ବଦଳରେ ଭାରତକୁ ପଥର ମିଳିଲା । ୩
ବଡ଼ଲାଟଙ୍କ ଘୋଷଣା ନିରାଶାଜନକ
ଏହା ପଢ଼ିକରି ମୁହିଁ ହୋଇଲି ଅବାକ । ୪
କିଛି କହି ନ ଥିଲେ ତ ହୋଇଥାନ୍ତା ଭଲ
ଦେଖୁଛି ଏ ଘୋଷଣାରେ ନାହିଁ ବେଶି ମୂଲ୍ୟ । ୫
ଏତେ ବଡ଼ ଘୋଷଣାରେ ମର୍ମ ଅଛି ଯାହା
ଠିକେ ଠିକେ କହୁଅଛି ଶୁଣ ଏବେ ତାହା । ୬
ଇଂରେଜ ସରକାରର ଭେଦ ଭାବ ମାନ୍ତି
ଅଛି ଏବେ ଭବିଷ୍ୟତେ ରହିବ ନିଯୁକ୍ତି । ୭
ବାଧ୍ୟ ଦେଇ ପାଣ୍ଟିବ ଯାବତ ସରକାର
ଗଣତନ୍ତ୍ର ଭାରତରେ ନ ହେବ ପ୍ରଚାର । ୮
ଯେତେଦୂର ଦୂରଦୃଷ୍ଟି ଅଛଇ ମୋହର
ଦେଖୁଛି କଂଗ୍ରେସ ନ ହୋଇବ ଭାଗୀଦାର । ୯
କହିଲେ ଏ ଯୁଦ୍ଧପରେ ବଇଠକ ହେବ
ପୂର୍ବ ବଇଠକ ପରି ବିଫଳ ହୋଇବ । ୧୦
କି ଅଛି ଭାରତ ଭାଗ୍ୟେ କହିପାରୁ ନାହିଁ
ନିରାଶ ହେବ କଂଗ୍ରେସ ଏ ସମ୍ବାଦ ପାଇ । ୧୧
କଂଗ୍ରେସ ଶକତିଶାଳୀ ହେବା ଦରକାର
ହେଉ ଏ ପବିତ୍ର ଅନୁଷ୍ଠାନଟି ନିକର । ୧୨
ଦେଖାଯାଉ କଂଗ୍ରେସର କର୍ମକର୍ତ୍ତାଗଣ
କିପରି ଭାବେ କରିବେ ଏହାକୁ ଗ୍ରହଣ । ୧୩

କଂଗ୍ରେସର ସଭାପତି ରାଜେନ୍ଦ୍ର ପ୍ରସାଦ
ଏ ଘୋଷଣା ପଢ଼ି ମନେ ଲଭିଲେ ବିଷାଦ ।୧୪
ଘୋଷଣା ପଢ଼ିଣ କ୍ଷୁବ୍ଧ ହୋଇଲା ଭାରତ
ଉତ୍ସାହ ବଦଳେ ଅବିଶ୍ୱାସ ହେଲା ଜାତ । ୧୫
ଉତ୍ସାହ ଉଦ୍ୟମ ବହ୍ନି ଜଳି ଉଠୁଥିଲା
ଏ ଘୋଷଣା ପଢ଼ି ସବୁ ପଣ୍ଡ ହୋଇଗଲା । ୧୬
ଇଂରେଜଙ୍କ ପାଟମନ୍ତ୍ରୀ କହିଲେ ବାରବାର
ଇଉରୋପ ରାଜ୍ୟର ସ୍ୱାତନ୍ତ୍ର୍ୟ ରକ୍ଷାକର । ୧୭
ସେ ଦେଶରେ ଶାନ୍ତି ନିଶ୍ଚେ ହେବ ପ୍ରତିଷ୍ଠିତ
ଆଉ ସବୁ ଯଥା ତଥା ରହିବ ନିଶ୍ଚିତ । ୧୮
ଭାରତର ଦଶା ଯାହା ଅଛି ତା ରହିବ
ଭାରତର ଏ ଯୁଦ୍ଧରେ କି ଆଗ୍ରହ ହେବ । ୧୯
ଯଦି ଏ ଯୁଦ୍ଧରେ ଇଂଲଣ୍ଡର ହେବ ଜୟ
ଭାରତର ଦଶା ଯଥା ତଥାଟି ନିଶ୍ଚୟ । ୨୦
ଇଉରୋପ ବାହାରେ ଅଛନ୍ତି ଯେତେ ଜାତି
ଭାରତ ପରି ପୀଡ଼ିତ ହେଉଛନ୍ତି ନିତି । ୨୧
ଶୋଷଣ ନୀତିରେ ହେଉଛନ୍ତି ଜରଜର
ସେମାନଙ୍କ ଦଶା ତ ରହିବ ସେ ପ୍ରକାର । ୨୨
ସାମ୍ରାଜ୍ୟବାଦ ନୀତିକି ବଳ ଦେବା ପାଇଁ
ଏ ଯୁଦ୍ଧେ ସାହାଯ୍ୟ ନେବା ଅର୍ଥଟି ଅଟଇ ।୨୩
ଭାରତ ଯେବେ ଏ ଯୁଦ୍ଧେ ସାହାଯ୍ୟ କରିବ
ସେ ସବୁ ଜାତି ଗତିରେ ନିଶ୍ଚେ ବାଧା ଦେବ ।
ଆଧାମ୍ନିକ ସାହାଯ୍ୟକୁ ପରଶଂସା କରି
ବଡ଼ଲାଟ କହି ହେଉଛନ୍ତି ଭୂରିଭୂରି । ୨୫
ଏ ସାହାଯ୍ୟ ସରକାର କେବେ ନ ପାଇବେ
ଏ କଥା ମୋହର ମତ ଜାଣ ହେ ସରବେ ।୨୬
ଜହରଲାଲ ଆବୁଲକାଲାମ ଆଜାଦ
ଅତ୍ୟନ୍ତ ଦୁଃଖିତ ହେଲେ ପଢ଼ି ଏ ସମ୍ବାଦ ।୨୭

ଆମ୍ଭେମାନେ କି କରିବୁଁ ଏ ଘୋଷଣା ପରେ
ଠିକଣା କରି କହିବା ଏବେ କି ପ୍ରକାରେ ।୨୮
କାର୍ଯ୍ୟକାରୀ ସମିତିର ବଇଠକ ହେବ
କି କରାଯିବ ସେଠାରେ ସ୍ଥିର କରାଯିବ । ୨୯
ପୂର୍ବେ ଯାହା ଏ ସମିତି କରିଥିଲେ ସ୍ଥିର
ତା ପରେ ହେଲା ଲାଟଙ୍କ ଘୋଷଣା ପ୍ରଚୁର ।୩୦
ଏ ଘୋଷଣା ପରେ ସେ ସମିତି କି କହିବ
ତାକୁ ଅନୁସରି କାର୍ଯ୍ୟପନ୍ଥା ଗଢ଼ାଯିବ । ୩୧
ଗାନ୍ଧି ସେବାସଂଘ ସଭାପତି ହେ ସୁଜନ
କିଶୋରୀଲାଲ ଅଟଇ ତାହାଙ୍କର ନାମ । ୩୨
ସେ ବୋଲନ୍ତି କାର୍ଯ୍ୟକାରୀ ସମିତି ଯା କଲା
ସେ କଥା ତାଙ୍କ ମନକୁ କଟ୍ଟି ନ ପାଇଲା ।୩୩
ଗାନ୍ଧି ମତ ସଙ୍ଗେ ସେ ବ୍ୟବସ୍ଥା ନ ମିଳିଲା
ଏହି ଉପହାର ଗାନ୍ଧିଜୀଙ୍କୁ ଦିଆଗଲା । ୩୪
କଂଗ୍ରେସ ଗାନ୍ଧିବାଦକୁ ଦେଲାକ ବିଦାୟ
ଭାରତର ଅମଙ୍ଗଳ ଘଟିବ ନିଶ୍ଚୟ । ୩୫
ଜଉତିଷ ଭବିଷ୍ୟତ ବାଣୀ କି ଘଟିଲା
ଏକସ୍ତରୀ ବରଷ ବୟସ ଆରମ୍ଭିଲା । ୩୬
ଏହିପରି ନାନା ଲୋକେ ପ୍ରକାଶନ୍ତି ମତ
କାହାର ମତ ଯଥାର୍ଥ ବୁଝିବା କେମନ୍ତ । ୩୭
କାର୍ଯ୍ୟକାରୀ ସମିତି ଯା କରିଛି ବିଚାର
ପଚାରୁଛି କହନ୍ତୁ ହେ ରାଜସରକାର । ୩୮
ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଦିଅ
ଯଥାଯୋଗ୍ୟ ସାହାଯ୍ୟ ଏ ଭାରତକୁ ଦିଅ । ୩୯
ନ ପଚାରି ଭାରତକୁ କଲ ତ ସମର
ଏବେ କହୁଛ ସମରେ ହୁଅ ଅଂଶୀଦାର ।୪୦
ଅଂଶୀଦାର ହେଲେ ହେବ ସ୍ୱାଧୀନ ଭାରତ
ଅନ୍ୟଥା ଭାରତ ହେବନାହିଁ ଏକମତ । ୪୧

ସବୁ ପ୍ରଦେଶରେ ଏ ବ୍ୟବସ୍ଥା କରାଯାଉ
ବ୍ୟବସ୍ଥା ସଭାରେ ଏହା ଦାବି କରାଯାଉ । ୪୨
କଂଗ୍ରେସ ଆଦେଶ ମାନି ସବୁ ପ୍ରଦେଶରେ
ଏ ନାଟକ ଅଭିନୀତ ହେଲା ଏକାଧାରେ । ୪୩
ଛଅ ପ୍ରଦେଶରେ ହେଲା ଏମନ୍ତ ସିଦ୍ଧାନ୍ତ
ବିପକ୍ଷ ଦଳ ବିପକ୍ଷେ କହିଲେ ବହୁତ । ୪୪
ନାନା ଯୁକ୍ତିତର୍କ ଉଠାଇଲେ ବିପକ୍ଷରେ
ମୁସଲମାନ ଏଥିରେ ପ୍ରତିବାଦ କଲେ । ୪୫
ସକଳ ଯୁକ୍ତିତର୍କ ରଦ୍ଦ ହୋଇଗଲା
ବହୁଳ ଭୋଟରେ ଏ ସିଦ୍ଧାନ୍ତ ସ୍ଥିର ହେଲା ।୪୬

ଶ୍ରୀ ବିଷ୍ଣୁ ଉବାଚ

କି ସିଦ୍ଧାନ୍ତ ପରିଶେଷେ ହୋଇଲାକି ସ୍ଥିର
ଜଣା ନ ଗଲା କଥାଟି କହିଛ ପରିଷ୍କାର । ୪୭
କି କି ଯୁକ୍ତି ଦେଖାଇଲେ ବିବାଦୀ ସକଳ
କି ସଂଶୟ ଉପୁଜିଲା ମନରେ ତାଙ୍କର । ୪୮

ଶ୍ରୀ ନାରଦ ଉବାଚ

ଶୁଣ ଆହେ ମହାପ୍ରଭୁ ମୋର ନିବେଦନ
ସବୁଠି ଏହି ସିଦ୍ଧାନ୍ତ ହେଲା ପ୍ରଭୁ ଜାଣ । ୪୯
ନ ପଚାରି ଭାରତକୁ ଯୁଦ୍ଧେ ଭାଗୀ କଲ
ଏଥିପାଇଁ ଦୁଃଖ ହୁଏ ତିଳେ ନ ଭାବିଲ । ୫୦
ଯେ ନୀତି ଧରି ଇଂରେଜ କରୁଛି ଲଢ଼ାଇ
ଧର୍ମଯୁଦ୍ଧ କରୁଅଛି କହୁଛି ବଢ଼ାଇ । ୫୧
ସାଧୁ ଉଦ୍ୟମ ଏ କଥା ମାନୁଛି ଭାରତ
ତେବେ କମାଇ ଫିଟାଇ ନ କହ କିଞ୍ଚିତ ।୫୨
ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଦିଅ
ସେହି ନୀତି ଅନୁସରି ଶାସନ ଚଳାଅ । ୫୩
ଅନ୍ୟାନ୍ୟ ଉପନିବେଶ ଅଛି ତ ତୁମ୍ଭର
ଭାରତକୁ ଦିଅ ସେହିପରି ଅଧିକାର । ୫୪

ଯୁଦ୍ଧପରେ ଏ ସବୁ କରିବ ପଚ୍ଛେ କର
ବର୍ତ୍ତମାନ କହ ହେବ ଏ କଥା ନକର । ୫୫
ଏ କଥା ଶୁଣି ଭାରତ ସନ୍ତୁଷ୍ଟ ହୋଇବ
ଯଥାଶକ୍ତି ଏ ସମରେ ସାହାଯ୍ୟ କରିବ । ୫୬
ବଡ଼ଲାଟ ବଡମନ୍ତ୍ରୀ ସେ ଜବାବ ଦେଲେ
ଗୋଳଆ ପୋଳଆ କରି କହିଲେ ସକଳେ ।
ସବୁ ତୋର ଖଟୁଳିକି ନ ଛୁଇଁବୁ ମୋର
ଏହି ମାତଧରି କଥା କହିଲେ ନକର । ୫୮
ଘସି ସାଉଟି ନ ନିଅ ବୋଲି ନ କହିଲେ
ଫଳରେ ଟୋକାଇଟିକୁ ଫୋପଡ଼ାଇ ଦେଲେ ।
ଭାଷା ଛଟାରେ ସେମାନେ କହିଲେ ବହୁତ
ପଢ଼ିଦେଲେ ଲୋକ ମନ ହୋଇବ ମୋହିତ ।
ତେଣୁ ଭାରତର ଲାଟସଭା ନିବେଦନ
ପରିଷ୍କାର କରି କହ ନିଦାନ ବଚନ । ୬୧
ଭାରତ ଲୋକ ଭାରତ ଆଇନ କରିବେ
ତାକୁ ଅନୁସରି ଦେଶ ଶାସନ କରିବେ । ୬୨
ଏପରି ଘୋଷଣା କରିଦିଅ ପରିଷ୍କାର
କାର୍ଯ୍ୟରେ ଏ କଥା ଯେତେ ଶୀଘ୍ର କରିପାର ।
ଯୁଦ୍ଧପାଇଁ ଯେଉଁ ଯେଉଁ କାର୍ଯ୍ୟ କରାଯିବ
ପ୍ରାଦେଶିକ ସରକାର ମତ ଲୋଡ଼ା ହେବ ।୬୪
ଏହିପରି ସିଦ୍ଧାନ୍ତ ହୋଇଲା ସବୁଠାରେ
କଂଗ୍ରେସ ମନ୍ତ୍ରୀ ସକଳେ ପଦତ୍ୟାଗ କଲେ ।୬୫
କଂଗ୍ରେସ ଶାସନ ଦେଶେ ହୋଇଲା ଅଚଳ
ହାତକୁ ଶାସନ ନେଲେ ନିଜେ ଗଭର୍ଣ୍ଣର ।୬୬
ବିପକ୍ଷ ଦଳକୁ ମନ୍ତ୍ରୀ ହେବାକୁ କହିଲେ
ଏ ପରିସ୍ଥିତିରେ କେହି ରାଜି ନହୋଇଲେ ।୬୭
କଂଗ୍ରେସ ବିରୋଧୀ ଲୋକ ଅଛନ୍ତି ବହୁତ
ନ ହୁଅନ୍ତି କଂଗ୍ରେସ କଥାରେ ଏକମତ । ୬୮

ହିନ୍ଦୁ ମହାସଭା ଏକ ଅଛି ଭାରତରେ
ରାଜି ହେଉନାହିଁ ସେହି ଭାରତ କଥାରେ ।୬୯
ପାରଶି ଜଇନ ଖ୍ରୀଷ୍ଟି ଆନ ମୁସଲମାନ
ଅନୁନ୍ନତ ଅସ୍ପୃଶ୍ୟ ଲୋକେଛନ୍ତି ପୁଣ । ୭୦
ଶ୍ରେଷ୍ଠ ଶ୍ରେଷ୍ଠ ଗୋଷ୍ଠି ଲୋକ ଅଟନ୍ତି ଏମାନେ
ଜମିଦାର ରାଜା ମହାରାଜା ମହାଜନେ । ୭୧
କଂଗ୍ରେସକୁ ପ୍ରତିନିଧି ବୋଲିନ ମାନନ୍ତି
କଂଗ୍ରେସ ତାଙ୍କର ଶତ୍ରୁ ବୋଲି ବିଚାରନ୍ତି ।୭୨
କଂଗ୍ରେସ ତାଙ୍କ ମତରେ ଅଟେ ଏକଦଳ
ସକଳ ଭାରତବାସୀ ସଭ୍ୟ ନୁହେଁ ତାର । ୭୩
ଚାରିଅଣା ଦେଇ ଯେହୁ ସଭ୍ୟ ହୋଇଛନ୍ତି
ସେହି ସିନା କଂଗ୍ରେସର ସଦସ୍ୟ ଅଟନ୍ତି । ୭୪
ଏପରି ତିରିଶ ଲକ୍ଷ ସଭ୍ୟ କଂଗ୍ରେସର
ତାଙ୍କ କଥା କହିବ କଂଗ୍ରେସ ଅଧିକାର । ୭୫
ପଞ୍ଚତିରିଶକୋଟି ଲୋକ ଭାରତେ ଅଛନ୍ତି
ସେମାନଙ୍କ ପ୍ରତିନିଧି କଂଗ୍ରେସ କେମନ୍ତି । ୭୬
ସବୁଠାରୁ ହିନ୍ଦୁ ସଂଖ୍ୟା ଅଧିକ ଅଟଇ
ହିନ୍ଦୁ ମହାସଭା ବୋଲେ ଆପତ୍ତି ଦେଖାଇ ।୭୭
ମୁସଲମାନଙ୍କ ସଭା ପୃଥକ ଅଟଇ
ଜିନା ନାମେ ସଭାପତି ତାର ଛନ୍ତି ରହି । ୭୮
ଜିନା ବୋଲନ୍ତି କଂଗ୍ରେସ ତାଙ୍କର ବଇରୀ
ସେମାନଙ୍କ ସ୍ୱାର୍ଥ ରକ୍ଷା ହୋଇବ କପରି । ୭୯
ଜମିଦାର ଆଦି ଯେତେ କ୍ଷୁଦ୍ର କ୍ଷୁଦ୍ର ଦଳ
କଂଗ୍ରେସ ସହିତ ନାହିଁ ସେମାନଙ୍କ ମେଳ ।୮୦
ସେମାନେ ଶାସନ ଚଳାଇଲେ ଯେତେଦିନ
କଲେ ଅଳପ ଦିନରେ ଯେତେ କର୍ମମାନ ।୮୧
ସେମାନଙ୍କ ସ୍ୱାର୍ଥମୂଳେ କଲେ ଯେ ଆଘାତ
ତେଣୁ ସେମାନେ ସନ୍ତତ ହେଉଛନ୍ତି ଖାତ ।୮୨

ଏ ସବୁ ଯୁକ୍ତି ଦେଖାଇ ସେମାନେ କହନ୍ତି,
ରକ୍ଷକ ମାତ୍ର ତାଙ୍କର ଇଂରେଜ ଶକତି । ୮୩
ତେଣୁ ସେମାନେ ବୋଲନ୍ତି ନହି ଇଂରେଜ ଶୁଣ
ଯେବେ ଭାରତକୁ ତୁମ୍ଭେ କରିବ ସ୍ୱାଧୀନ ।୮୪
କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠି ସ୍ୱାର୍ଥ ନିରାପଦ ହେବ
ଏମନ୍ତ ବିଧାନ ରଖି ଆଜ ଯା କରିବ । ୮୫
ତୁମ୍ଭେ ନ ରଖିଲେ ଆମ୍ଭେ ହୋଇବୁଁଟି ନାଶ
କଂଗ୍ରେସଠାରେ ଆମ୍ଭର ନାହିଁ ହେ ବିଶ୍ୱାସ ।
କଂଗ୍ରେସର ଦାବି ଯେବେ ବିଚାର କରିବ
ନ ପଚାରି ଆମ୍ଭଙ୍କୁ କାହିଁ ନ କରିବ । ୮୬
ଏହିପରି ଭାରତରେ ଦ୍ୱନ୍ଦ ଲାଗିଅଛି
ଇଂରେଜ ସରକାରଙ୍କୁ ସୁଯୋଗ ପଡ଼ିଛି । ୮୮
ସେମାନେ ବୋଲନ୍ତି ସର୍ବେ କହ ମିଳିମିଶି
ହାତରେ ଧରିବ ଯେବେ ସ୍ୱାଧୀନତା ଶଶୀ ।୮୯
ଉପନିବେଶରେ ଅଛି ଯେମନ୍ତ ଶାସନ
ସେ ପ୍ରକାର ଶାସନ ଦେବାକୁ ଆମ୍ଭ ମନ ।୯୦
କେତେ ପୂର୍ବ ଘଟନାରେ କହିଛୁ ଏମନ୍ତ
ସେହି ମତ ଧରି କାର୍ଯ୍ୟ କରୁଛୁଁ ନିଯୁତ ।୯୧
ସଂଶୟ ନ କର ମନେ କହୁଛୁଁ ଯେମନ୍ତ
ଯୁଦ୍ଧ ପରେ ବଇଠକ ବସିବ ନିଶ୍ଚିତ । ୯୨
ସବୁ ଶ୍ରେଣୀୟ ଲୋକଙ୍କୁ ଡ଼କାଇ ଆଣିବା
ବୁଝି ବିଚାରି ସକଳ ସିଦ୍ଧାନ୍ତ କରିବା । ୯୩
ସବୁରି ସ୍ୱାର୍ଥ ରଖିବା ଅଟେ ଆମ୍ଭ ଧର୍ମ
ସକଳଙ୍କୁ ନ ବିଚାରି କରିବୁଁ କି କର୍ମ । ୯୪
ଦେଖୁଛ ତ ବଡ଼ଲାଟ ବାଛି ବାଛି ଲୋକ
ସବୁ ଶ୍ରେଣୀରୁ ଡ଼ାକଲେ ଦେଖି ଠିକ ଠିକ ।୯୫
ଏକେ ଏକେ ଭିନ୍ନ ଭିନ୍ନ ମତ ଜଣାଇଲେ
ଏକମତ ନହୋଇ କେହି କାହିଁ ନ କହିଲେ ।୯୬

ଏକମତ ହେବାପାଇଁ ସମୟ ଲାଗିବ
କରାଯାଉଅଛି ଯତ୍ନ ପୁଣି କରାଯିବ । ୯୭
ଏ ସବୁ କରିବା ପାଇଁ ସମୟ ଲାଗିବ
ତରତର ହେଲେ ପୁଣି କିପରି ଚଳିବ । ୯୮
ଦେଖୁଛ ତ ବିପତ୍ତି ପଡ଼ିଛି ଏ ବେଳରେ
ଆମ୍ଭେମାନେ ବ୍ୟସ୍ତଅଛୁ ସମର ବ୍ୟାପାରେ ।୯୯
ସମର ଶେଷରେ ସିନା ହେବ ଫୁରୁସତ
କିପରି କସ କରିବୁଁ ନ ହେଲେ ନିଶ୍ଚିନ୍ତ ।୧୦୦
ଶେଷ ଲକ୍ଷ୍ୟ ଭାରତର ପୂର୍ଣ୍ଣ ସ୍ୱାଧୀନତା
କାଲେ ଏ ଫଳ ମିଳିବ କରନାହିଁ ଚିନ୍ତା ।୧୦୧
ଏ ବିଷୟର ଅଟଇ ଅତ୍ୟନ୍ତ ଗୁରୁତର
ହେ ଭାରତବାସୀ ତୁମ୍ଭେ ନ ହୁଅ ଅଧୀର ।୧୦୨
କେତେ ସଜ୍ଜନ ପୁରୁଷ ବିଲାତେ ଅଛନ୍ତି
ଭାରତ ଦାବି ପକ୍ଷରେ ବହୁତ ଲଢ଼ନ୍ତି ।୧୦୩
ସେମାନେ ବୋଲନ୍ତି ଭାରତର ଦାବି ଯାହା
ତୁରନ୍ତ ପୂରଣ କର କହୁଛନ୍ତି ତାହା । ୧୦୪
ଭାରତକୁ ବନ୍ଧୁଭାବେ କର ବ୍ୟବହାର
ନ କଲେ ଭାରତ ହାତୁଁ ଖସିବ ନିକର ।୧୦୫
ଆଗେ ଦେବ ପଛେ ଦେବ ଯଦି ଏହା ସତ
କି କ୍ଷତି ନିଷ୍ପତ୍ତି ଯେବେ ହୋଇବ ତୁରନ୍ତ ।୧୦୬
ଡ଼ାୟୂର ସାହେବ ପରି ଆଉ କେତେ ଜଣ
ବୋଲନ୍ତି କଂଗ୍ରେସ କଥା କାହିଁ ନ ଶୁଣ ।୧୦୭
ଅଛନ୍ତି ଆମ୍ଭର ରାଜା ମହାରାଜାଗଣ
ସାହାଯ୍ୟ କରନ୍ତି ଦେଇ ବହୁ ଧନ ଜନ ।୧୦୮

ଶ୍ରୀ ବିଷ୍ଣୁ ଉବାଚ

ବିଲାତ ଲୋକ ଏପରି କହିଲେକ ଯାହା
ଗାନ୍ଧି ଆଉ ଭାରତରେ କି ବୋଇଲେ ତାହା ।

କିପରି ପସନ୍ଦ କଲେ ଆଜି ଆଜି ଲୋକେ
ଏହାପରେ କଥା ପୁଣି ଗଲା କେଉଁପାକେ ।୧୧୦

ଶ୍ରୀ ନାରଦ ଉବାଚ

କଂଗ୍ରେସ ମନ୍ତ୍ରୀମଣ୍ଡଳ ପଦତ୍ୟାଗ କଲେ
ଗଭର୍ଣ୍ଣରମାନେ ନିଜେ କାମ ଚଳାଇଲେ ।୧୧୧
ଗାନ୍ଧି ବୋଇଲେ କଂଗ୍ରେସ ପରେ କି କରିବ
ପୂର୍ବ ସଂଗଠନ କାର୍ଯ୍ୟେ ମନ ଧ୍ୟାନ ଦେବ ।
ସତ୍ୟ ଅହିଂସା ଧରମ କରନ୍ତୁ ସାଧନ
ବିନା ସାଧନାରେ ସିଦ୍ଧି ହୋଇବ କେସନ ।
କଂଗ୍ରେସ କରମୀ ଛନ୍ତି ଭାରତରେ ଯେତେ
ପବିତ୍ର ଭାବରେ ମନ ଦିଅନ୍ତୁ ଏ ବ୍ରତେ । ୧୧୪
ସଚ୍ଚା ସରଳ ଭାବରେ ଗଢ଼ନ୍ତୁ ଜୀବନ
ତେବେ ସ୍ୱରାଜ୍ୟ ସମରେ ହୋଇବେ ସଇନ ।
ଅରଟ ଧରି ନିଷ୍ଠାରେ ସୂତା ଯେ କାଟିବେ
ନିଶା ନିବାରଣ ଆନ୍ଦୋଳନ ଚଳାଇବେ ।୧୧୬
ଅସ୍ପୃଶ୍ୟତା ନିବାରଣେ ଦିଗେ ଦେବେ ମନ
କାୟମନବାକ୍ୟେ କରି ଅହିଂସା ପାଳନ । ୧୧୭
ନିଷ୍ଠାରେ ଏହି ସାଧନା କରି ନ ପାରିଲେ
ସ୍ୱରାଜ୍ୟ ସମରେ ବୀର ନ ହୋଇବେ ଭଲେ ।
ବର୍ତ୍ତମାନ ଆଇନ ଅମାନ୍ୟ ନ ହୋଇବ
ବ୍ରିଟେନ ଉପରେ କିଛି କୃପା ନ ଆସିବ ।୧୧୯
ଆଇନ ଅମାନ୍ୟ କାମ ଅତ୍ୟନ୍ତ ସଙ୍ଗୀନ
ପୂର୍ଣ୍ଣ ଅହିଂସା ନ ହେଲେ ନ ହେବ କାରଣ ।
କେତେ କର୍ମୀ ଲେଖିଛନ୍ତି କରି ଆନ୍ଦୋଳନ
ପ୍ରସ୍ତୁତ ଅଛୁଁ ସକଳେ ପାଳିବୁ ବିଧାନ । ୧୨୧
ବିଶ୍ୱାସ ନାହିଁ ମୋହର ଏ ସବୁ ଲେଖାରେ
ମୋଟାରେ ପ୍ରମାଣ ଅଛି ଏହା ବିପକ୍ଷରେ ।୧୨୨

ଯାଇ ଆସି ପାରୁନାହିଁ ଅସୁସ୍ଥ ଶରୀରେ
ଦୂରବାଟ ଯିବାପାଇଁ ବଳ ନାହିଁ ମୋର ।୧୨୩
କର୍ମୀମାନଙ୍କ ସହିତ ନାହିଁ ମୋ ସାକ୍ଷାତ
ବହୁତ କର୍ମୀ ସହିତେ ନାହିଁ ପରିଚିତ । ୧୨୪
ସେମାନଙ୍କ ମତଗତି ଅଟେ କି ପ୍ରକାର
ଜାଣିପାରିବା ସୁଯୋଗ ନାହିଁ ତ ମୋହର ।୧୨୫
ଯେବେ ଅବା ଆଇନ ଅମାନ୍ୟ କାମ ହେବ
ହିନ୍ଦୁ ମୁସଲମାନର ଝଗଡ଼ା ବଢ଼ିବ । ୧୨୬
ମାରପିଟ ଫଉଦାରି ହୋଇବ ନିଶ୍ଚିତ
ଏ ଫଳ ଫଳିବ ବୋଲି ଦିଶୁଛି ନିଶ୍ଚିତ ।୧୨୭
ତେଣୁ ରାଜି ନୁହେଁ ନେବାପାଇଁ ଏହି ଭାର
କଂଗ୍ରେସ ସଭା କରିବ ଏଥିର ବିଚାର । ୧୨୮
ମୁସଲମାନଙ୍କ ଦାବି ଅତି ଚମତ୍କାର
ପୂରଣ କରିବାପାଇଁକି ସାଧ୍ୟ କାହାର । ୧୨୯
ଯେତେ ଯେତେ ତାଙ୍କ ଦାବି ପୂରଣ କରିବ
ତେତେ ତେତେ ତାର ସୀମା ବୃଦ୍ଧି ହେଉଥିବ ।
ତେଣୁ ମିଳାମିଶା କଥା ଦିଶେ ଅସମ୍ଭବ
ଜିନାକୁ ତୁଷ୍ଟ କରିବା ନୁହଇ ସମ୍ଭବ । ୧୩୧
ଖୋଲିବାର ଭୁଲିବାର ସବୁ ତାଙ୍କଠାରେ
ନ ପାରିଲି ଯେତେ ଯତ୍ନ କଲି ମୁଁ ଏଥିରେ ।
ତିନି ଗୁରି ଦିନ ଧରି କଥାବାର୍ତ୍ତା ହେଲା
ତାହାଙ୍କ ଦାବିର ଆଦିଅନ୍ତ ନ ମିଳିଲା । ୧୩୩
ଇଂରେଜଙ୍କଠାରୁ ଜିନା ଯାହା ବା ପାଇବେ
କଂଗ୍ରେସଠାରୁ ତା ଠାରୁ ଅଧିକ ଗୁହିଁବେ ।୧୩୪
କଂଗ୍ରେସ ସବୁ ହିନ୍ଦୁର ପ୍ରତିନିଧି ନୁହେଁ
ସକଳ ଭାରତ ଲାଗି ସିନା କଥା କହେ ।୧୩୫
ଦଳଗତ ଅନୁଷ୍ଠାନ ନୁହଇ କଂଗ୍ରେସ
ଭାରତର ସ୍ୱାଧୀନତା ଏହାର ଉଦ୍ଦେଶ୍ୟ । ୧୩୬

ସବୁରି ପ୍ରୟାସ ସ୍ୱାଧୀନତା ଲାଭପାଇଁ
ଏ ଅର୍ଥରେ ସେ ସବୁର ପ୍ରତିନିଧି ହୋଇ ।୧୩୭
ଏହି ମତଲବ ଧରି କରୁଛନ୍ତି ସଂଗ୍ରାମ
ଜାତୀୟବାହିନୀ ହୋଇ କରୁଅଛି କାମ । ୧୩୮
ଅହିଂସା ମାର୍ଗରେ ଯେଣୁ କରୁଛନ୍ତି ସମର
ନିର୍ଦ୍ଦିଷ୍ଟ ସ୍ୱାର୍ଥ ଲଭିବ ଲକ୍ଷ୍ୟ ନାହିଁ ତାର ।୧୩୯
ହିନ୍ଦୁ ସ୍ୱାର୍ଥରକ୍ଷା ଲକ୍ଷ୍ୟ ନୁହେଁ କଂଗ୍ରେସର
ହିନ୍ଦୁ ମହାସଭା ଦାବି କରେ ଏ ପ୍ରକାର ।୧୪୦
ମୁସଲିମ ଲିଗ ନାମେ ଏକ ସଭା ଅଛି
ମୁସଲମାନଙ୍କ ପାଇଁ ସେ ଦାବି କରୁଛି । ୧୪୧
ଜାତି ବର୍ଣ୍ଣ ସମ୍ପ୍ରଦାୟ ନାହିଁ କଂଗ୍ରେସର
ଏ ମତ ଧରି କଂଗ୍ରେସ କରୁଛି ପ୍ରଚାର । ୧୪୨
ଇଂରେଜଙ୍କଠାରୁ ନିଅନ୍ତୁ ସେ ଯାହା ନେବେ
କଂଗ୍ରେସ ତାଙ୍କ ସହିତ ଦ୍ୱନ୍ଦ ନ କରିବେ ।୧୪୩
ଇଂରେଜ ସଙ୍ଗେ କଂଗ୍ରେସ କରୁଛି ଲଢ଼ାଇ
ମୁସଲମାନଙ୍କ ସଙ୍ଗେ ସେ ଲଢ଼ିବେ ନାହିଁ ।୧୪୪
କଂଗ୍ରେସ ଯେବେ ଏ ପଥୁଁ ବିଚଳିତ ହେବ
ହିମାଳୟ ଭୁଲି ଭ୍ରମ ଅବଶ୍ୟ କରିବ । ୧୪୫
ପରିଷ୍କାର କରି ଗାନ୍ଧି ଦେଲେ ଏହା କହି
ରାଜେନ୍ଦ୍ର ବଡ଼ଲାଟଙ୍କୁ କହିଦେଲେ ତାହି ।୧୪୬
ବୋଇଲେ ଶୁଣନ୍ତୁ ହେ ଇଂରେଜ ସରକାର
ଭାରତ ମୁକ୍ତି ବିଷୟ ନ କଲ ବିଚାର । ୧୪୭
କହିଲ ନାହିଁ ଫିଟାଇ ଦେବ କି ନ ଦେବ
ସମ୍ପ୍ରଦାୟ ମତଭେଦ ଦେଲ ହେ ଜବାବ ।୧୪୮
ସମ୍ପ୍ରଦାୟ ମଧ୍ୟରେ ଯେ ମତଭେଦ ଅଛି
ତୁଟିବ ଆମ ମଧ୍ୟରେ ଉଦ୍ୟମ ଲାଗିଛି । ୧୪୯
ମୂଳକଥା ସଙ୍ଗେ ଆଣି ଡ଼ାଳ ଯୋଡ଼ିଦେଲ
ଏ କଥା ଆମ୍ଭମାନଙ୍କୁ ନ ଲାଗିଲା ଭଲ । ୧୫୦

ଏ ମତ ଦେଖି ତୁମ୍ଭର ହୋଇଲୁଁ ଦୁଃଖିତ
ଆମ୍ଭମାନଙ୍କର ଆଶା ବିଫଳ ନିଶ୍ଚିତ । ୧୫୧
ପୂର୍ଣ୍ଣ ସାମ୍ରାଜ୍ୟ ମିଳିବ କରନ୍ତୁ ଘୋଷଣା
ଆଉ ସବୁକଥା ପରେ ହୋଇବ ଠିକଣା ।୧୫୨
କିନା ବଡ଼ଲାଟଙ୍କୁ ଅଲଗା ଜଣାଇଲେ
କଂଗ୍ରେସ ନେତାଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ।
କଂଗ୍ରେସ ଦାବିକୁ ଯେବେ ନ କଲ ଗ୍ରହଣ
କି ହେବ ବିଚାରି ଆଉ ଆର୍ଜି କଥାମାନ ।୧୫୪
ଏ ସବୁ ଉତ୍ତର ପାଇ ବଡ଼ଲାଟ ପୁଣ
ବୋଇଲେ କଲୁଁ ଆମ୍ଭେ ବହୁତ ଯତନ ।୧୫୫
କେତେ କେତେ ନେତାଙ୍କୁ ମୁଁ ଡକାଇ ବୁଝିଲି
ସୁଫଳ ଫଳିଲା ନାହିଁ ଦୁଃଖିତ ମୁଁ ହେଲି ।୧୫୬
ଶେଷ ନିରାଶ ବୋଲି ମୁଁ ଆଶା କରୁନାହିଁ
ଆହୁରି ଚେଷ୍ଟା କରିବ ସମାଧାନ ପାଇଁ ।୧୫୭
ଶେଷ ଚେଷ୍ଟାଯାକେ କାର୍ଯ୍ୟ କରିବ ନିଯୁତ
ଯାବତ ହାସଲ ହେବ ଉଦ୍ଦେଶ୍ୟ ମହତ ।୧୫୮
ସର୍ବେ ମିଶି ଗଲେ ବୋଲି କରିଣ ଘୋଷଣା
ଏ ଆଶା ମନରେ ପୋଷି କରିବ ଠିକଣା ।୧୫୯
ତେଣୁ କରୁଅଛି ଭାରତକୁ ନିବେଦନ
ଧୀରସ୍ଥିର ହୋଇ କାର୍ଯ୍ୟ କର ବନ୍ଧୁଗଣ ।
ସଦଭାବେ କାର୍ଯ୍ୟ କର ନ ହୁଅ ନିରାଶ
ଅବଶ୍ୟ ହାସଲ ହେବ ମହତ ଉଦ୍ଦେଶ୍ୟ ।୧୬୧
ଏହିପରି ଏ ଅଧ୍ୟାୟ ହେଲା ସମାପତ
ବୋଲେ ଜଗବନ୍ଧୁ ଆହେ ପ୍ରଭୁ ଜଗନ୍ନାଥ ୧୬୨
ତବ ଇଚ୍ଛା ପୂରଣ ହୋଇବ ସୁନିଶ୍ଚିତ
ମାନବ ନିମିତ୍ତ ମାତ୍ର କି ଅଛି ଆୟତ୍ତ । ୧୬୩
ଯେତେବେଳେ ଯେ ପ୍ରେରଣା ପ୍ରଭୁଠାରୁ ମିଳେ
ମାନବ ସେହି ପ୍ରେରଣା ନେଇ ବିଶ୍ୱେ ଖେଳେ ।

ତବ ଶ୍ରୀଚରଣେ ପ୍ରଭୁ ମୋର ନମସ୍କାର
ମାନବକୁ ସଦବୁଦ୍ଧି ଦେଇ ରକ୍ଷାକର । ୧୬୫

ଇତି ଶ୍ରୀ ଭାରତ-ଚରତାମୃତେ୍ୗ ବଡ଼ଲାଟ ଘୋଷଣା ଚରତ ବର୍ଣ୍ଣନେ ଏକାନବେ ଅଧ୍ୟାୟଃ ।



# ବୟାନବେ ଅଧ୍ୟାୟ

ଶ୍ରୀ ବିଷ୍ଣୁ ଉବାଚ

ଶୁଣ ହେ ନାରଦ ଯାହା ଯାହା କହିଗଲ
ଆଉ କଥା ରହିଗଲ ତାହା ନ କହିଲ । ୧
ଭାରତ ସଚିବ ଲର୍ଡ ଜେଟଲଣ୍ଡ ନାମ
ଭାରତ ବିଷୟେ କଲେ ବହୁତ ବୟାନ । ୨
ପାର୍ଲିଆମେଣ୍ଟ ସଭାରେ ବିଲାତ ଦେଶରେ
ବହୁତ ଯୁକ୍ତିତରକ ହେଲାକ ସେଠାରେ । ୩
ସରକାର ତରଫରୁ କଲେ ସେ ଉତ୍ତର
କ କହିଲେ ଗାନ୍ଧି ଶୁଣି ସେ ସବୁ ଖବର । ୪
ସାମୁଏଲ ହୋର ନାମେ ପୂରୁବ ସଚିବ
ସରକାର ତରଫରୁ ଦେଲେ ସେ ଜବାବ । ୫

ଶ୍ରୀ ନାରଦ ଉବାଚ

ଶୁଣ ମହାପ୍ରଭୁ ମୋତେ ପଚାରିଲ ଯାହା
ଠିକେ ଠିକେ କହୁଅଛି ଶୁଣ ପ୍ରଭୁ ତାହା । ୬
ଗାନ୍ଧି ତାହା ପଢି ଦେଲେ ଖବର ଉତ୍ତର
ଯେତେ ବେଶି ପଢୁଛି ମୁଁ ଲାଗେ ଗୋଳମାଳ ।
ଭଲ ମନ୍ଦ ଦୁଇକଥା ଯେ ଜବାବେ ଅଛି
ଅଧିକ ଭଲ ମନ୍ଦକୁ ବିକୃତ କରିଛି । ୮
ହୋର ସାହେବ ବୋଲନ୍ତି ତାଙ୍କ ସରକାର
ସାମ୍ରାଜ୍ୟବାଦକୁ ତେଜ ଅଛନ୍ତି ନକର । ୯

ଭାରତରେ ସଂଖ୍ୟାନ୍ୟୂନ ଗୋଷ୍ଠି ଛନ୍ତି ଯେତେ
ଅଭୟବାଣୀ ଶୁଣାଉଛନ୍ତି ତାଙ୍କୁ ନିତ୍ୟେ । ୧୦
ଏ କଥା ସଙ୍ଗେ ସେ କଥା ଖାପ ଖାଉନାହିଁ
କଥା ଛଳରେ ସେ ସିନା ଗଲେ ସବୁ କହି ।୧୧
ଭାରତରେ ଯେତେ ଯେତେ ସାହେବ ଅଛନ୍ତି
ତେଣେ ପୁଣି ରାଜା ମହାରାଜାମାନେ ଛନ୍ତି ।୧୨
ଏମାନଙ୍କୁ ବୋଲନ୍ତି ସେ ସଂଖ୍ୟାନ୍ୟୂନ ଦଳ
ସାମ୍ରାଜ୍ୟବାଦ ଛାଡ଼ିବା ଯୁକ୍ତି ବି ନିଷ୍ଫଳ । ୧୩
ଭାରତେ କେତେ ସାହେବ ବ୍ୟବସାୟ ପାଇଁ
ବସବାସ କରୁଛନ୍ତି ହୋଇଣ ଅସ୍ଥାୟୀ । ୧୪
ତାଙ୍କର ସମସ୍ତ ସ୍ୱାର୍ଥ ଇରୋପ ଦେଶରେ
ସଂଖ୍ୟାନ୍ୟୂନ ଗୋଷ୍ଠି ମଧ୍ୟେ ତାହାଙ୍କୁ ଧରିଲେ
ତାଙ୍କ ସ୍ୱାର୍ଥରକ୍ଷା ଭାରତରେ ପ୍ରୟୋଜନ
ଅଛନ୍ତି ଆବର ଗୋରା ସେନା କର୍ମୀଗଣ ।୧୬
ସେମାନଙ୍କ ସ୍ୱାର୍ଥରକ୍ଷା ଆବଶ୍ୟକ ହେବ
ଏଥିର ମରମ କସ ବୁଝି କ ନ ଯିବ । ୧୭
ଭାରତ ଜୟ ଫଳରେ ଯେଉଁ ଅଧିକାର
ଅକ୍ଷୁନ୍ନ ଭାବେ ରହିବ ଭାରତେ ନିକର । ୧୮
ଗୋରାଙ୍କର ସ୍ୱାର୍ଥ ଯାହା ଅଛି ଭାରତରେ
ରକ୍ଷା ହେବ ତାହା ବ୍ରିଟିଶର ବାନ୍ଧୁକରେ ।୧୯
କିନ୍ତୁ ଭାରତ ଯେ କାଳେ ସ୍ୱାଧୀନ ହୋଇବ
ଗୋରାମାନଙ୍କର ସ୍ୱାର୍ଥ ପରୀକ୍ଷିତ ହେବ । ୨୦
ଭାରତ ଜାତୀୟ ସ୍ୱାର୍ଥ ସହିତ ଯାହାର
ସ୍ୱାର୍ଥ ସଂଘର୍ଷ ଘଟିବ ବିଦାୟ ତାହାର । ୨୧
ସାମ୍ରାଜ୍ୟବାଦ ଶବଦ ଅର୍ଥ ଅଟେ କସ
ଏଥିପାଇଁ ଦେଖିଲି ଇଂରେଜ ଭାଷାକୋଷ ।୨୨
ତହିଁରେ ଏ ଶବଦର ଅର୍ଥ ଅଛି ଯାହା
ଶୁଣ ଏବେ ସୁଜ୍ଞଜନେ କହୁଅଛି ତାହା । ୨୩

ଯେଉଁ ଦେଶରେ ଇଂରେଜ ବାଣିଜ୍ୟ କରିବ
ସରକାରୀ ପତାକା ସେ ଦେଶରେ ଉଡ଼ିବ ।୨୪
ପତାକାକୁ ରକ୍ଷା କରିବାକୁ ଲୋଡ଼ା ହେଲେ
ଇଂରେଜଙ୍କ ସାମ୍ରାଜ୍ୟ ବିସ୍ତାର ହେବ ହେଲେ ।
ହୋର ସାହେବ ଯେ ସବୁକଥା କହିଦେଲେ
ଏହି ଅର୍ଥ ରଖି ମନେ ସକଳ କହିଲେ । ୨୬
ତାଳପରେ ତାଳି ଦେଇ ଯେତେ ସେ ଭାଷିଲେ
ଫୁଟି ଦିଶୁଛି ସାମ୍ରାଜ୍ୟବାଦ ଅବହେଳେ । ୨୭
ଦେଶୀୟ ରାଜାମାନଙ୍କ ଅବସ୍ଥା ଯେପରି
ଗୋରାମାନଙ୍କ ଅବସ୍ଥା ସଙ୍ଗତରେ ସରି । ୨୮
ସାମ୍ରାଜ୍ୟ ପ୍ରତିଷ୍ଠାଲାଗି ହେଲା ପ୍ରୟୋଜନ
ରାଜା ଜମିଦାରମାନେ ହେଲେ ସରଜନ । ୨୯
ସାମ୍ରାଜ୍ୟର ସ୍ୱାର୍ଥପାଇଁ ସେମାନେ ଅଛନ୍ତି
ସରକାର ଛାମୁଛାୟା ପାଇ ସେ ବଢ଼ନ୍ତି । ୩୦
ଦେଖିଲେ ରାଜାମାନଙ୍କ ସବୁ ଗତିବିଧି
ପ୍ରଜାଙ୍କର ନୁହନ୍ତି ସେମାନେ ପ୍ରତିନିଧି । ୩୧
ରାଜାମାନଙ୍କ ବିପକ୍ଷେ ଅଭିଯୋଗ ଯେତେ
ଏ ସବୁ ପାଉଛି ମୁହିଁ ନିତି ନିତି କେତେ । ୩୨
ଯେଉଁ କରୁଣ କାହାଣୀ ଅଛି ସେ ଲେଖାରେ
ଯେ ଶୁଣିବ ହାତ ଦେବ ଅବଶ୍ୟ ଶ୍ରୁତିରେ ।୩୩
ରାଜାମାନଙ୍କ ପକ୍ଷରେ ଗଉରବ ନାହିଁ
ଅଭିଭାବକଙ୍କ ପକ୍ଷେ ଅଯଶ ଅଟଇ । ୩୪
ରାଜାମାନଙ୍କ ମୁରବି ରାଜ ସରକାର
ତାଙ୍କ ପକ୍ଷେ ଏ କଥା ଅଟଇ ଅସୁନ୍ଦର । ୩୫
ଏ ମୁରବି ପଣିଆରେ କପ ଅର୍ଥ ଅଛି
ସାମ୍ରାଜ୍ୟବାଦର ନଗ୍ନ ମୂରତି ଦିଶୁଛି । ୩୬
ଅନ୍ୟ ଅର୍ଥ ଥିଲାପରି ମତେ ଲାଗୁନାହିଁ
ଥିଲେ କପ କହିବ କି ତୁରନ୍ତ ମିଠାଇ । ୩୭

କଂଗ୍ରେସକୁ ଲୁହାହେଲା ଏମନ୍ତ କରିବ
ସଂଖ୍ୟାନ୍ୟୁନ ଗୋଷ୍ଠିରେ ଏ ରାଜାଙ୍କୁ ଗଣିବ ।
ଇଂରେଜ ଶକ୍ତି ସବୁଠୁ ପ୍ରଧାନ ଶକତି
ତାକୁ ଆଶ୍ରାକରି ରାଜାମାନେ ରହିଛନ୍ତି । ୩୯
ସେ ଶକତି ବିହୁନେ ସେ ଚଳି ନ ପାରିବେ
ମୂହୂର୍ତ୍ତେ ନିଶ୍ୱାସ ସେହୁ ମାରି ନ ପାରିବେ ।୪୦
ସ୍ୱାଧୀନତା ନାହିଁ ତଳେ ରାଜାମାନଙ୍କର
କଂଗ୍ରେସ କର୍ମୀଙ୍କ ସଙ୍ଗେ ସାକ୍ଷାତ ହେବାର ।
କଉଣସି ମୀମାଂସା କରିବା ଦୂରକଥା
ଅତି କ୍ଷୋଭ ହୁଏ ମନେ ଦେଖି ଏ ଅବସ୍ଥା ।୪୨
ଏହି ସଂକଟ ବେଳରେ କରୁଛନ୍ତି ଯାହା
ନ କରିବାକୁ ତାଙ୍କର ନାହିଁ ଆନ ରାହା । ୪୩
ଗୋଲମେଜ ବଇଠକ ଯେତେବେଳେ ହେଲା
ଏହି ଭାଗବଣ୍ଟା ତେତେବେଳେ ଖଞ୍ଜାଗଲା ।୨୪
କହିପାରୁନାହିଁ ଏହା ଗୌରବ ବିଷୟ
ମୁଁ ଜାଣେ ଏଥିର ଫଳ ଅତି ବିଷମୟ । ୪୫
ବଇଠକରୁ ଯେ କାଳେ ଉଭୟ ଫେରିଲେ
କ୍ଷୁବ୍ଧ ବିଫଳ ମନରେ ତହୁଁ ବାହୁଡ଼ିଲେ । ୪୬
ସମସ୍ତଙ୍କ ପକ୍ଷରେ ଏ ଘୋର ଅପମାନ
ମୋ ମତରେ ଭାଗବଣ୍ଟା କାମଟି ଜଘନ୍ୟ । ୪୭
କିନ୍ତୁ କଂଗ୍ରେସ ଏହାକୁ କରିଛି ଗ୍ରହଣ
ବିଶ୍ୱସ୍ତ ଭାବରେ ମୁଣ୍ଡ ନୁଆଇଛି ଜାଣ । ୪୮
ଭଲଲୋକ ମାନିଲେ ଯାହାଙ୍କୁ ଦୁଇପକ୍ଷ
ତାଙ୍କ ନିଷ୍ପତ୍ତିରେ କେହି ନ ହେଲେ ବିମୁଖ ।
ମାକଡ଼ୋନାଲ୍‌ଡ଼ ସାହେବ ନାମେ ଜଣେ ଥିଲେ
ସେହି ଉଭୟ ପକ୍ଷରୁ ଭଲଲୋକ କଲେ । ୫୦
କଂଗ୍ରେସ ବେକଂଗ୍ରେସ ଭାରତ ବୋଲି ଦୁଇ
ଭାଗବାଣ୍ଟି ସାମ୍ନାଏଲହୋଇ ଦେଲେ କହି ।୫୧

ସମସ୍ତ ନିରସ୍ତ୍ର ଦୁଇ ଭାଗ କରିଥିଲେ
ଉପଯୁକ୍ତ ହୋଇଥାନ୍ତା ସବୁଠାରୁ ଭଲେ । ୫୨
କଂଗ୍ରେସ ନିରସ୍ତ୍ର ଭାରତର ପ୍ରତିନିଧି
ସମସ୍ତ ସଙ୍ଗେ ଲଢ଼ାଇଦେବା କି ହେବ ବିଧି ? ୫୩
ସ୍ୱାଧୀନ ହେବାପାଇଁକି କରିବ ସଂଗ୍ରାମ
ନିରସ୍ତ୍ରତା ତାର ଅସ୍ତ୍ର ମଧ୍ୟରେ ପ୍ରଧାନ । ୫୪
ଏ ଶ୍ରେଣୀର ଅନୁଷ୍ଠାନ ଅପୂର୍ବ ଅଟଇ
ଇତିହାସେ ଏ ଦୃଷ୍ଟାନ୍ତ କେହେ ଶୁଣାନାହିଁ ।୫୫
ଭାରତ ସଚୀବ ଯାହା ଯାହା କହିଦେଲେ
ବିଶ୍ୱଜଗତକୁ ସ୍ପଷ୍ଟ ଏହା ଜଣାଇଲେ । ୫୬
ନିରସ୍ତ୍ର ଭାରତ ଯେବେ ସମସ୍ତ ସହିତ
ଆପୋଷ ମୀମାଂସା କରି ନପାରେ ଏକାନ୍ତ ।୫୭
ତା ସଙ୍ଗେ ପୁଣି ଇଂରେଜ ସରକାରସହ
ଆପୋଷ ମୀମାଂସା ହେବ ଏ କଥା ନିଶ୍ଚୟ ।୫୮
ଏ ଦୁଇ କଥା ଯାବତ ହୋଇ ନ ପାରିବ
ସ୍ୱାଧୀନତା ଲଭ ଭାରତର ଅସମ୍ଭବ । ୫୯
ଏଥିପାଇଁ ମୋହର ଆପତ୍ତି କିଛି ନାହିଁ
ଯୁକ୍ତିଯୁକ୍ତ ତାଙ୍କ କଥା ପ୍ରକୃତିକ ଗୃହି । ୬୦
ଇଂରେଜ ପ୍ରକୃତ ସଂସ୍କାରେ ସେ ବଢ଼ିଛନ୍ତି
ବଦଳାଇ ପାରିବେ କି ସହଜେ ପ୍ରକୃତି । ୬୧
ହଠାତ୍ ବଦଳିଯିବ ଆଶା ନାହିଁ ମୋର
ନିରପେକ୍ଷ ଭାବେ ପଢ଼ି କରନ୍ତୁ ବିଚାର । ୬୨
ଅପ୍ରିୟ କର୍ତ୍ତବ୍ୟ ମୋର ପ୍ରକାଶି କହୁଛି
ନିରପେକ୍ଷ ପାଠକ ତା କପରି ବୁଝୁଛି । ୬୩
ସାମୁଏଲ ଯାହା ଯାହା ସବୁ କହିଥିଲେ
ଉତ୍ତମ ପ୍ରକାରେ ବୁଝିସୁଝି ବଖାଣିଲେ । ୬୪
କିଛିମାତ୍ର ସଂଶୟ ଏଥିରେ ନାହିଁ ମୋର
କିନ୍ତୁ ଏହା ଅନେକ ଅଭିଜ୍ଞ ରାଜନୀତିର ଉତ୍ତର । ୬୫

ସ୍ୱାଧୀନତା ପିପାସାରେ କଂଗ୍ରେସର କଣ୍ଠ
ଶୁଖିଯାଇ ଭୋଗୁଅଛି ମନେ ମହାକଷ୍ଟ । ୬୬
ଯୁଦ୍ଧକ ପର ଆଶାରେ ଯୁହିଁ ରହିଥିଲ
ଏ ବାଣୀ ଶୁଣି ତା' ପ୍ରାଣ ଶୀତଳ ନ ହେଲ ।୬୭
ପୁଣି ପୂର୍ବ ମତକ ସେ ଅନୁସରିବ
ଅଧିକ ନିଷ୍ଠାରେ ପୁଣି କର୍ମ ଆଚରିବ । ୬୮
ଅହିଂସା ଶକତି ସେହୁ କରି ଅରଜନ
ସମସ୍ତଙ୍କୁ ନିରସ୍ତ କରିବ ଧ୍ରୁବ ଜାଣ । ୬୯
ନିଷ୍ଠାରେ କଂଗ୍ରେସ ଯେବେ ଏ କଥା କରିବ
ପୃଥିବୀ ପାଇଁକ ସର୍ବଶ୍ରେଷ୍ଠ ଦାନ ହେବ । ୭୦
ବିଶ୍ୱଶାନ୍ତି ପ୍ରତିଷ୍ଠା ହୋଇବ ଏ ମତରେ
ଶାନ୍ତି ନ ହେବ ଏ ଅସ୍ତ୍ର ଶସ୍ତ୍ର ସଙ୍ଘାତରେ ।୭୧
ନାନା ପ୍ରତିକୂଳ ବାଧା ବିଘ୍ନ ସମ୍ମୁଖରେ
ନିରସ୍ତ୍ର ଜାତି ଯେବେ ବା ଚଳିବେ ନ୍ୟାୟରେ ।
ତେବେ ଏ ବିଶ୍ୱରେ ଶାନ୍ତି ପ୍ରତିଷ୍ଠିତ ହେବ
ଅହିଂସା ମର୍ଯ୍ୟାଦା ତେବେ ପ୍ରକଟ ହୋଇବ ।
କଂଗ୍ରେସ ଅଟଇ ଏକ ହିନ୍ଦୁ ଅନୁଷ୍ଠାନ ॰
କହନାହିଁ କାହାକୁ ମୁଁ ଏମନ୍ତ ବଚନ । ୭୪
ଜେଟଲଣ୍ଡ କପଟ କହିଲେ ଏଡ଼େ କଥା
ଶୁଣି ବିସ୍ମିତ ହୋଇଲି ଘୂରିଗଲା ମଥା । ୭୫
ମୁଁ କହିଲି କଂଗ୍ରେସରେ ଯେ ଲୋକ ଅଛନ୍ତି
ଅଧିକାଂଶ ତହୁଁ ଯଦି ହିନ୍ଦୁ ସେ ଅଟନ୍ତି । ୭୬
ତଥାଚ ସକଳ ବର୍ଣ୍ଣ ଧର୍ମ ଲୋକେ ଛନ୍ତି
ଭାରତ ଆକାଙ୍କ୍ଷା ଅଟେ କଂଗ୍ରେସର ମତ ।୭୭
କଂଗ୍ରେସ ଆଗରୁ କହିଅଛି ବହୁବାର
କଦାପି ସାମ୍ପ୍ରଦାୟିକ ନୁହେଁ ସେ ନକର ।୭
ଯେତେବେଳେ ଯେଉଁଠାରେ ସୁଯୋଗ ମିଳୁଛି
କଂଗ୍ରେସ ଏହି ଘୋଷଣା କରି ଆସୁଅଛି । ୭୯

ଜେଟଲଣ୍ଡ ଏ ସମସ୍ତ ଜାଣନ୍ତି ନିଶ୍ଚିତ
ଏତେବେଳେ ଏପରି କହିବା ଅନୁଚିତ । ୮୦
ଗୋଳମାଳିଆ ଭାବରେ ଏ କଥା କହିଲେ
ଉତ୍ତେଜନା ଜନକ ଏ କଥା ହୋଇପାରେ ।୮୧
ଆଶାକରେ ଏତେ ବଡ଼ କରିଛନ୍ତି ଭ୍ରମ
ଅଚିରେ କରିବେ ଏହି ଭ୍ରମ ସଂଶୋଧନ । ୮୨
କେତେକ ଇଂରେଜ ବନ୍ଧୁ ପଚାରୁଅଛନ୍ତି
ବିନା ସର୍ତ୍ତେ ସାହାଯ୍ୟ ଦେବା ମୋର ଉକ୍ତି ।
ପ୍ରକାଶ ପାଉଛି କଥା ସମ୍ବାଦପତ୍ରରେ
କହିଛନ୍ତି କି ଆପଣ ଏହା ପ୍ରକୃତରେ । ୮୪
ବଡ଼ଲାଟଙ୍କ ସହିତ ପ୍ରଥମ ସାକ୍ଷାତ
ପରେ ଏ କଥାର ମୂଳ ହେଲା ପ୍ରକଟିତ । ୮୫
ଯେଉଁ ବିବୃତି ମୋହର ପ୍ରକାଶ ପାଇଲା
"ବିନା ସର୍ତ୍ତେ ସାହାଯ୍ୟ"କଥାଟି ନ ଥିଲା ।୮୬
ମୋର ମତିଗତି ଯାହା ବିବୃତିରେ ଥିଲା
କଂଗ୍ରେସ ସେଥିରେ ସ୍ୱୀକାର କରିଥିଲା । ୮୭
ବ୍ରିଟେନର କି ଉଦ୍ଦେଶ୍ୟ ଅଛି ଏ ସମରେ
ପରିଷ୍କାର ଘୋଷଣା କରିବା ସମରରେ । ୮୮
ଦାବି ଯେବେ କଂଗ୍ରେସର ଏପରି ନ ଥାନ୍ତା
ମୋ କଥା ମରମ ତାହା ବୁଝାଯାଇଥାନ୍ତା ।୮୯
କାର୍ଯ୍ୟକାରୀ ସମିତିରେ ଯେତେ ସଭ୍ୟ ଥିଲେ
ସେହିପରି ମନୋଭାବ କେବେ ନ ଧରିଲେ ।୯୦
ସିଦ୍ଧାନ୍ତ କରିବାପାଇଁ ଅଛି ଅଧିକାର
ଯୁକ୍ତିଯୁକ୍ତ ବୋଲି ଯାହା କଲେକ ବିଚାର ।୯୧
ସେପରି ସିଦ୍ଧାନ୍ତ କଲେ ବିଚାରିଣ ଯାହା
ଘଟଣା ଚକ୍ରରେ ଫଳ ଦେଖାଗଲା ତାହା ।୯୨
ଯୁଦ୍ଧର ଉଦ୍ଦେଶ୍ୟ କଥା ଏଡ଼ି ଦେଇଥିଲେ
ବିନା ସର୍ତ୍ତେ ସାହାଯ୍ୟ ପାଇଥାନ୍ତେ ଭଲେ ।

କଂଗ୍ରେସର ଧନବଳ ଜନବଳ ନାହିଁ
ଶୁଭଇଚ୍ଛା ବଳ ଦେଇପାରିଥାନ୍ତା ସେହି । ୯୪
ବନ୍ଧୁ ସେନା ସାହାଯ୍ୟ ଅପେକ୍ଷା ଏ ଅଧିକ
ଦୃଢ଼ଭିତ୍ତିରେ ବିଷ୍ଟନ୍ତା ଇଂରେଜର ଲକ୍ଷ୍ୟ ।୯୫
ପ୍ରତିବାଦ କରି ନ ପାରନ୍ତା ଜଣେ କେହି,
ବାନ୍ଧ ନ ଥାନ୍ତା କାହାରି ବାଧ ହେବାପାଇଁ ।୯୬
ଇଂରେଜର ଦାବି ଅଟେ ଅତି ନ୍ୟାଯ୍ୟଯୁକ୍ତ
ଏ କଥା ଏଥିରୁ ହୋଇଥାନ୍ତା ପ୍ରମାଣିତ । ୯୭
ପରାଧୀନଜାତି ଯେବେ ପୃଥିବୀ ପୃଷ୍ଠରେ
ସ୍ୱାଧୀନତା ଆଲୋକ ସେ ଲଭିବେ ଅଚିରେ ।
ବନ୍ଧୁ ଜଗତକୁ ଇଂରେଜ ଶକ୍ତି ଉଠିଥାନ୍ତା
"ବିନା ସରତେ ସାହାଯ୍ୟ" ଅର୍ଥ ତା ହୁଅନ୍ତା ।
କିନ୍ତୁ ପ୍ରଭୁଙ୍କର ଇଚ୍ଛା ଆନ ପରକାର
ବୁଝିଲେନାହିଁ ଇଂରେଜ ରାଜସରକାର । ୧୦୦
କଂଗ୍ରେସର ଅହିଂସାରେ ଆସ୍ଥା ଦେଲେନାହିଁ
ଇଂରେଜ ରାଜନୀତିଜ୍ଞ ନ ବୁଝିଲେ କେହି ।୧୦୧
କହୁଛି ମୁହିଁ ଏ କଥା ନିଜେ ସିଦ୍ଧକାରୀ;
ଯେବେ ପରୀକ୍ଷା ମାଗିବ କେହିବା ଏଥିର ।୧୦୨
ପରୀକ୍ଷକ ଜଣେ ଯେ ଠାଣୁଆ ଉପଯୁକ୍ତ
ପରୀକ୍ଷାପାଇଁ ଏ କଥା କଲେକ ତଦନ୍ତ । ୧୦୩
ସନ୍ତୁଷ୍ଟ ସେ ହେବନାହିଁ କହୁଅଛି ସତ୍ୟ
ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇବା ବଡ଼ ଶକ୍ତ ।
ଯାହାହେଉ ସେ କଥା ପଛକୁ ପଛେ ଥାଉ
ମୋ କଥା ବୁଝିବାପାଇଁ ବିଧାନାହିଁ ଆଉ ।୧୦୫
ଇଂରେଜବନ୍ଧୁ କରନ୍ତୁ ମୋ କଥା ବିଚାର
କେଉଁ ମତଲବେ ମୁହିଁ କହୁଛି ସକଳ । ୧୦୬
ସେମାନେ ଏପରି ଅବା ଦେଖାଇବେ ଯୁକ୍ତି
ପସନ୍ଦ ନ କରେ ମୁଁ ତ ସାମରିକ ନୀତି ।୧୦୭

ଏହି ମାତ୍ରରୁ ମୁଁ ସହଯୋଗ ନ କରିବି
ଏ କଥା ମନରେ ମୁଁ ତ କେବେ ନାହିଁ ଭାବି ।
ଯେ କେହି ଯୁଦ୍ଧରେ ହେଲେ ହୁଅନ୍ତା ବୈରୀ
ତା ମାତ୍ର ସ୍ଥିର କରିବି ନ୍ୟାୟକୁ ବିଚାରି ।୧୦୯
ନ୍ୟାୟ ଅଛି ଯେଉଁ ପକ୍ଷେ ତା ଶୁଭ ବାଞ୍ଛିବି
ଜୟକାମନା ଅବଶ୍ୟ ତାହାର କରିବି । ୧୧୦
ଏ ଭଳି ବିଚାରେ କେବେ କରିବ ଯେ ଲୋକ
ଶାନ୍ତି ଆଣିବାକୁ ହୋଇପାରେ ଭଲଲୋକ ।୧୧୧
ମୋ ଅବସ୍ଥା ଯେହ୍ନପରି ଜାଣ ବନ୍ଧୁଗଣ
ବିପରୀତ ବୁଝିବାକୁ ନ କରିବ ମନ । ୧୧୨
ଫିଠାଇ କହୁଛି ମୁହିଁ କରି ପରିଷ୍କାର
ସାମ୍ପ୍ରଦାୟ ଭେଦଭାବ ଅଟେ ଅମଙ୍ଗଳ ।୧୧୩
ଭାରତର ସ୍ୱାଧୀନତା ବିଷୟ ପଡ଼ିଲେ
ସାମ୍ପ୍ରଦାୟ ଭେଦଭାବ ଆଇଲା ଆଗରେ । ୧୧୪
କଂଗ୍ରେସର ଦାବି କେଉଁ ନୁହେଁ ନଗମୟ
ଏ କଥା କହିଲେଁ ଭ୍ରମ ଘଟିବ ନିଶ୍ଚୟ । ୧୧୫
କଂଗ୍ରେସର ସାମରିକ ଅସ୍ତ୍ର ଶସ୍ତ୍ର ନାହିଁ
ସାମ୍ପ୍ରଦାୟ ଏକତାରେ ବିଶ୍ୱାସ କରଇ ।୧୧୬
ଇଂରେଜ ସରକାରର ମାତ୍ର ଅଟେ ଭିନ୍ନ
ସାମ୍ପ୍ରଦାୟ ଭେଦ ଅସ୍ତ୍ର ତାଙ୍କର ପ୍ରଧାନ ।୧୧୭
ଭାରତକୁ ସ୍ୱାଧୀନତା ନ ଦେବାର ଛଳେ
ସେ ଅସ୍ତ୍ର ପ୍ରୟୋଗ କରୁଛନ୍ତି ସବୁବେଳେ ।୧୧୮
ସାମ୍ପ୍ରଦାୟ କଳହରେ କଂଗ୍ରେସ ନିଶ୍ଚୟ
ଦାୟୀ ହୋଇ ନ ପାରିବ କହୁଅଛି ଥୟ ।୧୧୯
କଂଗ୍ରେସ ହେଲେ ପଛକେ ଅଲଗା ହୋଇବ
ଶୁଭଦିନକୁ ଅନାଇ ଭ୍ରମଣ କରିବ । ୧୨୦
ସାମ୍ପ୍ରଦାୟ କଳହରେ ଭାଗୀ ନ ହୋଇବ
କିଛି କରି ନ ପାରିଲେ ଭୁନିତାନ ହେବ ।୧୨୧

ବର୍ତ୍ତମାନ ଦେଖୁଛୁ ବିକଟାକାର ଦୃଶ୍ୟ
ମୁସଲମାନଙ୍କ ସଙ୍ଗେ ଲଢ଼ାଅ କଂଗ୍ରେସ ।୧୨୨
ଇଉରୋପ ପଡ଼ିଅଛି ଯେ ଘୋର ସଙ୍କଟ
ବଡ଼ ଆଶା କରିଥିଲି କହୁଛି ନିରାଟ । ୧୨୩
ଇଂରେଜ ରାଜମନ୍ତ୍ରୀଙ୍କମାନେ ଯେତେଛନ୍ତି
ଦେଖି ଶୁଣି ନିଜଦେଶେ ଏ ଘୋର ବିପତ୍ତି ।
ନିର୍ମଳଜ୍ଞାନ ଉପୁଜିଥିବ ହୃଦୟରେ
ଦେଖୁଛି ସେ କଥା ହୋଇନାହିଁ ତ ଫଳରେ ।
ମୁସଲମାନ ଆବର ଅନୁନ୍ନତ ଜାତି
ସେମାନେ ଯେ କରୁଛନ୍ତି କେତେକ ଆପତ୍ତି ।
ଆଶ୍ଚର୍ଯ୍ୟ ନାହିଁ ସେଥିରେ କରିବେ ଏମନ୍ତ
ଗଣତନ୍ତ୍ର ଶାସନରେ ଏହା ସୁନିଶ୍ଚିତ । ୧୨୭
ପ୍ରତ୍ୟେକ ଲୋକ ସନ୍ତୋଷ ପାଇ ନ ପାରିବେ
କେତେକ ନିଶ୍ଚିତ ଅସନ୍ତୁଷ୍ଟ ରହିଥିବେ । ୧୨୮
କଂଗ୍ରେସ ଯେ ନ୍ୟାଯ୍ୟ ଯୁକ୍ତିଯୁକ୍ତ ପଣ ଦେଲା
ଅନ୍ୟାୟକଥା ସେଥିରେ କିଛିହିଁ ନ ଥିଲା ।୧୨୯
ନିର୍ବାଚିତ ପ୍ରତିନିଧି ଯେମାନେ ଦେଶର
ତାଙ୍କୁନେଇ ସମିତିଏ କର ହେ ନିକର । ୧୩୦
ଭାରତର ଭବିଷ୍ୟତ ଶାସନ ଖସଡ଼ା
ସେମାନଙ୍କ ହାତେହେଉ ଏ ପଦ୍ଧତି ଗଢ଼ା ।୧୩୧
ଯେଉଁଭଳି ଏ ସାମ୍ପ୍ରଦାୟ ଭେଦଭାବ ଯିବ
ଯେପରି ତାହାଙ୍କ ମନ ସନ୍ତୁଷ୍ଟ ହୋଇବ ।୧୩୨
ଏହିପରି ବ୍ୟବସ୍ଥା ତହିଁରେ ଖଞ୍ଜାଯାଉ
ସାମ୍ପ୍ରଦାୟ ସ୍ୱାର୍ଥ ପୂର୍ଣ୍ଣଭାବେ ରକ୍ଷା ହେଉ ।
ଇଂରେଜ ରାଜମନ୍ତ୍ରୀଙ୍କ ମୋର ବନ୍ଧୁଗଣ
କରିବ କି କଂଗ୍ରେସର ଆହ୍ୱାନ ଗ୍ରହଣ ।୧୩୪
ଗ୍ରହଣ କଲେ ସଚ୍ଚୋଟ ଭାବେ କାର୍ଯ୍ୟ କର
କାର୍ଯ୍ୟକ୍ଷେତ୍ରରେ ଦେଖିବା ଏମନ୍ତର ଫଳ ।୧୩୫

ବାକଯୁଦ୍ଧ ଲାଗିଅଛି ଭାରତେ ବିଲାତେ
ଲେଖାରେ କଥାରେ କିଏ କହୁଛନ୍ତି କେତେ ।
ସପକ୍ଷ ବିପକ୍ଷ ଯୁକ୍ତି ହେଉଛି ବହୁତ
ପ୍ରଚ୍ଛନ୍ନ ଭାଷାରେ ସବୁ ହୋଇଛି ଜଡ଼ିତ ।୧୩୭
ଗାନ୍ଧି ତାଙ୍କ ମନକଥା କହନ୍ତି ଫିଟାଇ
ତାହାଙ୍କ କଥାରେ ତିଳେ ମଳିଧୂଳି ନାହିଁ ।୧୩୮
ଦାସତ୍ୱ ଶୃଙ୍ଖଳା ଏବେ କରିବି ମୋଚନ
ଦାସମାନଙ୍କ ମତରେ କିସ ପ୍ରୟୋଜନ । ୧୩୯
ଅଛି ଯେବେ ଇଚ୍ଛା ହେ ଇଂରେଜ ସରକାର
ଭାରତକୁ ଦାସତ୍ୱ ଶୃଙ୍ଖଳୁ ମୁକ୍ତ କର । ୧୪୦
ଜିନାଙ୍କର ସ୍ୱର କିଛି ବଦଳିଛି ପୁଣି
ଭାରତ ମୁକ୍ତିପାଇଁ କି କରୁଛନ୍ତି ମନ । ୧୪୧
ଏ ସବୁ ଦେଖିଣ ତେଣେ ବୋଲେ ହିଟ୍‌ଲର
ହେ ଇଂରେଜ ଆଉ ବେଶି ବଡ଼ାଇ ନ କର ।
ସତ୍ୟ ନ୍ୟାୟଯୁଦ୍ଧ ମିତ୍ର ବୋଲୁଛ ତୁମ୍ଭର
ଭାରତକୁ ସ୍ୱାଧୀନତା ଦେଲ କି ଆବର ।୧୪୩
ଦେଇଥାନ୍ତ ଭାରତକୁ ସ୍ୱାଧୀନତା ଯେବେ
ତବ ଆଗେ ମୁଣ୍ଡ ନୁଆଁଇଥାନ୍ତୁ ଆମ୍ଭେ ତେବେ ।
ଏହିପରି ପରିସ୍ଥିତି ଅଛି ବର୍ତ୍ତମାନ
କି ହେବ ଭବିଷ୍ୟତରେ ପ୍ରଭୁ ତୁମ୍ଭେ ଜାଣ ।
ତବ ଇଚ୍ଛା ଅନୁରୂପ ଚଳୁଛି ସଂସାର
ତବ ସଂସାରକୁ ପ୍ରଭୁ ଭଲେ ରକ୍ଷାକର ।୧୪୬
ସକଳେ ସୁଖେ ରହନ୍ତୁ ହୋଇ ନିରାମୟ
ବିରାଜୁ ଶାନ୍ତି ଧରାରେ ଯାଉ ଏ କଳହ । ୧୪୭
ବୋଲେ ଦୀନ ଜଗବନ୍ଧୁ ହେ ଜଗତନାଥ
ତବ ଶ୍ରୀଚରଣେ ସଦା ଥାଉ ମୋର ମାଥ ।୧୪୮

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ସଚୀବ ଘୋଷଣା ଚରିତ ବର୍ଣ୍ଣନେ
ବିଂଶାନବେ ଅଧ୍ୟାୟଃ ।

# ତେୟୃାନବେ ଅଧ୍ୟାୟ

ଶୁଣ ହେ ସୁଜନ ଜନେ ମନକର୍ଣ୍ଣ ଦେଇ
କଂଗ୍ରେସବାଲଙ୍କୁ ଗାନ୍ଧି ଯାହାଦେଲେ କହି । ୧
ସରକାରୀ କ୍ଷମତା ତ ସବୁ ଛାଡ଼ିଦେଲ
ଭୋଗ ଛାଡ଼ି ଯୋଗକର ଏବେ ଫେରିଚାଲ । ୨
ସତ୍ୟ ଅହିଂସା ଯୋଗରେ ଧରଅ ମତିଗତି
ସାଧନାରେ ସିଦ୍ଧି ବିନା ନୋହିବ ଝଟତି । ୩
ନ ହୁଅ ନାମେ କେବଳ କଂଗ୍ରେସ ଭକତ
ଯୋଗସାଧି ସିଦ୍ଧହୁଅ ବଢ଼ିବ ତାକତ । ୪
ଭେକଧାରୀ କଂଗ୍ରେସ ଭକତ ଅଛ ଯେତେ
ସ୍ୱରାଜ୍ୟ ସମର ଯୋଗ୍ୟ ନୁହ କଦାଚିତେ । ୫
ସିଦ୍ଧସାଧକ ନ ହେଲେ କାମ ନ ଚଳିବ
ଏମାନଙ୍କୁ ନେଇ କିଏ ସଂଗ୍ରାମ କରିବ । ୬
ଏହି ଆଦେଶ ହୋଇଲା ଦେଶରେ ପ୍ରଚାର
ଯେତେ କଂଗ୍ରେସର ସଭ୍ୟ କଲେକ ବିଚାର ।୭
ସନଫା ଅନଫା ନାମେ ଦୁଇଜଣ ଥିଲେ
ଗାନ୍ଧିଙ୍କ ଆଦେଶ ପଢ଼ି ଆଲୋଚନା କଲେ । ୮
ସେହି ଚରିତ ଏଠାରେ କରିବା ବର୍ଣ୍ଣନ
ମନଧ୍ୟାନ ଦେଇ ଏବେ ଶୁଣ ହେ ସୁଜନ । ୯
ଲେଖକର କେହି କିଛି ଦୋଷ ନ ଧରିବ
ଶୁଦ୍ଧ ଅଶୁଦ୍ଧ ପୁରାଇ ସକଳ ବୁଝିବ । ୧୦

ସନଫା ଉବାଚ

ଶୁଣିଲୁଟି ଅନଫା ତୁ ଗାନ୍ଧିଙ୍କ ବିଧାନ
ତେଙ୍ଗ କରମ ସର୍ବେ କରିବେ ନିଦାନ । ୧୧
ଅହିଂସା ଧରମ ସର୍ବେ କରିବେ ପାଳନ
ମିଥ୍ୟା କହିବାକୁ ସର୍ବେ ଦେବେ ମନଧ୍ୟାନ ।୧୨

ଅରଟ ଚଳାଇ ସୂତା କାଟି ପ୍ରତିଦିନ
ଏକମନ ଏକଚିତ୍ତ ହିନ୍ଦୁ ମୁସଲମାନ । ୧୩
ଅସ୍ପୃଶ୍ୟତା ନିବାରଣ, ଗ୍ରାମ ସଂଗଠନ
ଏପରି ଷଟକରମ ଜାଣ ସୁଜ୍ଞଜନ । ୧୪
ଯାଅ ତୁ ଅନସା ଗ୍ରାମେ ଗ୍ରାମେ ବୁଲିଆସ
ଶୁଣାଇଦିଅ ସଭିଙ୍କି ଗାନ୍ଧିଙ୍କ ସନ୍ଦେଶ । ୧୫
ଲୋକମାନଙ୍କୁ ଏ କାର୍ଯ୍ୟମାନ କରାଇବୁ
ଉପଦେଶ ଦେଇ ସବୁ ବୁଝାଇ କହିବୁ । ୧୬

## ଅନସା ଉବାଚ

ତୁ ଆମ୍ଭ ସଭାର ସଭାପତି ଅଟୁ ଯେଣୁ
ଅବଶ୍ୟ ପାଳିବି ତୋର ଆଦେଶ ମୁଁ ତେଣୁ ।
ଗ୍ରାମେ ଗ୍ରାମେ ଯାଇ ସଭାମାନ ଡକାଇବି
ଆକାଶ ଫଟାଇ ଉଚ୍ଚେ ବକ୍ତୃତା ମୁଁ ଦେବି । ୧୮
ବକ୍ତୃତା ଦେବାର ଛଟା ଶିଖିଲିଣି ମୁହିଁ
କହିଯିବି ପାଣିପରି ଦିହାତ ହଲାଇ । ୧୯
ମୋ କଥା ଶୁଣି ସକଳେ କାବା ହୋଇଯିବେ
ଧନ୍ୟ କହି ଘନ ଘନ କରତାଳି ଦେବେ । ୨୦
ଲମ୍ବାଇବେ ଫୁଲମାଳ ଗଳାରେ ମୋହର
ହର୍ତ୍ତାକର୍ତ୍ତା ମୋତେ ଭାବି କରିବେ ଆଦର । ୨୧
ଖାଇବା ପିଇବା ଭଲେ ଉପରୁ ଚଳିବ
ଗ୍ରାମେ ଗ୍ରାମେ ବୁଲି ଏହିପରି କାମ ହେବ । ୨୨
ଆଜ୍ଞାକରି ଲୋକଙ୍କୁ ମତାଇ ଦେବି ମୁହିଁ
ଜମିଦାର ମହାଜନ ମୁହଁ ଗୁହଁ ନାହିଁ । ୨୩
ସେହିମାନେ ଶୋଷି ନେଉଛନ୍ତି ତବ ଧନ
ଯେତେ ଅରଜିଲ ତେତେ ହୁଅ ଧନହୀନ । ୨୪
ଅଭାବରେ ଲୋକମାନେ ସଦା ଛଟପଟ
ଏ କଥା ଶୁଣି ତାଙ୍କର ପୂରିଯିବ ପେଟ । ୨୫

ଗ୍ରାମେ ଗ୍ରାମେ ଦେବ ମୁହିଁ କଳହ ଲଗାଇ
ଧାଇବେ ମୁଁ ଏକା ତାଙ୍କୁ କରିପାରେ ନାହିଁ ।୨୬
ଲୋକଙ୍କ ଅଭାବ ଅସୁବିଧା ଆଦି ଯେତେ
କଂଗ୍ରେସକୁ ଲେଖି ପଠାଇବ ଦରଖାସ୍ତେ ।୨୭
ଲୋକେ ପାଞ୍ଚବେ ମୋଠାରୁ ବଳି କେହି ନାହିଁ
କଂଗ୍ରେସ ସଭ୍ୟ କରିବ ଗୁଣିଅଣା ନେଇ ।୨୮
ଯେତେ ବେଶି କଂଗ୍ରେସରେଁ ସଭ୍ୟ ଯେ କରିବ
ତେତେ ଉଚ୍ଚ ପାହିଆକୁ ସେ ନିଶ୍ଚେ ଉଠିବ ।୨୯
ଯେନ କେନ ପ୍ରକାରେ ମୁଁ ସଂଖ୍ୟା ବଢ଼ାଇବ
କଂଗ୍ରେସର ଉଚ୍ଚପଦ ବଳେ ମୁଁ ପାଇବ ।୩୦
ପାଠ ସିନା ଅଳପ ପଢ଼ିଛି ମୁହିଁ ଜାଣ
ଶାଠବଳେ ତିନି ପୁର ଜିଣିପାରେ ପୁଣ ।୩୧
ପାଠ ସଙ୍ଗେ କିସ ଅଛି କଂଗ୍ରେସ କାମରେ
ନକଠକ ବାହାପିଆ ଜିଣିବ ଏଥିରେ ।୩୨
ଆରେ ଭାଇ ସବୁ ବିଦ୍ୟା ମୋତେ ଅଛି ଜଣା
ସାଧାରଣ ଟଙ୍କା ଖାଇ ପେଲଥିଲି ଖଣା ।୩୩
ଜାଲ ଯୁଆଚୋରି ମୋର ଥିଲା ବ୍ୟବସାୟ
କେତେଥର କାରାଗାର ଭୋଗିଛି ନିଶ୍ଚୟ ।୩୪
ସାଧାରଣ ଟଙ୍କା ଖାଇ ହଜମ କରଇ
ସଫାସୁତୁରା ହିସାବ ଦେଇ ମୁଁ ପାରଇ ।୩୫
ଘରଭଙ୍ଗା ମନ୍ତ୍ର ମୋତେ ଜଣାଅଛି ଭଲ
ଏକଦଳ ଭାଙ୍ଗି କରିପାରେ ତିନି ଦଳ ।୩୬
ପରନିନ୍ଦା ପରକୁତ୍ସା ଭଲ ଗାଇପାରେ
ଭୁଲାଇପାରେ ଲୋକଙ୍କୁ ମୋ ଭାଷା ଛଟାରେ !
ଉପରେ ସାଧୁ ସଜ୍ଜନ ପରି ମୁଁ କହିବ
ଗୁପତରେ ଛୁରି ଧରି ସଦା ବୁଲୁଥିବ ।୩୮
ଭଲ ମଣିଷ ଦେହରେ ଦାଗ ଲଗାଇବ
ଭଲଲୋକ ଯାକ ତାର ନିନ୍ଦା ଗାଇପିବ ।୩୯

ଲୋକଙ୍କର ବିଶ୍ୱାସ ଯେ ଖଦଡ଼ ପିନ୍ଧିଲେ
ତାହାଠାରେ ପାପତାପ ଧୂଳିମଳି ନାହିଁ । ୪୦
ଗାନ୍ଧି ଶିଷ୍ୟ ବୋଲି ଲୋକେ କରନ୍ତି ବିଶ୍ୱାସ
କିନ୍ତୁ ପିଯୂଷକୁ ମୁହିଁ କରିପାରେ ବିଷ । ୪୧
ଯେତେ ଯେତେ ଗୁହ୍ୟପାପ ମୋହଠାରେ ଥିଲା
ଖଦଡ଼ ପିନ୍ଧିବା ଦିନୁ ସବୁ ଧୋଇଗଲା । ୪୨
ଗାନ୍ଧି ନାମ ଭୁଣ୍ଡେ କହି ଯେତେ ପାପ କରି
ଜାଣି କି ପାରିବ କେହ୍ନି ଶକତି କାହାରି । ୪୩
ମୋହପରି ଯେତେ ଯେତେ ପାପୀଜନ ଥିଲେ
ଉଦ୍ଧାର ପାଇଲେ ଏହି ସାହାଣ ମେଲିରେ ।୪୪
ଯେଉଁଦିନୁ କଂଗ୍ରେସରେ ନାମ ଲେଖାଇଲି
ପେଟଚିନ୍ତା ଜଞ୍ଜାଳରୁ ରକ୍ଷା ମୁଁ ପାଇଲି । ୪୫

ସନଫା ଉବାଚ

ଶୁଣି ଅବାକ ହୋଇଲି ତୋହର ଚରିତ
କଂଗ୍ରେସକୁ ତୁମ୍ଭେମାନେ କଲ କଳୁଷିତ । ୪୬
କଂଗ୍ରେସର ବଦନାମ କର ତୁମ୍ଭେମାନେ
ଏ କଥା କି ନ ପଡ଼ୁଛି ମହାତ୍ମାଙ୍କ କାନେ ।୪୭
ତୋହପରି କେତେ ଲୋକଙ୍କର ଇତିହାସ
ଶୁଣି ଶୁଣି ଗାନ୍ଧିଙ୍କର ତୁଟିଛି ବିଶ୍ୱାସ । ୪୮
ତେଣୁ ସେ ବୋଲନ୍ତି କଂଗ୍ରେସକୁ ସଫା କରି
ବାଳୁଙ୍ଗା ଉପାଡ଼ି କ୍ଷେତ୍ର କର ପରିଷ୍କାର । ୪୯
ଯେତେ ଅଧିକ ସଂଖ୍ୟାରେ ବାଳୁଙ୍ଗା ରହିବ
କଂଗ୍ରେସର ଶକତି କେବେହେଁ ନ ବଢ଼ିବ ।୫୦
ଉପାଡ଼ିଦିଅ ବାଳୁଙ୍ଗା ରହୁ ଖାଲି ଧାନ
ଧାନ ସଂଖ୍ୟା ହେଲେ ହେଉ ଅତ୍ୟନ୍ତ ନିଉନ ।
ବିଷକୁମ୍ଭ ପୟୋମୁଖ ଲୋକଛନ୍ତି ଯେତେ
ପବିତ୍ର ଅନୁଷ୍ଠାନରୁ ଯାଆନ୍ତୁ ସମସ୍ତେ । ୫୨

କଂଗ୍ରେସ ନୁହଇ ରଙ୍ଗାଳୟ ମନୋହର
ପାପୀତାପି ଲୋକଙ୍କର ନାହିଁ ଅଧିକାର । ୫୩
ସତ୍ୟ ଅହିଂସା ସାଧନ ମନ୍ଦିରଟି ଏହି
ସାଧି ନ ପାରିବ ଯେହୁ ଆସ ନାହିଁ କେହି ।୫୪
ଭିତର ବାହାର ସଚ୍ଚା ନିର୍ମଳ ଯାହାର
ସେହିମାନେ କଂଗ୍ରେସର ଭକତ ନିକର । ୫୫
ପରୀକ୍ଷା କର ଆପଣା ଆପଣା ହୃଦୟ
ନିଜ ଦୋଷ ପାପ ଯାହା ଅଛି ଦୂରେ ଥୁଅ ।୫୬
ଗାନ୍ଧି ଜଣେ ଲୋକ କେତେ ଦୂରେ ବସିଛନ୍ତି
ସମଗ୍ର ଭାରତେ କାହିଁ କେତେ ଭକ୍ତ ଛନ୍ତି ।୫୭
ଗୋଟି ଗୋଟି କରି ପରଖିବେ ସେ କପରି
ଆତ୍ମପରୀକ୍ଷା କଷଟି ତେଣୁ ଦେଲେ ଧରି । ୫୮
ନିଜ ନିକଟରେ ଏବେ ନିଜେ କଷିହୁଅ
ନିଜକୁ ନିଜେ ପରଖି ଯାଅ ଅଚ୍ଛା ରହ । ୫୯
ଏହି ଧର୍ମଗୁଳା ଦେଇ ମହାତ୍ମା କହିଲେ
ଷଠ କର୍ମଯୋଗ ସାଧ କରମୀ ସକଳେ । ୬୦
ଆପେ ଆଗ କର୍ମଯୋଗ କରଟ୍ରେ ସାଧନ
ଆପଣା କାର୍ଯ୍ୟରେ କର ତାହା ଆଚରଣ ।୬୧
ତେଣୁ ଆଗେ ଆପେ ଆପଣାକୁ କର ସଫା
ନୋହିଲେ ତୁ ଯୋଗ୍ୟହୋଇ ନ ପାରୁ ଅନଫା ।
ଆଚରଣ ଧର୍ମ ଅଟେ ସବୁଠାରୁ ସାର
ପ୍ରଚାର କର୍ମ ଅଟଇ ନିକୃଷ୍ଟ ନିକର । ୬୩
ଯେତେ ମହାପୁରୁଷ ଏ ଭାରତରେ ଥିଲେ
ନିଜ ଆଚରଣବଳେ ଧର୍ମ ଶିକ୍ଷା ଦେଲେ ।୬୪
କ୍ଷଣିକ ଉନ୍ମାଦ ଉତ୍ତେଜନା ପ୍ରଚାରରେ
ଶୁଣି ଶୁଣି ସବୁଯାଏ ଭଣ୍ଡାରି ଜଳାରେ । ୬୫
ଶ୍ରେଷ୍ଠଲୋକମାନେ ଯା କରନ୍ତି ଆଚରଣ
ଆନ ଲୋକେ ଦେଖି ଯାହା କରିଯାନ୍ତି ଜାଣ ।

କର୍ମୀମାନେ ନ ଯେବେ ନିଜେ ସାଧି ନ ପାରିବେ
କେଉଁ ମୁହେଁ ଯାଇ ଆନ ଲୋକଙ୍କୁ କହିବେ ।
ତେଣୁ ଗାନ୍ଧି ଦେଉଛନ୍ତି କଠୋର ଆଦେଶ
ଏ ଯୋଗ ସାଧିବାପାଇଁ ସହିବ ଅଶେଷ କଷ୍ଟ ।୬୮
ଏ କରମଯୋଗ ସାଧି ନ ପାରିବ ଯେବେ
ସ୍ୱରାଜ୍ୟ ପାଇବା ଆଶା ପଣ୍ଡହେବ ତେବେ ।୬୯
ହୃଦୟୁ ନିର୍ମଳ କରି କର୍ମ ଯୋଗେ ମଜ
ହିଂସା ଦ୍ୱେଷ ଅହଙ୍କାର ଇର୍ଷାଭାବ ତେଜ ।୭୦
ମିଥ୍ୟା କପଟ ବେଭାର ମନୁ ଘୁଞ୍ଚାଇଦିଅ
ଅହିଂସା ପରମଧର୍ମ ଚିତ୍ତକୁ ମନାଅ । ୭୧
ଆପେ କରି ଆନକୁ ଏ ଶିକ୍ଷା ଯାଇ ଦିଅ
ଏକମନେ ଏକଚିତ୍ତେ କର୍ମେ ମନଦିଅ । ୭୨

ଅନସୂୟା ଉବାଚ

ଯାହା କହିଲୁ ସନସୂୟା ଅତି ଭଲକଥା
ଶୁଣି କିନ୍ତୁ ଘୁରି ଯାଉଅଛି ମୋର ମଥା । ୭୩
ମୁଖେ ଗାଇଦିବା ସିନା ଅଟଇ ସହଜ
ଯୋଗ ସାଧିବା ବ୍ୟାପାର ଅତି ଅସହଜ । ୭୪
ସହଜ ଅଟଇ କହ ଏ ଯୋଗ ସାଧନ
ଶୂନ୍ୟ ଆରୋହଣଠାରୁ ଦିଶୁଛି କଠିନ । ୭
ଧାରଖଣ୍ଡା ଉପରେ ବା ଶୂଳ ସାଙ୍ଗପାରେ
ଧରିପାରିବା ଅବା ଏ ପବନ ମୁଠାରେ । ୭୬
ଏ ସବୁ କେବେ ବା ହେବା ସମ୍ଭବ ଅଟଇ
କପଟ ସତ୍ୟ ଅହିଂସା ଧର୍ମ ପାଳିବଇଁ । ୭୭
ଅସ୍ଥି ଶିରା ମଜ୍ଜାରେ ପଶିଛି ହିଂସାଭାବ
ଏ ଭାବ ତେଜିବା ମୋତେ ଲାଗେ ଅସମ୍ଭବ ।
ମିଛ ନ କହିଲେ ଆଜ କାମ ଚଳୁନାହିଁ
ନ୍ୟାୟ ଅଦାଲତେ ଗଲେ ଦେଖିପାରୁ ତୁହି ।୭୯

ଧର୍ମ ପ୍ରତିଜ୍ଞା କରଣ ମିଛ କହିଯାନ୍ତି
ଋଣକର ଫାଙ୍କିଦେଲେ ବଡ଼ାଇ କରନ୍ତି । ୮୦
ମିଥ୍ୟା ଲୀଳାଖେଳା ଲଗିଅଛି ଗ୍ରାମେ ଗ୍ରାମେ
ଆସ୍ଥାନାହିଁ ଲୋକଙ୍କର ଧରମ କରମେ । ୮୧
ଭାଗବତଗୀତା ଘର ଗୃହ ପଡ଼ିଲାଣି
ଖୋଲ ଅଛି ସାର ନାହିଁ ଗୁପତ ହେଲାଣି ।୮୨
ଲୋକଙ୍କର ଏ ସବୁ ଦିଗରେ ନାହିଁ ମନ
ଖୋଜୁଛନ୍ତି କପରି ମିଳିବ ମୁଁଖେ ଅନ୍ନ । ୮୩
କଂଗ୍ରେସ କଥା ଶୁଣିଲେ ଯିବ ଦୁଃଖ କଷ୍ଟ
ଭୋଗିବା ନାହିଁ ଏଣିକି ଆଉ ଦୁଃଖ କଷ୍ଟ ।୮୪
ଏହି ଆଶା ପୋଷି ମନେ ସଭାକୁ ଆସନ୍ତି
ବଚନକା ଶୁଣି କୁଣ୍ଠେ ହୋଇଯାଏ ଗ୍ଲାନି । ୮୫
ସାଧନା କର୍ମ ଦିଗରେ ନାହିଁ ତାଙ୍କ ମନ
ଭାବନ୍ତି କିଏ କରିବ ଏତେ ପରିଶ୍ରମ । ୮୬
ତେଲ ପକାଇ ନାହିରେ ସେହୁ ଶୋଇଥିବେ
ଗାନ୍ଧି ଦାନାକନା ଆଣି ତାଙ୍କ ଦ୍ୱାରେ ଦେବେ ।
କଂଗ୍ରେସ ସବୁ ସୁବିଧାମାନ କରିଦେବ
ଲୋକଙ୍କ ଅଗ ଗୋଡ଼ରେ କଣ୍ଟା ନ ବାଜିବ ।୮୮
ଏପରି ସ୍ୱରାଜ୍ୟ ସ୍ୱପ୍ନ ଦେଖନ୍ତି ସେମାନେ
ମନ ଦେବେନାହିଁ କେହି ଏ ଯୋଗ ସାଧନେ ।
ଊଣା ଅଧିକେ ଗାନ୍ଧି ଏ ସବୁ ଜାଣୁଛନ୍ତି
ତେଣୁ ଏ କଠିନ ଯୋଗସାଧହେ ବୋଲନ୍ତି ।୯୦
ଆତ୍ମପରୀକ୍ଷା କରି ମୁଁ ଦେଖୁଅଛି ଯାହା
ଗାନ୍ଧିବିନୁ ଆନ କେହି ସାଧିନାହିଁ ତାହା । ୯୧
କୋଟିକେ ଗୋଟିଏ ଥାଇପାରନ୍ତି ସାଧକ
ଆଉ ସକଳେ ଅଟନ୍ତି ଲୁଚ୍ଚା ବାବଦୂକ । ୯୨
ଆମ୍ଭ ଯୁବକ ଦଳର ମାନୁନାହିଁ ମନ
ଏ ସବୁ ନୁହଇ ଯୁଦ୍ଧ କରିବା ଲକ୍ଷଣ । ୯୩

ହଇଚଇ ଗଣ୍ଡଗୋଳ ନ କରିବା ଯେବେ
ଜୀବନ ଅଛୁବୋଲି କେ ନ ଜାଣିବ କେବେ ।୯୫
ବିପ୍ଳବ ନ କଲେ କେବେ ସ୍ୱରାଜ୍ୟ ନ ହେବ
ଆଗେ ଚାଲ ଆଗେ ଚାଲ କର ଘୋର ରବ ।
ଲାଗିଥାଉ ଘମାଘୋଟ ଘୋର ଆନ୍ଦୋଳନ
ଅଣ୍ଟାଭିଡ଼ ବାହାରିବୁ ଦେଇ ମନଧ୍ୟାନ । ୯୬

ସନଫା ଉବାଚ

ସାଧୁ ସାଧୁ ତୋ କଳ୍ପନା ଜଳ୍ପନା ଅନଫା
ଏପରି କଲେ ସବୁରି ଦଫା ହେବ ରଫା ।୯୭
ଆଖି ମେଲାଇ ଦେଖ ତୁ ଭାରତ ବାହାରେ
ହିଂସା ସମର ଲାଗିଛି ଇଉରୋପ ଦେଶରେ ।୯୮
ଦେଖୁଛୁ ହିଂସାର ଫଳ ଚୁଲ୍ଲା ପରାଜୟ
ପୋଲାଣ୍ଡ ଆବିସିନିଆ ଦଶା କଥା କହ । ୯୯
ବଳ ଯାହାର ମୂଲକ ତାହାର ହେଉଛି
ବଳେ ନପାରିବା ଜାତି ବଳରେ ଯାଉଛି ।୧୦୦
ଆତ୍ମସମର୍ପଣ ଅବା ବିପ୍ଳବ ସମର
ଦୁଇଟିରୁ କେଉଁ ପନ୍ଥା ନୁହଇଟି ସାର । ୧୦୧
ମଣିଷ ମାରିବା ଅସ୍ତ୍ର ଶସ୍ତ୍ର ବେଶି ଯାର
ଯୁଦ୍ଧରେ ଜୟୀ ହୋଇବ ସେ ଜାତି ନିକର ।
ତେଣୁ କଂଗ୍ରେସ ଏ ଦୁଇ ପନ୍ଥା ଗଢ଼ିଅଛି
ଅହିଂସା ନିକଟି ଅତି ଦୃଢ଼ରେ ଧରିଛି ।୧୦୩
ଅହିଂସା ପଥରୁ ବିଚଳିତ ହେବନାହିଁ
ଏ କଥା ନିଶ୍ଚୟ ଜାଣ ଅନଫାରେ ଭାଇ ।୧୦୪
ସକଳେ ଏହି ପଥରେ ଦୃଢ଼ଭାବେ ଚଳ
ମନ ଦମ୍ଭକରି ରହ ଅଚଳ ଅଟଳ । ୧୦୫
ଦେଖ ହିମାଳୟ ଛିର ରହିଛି ଅଚଳ
କେତେ ଭୟଙ୍କର ଝଡ଼ ବହେ ତା ଉପର ।୧୦୬

ପବନ ସହିତ କଳି ଦ୍ୱନ୍ଦ ନ କରଇ
ଅଚଳ ଅଟଳ ରହି ସବୁପାଏ ସହି । ୧୦୭
ପବନକୁ ନ ମଣଇ କେବେହେଁ ବଇରୀ
ଅହିଂସା ଧରମ ପାଳ ରହିଛି କପରି । ୧୦୮
ଗାନ୍ଧି ବୋଲନ୍ତି ସେପରି ମିତ୍ର ଅନୁସର
ଏଥିରୁ ଅନ୍ୟଥା କଲେ ନାହିଁଟି ନିସ୍ତାର ।୧୦୯
ସତ୍ୟ ଅହିଂସା ଆମ୍ଭର ପ୍ରାଚୀନ ଧରମ
ଏ ଦୁଇ ଅଟଇ ମୂଳ ଧର୍ମ ସନାତନ । ୧୧୦
ସତ୍ୟ ଅଟଇ ସାକ୍ଷାତ ବ୍ରହ୍ମ ସନାତନ
ସତ୍ୟବାଣୀ ନାଦ ବ୍ରହ୍ମ ଅଟଇ ପ୍ରମାଣ । ୧୧୧
ପୁରାଣ ଆଦି ସକଳ ଶାସ୍ତ୍ର ଗାଏ ନିତ
ଅଛଇ ସତ୍ୟର ଯେତେ ମହତ ଶକତି । ୧୧୨
ସତ୍ୟଟି ପରମବଳ ଅଟେ ମାନବର
ସତ୍ୟ ମାହାତ୍ମ୍ୟ କହିବ ଶକତି କାହାର । ୧୧୩
ସତ୍ୟକଥା କହି ଯେହୁ ଜୀବନ କାଟଇ
ତାହାକୁ କେବେହେଁ ଅପ୍ରମୟ ନ ଘଟଇ ।୧୧୪
ସତ୍ୟ ମାନ ପାରାବାର ନ ଲଙ୍ଘଇ କୂଳ •
ସତ୍ୟଧାରଣା ଆଶ୍ରୟେ ଚଳୁଛି ସଂସାର । ୧୧୫
ଯେତେବେଳେ ସତ୍ୟପଥ ମାନବ ଛାଡ଼ଇ
ଅଧର୍ମ ଆସି ସମାଜେ ରାଜତ୍ୱ କରଇ । ୧୧୬
ମହାଘୋର ପାପ ଆସି ସମାଜରେ ପଶେ
ମାନବର ମନ ପାପ ରୂପ ଦେଖି ରସେ ।୧୧୭
ରଜ ତମ ଗୁଣ ଗ୍ରାସ କରଇ ସମାଜ
ପାପ ପଥେ ରସି ଲୋକ କରନ୍ତି ମଉଜ ।୧୧୮
ମହାଘୋର ଦୁଃଖ ଲୋକେ ଭୋଗନ୍ତି ନିୟତ
ଦାନାକନା ନ ମିଳଇ ଲୋକଙ୍କୁ କଅଁତ ।୧୧୯
ଅତିବୃଷ୍ଟି ଅନାବୃଷ୍ଟି ନାନା ଇତଭୟ
ସମାଜକୁ କଲବଲ କରଇ ନିଶ୍ଚୟ । ୧୨୦

ଅଚଳ୍ପା ବ୍ୟାଧି ଲୋକଙ୍କୁ ଘୋଟଇ ସନ୍ତତ
ମହାଘୋର ତମ ରଜଗୁଣରେ ଜଡ଼ିତ । ୧୨୧
ସତ୍ୟପାଳ ରାମଚନ୍ଦ୍ର ଗଲେ ବନବାସ
ରାଜ୍ୟସୁଖ ତେଜିଦେଲେ ଚଉଦ ବରଷ ।୧୨୨
ସତ୍ୟପାଳ ହରିଶ୍ଚନ୍ଦ୍ର ଚଣ୍ଡାଳର ଦାସ
ବଳିରାଜା ସତ୍ୟପାଳ ହେଲା ସର୍ବନାଶ । ୧୨୩
କର୍ଣ୍ଣରାଜା ସତ୍ୟପାଳିଁକି କରି ନ ଥିଲା
ସ୍ୱହସ୍ତରେ ପୁତ୍ର ମୁଣ୍ଡ କାଟି ପକାଇଲା । ୧୨୪
ଏପରି କେତେ ଦୃଷ୍ଟାନ୍ତ ପାଇବ ପୁରାଣେ
ଚକିତ ହୋଇବ ସତ୍ୟ ମାହାତ୍ମ୍ୟ ଶ୍ରବଣେ ।୧୨୫
ସତ୍ୟ ଅଟେ ମାନବର ଶ୍ରେଷ୍ଠତମ ବଳ
ସତ୍ୟ ବିନୁ ଖରୁ କାପୁରୁଷ ହୀନବଳ । ୧୨୬
ମିଥ୍ୟାଠାରୁ ବଳି ମହାପାପ ଆଉ ନାହିଁ
ସକଳ ଶାସ୍ତ୍ର ଏ କଥା କିବାଠ ଘୋଷଇ । ୧୨୭
ଯୁଗେ ଯୁଗେ ଏହି କଥା ହେଉଛି ଘୋଷଣା
ଲୋକେ ଭୁଲଯାଇ ହେଉଛନ୍ତି ପଥ ବଣା ।୧୨୮
ମହାତ୍ମା ମହାପୁରୁଷ ଅବତାର ଯେତେ
ଆବିର୍ଭାବ ହୋଇଥିଲେ ଏ ପୁଣ୍ୟ ଭାରତେ ।
ସକଳେ ବୋଇଲେ ଲୋକେ ସତ୍ୟଧର୍ମ ପାଳ
ସତ୍ୟଠାରୁ ବଳି ଆଉ ନାହିଁ ପୁଣ୍ୟବଳ । ୧୩୦
ଏ ଯୁଗେ ମହାତ୍ମା ଗାନ୍ଧି ପୁଣି କହୁଛନ୍ତି
ସେହି ସନାତନ ଧର୍ମ ଚେତାଇ ଦିଅନ୍ତି । ୧୩୧
ସତ୍ୟ ଧର୍ମ ପାଳ ବୋଲି କହି ବାରବାର
ଆପେ ସାଧନା କରନ୍ତି ସେ ପଥେ ନିର୍କର ।୧୩୨
ତାଙ୍କ ଜୀବନ ଚରିତ ପଢ଼ ମନ ଦେଇ
ବୁଝିବୁ କେପରି ବୁଢ଼ା ସାଧନ କରଇ ।୧୩୩
ଆଜୀବନ ସତ୍ୟ ପରୀକ୍ଷାରେ ଦେଇ ମନ
କରୁଛନ୍ତି କର୍ମଯୋଗ ମାର୍ଗରେ ସାଧନ ।୧୩୪

ଯାହା ସତ୍ୟ ତାହା ସେହୁ କହୁଛନ୍ତି ନିତ
ତେଣୁ ତାହାଙ୍କ କଥାକୁ ସକଳେ ମାନନ୍ତି ।୧୩୫
ଅଦ୍ଭୁତ ଶକତି ଅଛି ତାହାଙ୍କ କଥାରେ
ତେଣୁ ଜଗତବାସୀଙ୍କ ହୃଦ ସ୍ପର୍ଶକରେ ।୧୩୬
ସକଳେ ନତ ମସ୍ତକ ତାଙ୍କ କଥା ଶୁଣି
ଅମୂଲ୍ୟ ବଚନ ତାହା ସଦା ସତ୍ୟ ବାଣୀ ।୧୩୭
ସେହିପରି ସତ୍ୟ ପାଳି ଚଳିଲେ ଏ ଲୋକ
ଅଚିରେ ଭୋଗ କରିବେ କଇବଲ୍ୟ ସୁଖ ।୧୩୮
ମିଥ୍ୟା ଆଶ୍ରୟରେ ଲୋକେ ଚଳିବେ ଯାବତ
ମହା ଘୋର କଷ୍ଟ ଭୋଗ କରିବେ ନିଶ୍ଚିତ ।୧୩୯
ସତ୍ୟପଥେ ଲୋକମାନେ ମନ ଦେବେ ଯେବେ
ସହଜରେ ହିଂସାଭାବ ମନରୁ ତେଜିବେ ।୧୪୦

ଅନଘ ଉବାଚ

ସତ୍ୟ ସଙ୍ଗେ ଅହିଂସାର କି ସମ୍ବନ୍ଧ ଅଛି
ବୁଝି ନ ପାରୁଛି କିଛି ସଂଶୟ ଲାଗୁଛି ।୧୪୧
ଅହିଂସା ବୋଇଲେ ଲୋକେ କିଛି ନ ବୁଝନ୍ତି
ବକ୍ତୃତା ଶୁଣି ସକଳେ ଘରେ ବାହୁଡ଼ନ୍ତି ।୧୪୨
ଶ୍ରୋତା ବକ୍ତା କେହି ନ ବୁଝନ୍ତି ତାର ଭାବ
ଅହିଂସା ସାଧନା ତେଣୁ ଅଟେ ଅସମ୍ଭବ ।୧୪୩
ଅହିଂସା ଅହିଂସା ବୋଲି କହେ ବାରମ୍ବାର
ବୁଝି ନ ପାରଇ କିଛି ମରମ ତାହାର ।୧୪୪
ଲୋକେ ଯେବେ ପଚାରନ୍ତି କି ମରମ ତାର
ଦେଇ ନ ପାରନ୍ତି କିଛି ତହିଁର ଉତ୍ତର ।୧୪୫
ହିଂସା ଭାବ କେଉଁପରି ମୂଳ ପୋଛ ହେବ
ଏ କଥା କପରି ହେବ ଲାଗେ ଅସମ୍ଭବ ।୧୪୬

ସନଘ ଉବାଚ

ସତ୍ୟ ଧରମ ପାଳିବେ ଲୋକେ ଯେତେବେଳେ
ସତ୍ତ୍ୱଗୁଣ ବଳେ ଢ଼ ପଡ଼ିବ ତେତେବେଳେ ।

ସତ୍ୟାଲୋକ ପ୍ରକାଶିତ ହେବ ଯେତେବେଳେ
ସତ୍ୟରେ ସବୁ ବେଭାର ହେବ ସେତେବେଳେ ।
ସତ୍ୟରେ ସବୁ ବେପାର ବଣିଜ ଚଳିବ
କେହି କାହା ସ୍ୱାର୍ଥ ପ୍ରତି ଲୋଭ ନ କରିବ ।୧୪୯
ଯେ ଯାହା ହକରେ ଲୋକେ ଚଳିବେ ନିୟତ
ରାଗ ହିଂସା କ୍ରୋଧ ଇର୍ଷା ହେବ ଦୂରୀଭୂତ ।
ଲୋଭରୁ ମୋହ ଜନମି କରେ ହତଜ୍ଞାନ
ବଳ ଯାର ମୂଳକ ତାହାର ଭାବ ପୁଣ ।୧୫୧
ଏହି ଭାବ ଯେତେବେଳେ ହୁଅଇ ପ୍ରବଳ
ଅନ୍ୟାୟ ଅତ୍ୟାଚାରର ବୃଦ୍ଧି ହୁଏ ବଳ ।୧୫୨
ନାନା କାମନା ଉପୁଜେ ଲୋଭ ହେତୁ ଜାଣ
ସକଳ ଅନର୍ଥ ମୂଳ ଅଟେ ସେହି କାମ ।୧୫୩
ସତ୍ୟ ପ୍ରବଳ ହୋଇଲେ କାମ ଯିବ ନାଶ
କାମ ମଲେ ହିଂସାଭାବ ବଳେ ହେବ ଧ୍ୱଂସ ।
ସତ୍ୟ ଅହିଂସା ସମ୍ବନ୍ଧ ଅଟେ ବଡ଼ ଟାଣ
ଏକ ବିନୁ ଆନ ତିଷ୍ଠି ନ ପାରଇ ଜାଣ ।୧୫୫
ସତ୍ୟ ଖୁଣ୍ଟ ଧରି ଯେବେ କେହି ଠିଆ ହେବ
ଆନ କେହି ତାହା ପ୍ରତି ହିଂସା ନ କରିବ ।
ନିଷ୍କାମ ଭାବେ ଯେ ଲୋକ କରମ କରିବ
ତାହା ପ୍ରତି କାର ହିଂସା ଭାବ ନ ହୋଇବ ।
ହିଂସାରୁ ହିଂସା ଉପୁଜେ ଏହା ନିତ୍ୟ ସତ୍ୟ
ଅହିଂସାରୁ ହିଂସା କେବେ ନ ହୁଏ ଉଦିତ ।
କୋଟି କୋଟି ହିଂସ୍ର ଜନ୍ତୁ ଅଛନ୍ତି ସଂସାରେ
ଚଳୁଛନ୍ତି ସତ୍ୟ ମାନ ଯେ ଯାହା ରାସ୍ତାରେ ।
ଯାବତ ତାହାଙ୍କ ପ୍ରତି ନାହିଁ ହିଂସାଭାବ
ତାବତ ତାହାଙ୍କୁ କିଛି ଭୟ ନ କରିବ ।୧୬୦
ଅକାରଣେ ନ ହିଂସନ୍ତି ହିଂସ୍ର ଜନ୍ତୁଗଣ
ନିଜ ଆପଦ ଶଙ୍କାରେ ହିଂସନ୍ତି ସେ ଜାଣ ।୧୬୧

ଅଜ୍ଞାନୀ ପଶୁ ଏ ମାତ୍ର ମାନ ଚଳୁଛନ୍ତି
ଜ୍ଞାନୀ ମାନବମାନେ ଏ କଥା ନ ବୁଝନ୍ତି ।୧୬୨
ସକଳ ମାନବ ଏକ ଈଶ୍ୱର ସନ୍ତାନ
ଏ ଭ୍ରାତୃ ଭାବ ଲୋକର ହୁଏ ବିସ୍ମରଣ ।୧୬୩
ତେଣୁ ହିଂସାଭାବ ବଢ଼ି ହୁଅନ୍ତି ବଇରୀ
ପରସ୍ପର ମଧ୍ୟରେ ହୁଅନ୍ତି ମରାମରି । ୧୬୪
ସତ୍ତ୍ୱଗୁଣ ବୃଦ୍ଧି ହେଲେ ହେବ ସଦଜ୍ଞାନ
ଅହିଂସା ଭାବ ତହିଁରୁ ହୋଇବ ଜନମ ।୧୬୫
ଯେବେ ସତ୍ୟ ପଥରେ ଚଳିବେ ଏହିଲୋକ
ନ ଧରି ପାରିବ ତାଙ୍କୁ କେବେ ହିଂସା ଜୋକ
ଜୋକ ମୁହେଁ ଲୁଣ ଦେଲେ ମରେ ତତକ୍ଷଣ
ହିଂସା ଜୋକ ମାରିବାକୁ ସତ୍ୟ ଅଟେ ଲୁଣ ।
ସକଳ ପ୍ରାଣୀ ହୃଦରେ ସତ୍ୟ ବାସ କଲେ
ହିଂସାଜୋକ ମିଳାଇ ଯିବଟି ଜାଣଭଲେ ।୧୬୮
ପ୍ରତିଜ୍ଞା କରନ୍ତୁ ଲୋକେ ସତ୍ୟରେ ଚଳିବେ
ଗଲେ ଯାଉପଛେ ପ୍ରାଣ ସତ୍ୟ ନଛାଡ଼ିବେ ।୧୬୯
ଏପରି ଅଭ୍ୟାସ ଲୋକେ କଲେ ବାରବାର
ସତ୍ୟର ମହତ୍ତ୍ୱ ବୁଝି ପାରିବେ ନିକର । ୧୭୦
ସତ୍ୟପଥେ ଯେବେ ସବୁ କାରବାର ହେବ
ମର୍ତ୍ତ୍ୟପୁରେ ବଇକୁଣ୍ଠ ଅବଶ୍ୟ ହୋଇବ । ୧୭୧
ପରମ ସୁଖ ଶାନ୍ତିରେ ପରଜା ଚଳିବେ
ଧର୍ମରାଜ୍ୟ ପ୍ରତିଷ୍ଠିତ ହେବ ପାଇତେବେ ।୧୭୨
ତେଣୁ ସତ୍ୟ ଅହିଂସାକୁ ଗାନ୍ଧିକଲେ ସାର
ଅମୂଲ୍ୟ ରତନ ଧର୍ମରାଜ୍ୟରେ ନିକର । ୧୭୩
ଏ ଦୁଇ ରତନ ଯେବେ ସାଇତି ପାରିବ
ଅକ୍ଲେଶରେ ଏ ଭାରତ ସ୍ୱରାଜ୍ୟ ପାଇବ ।୧୭୪

ଅନଫା ଉବାଚ

ସତ୍ୟ ଅହିଂସାର ଯାହା କଲୁ ତୁ ବ୍ୟାଖ୍ୟାନ
ଶୁଣି ସେ ମରମ କଥା ହେଲି ମୁହିଁ ଧନ୍ୟ ।୧୭୫

ଆଜଠାରୁ ଜ୍ଞାନ ଗୁରୁ ହେଲୁ ତୁ ମୋହର
ତୋର ଶ୍ରୀଚରଣେ ମୋର କୋଟି ନମସ୍କାର ।
ଆଜ ଯେଉଁ ଗୃଢ କଥା କହିଲ ବୁଝାଇ
ସତ୍ୟ ସଙ୍ଗେ କି ସମ୍ବନ୍ଧ ତାହାର ଅଛଇ ।୧୭୭
ନିଶାନିବାରଣ କଥା କହିଲ ତ ନାହିଁ
ସପ୍ତାଙ୍ଗ ଯୋଗ କହିବା ଉଚିତ ଅଛଇ । ୧୭୮

ସନକା ଉବାଚ

ସପ୍ତାଙ୍ଗ ଯୋଗ ପ୍ରକୃତ ଅଛଇ ତୁ ଜାଣ
ଭୁଲିଗଲି କହିବାକୁ ନିଶା ନିବାରଣ । ୧୭୯
ବିସ୍ତାରି କହିବା ତାହା ପର ଅଧ୍ୟାୟରେ
ଆହେ ମହାପ୍ରଭୁ କୃପାକର ମୋହଠାରେ ।
ପଙ୍ଗୁ ଲଙ୍ଘିପାରେ ଗିରି ତବ କୃପାବଳେ
ସତ୍ୟାଲୋକ ପ୍ରକାଶିତ କରି ଦିଅ ହେଲେ ।
ଜାଗୁ ଏ ଭାରତ ପୁଣି ସତ୍ୟାଲୋକ ପାଇ
ପୁଣି ଜଗତର ଗୁରୁ ହେଉ ଭବଗ୍ରାହୀ । ୧୮୨
ଅହିଂସା ବଳରେ ହେଲେ ଭାରତ ସ୍ୱାଧୀନ
ଜଗତକୁ ଏ ଭାରତ ଦେବ ମହା ଦାନ ।୧୮୩
ଏ ଶିକ୍ଷା ପାଇଁ ସଂସାରେ ଶାନ୍ତି ବିରାଜିବ
ନରହତ୍ୟା ଲୀଳା ଏ ସଂସାରୁ ଲୋପ ହେବ ।
ତବ କୃପା ବିନୁ ଏହା ହୋଇ ନ ପାରିବ
କୃପାକର କୃପାକର ଆହେ ଦେବ ଦେବ ।
ବୋଲେ ସନ ଜଗବନ୍ଧୁ ହେ ଜଗତ ସାଇଁ
ତବ ଇଚ୍ଛା ପୂର୍ଣ୍ଣହେଉ କି କହିବି ମୁହିଁ । ୧୮୬

ଇତି, ଶ୍ରୀ ଭାରତ-ଚରିତାମୃତେ ଅନସା ସନସା ଚରିତ ବର୍ଣ୍ଣନେ
ତେସ୍ତ୍ରୀନବେ ଅଧ୍ୟାୟଃ ।



# ଚଉରାନବେ ଅଧ୍ୟାୟ

ସନଙ୍ଗ ଉବାଚ

ଶୁଣରେ ଅନଙ୍ଗ ତୁହ୍ମ ପଚାରିଲୁ ଯାହା
ଠିକେ ଠିକେ କେତେ କଥା କହିବ ମୁଁ ତାହା ।
ନିଶା ଏକ ମହା ପାପ ଅଟଇ ସଂସାରେ
ନିଶା ଖିଆ ଲୋକ ରହେ ଅଜ୍ଞାନ ଅନ୍ଧାରେ ।୨
ଯେତେ ଲୋକ ନିଶାଖାଇ ସଂସାରେ ଚଳନ୍ତି
ଜ୍ଞାନ ଅଜ୍ଞାନ କିଛିହିଁ ଜାଣି ନ ପାରନ୍ତି ।୩
ଅଫିମ ଗଞ୍ଜାଇ ପୁଣି ମଦ ଯେ କୋକେନ
ଏ ଆଦି କେତେ ପ୍ରକାର ନିଶା ଅଛି ଜାଣ ।୪
ଭାରତ ଆମ୍ଭର ଶ୍ରେଷ୍ଠ ପ୍ରଦେଶ ଅଟଇ
ଏ ଦେଶରେ ନିଶା ପାନ କରି ନ ଯୋଗାଇ ।୫
ନିଶା ଖାଇ ଲୋକମାନେ ହେଲେ ହତଶିଷ୍ଟ
ମାଇପ ହାତରୁ ଟଙ୍କା କରନ୍ତି ହକର ।୬
ନିଶାଖିଆ ଲୋକମାନେ ସଦା ମତ୍ତଭୋଳ
ସମାଜରେ କରୁଛନ୍ତି ନାନା ଗଣ୍ଡଗୋଳ । ୭
ଜମିବାଡ଼ି ଘରଦ୍ୱାର ଆସବାବ ଯେତେ
ନିଶା ନ ମିଳିଲେ ବିକ ଦିଅନ୍ତି ତୁରିତେ । ୮
ପିଲା ମାଇପଙ୍କୁ ବଡ଼ ଦାଣ୍ଡରେ ବସାଇ
କ୍ଷଣିକ ସୁଖ ପାଇଁକି ଚୋରି ନିଶା ଖାଇ ।୯
କିଛି ନ ମିଳିଲେ ଚୋରି ବୃତ୍ତି ଆଚରନ୍ତି
ଏପରି ଏ ଦେଶ ଲୋକେ ସରି ଯାଉଛନ୍ତି ।୧୦
ମଜୁରିଆ ଶ୍ରେଣୀ ଲୋକ ମଜୁରି ଖଟନ୍ତି
ଦିନରାତି ଖଟି ଖଟି ଯାହା ଅରଜନ୍ତି । ୧୧
ନିଶା ଖାଇ ବହୁ ଧନ ଦିଅନ୍ତି ଉଡ଼ାଇ
ପିଲା କବଳା ଖାଇବା କଥା ଚିନ୍ତା ନାହିଁ ।୧୨
ଖାଇବା ପିଇବା କଥା ଦିଅନ୍ତି ପାଶୋରି
ନିଶା ଖିଆ ଲୋକଙ୍କର ଭୋକ ଯାଏ ମରି ।୧୩

ଜୀର୍ଣ୍ଣଶୀର୍ଣ୍ଣକାୟ ହୋଇ କଳା ପଡ଼ନ୍ତି
ତଥାପି ସେ ନିଶା ମୋହ ଛାଡ଼ି ନ ପାରନ୍ତି ।୧୪
ନିଶା ଖାଇବାର ବେଳ ଆସଇ ଯେବେଳେ
ତନପୁର ଅନ୍ଧାର ଦିଶଇ ତେତେବେଳେ ।୧୫
ନାକରୁ ଆଖିରୁ ପାଣି ବହି ହୋଇ ଆସେ
ନ ମିଳିଲେ ପାଗଳ ହୁଅଇ ଅବଶେଷେ ।୧୬
କିଛି ନ ମିଳିଲେ ଯାଇ ଆନ ଲୋକ ପାଶେ
ନେହୁରା ନମସ୍ତେ ହୋଇ ଭିକ୍ଷାମାଗେ ଶେଷେ ।
ଲାଜ ସରମ ମହତ୍ୱ ସକଳ ଛୁଟାଇ
ଘରେଘରେ ପ୍ରବେଶଇ ବୋଲେ ଦେହି ଦେହି ।
ଅତି ଦୀନ ହୀନ ବେଶେ ବୁଲେ ଦ୍ୱାରେ ଦ୍ୱାରେ
କେ ଦିଏ କେ ଅବା ବହୁ ତିରସ୍କାର କରେ ।୧୯
ଧର୍ମ କର୍ମ ଜ୍ଞାନ କିଛି ନ ଥାଏ ତାହାର
ପାଞ୍ଚେ ନିଶା ଖାଇବା ସକଳ ଧର୍ମସାର ।୨୦
ପଞ୍ଚାଏ ଅଛନ୍ତି ଦେଇ ଶିବଙ୍କର ଦୋହି
ଗଞ୍ଜାଇ ଖାଆନ୍ତି ପୁଣି ତାଙ୍କୁ ଭୋଗ ଦେଇ ।
ତ୍ରିନାଥ ମେଳା ପୁରାଣ କେ ଜଣେ କରନ୍ତି
ଭୋଗ ଦେଇ ସେ ମେଳାରେ ଗଞ୍ଜାଇ ଖାଉନ୍ତି ।
ରୋଗ ଦୋହି ଦେଇ କେହୁ ଅଫିମକୁ ରସେ
ଗୃହୁଁ ଗୃହୁଁ ଅଫିମ ତାହାକୁ ମଡ଼ିବସେ । ୨୩
ନିଶାର ଗୋଟାଏ ଗୁଣ ଅଛଇ ଏମନ୍ତ
ଗୃହୁଁ ଗୃହୁଁ ମାତ୍ରା ବୃଦ୍ଧି ହୁଅଇ ତ୍ୱରିତ । ୨୪
ମାତ୍ରାବୃଦ୍ଧି ହୋଇଣ କରାଏ ଅନାୟତ୍ତ
ଛାଡ଼ି ପାରିବାକୁ ତାର ନ ରହେ ଆୟତ୍ତ ।୨୫
ନିଶା ଦମ ଥିଲାବେଳେ ଶତସିଂହ ବଳ
ନିଶା ଛାଡ଼ିଗଲେ ଲୋକ ହୁଏ ହୀନବଳ । ୨୬
ନିଶା ଦୋକାନ ବସିଛି ସହରେ ବଜାରେ
ନିଶା କିଣି କିଣି ଲୋକେ ଦରିଦ୍ର ହୋଇଲେ ।

ଦୋକାନମାନ ବସାଇ ରାଜ ସରକାର
କୋଟି କୋଟି ଟଙ୍କାର ହୁଅଇ କାରବାର ।୨୮
ଓଡ଼ିଶା ଆମ୍ଭର ଏକ ଛୋଟିଆ ପ୍ରଦେଶ
ବିକା ହେଉଅଛି ନିଶା ଲକ୍ଷ ପଞ୍ଚବିଂଶ । ୨୯
ଏହି ଅନୁକ୍ରମେ ଏବେ କର ହେ ବିଚାର
ସମଗ୍ର ଭାରତବର୍ଷେ କେତେ କାରବାର । ୩୦
ନିଶା ଖାଇବାର ଅଛି ଯେତେ ମନ୍ଦ ଗୁଣ
ଲେଖି ବସିଲେ ହୋଇବ ବୃହତ ପୁରାଣ । ୩୧
ନିଶା ଖାଇ ଯେଉଁମାନେ ହେଲେ ହତଜ୍ଞାନ
ସତ୍ୟ ଅହିଂସା ଧରମ କି ବୁଝିବେ ପୁଣ । ୩୨
ଯେତେ ଯେତେ ଭଲକଥା ସେମାନେ ଶୁଣିବେ
ନିଶା ଖାଇବା ବେଳରେ ସବୁ ପାଶୋରିବେ ।
ସପ୍ତାଙ୍ଗଯୋଗ ବିଷୟ ତାହାଙ୍କୁ କହିବ
କାଲ ଆଗେ ମୂଳା ଗେ୍ବାଇବା ନ୍ୟାୟ ହେବ ।
ତେଣୁ ଗାନ୍ଧି କହୁଛନ୍ତି ଶୁଣ ହେ ସୁଜନ
କର ବେଗେ ଏ ଦେଶରେ ନିଶା ନିବାରଣ ।୩୫
ଜଣେ କେହି ନିଶାଖିଆ ଭାରତେ ନ ରହୁ ।
ନିଶା ଅସୁର ଚଞ୍ଚଳ ଏ ଦେଶୁ ପଳାଉ । ୩୬
କଂଗ୍ରେସ ମନ୍ତ୍ରୀ ଯେ କାଳେ ନେଲେ ଅଧିକାର
ଗାନ୍ଧି ତାହାଙ୍କୁ ଆଦେଶ ଦେଲେକି ନିକର ।୩୭
ସରକାର ହୋଇ ତାଙ୍କୁ କରିବ ଶାସନ
ପ୍ରଥମେ କରିବ ଦେଶୁଁ ନିଶା ନିବାରଣ । ୩୮
ନିଶା ନିବାରଣପାଇଁ ହେଲା କେତେ କାମ
ବହୁ ବ୍ୟୟକରି କଲେ ବହୁତ ବିଧାନ । ୩୯
କାର୍ଯ୍ୟ ସିଦ୍ଧି ନ ହେଉଣୁ ମନ୍ତ୍ରୀତ୍ୱ ଛାଡ଼ିଲେ
କି ହେବ ଭବିଷ୍ୟତରେ ଦେଖାଯିବ ବଳେ ।୪୦
ନିଶା ନିବାରଣ ପାଇଁ ବହୁତ ପ୍ରଚାର
କେତେ କର୍ମୀ କରୁଛନ୍ତି ଦେଶରେ ନିକର ।୪୧

ସଭା ସମିତିରେ ବସି ସକଳ ଶୁଣନ୍ତି
ଜଣେ କେହ୍ନି ନିଶା ଛାଡ଼ିବାକୁ ନ ପାରନ୍ତି ।୪୨
ଦୃଢ଼ଭାବେ ଲୋକେ ଯେବେ ପ୍ରତିଜ୍ଞା କରିବେ
ଏକା ଦିନକରେ ନିଶାଖିଆ ଛାଡ଼ିଦେବେ । ୪୩
ଆପେ ଯେବେ ଆପଣା ଚରିତ୍ର ନ ଗଢ଼ିବ
ହଜାରେ ଆଇନ ହେଲେ ଗଢ଼ି ନ ପାରିବ ।୪୪
ଆପଣା ମନକୁ ଆପେ ଗୁରୁ କଲେ ହେବ
ମନ କଲେ ମୂହୂର୍ତ୍ତିକେ ସବୁ ବଦଳିବ । ୪୫
ଶ୍ରୀମୁଖରେ ଗୀତାରେ କହିଲେ ଭଗବାନ
ଆପଣା ମନକୁ ଗୁରୁ କର ହେ ଅର୍ଜୁନ । ୪୬
ଯାବତ ତୋହର ମନ ଗୁରୁ ନ ହୋଇବ
ତାବତ ଯୋଗସାଧନା କରି ନ ପାରିବ । ୪୭
ଆପଣା କଲ୍ୟାଣ ଆପେ ବାଞ୍ଛାକର ଯେବେ
ଗାନ୍ଧିଙ୍କ ବଚନମାନ ଯୋଗ ସାଧ ତେବେ ।୪୮
ଯେବେ ଏ ସାମାନ୍ୟ କଥା କରି ନ ପାରିବ
ସ୍ୱରାଜ୍ୟ ସଂଗ୍ରାମପାଇଁ ପାତ୍ରର ନ ହେବ । ୪୯
ନିର୍ମଳଜ୍ଞାନ ଯାହାର ଉଦିତ ନ ହେବ
ସ୍ଥିତପ୍ରଜ୍ଞ ସେହୁ ଲୋକ ହୋଇ ନ ପାରିବ ।୫୦
ସାଧାନାରେ ସ୍ଥିତପ୍ରଜ୍ଞ ହୋଇନାହିଁ ଯେହୁ
ସଚ୍ଚା ସତ୍ୟାଗ୍ରହୀ ହୋଇ ନ ପାରିବ ସେହୁ ।୫୧

ଅନସା ଉବାଚ

ସ୍ଥିତପ୍ରଜ୍ଞ ଅର୍ଥ କିଛି ବୁଝି ନ ପାରଇ
ପରିଷ୍କାର କରିଦିଅ ଏ କଥା ବୁଝାଇ । ୫୨

ସନସା ଉବାଚ

ଭଗବତ ଗୀତା ପଢ଼ ଏ କଥା ବୁଝିବ
ଗୀତାବିଧି ଅନୁସାରେ ସାଧନ କରିବ । ୫୩
ଯାହାର ବୁଦ୍ଧି ଅଟଇ ନିର୍ମଳ ନିଶ୍ଚଳ
ସେହିଲୋକ ସ୍ଥିତପ୍ରଜ୍ଞ ଅଟଇ କେବଳ । ୫୪

ନିଶା ଖାଇଲେ ଲୋକର ହୁଏ ଚିତ୍ତ ଭ୍ରମ
ତାର ବୁଦ୍ଧି ସ୍ଥିର କେବେ ନ ହୋଇବ ଜାଣ ।
ସକଳ ଇନ୍ଦ୍ରିୟ ଯେହୁ ସଂଯତ କରିବ
ଆପଣା ସ୍ୱାର୍ଥ ସମୂଳେ ଜଳାଞ୍ଜଳି ଦେବ । ୫୬
ଈଶ୍ୱରସୃଷ୍ଟି ରକ୍ଷାର୍ଥେ କରିବ କରମ
ଲୋକହିତ କାମ ଯାର ପରମ ଧରମ । ୫୭
ସେ ଲୋକ କର୍ତ୍ତବ୍ୟ ତାର ସ୍ଥିରକରି ନେବ
ତାହାକୁ ଈଶ୍ୱରବାଣୀ ବଳେ ଶୁଣାଯିବ । ୫୮
ସେହି ବାଣୀ ଅନୁସରି କର୍ତ୍ତବ୍ୟ କରିବ
ପ୍ରାଣପଣେ ନିର୍ଭୟରେ କର୍ମ କରିଯିବ । ୫୯
ଗୃହ କାରାବାସ ସେହୁ ମଣିବ ସମାନ
ସତ୍ୟ ଅହିଂସା ତାହାର କେବଳ ଭୂଷଣ । ୬୦
ସଚ୍ଚା ସତ୍ୟାଗ୍ରହୀ ବୋଲି ତାହାକୁ ଗଣିବ
ସ୍ୱରାଜ୍ୟ ସମରେ ସେହୁ ସମରଥ ହେବ । ୬୧
ଏହି କଥା ଡାକି ଗାନ୍ଧି କହୁଛନ୍ତି ନିତି
ଏପରି ସାଧକ ସର୍ବେ ହୁଅ ହେ ଝଟତି । ୬୨
ଗୀତାର ସାରମରମ ଗାନ୍ଧି କହୁଛନ୍ତି
ଦୃଢ଼ମନେ ବୁଝି ସାଧ ତାହାଙ୍କ ଉକତି । ୬୩
ଏପରି ସାଧକ ହୋଇ ନ ପାରିବ ଯେହୁ
ସ୍ୱରାଜ୍ୟ ସଂଗ୍ରାମପାଇଁ ଯୋଗ୍ୟ ନୁହେ ସେହୁ । ୬୪
ବଚନକୁ ଶୁଣି ଖାଲି ଲାଭ ନାହିଁ ଲେଶ
ଆଚରଣ କରିବାକୁ କର ହେ ଅଭ୍ୟାସ । ୬୫
ସତ୍ୟ କର୍ମରେ ଯେ ମନ ଧ୍ୟାନ ଲଗାଇବ
ଚଞ୍ଚଳ ମନ ତାହାର ବେଗେ ସ୍ଥିର ହେବ । ୬୬
ଗ୍ରାମର ମଙ୍ଗଳପାଇଁ କଲେ କର୍ମମାନ
ସ୍ୱାର୍ଥ ସମ୍ପ୍ରସାରଣ ହୋଇବ ଦିନୁଦିନ । ୬୭
ଲୋକ ହିତେ ମନଯିବ କଲେ ଏ ଅଭ୍ୟାସ
ବୁଦ୍ଧି ନିର୍ମଳ ହୋଇବ ଜାଣ ହେ ଅବଶ୍ୟ । ୬୮

ଭାରତରେ ହିନ୍ଦୁ ମୁସଲମାନ ଦୁଇ ଜାତି
ଗୁଳକୁଗୁଳ ବାନ୍ଧିଣ ଘର କରିଛନ୍ତି । ୬୯
ଦୁଇ ଜାତି ମଧ୍ୟରେ ନ ହେବ ଯେବେ ପ୍ରୀତି
ସ୍ୱରାଜ୍ୟ ସଂଗ୍ରାମେ କେବେ ନ ପାରିବ ଜିତି ।୭୦
ଉଭୟେ ମିଳିମିଶିଣ ହୁଅ ଏକମୁଖ
ତେବେ ମୁହୂର୍ତ୍ତକେ ଯିବ ଏ ଭାରତ ଦୁଃଖ ।୭୧
ଯେତେ ଦିନଯାଏ ଏ ମିଳନ ନ ହୋଇବ
ଭାରତ ସ୍ୱାଧୀନ ହେବା ଅଟେ ଅସମ୍ଭବ । ୭୨
ହିନ୍ଦୁ ମୁସଲମାନ ଦୁହେଁ ଭାରତ ସନ୍ତାନ
ଭାରତ ମୁକତିପାଇଁ ଉଭୟେ ସମାନ । ୭୩
ଉଭୟର ଧରମ ବିଶ୍ୱାସ ଭିନ୍ନ ଭିନ୍ନ
ଯାହାର ଯାହା ଧରମ ରହିବ ଅକ୍ଷୁନ୍ନ । ୭୪
ଭାରତ ମୁକତି ପଥେ ଧର୍ମ ନାହିଁ ଲୋଡ଼ା
ରାଜନୀତି କ୍ଷେତ୍ରେ ଏକହୋଇ ହୁଅ ଛିଡ଼ା । ୭୫
ଦ୍ୱନ୍ଦ କଳହ ପ୍ରଭୃତି ଭାବ ଛାଡ଼ିଦିଅ
ସ୍ୱରାଜ୍ୟ ମିଳିଲେ ଯେ ଯାହାର ନ୍ୟାଯ୍ୟ ପାଅ ।
ଉପରକୁ ଦିଶଇ ମହିଷ ଶିଙ୍ଗ ଫଟା
ଝୁଣ୍ଟିଲାବେଳକୁ ପୁଣି ହୋଇଯାଏ ଗୋଠା ।୭୭
ଘର କଳି ଘରେ ତୁଟିବାକୁ ଅଛି ବେଳ
ପହିଲେ ସ୍ୱରାଜ୍ୟ ଦୁହେଁ କର ହେ ହାସଲ ।୭୮
ପରେ ସର୍ବେ ମିଳିମିଶି କର ହେ ବିଚାର
ନ୍ୟାଯ୍ୟଦାବି ବୁଝିସୁଝି ନିଅ ଯେ ଯାହାର ।୭୯
ସଂଖ୍ୟାନ୍ୟୁନ ଗୋଷ୍ଠିମାନେ ଅଛ ଯେ ଭାରତେ
ଏହି ନୀତି ଧରି କାର୍ଯ୍ୟ କର ହେ ସମସ୍ତେ ।୮୦
ନିଜ ନ ଦେଖି ଲଙ୍ଗଳା ହୁଅ କାହିଁପାଇଁ
ଫଳରେ ସ୍ୱରାଜ୍ୟ ଲଭି ନ ପାରିବ ହୋଇ ।୮୧
ତେଣୁ ଗାନ୍ଧି କହୁଛନ୍ତି ତୁଟାଅ କନ୍ଦଳ
ଦୁହେଁ ମିଳିମିଶି ଅବିଶ୍ୱାସ କର ଦୂର । ୮୨

ଯେଉଁଠାରେ ହିନ୍ଦୁ ମୁସଲମାନ ଅଛ ଯେତେ
ନିର୍ମଳ ଚିତ୍ତେ ବିଗ୍ଭର କର ହେ ସମସ୍ତେ ।୮୩
ଗାନ୍ଧି ତେଣୁ କହୁଛନ୍ତି କର ସମାଧାନ
ଏକମୁଖ ହୁଅନ୍ତୁ ଏ ହିନ୍ଦୁ ମୁସଲମାନ । ୮୪

ଅନଘା ଉବାଚ

ଅସ୍ପୃଶ୍ୟତା ନିବାରଣ ମର୍ମ ଅଟେ କିସ
ବୁଝି ନ ପାରଇ ଗୁରୁ ତାର ଇତିହାସ । ୮୫
ଅସ୍ପୃଶ୍ୟତା ନିବାରଣ କାହିଁକି ହୋଇବ
କେଉଁ କାରଣରୁ ଏହା ହେଲା ଉଦଭବ । ୮୬

ସନଘା ଉବାଚ

ଗାନ୍ଧି କହୁଛନ୍ତି ମହାପାପ ଏ ଅଟଇ
ହିନ୍ଦୁ ଧର୍ମରେ କଳଙ୍କ ଲଗାଇଛି ଏହି । ୮୭
ଯାବତ ଏ ମହାପାପ ହିନ୍ଦୁ ଧର୍ମେ ଥିବ
ତାବତ ଏ ହିନ୍ଦୁଜାତି ପରାଧୀନ'ଥିବ । ୮୮
ସନାତନୀମାନେ ଏହା ଶୁଣିଣ ବିରକ୍ତ
ବୋଲନ୍ତି ଏ ଏକାକାର ନ ହେବା ଉଚିତ ।୮୯
ତେଣୁ ଗାନ୍ଧିଙ୍କି ମଣନ୍ତି ଧର୍ମର ବଇରୀ
ବୋଲନ୍ତି ଏ ଗାନ୍ଧି ହିନ୍ଦୁଧର୍ମ ଦେଲା ସାରି ।୯୦
ଗାନ୍ଧି ଯେତେବେଳେ ପୁରୀଧାମକୁ ଅଇଲେ
ସନାତନୀମାନେ କଳାପତାକା ଧଇଲେ । ୯୧
ଗାନ୍ଧି ବୋଲୁଛନ୍ତି ଯାହା ଶୁଣ ମନଦେଇ
ସାତକୋଟି ନରନାରୀ ଅସ୍ପୃଶ୍ୟ ଅଟଇ । ୯୨
ଅବଶିଷ୍ଟ ହିନ୍ଦୁମାନେ ପବିତ୍ର ଅଟନ୍ତି
ଏ ସାତ କୋଟିଙ୍କୁ ଘୃଣାଚକ୍ଷୁରେ ଦେଖନ୍ତି ।।୯୩
ମଣନ୍ତି ଏହାଙ୍କୁ ପଶୁ ପକ୍ଷୀଠାରୁ ହୀନ
ସମାଜରେ ନାହିଁ ଏହାଙ୍କର କିଛି ସ୍ଥାନ । ୯୪
ଦୂରହୁଅ ଦୂରହୁଅ ସର୍ବଦା ବୋଲନ୍ତି
ଛୁଇ ପଡ଼ିଗଲେ ଲୋକେ ସ୍ନାହାନ କରନ୍ତି ।୯୫

ସେମାନେ ଯେଉଁ ପଥରେ କରନ୍ତି ଗମନ
ସେ ପଥେ ଚଳନ୍ତି ନାହିଁ ଆନ ହିନ୍ଦୁଗଣ । ୯୬
ମହାଘୋର ପାପୀବୋଲି ତାହାଙ୍କୁ ମଣନ୍ତି
ସଞ୍ଜେ ସକାଳେ ତାହାଙ୍କ ମୁଖ ନ ଚାହାନ୍ତି ।୯୭
ସେମାନଙ୍କ ଦୁଃଖ ସୁଖ ତିଳେ ନ ବୁଝନ୍ତି
ମାଡ଼ମାରି ଧମକାଇ କରମ କରାନ୍ତି । ୯୮
କୁକୁର ବିଲେଇ ଯେତେ ଲଭନ୍ତି ଆଦର
ଶତାଂଶରୁ ଏକ ଅଂଶ ନାହିଁ ଏହାଙ୍କର । ୯୯
ଅତି ଦୀନ ହୀନ ଭାବେ ଚଳନ୍ତି ନକର
ଅତି କଦର୍ଯ୍ୟ ସ୍ଥାନରେ ବାସ ଏହାଙ୍କର ।୧୦୦
ଦାଣ୍ଡଦୁଆର ପିଣ୍ଡାକୁ ଉଠି ନ ପାରିବ
ବହୁଦୂରେ ରହି ଆଜ୍ଞା ହଜୁର କହିବ । ୧୦୧
କାହାରି କୂପରୁ ଜଳ ନେଇ ନ ପାରିବ
ପାଣି ମନ୍ଦଏ ନ ପାଇ ପ୍ରାଣ ଗଲେ ଯିବ ।୧୦୨
ଦେବ ମନ୍ଦିରକୁ ଯିବା ନାହିଁ ଅଧିକାର
ସବୁ ଅପବିତ୍ର ହେବ ଛୁଇରେ ତାହାର ।୧୦୩
ଅଛୁଣ୍ଡା ଉଣ୍ଡିଳ ଯାହା ଯେବେ ବା ବଳିବ
ବାରି ପାଇଖାନା ପାଖେ ତାକୁ ଦିଆଯିବ ।୧୦୪
ଏହାଙ୍କର ଜମିବାଡ଼ି ମାଣେ ଗୁଣ୍ଠେ ନାହିଁ
ଭାଗ୍ୟକୁ କୁଡ଼ିଆ ଖଣ୍ଡେ କାହାରି ଅଛଇ ।୧୦୫
ତେଲ ହଳଦୀ ନ ଦେଖେ ଦେହ ମୁଣ୍ଡ କେବେ
ଛିଣ୍ଡା ମଇଳା ବସନ ପିନ୍ଧନ୍ତି ସରବେ । ୧୦୬
ଅଖାଦ୍ୟ ଖାଇ ସେମାନେ ଜୀବନ କାଟନ୍ତି
ତେଣୁ ଅଧିକ ଘୃଣାର ପାତ୍ର ଅଟନ୍ତି । ୧୦୭
ମୂର୍ଖ ଦୀନ ହୀନ ହୋଇଅଛନ୍ତି ସେମାନେ
ଚାଟଶାଳୀ ନ ଦେଖନ୍ତି ତାଙ୍କ ପିଲାମାନେ ।୧୦୮
ଗାନ୍ଧି ଏହି ଦଶା ଦେଖି ମନରେ ଦୁଃଖିତ
ବୋଲନ୍ତି ହେ ହିନ୍ଦୁଗଣ ଏହା କି ଉଚିତ ।୧୦୯

ତୁମ୍ଭେ ହିନ୍ଦୁ ସେ ତ ହିନ୍ଦୁ ଧରମରେ ଭାଇ
ସେମାନଙ୍କ ପ୍ରତି ଏ ବେଭାର ନ ଯୋଗାଇ ।୧୧୦
ସେମାନେ ତ ସେହି ଭଗବାନଙ୍କ ସନ୍ତାନ
କରି ରଖିଛ ତାହାଙ୍କୁ କେଡ଼େ ହୀନସ୍ଥାନ ।୧୧୧
ହରିଙ୍କ ସନ୍ତାନ ତେଣୁ ସେହୁ ହରିଜନ
ସେମାନଙ୍କ ହୃଦୟେ ଅଛନ୍ତି ଭଗବାନ । ୧୧୨
ସେହି ଯେ ସଚ୍ଚିଦାନନ୍ଦ ବ୍ରହ୍ମ ପାରାବାର
ନୁହନ୍ତି କି ସେମାନେ ତା ତରଙ୍ଗ ନିକର ।୧୧୩
ସେମାନଙ୍କ ପ୍ରତି ଏ କି ନିଷ୍ଠୁର ବେଭାର
ସେମାନେ ତବ ସେବାରେ ସଦା ତତପର ।
କେଡ଼େ ଭକ୍ତିଭରେ ସେବା କରନ୍ତି ସେମାନେ
କେତେ ଲାଞ୍ଛନା ଗଞ୍ଜଣା ସହି ଅପମାନେ ।୧୧୫
ନୀଚ ଘୃଣ୍ୟ ଅସ୍ପୃଶ୍ୟ ଶବଦ ଶୁଣି ଶୁଣି
ସେମାନେ ଆପଣା ତତ୍ତ୍ୱ ଆପେ ଭୁଲିଲେଣି ।
ସଚ୍ଚିଦାନନ୍ଦ ବ୍ରହ୍ମର ସେମାନେ ଯେ ଅଂଶ
ଏ କଥା ତାଙ୍କ ମନରେ ନାହିଁକି ବିଶ୍ୱାସ ।୧୧୭
ଉଚ୍ଚଜାତି ସେବାଲାଗି ତାହାଙ୍କ ଜନମ
ଏହି ବିଶ୍ୱାସରେ ସେହୁ କରନ୍ତି କରମ । ୧୧୮
ଘୃଣା ଅରୁଚି ବିକାର ଅବା ଅପମାନ
ଏପରି ସେ ଲୋକଙ୍କର ନାହିଁ ବୋଧଜ୍ଞାନ ।୧୧୯
ଅତି ଆନନ୍ଦରେ ସେ ସେବନ୍ତି ନିଶି ଦିନ
ତଥାପି ନୁହନ୍ତି ତବ କରୁଣା ଭାଜନ ।   ୧୨୦
ଏତେ ଲୋକଙ୍କୁ ରଖିଛ କରି ତବ ଦାସ
ତେଣୁ ଭୋଗୁଛ ଦାସତ୍ୱ ସହସ୍ର ବରଷ । ୧୨୧
ଆନ ଆନ ଧର୍ମରେ ଯେ ହୋଇଲେ ଦୀକ୍ଷିତ
ଆଦର ଗୌରବ ତୁମ୍ଭେ କରୁଛ ବହୁତ ।୧୨୨
ଯାବତ ସେମାନେ ହିନ୍ଦୁ ହୋଇ ରହିଛନ୍ତି
ତାବତ ଉଚ୍ଚଶ୍ରେଣୀରୁ ଲାଞ୍ଛନା ଭୋଗନ୍ତି ।୧୨୩

ମଣିଷ ଯେଉଁଠି ପାଏ ଯେପରି ଆଦର
ତାହା କୋଳେ ପଶେ ଯାଇ ପ୍ରକୃତି ତାହାର ।
ଦେଖ ଉଚ୍ଚ ବର୍ଣ୍ଣ ହିନ୍ଦୁ ଦିବ୍ୟଚକ୍ଷୁ ମେଲି
କେତେ ହିନ୍ଦୁ ନିତି ଦିନ ଯାଉଛନ୍ତି ଚଳି ।୧୨୫
କେ ହେଉଛନ୍ତି ମୁସଲମାନ କେହୁ ଖ୍ରୀଷ୍ଟିଆନ
ତବ ଅନାଦର ଯୋଗୁ ଘଟୁଛି ଏ ମାନ । ୧୨୬
ତବ ସଂଖ୍ୟାବଳ କ୍ରମ ହେଉଅଛି ଊଣା
ସେହିମାନେ ଖୋଳିବେ ତୁମ୍ଭରିପାଇଁ ଠଣା ।
ତେଣୁ ଗାନ୍ଧି କହୁଛନ୍ତି ହୁଅ ସାବଧାନ
ଅସ୍ପୃଶ୍ୟତା ମହାପାପ କର ନିବାରଣ । ୧୨୮
ସେମାନଙ୍କ ଉନ୍ନତିରେ ଦିଅ ମନଧ୍ୟାନ
କର ସେମାନଙ୍କ ଶିକ୍ଷାଦୀକ୍ଷାର ବିଧାନ । ୧୨୯
ପରିଷ୍କାର ପରିଚ୍ଛନ୍ନ ହୁଅନ୍ତୁ ସେମାନେ
ଧର୍ମଭାବ ଜାଗିଦିଅ ସେମାନଙ୍କ ମନେ । ୧୩୦
ମଦ୍ୟ ଗୋ-ମାଂସ ଭୋଜନ ଛାଡ଼ନ୍ତୁ ସେମାନେ
ନ ସହନ୍ତୁ ଆଉ ବେଶିଦିନ ଅପମାନେ ।୧୩୧
ସ୍ନେହ ସହିତ ତାହାଙ୍କୁ କର ବ୍ୟବହାର
ବୁଝନ୍ତୁ ସେମାନେ ତୁମ୍ଭେ ତାହାଙ୍କ ସୋଦର ।
ତାଙ୍କ ଉନ୍ନତି ପାଇଁକି ତୁମ୍ଭେ ତତପର
ତବ କୋଳେ ଉଷୁମ ପାଇବେ ସେ ନିକର ।
ଆନ ଧର୍ମ ନେବାପାଇଁ ସେ ମନ ନ ଦେବେ
ତବ ସାନଭାଇ ପରି ଆନନ୍ଦେ ରହିବେ ।୧୩୪
ମାନବକୁ କେବେ ସାନ ମନେକର ନାହିଁ
କେ ଜାଣେ କାହାଠି କେଉଁ ମାହାତ୍ମ୍ୟ ଅଛଇ ।
କେତେ ଅସ୍ପୃଶ୍ୟ ହୋଇଲେ ପରମ ଭକତ
ବୈଷ୍ଣବ ସମାଜେ ପୂଜ୍ୟ ଅଟନ୍ତି ନିୟତ ।୧୩୫
ହରିଦାସ ସାଲବେଗ ମୋଚି ରାମଦାସ
ଅସ୍ପୃଶ୍ୟ ଥିଲେ ଏମାନେ ହେଲେ ପ୍ରଭୁ ଦାସ ।

ଶିକ୍ଷାଦୀକ୍ଷାରେ ସେମାନେ ହୋଇଲେ ଉନ୍ନତ
ଫୁଟି ବାହାରିପାରିବ ତାହାଙ୍କ ମହତ୍ତ୍ୱ । ୧୩୮
ବଣର ମାଳତୀପରି ସେହୁ ରହିଛନ୍ତି
ବନେ ଫୁଟି ବନେ ଝଡ଼ି ମିଳାଇ ଯାଆନ୍ତି ।୧୩୯
ତେଣୁ ଗାନ୍ଧି କହୁଛନ୍ତି ଆହେ ଦେଶବାସୀ
ଅସ୍ପୃଶ୍ୟତା ନିବାରଣ କର ସର୍ବେ ମିଶି ।୧୪୦
ନ ମଣ ସେ ଲୋକମାନେ ତୁମ୍ଭଠାରୁ ପର
କି ଘୃଣ୍ୟ କାର୍ଯ୍ୟ ସେ ନ କରନ୍ତି ବା ତୁମ୍ଭର ।
ତୁମ୍ଭ ବିଷ୍ଠା ମଇଳାକୁ ତୁମ୍ଭେ ଘୃଣାକର
ଯେ ଲୋକ ସାନନ୍ଦେ ତାକୁ କରେ ପରିଷ୍କାର ।
କୃତଜ୍ଞ ନୁହଁ କି ତୁମ୍ଭେମାନେ ତାଙ୍କଠାରେ
ସେମାନଙ୍କୁ ଘୃଣାକର କେଉଁ ବିଚାରରେ ।୧୪୩
ଏ କାର୍ଯ୍ୟ କରି ସେ ଯେବେ ଘୃଣାର ପାତ୍ର
ସେମାନେ ନ କଲେ ଆପେ କରିବ ନିକର ।
ସେମାନେ କରନ୍ତି ବୋଲି ତୁମ୍ଭେ ଆଜି ଉଚ୍ଚ
ସେମାନେ ନ କଲେ ନିଜେ ନ ହେବକି ନୀଚ ।
କଲେ ଏପରି ବିଚାର ନିର୍ମଳ ହୃଦରେ
ହେବନାହିଁକି କରୁଣା ସେମାନଙ୍କଠାରେ ।୧୪୬
ତବ ହିତେ ଏତେ ସେବା କରନ୍ତି ଯେ ଜନ
ତୁମ୍ଭେ କିମ୍ପାଇ ତାହାଙ୍କୁ କର ହୀନମାନ ।୧୪୭
ନିରନାରୀପୂର୍ଣ୍ଣ ସେହୁ ଅଟନ୍ତି ନିକର
ସେମାନଙ୍କ ପ୍ରତି ତୁମ୍ଭେ ବେଶି ଦୟାକର ।୧୪୮
ବିବାହ ସମ୍ବନ୍ଧ ଅବା ଭୋଜନ ବିଷୟ
ନ କହନ୍ତି ଗାନ୍ଧି ଏହା କରିବ ନିଶ୍ଚୟ । ୧୪୯
ଏ ସପ୍ତାଙ୍ଗଯୋଗ ଯେବେ ସାଧନ କରିବ
ତେବେ ସ୍ୱରାଜ୍ୟ ସଂଗ୍ରାମପାଇଁ ଯୋଗ୍ୟ ହେବ ।
କେ ବୋଲଇ ଏ କଥା ସମ୍ଭବ ନୁହେଁ କେବେ
ସକଳେ ଅହିଂସା ଧର୍ମ ପାଳି ନ ପାରିବେ ।୧୫୧

ମନ ବଚନ କର୍ମରେ ହିଂସା ନ ରହିବ
ଏ କଥା ଏକାବାରେକେ ଅଟଇ ଅସମ୍ଭବ ।୧୫୨
ସକଳେ ସତ୍ୟ ପାଳିବେ ନୁହଇ ସମ୍ଭବ
ଗାନ୍ଧିଙ୍କ ମତ କେବଳ କଥାରେ ରହିବ ।୧୫୩
ନିର୍ବିକାର ଚିତ୍ତ ସାର ହୋଇ ନ ପାରିବ
ଅସ୍ପୃଶ୍ୟତା ଦୋଷ କେବେ ଲୋପ ନ ହୋଇବ
ନିଶା ନିବାରଣ କଥା ଅଟଇ ସେପରି
ସକଳେ ନିଶା ଛାଡ଼ିବେ ଅବା କେଉଁପରି ।୧୫୪
ସକଳର ସଦ୍‌ଗୁଣ ନ ହେଲେ ପ୍ରବଳ
ଏ ସବୁ ସ୍ୱପନପରି ଲାଗୁଅଛି କେବଳ । ୧୫୬
ଏହିପରି ନାନା ତର୍କ ଲାଗିଛି ଭାରତେ
ସକଳର ଏକମତ ନୁହଇ କାହିଁତେ । ୧୫୬
କଂଗ୍ରେସ ସମିତିରେ ଯେଉଁ ନିର୍ଦ୍ଧାରଣ କଲା
ସୁଭାଷଙ୍କ ମନକୁ ସେ ପସନ୍ଦ ନ ହେଲା । ୧୫୮
ତେଣେ ଇଂରେଜଙ୍କୁ କହୁଅଛି ହିଟ୍‌ଲର
ଯେବେ ସନ୍ଧି କରିବାକୁ ତୁମ୍ଭେ ଇଚ୍ଛାକର ।୧୫୯
ଛଅ ଗୋଟି ସରତ କି କରିବ ପାଳନ
ତେବେ ସନ୍ଧି ହୋଇପାରେ ଭଲ ଏହା ଜାଣ ।
ଭାରତ ଆୟର୍ଲଣ୍ଡକୁ ସ୍ୱାଧୀନତା ଦେବ
କାନଡ଼ାକୁ ଫରାସୀମାନଙ୍କୁ ଫେରିଦେବ ।୧୬୧
ଇତ୍ୟାଦି ସରତ ଯେବେ କରିବ ପୂରଣ
ତେବେ ସନ୍ଧି ପ୍ରସ୍ତାବର ହୋଇବ ବିଧାନ ।୧୬୨
ଗାନ୍ଧି ତାଙ୍କ ଦୃଢ଼ମତ ଧରି ବସିଛନ୍ତି
ବାରବାର ଇଂରେଜଙ୍କୁ ସେହୁ କହୁଛନ୍ତି ।୧୬୩
କଂଗ୍ରେସର ଦ୍ୱାର ମେଲିଅଛି ସବୁବେଳେ
ମର୍ଯ୍ୟାଦା ପୂର୍ଣ୍ଣ ନିଷ୍ପତ୍ତି କରିବେ ସେ ହେଲେ ।
ଯାବତ ଭାରତ କଥା ମୀମାଂସା ନ ହେବ
କଂଗ୍ରେସ କରିପାରିବ ନାହିଁ ସହଯୋଗ ।୧୬୪

ଏ ସବୁ ଶୁଣି ମନକୁ ଏମନ୍ତ ଆସୁଛି
ଭଗବାନଙ୍କର ଇଚ୍ଛା କି ପ୍ରକାର ଅଛି । ୧୬୬
ସବୁରି ହୃଦୟେ ତୁମ୍ଭେ ଅଛ ବିଜେକରି
ତବ ପ୍ରେରଣା ସକଳ କରୁଛୁ ହେ ହରି ।୧୬୭
ବିଚିତ୍ର ଲୀଳା ତୁମ୍ଭର କେ ବୁଝି ପାରିବ
କାହାକୁ କିପରି ବୁଦ୍ଧି ଦେଉଛ ହେ ଦେବ ।
କର୍ମ ଅନୁସାରେ ଫଳ ମାନବ ଭୋଗୁଛି
ମୋହେ ପଡ଼ି ନିଜେ କର୍ତ୍ତା ବୋଲି ନାଚୁଅଛି ।
ଏ ମୋହ ବିନାଶପାଇଁ ତୁମ୍ଭେ ଏକା ସାହା
ତବ କରୁଣା ବିହୁନେ ନ ମିଳିବ ରାହା । ୧୭୦
ନିରାଶ୍ରୟ ଭାରତକୁ ଦିବ୍ୟଚକ୍ଷୁ ଦିଅ
କିପରି ମୁକ୍ତି ପାଇବ ସେ ପଥ ଦେଖାଅ ।୧୭୧
ତବ କରୁଣା ନ ହେଲେ ଅଟେ ଅସମ୍ଭବ
ଭାରତ ସପ୍ତାଙ୍ଗଯୋଗ ସାଧି ମୁକ୍ତ ହେବ ।୧୭୨
ବୋଲେ ଦୀନ ଜଗବନ୍ଧୁ ଜଗତ ଗୋସାଇଁ
ତବ ଶ୍ରୀଚରଣେ ବାରବାର ମୁଁ ନମଇଁ ।୧୭୩

ଇତି ଶ୍ରୀ ଭାରତ-ଚରିତାମୃତେ, ଗାନ୍ଧିଙ୍କ ସପ୍ତାଙ୍ଗ ଯୋଗ ବର୍ଣ୍ଣନେ ଚତୁର୍ନବତେ ଅଧ୍ୟାୟଃ ।



## ପଞ୍ଚନବତେ ଅଧ୍ୟାୟ

### ଅନନ୍ତ ଉବାଚ

ଆହେ ଗୁରୁଦେବ କହିଲ ଯେ କଥାମାନ
ସକଳ ସଂଶୟ ମୋର ନ ହେଲା ମୋଚନ । ୧
କଂଗ୍ରେସର ଧର୍ମ କର୍ମ ଗାନ୍ଧି ଯା କହିଲେ
କାହିଁକି କେତେକ ଲୋକ ପସନ୍ଦ ନ କଲେ ।୨

କି ଯୁକ୍ତି ଅଟେ ତାଙ୍କର ବୁଝି ପାରୁନାହିଁ
କହ ଗୁରୁଦେବ ମତେ ସେ କଥା ବୁଝାଇ । ୩

ସନ୍ଧ୍ୟା ଉବାଚ

ନାନା ମୁନିଙ୍କର ନାନା ମତ ସବୁକାଳେ
ନୂତନ ନୁହେଁ ଏ କଥା ଏବେ ଭାରତରେ । ୪
ମାନବେନ୍ଦ୍ର ରାୟ ନାମେ କଂଗ୍ରେସ ଭକତ
ପସନ୍ଦ କରୁନାହାନ୍ତି ଗାନ୍ଧିବାଦ ତତ୍ତ୍ୱ । ୫
ନାନା ପ୍ରକାର ଯୁକତି କରୁଛନ୍ତି ସେହି
ସାରସାର ତାଙ୍କ କଥା ଶୁଣ କହିବଇଁ । ୬
ଗାନ୍ଧିଙ୍କ ସହିତ ବହୁ ତର୍କ କରୁଛନ୍ତି
ବହୁବାର ଲଗିଅଛି ଉକ୍ତି ପ୍ରତିଉକ୍ତି । ୭
ପୂର୍ଣ୍ଣ ଅହିଂସା ଧରମ ଅଟେ କଂଗ୍ରେସର
ଗାନ୍ଧିଜୀ କହୁଅଛନ୍ତି ଏହା ବାରବାର । ୮
ମନ ବଚନ କର୍ତ୍ତବ୍ୟେ ଅହିଂସା ପାଳିବ
ମାନବ ପ୍ରତି ଏ କଥା ଅଟେ ଅସମ୍ଭବ । ୯
ରାୟ ବୋଲନ୍ତି ଏ କଥା ନୁହଇ ଅସତ୍ୟ
ଏଥିକି ସାକ୍ଷୀ ମୋହର ଗାନ୍ଧିଜୀ ନିଶ୍ଚିତ । ୧୦
ଗାନ୍ଧିଜୀଙ୍କି ଯେତେଥର ଏକଥା ଲେଖିଲି
ସେହି ଏକ ଉତ୍ତର ମୁଁ ତାଙ୍କଠୁ ପାଇଲି ।୧୧
'ଗଠନ ମୂଳକ କାର୍ଯ୍ୟ ଅହିଂସା ପାଳନ
ନ କଲେ ଭାରତ କେବେ ନ ହେବ ସ୍ୱାଧୀନ'।
କଂଗ୍ରେସ ଏ କଥା ଯେବେ କରି ନ ପାରିବ
ସ୍ୱାଧୀନତା ଧନ କେବେ ପାଇ ନ ପାରିବ ।୧୩
ଜଣକ ମତରେ ପୁଣି କଂଗ୍ରେସ ଚଳିବ
ମନ ବଚନ କର୍ତ୍ତବ୍ୟେ ତା କଥା ମାନିବ । ୧୪
ଏହି ନୀତି ଅନୁସରି କଂଗ୍ରେସ ଚଳିଲେ
ମନକୁ ସ୍ୱରାଜ୍ୟ କରଗତ ହେବ ବଳେ । ୧୫

ଏହି କଥା ଶୁଣିଣ ମୋ ମନକୁ ଆସୁଛି
ଗଣତନ୍ତ୍ର ବିଧାନ ଏଥିରେ ନାହିଁ କିଛି । ୧୬
କଂଗ୍ରେସର କର୍ମକର୍ତ୍ତାମାନେ ଯେ ଅଛନ୍ତି
ଗାନ୍ଧିଙ୍କ କଥାରେ ସ୍ୱାହା ସ୍ୱାହା କରୁଛନ୍ତି ।୧୭
ଜଣକ ହୁକୁମେ ଯେବେ କଂଗ୍ରେସ ଚଳିବ
ସବୁର ସ୍ୱାଧୀନ ଚିନ୍ତା ବିନାଶ ଭଜିବ । ୧୮
କେହି ସ୍ୱାଧୀନ ଭାବରେ କଥା ନ କହିବ
ଫଳରେ ବିବେକ ବୋଲି କିଛି ନ ରହିବ ।
କଂଗ୍ରେସର ରାଜମାନ୍ତ ବୃତ୍ତି ଯେ ଭଜନ୍ତି
କି ହୋଇବ ତାର ଦଶା କହ ଭାବି ଚିନ୍ତି ।୨୦
କଂଗ୍ରେସ ଭିତରେ ଅଛି ବାର ଗୋଳମାଳ
ଏ ବିଷୟେ ଅଛି ଭ୍ରମ ଧାରଣା ତାଙ୍କର । ୨୧
ସୁଧାରିବା ପାଇଁ ଏହି ସବୁ ଦୋଷମାନ
ଗାନ୍ଧିଜୀ କରୁଅଛନ୍ତି ବହୁତ ବିଧାନ । ୨୨
କଂଗ୍ରେସରେ ଏକତା ରଖିବା ପାଇଁ ବ୍ୟସ୍ତ
କଠୋର ନୀତି ନିୟମ କରୁଛନ୍ତି ନିତ୍ୟ । ୨୩
ବିଶୃଙ୍ଖଳାର କାରଣ ଖୋଜୁଛନ୍ତି ନିତି
ସନ୍ଦେହ ହେଉଛି ବୋଲି ପ୍ରକାଶି କହନ୍ତି ।୨୪
କଂଗ୍ରେସ ଭିତରେ ଯେଉଁ ଭିନ୍ନ ଭିନ୍ନ ଦଳ
ଖୋଜୁଛନ୍ତି କି ଉଦ୍ଦେଶ୍ୟ ଅଟେ ତାହାଙ୍କର ।
କେତେ ସାହସେ ସେମାନେ କରନ୍ତି ପ୍ରଚାର
ଆଉ ଅନ୍ୟ ମତ ଧରି କଂଗ୍ରେସ ନିକର । ୨୬
ଖାଣ୍ଟି କଂଗ୍ରେସ ବୋଲିଙ୍କ ତରଫରୁ ମୁହିଁ
ଗାନ୍ଧିଜୀଙ୍କ କେତେଥର ପତ୍ର ଲେଖିଲଇଁ । ୨୭
ଗାନ୍ଧିଙ୍କ ମନ୍ଦ ସନ୍ଦେହ କରିବାକୁ ଦୂର
ଲେଖିଥିଲି ଖୋଲି ଏହି ଉଦ୍ଦେଶ୍ୟ ନିକର । ୨୮
ବିଶେଷି ଲେଖିଲି ମୁହିଁ ସମସ୍ତ କାରଣ
କଂଗ୍ରେସ ଭିତର ଦୁରବସ୍ଥା ବିବରଣ । ୨୯

କାହିଁକି ଭ୍ରମ ଧାରଣା ହେଉଛି ତାଙ୍କର
ଛିନ୍ନ ଭିନ୍ନ କରି ସବୁ ଲେଖିଲି ପତ୍ରର । ୩୦
ମୂଳ ପ୍ରଶ୍ନ ବିଷୟରେ ଲେଖିଥିଲି ମୁହିଁ
କଂଗ୍ରେସ ଭିତରେ କଥା ଏମନ୍ତ ହୁଅଇ । ୩୧
ଧୂମ୍ର ପରଦା ପକାଇ ମିଛ କଥା କହି
ମୂଳ ପ୍ରଶ୍ନ ବାହାରକୁ ଦିଅନ୍ତି ଘୋଡ଼ାଇ । ୩୨
ଗାନ୍ଧିଜୀଙ୍କୁ ଆବେଦନ କରି ମୁଁ ଲେଖିଲି
ଭଲ କରି ଏଥର କାରଣ ବୁଝି ବୋଲି । ୩୩
କାହିଁକି ଭୁମ୍ଭ ମନରେ ସଂଶୟ ହେଉଛି
କଂଗ୍ରେସଠାରେ ଭକତି କାର ବା ନ ଅଛି ।
ବର୍ତ୍ତମାନ ରାଜନୀତି ପ୍ରଶ୍ନ ଅଟେ କିସ
ମୂଳପ୍ରଶ୍ନ ସଙ୍ଗେ ତାର ସମ୍ବନ୍ଧ ଅବଶ୍ୟ । ୩୫
ପରିଷ୍କାର କରି କେହି ପ୍ରଶ୍ନ ନ ବୁଝଇ
ଗୋଲଆ ପୋଳିଆ ଭାବେ ବାହାର ହୁଅଇ । ୩୬
ବହୁତ ସଂଶୟ ପ୍ରଶ୍ନ କଲେ ବାରବାର
ଦେଲି ମୁହିଁ ତାଙ୍କୁ ସିଧା ସଳଖ ଉତ୍ତର । ୩୭
ମନ୍ଦ କଥା ଅଛି ଯେବେ କଂଗ୍ରେସ ଭିତରେ
ତହିଁର ନିଦାନ କିସ ଅଛି କେଉଁଠାରେ । ୩୮
ଅନୁନୟ ବିନୟରେ କଲି ନିବେଦନ
ଅଧୀରହୋଇ କ୍ରୋଧରେ ବୋଇଲେ ବଚନ
ଗାନ୍ଧିଜୀ ଯେପରି ଭାବେ ପ୍ରତ୍ୟୁତ୍ତର ଦେଲେ
ବାହାରି ଯାଅ କଂଗ୍ରେସୁ ଫଳରେ କହିଲେ ।
ଏ କଥା ଶୁଣି ମୁଁ ଡଲେ ନୁହେଁ ବିଚଳିତ
କ୍ଷୁବ୍ଧ ହେବାର ଏଥିରେ ନୁହଇ ଉଚିତ । ୪୧
ମୁଁ ଜାଣେ କଂଗ୍ରେସ ନୁହେଁ ନିର୍ଦ୍ଦିଷ୍ଟ ଦଳର
ସ୍ୱୋପାର୍ଜିତ ସମ୍ପତ୍ତି ଏ ନୁହଇ କାହାର । ୪୨
କଂଗ୍ରେସକୁ ସୃଷ୍ଟି କରି ନାହିଁ ଜଣେ କେହି
ଜଣକ ମତରେ ସଦା ଏ ଚଳିବ ନାହିଁ । ୪୩

ଯେ ଯେତେ ଭକତ ପଛେ ହେଉ କଂଗ୍ରେସର
କଂଗ୍ରେସ ନୁହଇ ନିଜ ସମ୍ପତ୍ତି ତାହାର । ୪୪
ଭାରତୀୟ ଲୋକଙ୍କର ଅଟେ ଏ ସମ୍ପତ୍ତି
ଲୋକ ସାଧାରଣ ତାକୁ ସୃଷ୍ଟି କରିଛନ୍ତି । ୪୫
ବିଦେଶୀ ସାମ୍ରାଜ୍ୟବାଦ କରିବାକୁ ଧ୍ୱଂସ
କଂଗ୍ରେସର ଅଟେ ଏହା ମୌଳିକ ଉଦ୍ଦେଶ୍ୟ ।
ବହୁକାଳୁ ରହିଅଛି ସମ୍ପର୍କ ମୋହର
ବହୁତ କଷ୍ଟ ଭୋଗିଛି ସଙ୍ଗ୍ରାମେ ନିକର । ୪୭
ଅଳପ ବହୁତ ତ୍ୟାଗ କରିଅଛି ମୁହିଁ
ସେ କଥା ଘୋଷଣା କରିବାକୁ ଚାହୁଁ ନାହିଁ ।
ତେଣୁ ଯାବତ କଂଗ୍ରେସ ଥିବ ଭାରତରେ
ଲଢ଼ୁଥିବ ଭାରତର ମୁକତି ସମରେ । ୪୯
ତାବତ ମୁଁ କଂଗ୍ରେସର ହୋଇ ରହିଥିବ
କିନ୍ତୁ ଜଣକ ମତରେ ଅଧୀନ ନ ହେବ । ୫୦
ଜଣେ ହରତା କରତା ହେବ କଂଗ୍ରେସର
ଏ ନୀତି ମୁଁ କେବେ ନ କରିବ ସ୍ୱୀକାର ।୫୧
ସ୍ୱାଧୀନତା ଲଭପାଇଁ ଯେଉଁ ଅନୁଷ୍ଠାନ
ସଂଗ୍ରାମ କରିବ ଦୃଢ଼ କରି ପ୍ରାଣପଣ । ୫୨
ଗଣତନ୍ତ୍ର ପାଇଁ ଯେବେ ସମର କରିବ
ଅନୁଷ୍ଠାନ ଭିତରେ ସେ ନିୟମ ରହିବ । ୫୩
ଗଣତନ୍ତ୍ର ନୀତି ଯେବେ ଭିତରେ ନ ଥିବ
କିପରି ସେ ତନ୍ତ୍ର ପାଇଁ ବାହାରେ ଲଢ଼ିବ ।
କଂଗ୍ରେସର ଏହି ନୀତି ଅଟଇ ଜୀବନ
ନୈତିକ ଭୟ ଦେଖାଇ ନ ନିଅ ତା ପ୍ରାଣ ।
ଅହିଂସା ଏକଗୁଟିଆ ଆଭରଣ ଦେଇ
ପବିତ୍ର ଜୀବନ କଂଗ୍ରେସର ମୋଡ଼ ନାହିଁ । ୫୭
ପୁଣି ବାପୁ କହୁଛନ୍ତି ଶୁଣ ସୁଜ୍ଞଜନ
ଆହୁରି କଥାଏ କରୁଅଛି ନିବେଦନ । ୫୭

ତଥାକଥିତ ନଙ୍ଗର କଂଗ୍ରେସର ଧର୍ମ୍ମ
କଂଗ୍ରେସର ରାଜନୀତି କାର୍ଯ୍ୟକ୍ରମମାନ । ୫୮
ଏ ଦୁଇ କଥା ମଧ୍ୟରେ ପ୍ରଭେଦ ରହିଛି
ପ୍ରଭେଦ ସାମାନ୍ୟ ନୁହେଁ ବୋଲି ମୁଁ କହୁଛି ।
ବଡ଼ ବେଶି ପ୍ରଭେଦ ରହିଛି ମୋ ବିଶ୍ୱାସ
ଦୁଇଟି ମଧ୍ୟରୁ ଏକ ଛାଡ଼ିବା ଅବଶ୍ୟ । ୬୦
କଂଗ୍ରେସର ଭାବ ଧାରା ଏବେ ମୁଁ ଦେଖୁଛି
ଧର୍ମ୍ମ ତତ୍ତ୍ୱେ ବେଶି ମନ ଧ୍ୟାନ ଦେଉଅଛି ।୬୧
କାର୍ଯ୍ୟକ୍ରମ ପ୍ରତି ଆଉ ତେତେ ମନ ନାହିଁ
କାର୍ଯ୍ୟ କଳାପରୁ ଏହା ଦେଖୁଅଛି ମୁହିଁ । ୬୨
ଗାନ୍ଧିଜୀ ମୋ ପତ୍ର ପଢ଼ି ଯେ ଉତ୍ତର ଦେଲେ
ଏହିପରି ପରିସ୍ଥିତି ବୋଲି ସେ କହିଲେ ।୬୩
ଏ କଥା ଉଚିତ ବୋଲି ନୁହେଁ ମୋର ମତ
ଦୃଢ଼ ବିଶ୍ୱାସ ଏ ମୋର କହୁଛି ନିଶ୍ଚିତ । ୬୪
କଂଗ୍ରେସକୁ ସୁବିଧା ସୁଯୋଗ ଦିଆଯାଉ
ସବୁ ପ୍ରଶ୍ନ ସ୍ୱାଧୀନ ଭାବରେ କରାହେଉ । ୬୫
ସ୍ୱାଧୀନ ଭାବରେ ସବୁ କରନ୍ତୁ ବିଚାର
ଦେଖାଯାଉ କସ ରାୟ ହେବ କଂଗ୍ରେସର ।
ଗାନ୍ଧିଜୀଙ୍କ ସପକ୍ଷରେ ଯେବେ ରାୟ ହେବ
କଂଗ୍ରେସ ତା ମୂଳ ଲକ୍ଷ ପାଇଁ ନ ରହିବ ।
ସ୍ୱାଧୀନତା ସମର ସେ କରି ନ ପାରିବ
ଭାରତବାସୀ କେବେହେଁ ସ୍ୱାଧୀନ ନ ହେବ ।
ଯାବତ ଏ କଥାମାନ ନିଷ୍ପତ୍ତି ନ ହେବ
ତାବତ କଂଗ୍ରେସ ମଧ୍ୟେ ଦ୍ୱନ୍ଦ ଲାଗିଥିବ । ୬୯
ଜଣକ ମତରେ ଯେବେ କଂଗ୍ରେସ ଚଳିବ
ଅବା ଜଣକୁ ପଚାରି ସବୁ କାମ ହେବ । ୭୦
ଯାବତ ଏ ମନ୍ଦ ନୀତି କଂଗ୍ରେସରେ ଥିବ
ତାବତ ଏ ମତଭେଦ ସମର ଚଳିବ । ୭୧

ଅହିଂସା ଧରମ ତତ୍ତ୍ୱ ଅଛି କଂଗ୍ରେସର
ଏ ପ୍ରଶ୍ନ ବିଷୟର ବେଳେ ତାକୁ ଦୂର କର ।
ଏଥିର ଦୁଇ କାରଣ କହୁଅଛି ଶୁଣ
ପ୍ରଥମ କାରଣ ଏବେ ଶୁଣ ଦେଇ ମନ । ୭୩
କଂଗ୍ରେସର ଲକ୍ଷ ପୂର୍ଣ୍ଣ ସ୍ୱାଧୀନତା ଲଭ
ଏଥିପାଇଁ କଂଗ୍ରେସ ଯେ ସମର କରିବ । ୭୪
ତାର କାର୍ଯ୍ୟକ୍ଷେତ୍ର ସଙ୍କୁଚିତ ହୋଇଯିବ
ଏଥିରୁ ପାଠକମାନେ ଏମନ୍ତ ନ ଭାବ । ୭୫
ଅହିଂସା ଛାଡ଼ିଲେ ହିଂସା କରିବା ଅବଶ୍ୟ
ଏପରି ମୁଁ କହୁନାହିଁ ବୁଝ ହେ ଅବଶ୍ୟ । ୭୬
ଅହିଂସା ନୀତିକୁ ଯେବେ ତ୍ୟାଗ କରିଦେବା
ଅବଶ୍ୟ ହିଂସା ନୀତିରେ ଲଢ଼ାଇ କରିବା ।୭୭
ଏପରି ମରମ ଏଥୁଁ କେହି ନ ବୁଝିବ
ମୋ କଥାର ନୁହଇ ଏମନ୍ତ ଅର୍ଥ ଭାବ । ୭୮
ମୁଁ କହୁଛି ରାଜନୀତି ସମର ଯେ କରେ
ସର୍ବଦା କାର୍ଯ୍ୟକ୍ରମକୁ ରଖିବ ଆଗରେ । ୭୯
ଅନ୍ୟ କଥାର ବିଷୟ ଏ କ୍ଷେତ୍ରରେ ନାହିଁ
ରାଜନୀତି ଏକମାତ୍ର ନୀତି ଜାଣ ଭାଇ । ୮୦
ସ୍ୱାଧୀନତା ନୁହେଁ ଯେବେ ଜାତିଗତ ଲକ୍ଷ
ନୀତିଶବ୍ଦ ତେବେ ଫାଙ୍କା ଜାଣହେ ପ୍ରତ୍ୟକ୍ଷ ।୮୧
ଯେବେ ଅନ୍ୟ ଅର୍ଥେ ନୀତି ପ୍ରୟୋଗ କରିବ
ସକଳର ସ୍ୱାଧୀନତା ଲୁପ୍ତିଦେବା ହେବ । ୮୨
ଦ୍ୱିତୀୟ କାରଣ ଏବେ କହୁଅଛି ଶୁଣ
କରିନାହିଁ କଂଗ୍ରେସ ଏ ନୀତିକି ଗ୍ରହଣ । ୮୩
ପୂର୍ବମାନଙ୍କରେ ଏ ନୀତି ନ ହେଲେ ଗୃହୀତ
କଂଗ୍ରେସ ଲୋକ ଏଥିରେ ବାଧ୍ୟ କି ନିଶ୍ଚିତ ।୮୪
କଂଗ୍ରେସର ସଦସ୍ୟ ଅଟଇ ଯେଉଁ ଜନ
ଅଧିକାର ଅଛି ତାର କରି ଆନ୍ଦୋଳନ । ୮୫

ଦାବି କରିବ ମାନ୍ତର ପ୍ରଥା ସଂଶୋଧନ
ପ୍ରଥା ପରିବର୍ତ୍ତନ ତା ପୂର୍ବମାନଙ୍କ ପୁଣି । ୮୬
ଏପରି ଦାବି କରିବା ଅଛି ଅଧିକାର
ଗଣତନ୍ତ୍ର ଅନୁଷ୍ଠାନ ଅଟେ ଏ ପ୍ରକାର । ୮୭
ଯେତେ ଯେତେ ଗଣତନ୍ତ୍ର ଅନୁଷ୍ଠାନ ଅଛି
ସଦସ୍ୟର ଏହିପରି ଅଧିକାର ଅଛି । ୮୮
ଏପରି ଦାବି କରିବା ଦୋଷ କିଛି ନାହିଁ
ଗଣତନ୍ତ୍ରର ନିୟମ ଏପରି ଅଟଇ । ୮୯
ଗାନ୍ଧି ବୋଲନ୍ତି ସକଳେ ତାଙ୍କ କଥା ମାନ
ପୂର୍ଣ୍ଣ ଅହିଂସା ଧରମ କର ହେ ପାଳନ । ୯୦
ମନବଚନ କର୍ତ୍ତବ୍ୟ ହିଂସା ଯାର ନାହିଁ
ସ୍ୱରାଜ୍ୟ ସଂଗ୍ରାମ ପାଇଁ ଯୋଗ୍ୟ ଏକା ସେହି ।୯୧
ଗାନ୍ଧିଜୀ ଏ ମାନ୍ତ ଦାବି କରୁଛନ୍ତି ଆଜ
ପୁଣି କହୁଛନ୍ତି ଦେଶବାସୀ ହୁଅ ରାଜି । ୯୨
ଜଣକ ମତରେ ସବୁ କାର୍ଯ୍ୟମାନ ହେବ
ଏଥିରେ କେ କେହି କିଛି କହି ନ ପାରିବ ।୯୩
ଗାନ୍ଧିଙ୍କ ମତରେ ଏହା ନୁହଇ ଅନ୍ୟାୟ
ମାନ୍ତିସଙ୍ଗତ ଏ କଥା ଅଟଇ ନିଶ୍ଚୟ । ୯୪
କଂଗ୍ରେସ ମାନ୍ତି ନିୟମ ବଦଳିବା ପାଇଁ
ଗାନ୍ଧିଜୀ ପ୍ରସ୍ତାବ କଲେ କଂଗ୍ରେସରେ ଯାଇ ।୯୫
ଗାନ୍ଧିଙ୍କ ପ୍ରସ୍ତାବ କେହି ଗ୍ରହଣ ନ କଲେ
ଅସ୍ୱୀକାର କରିବେ କି ଗାନ୍ଧି କେବେହେଲେ ।
ଯାବତ ଏ କଥା ଅଛି ତାବତ ଏ ମାନ୍ତ
କଂଗ୍ରେସବାଲାଙ୍କୁ ବାଧକରି ନ ପାରନ୍ତି । ୯୭
କଂଗ୍ରେସବାଲାଙ୍କ ଉକ୍ତି ଏହି ନିକଟରେ
ଚଳିବା ଉଚିତ ନୁହଇ କେତେବେଳେ ।୯୮
ଯେବେ ଗାନ୍ଧିଙ୍କର ଅଟେ ଏହିପରି ମତ
କଂଗ୍ରେସ ବଇଠକରେ ମଣ୍ଡିବା ଉଚିତ । ୯୯

ଯେତେ ସଦସ୍ୟ ଅଛନ୍ତି ଏବେ କଂଗ୍ରେସର
ସକଳର ମତ ନେଇ ଏ କଥା ବିଚାର । ୧୦୦
ଅଧିକାଂଶ ମତରେ ଯେ କଥା ସ୍ଥିର ହେବ
ସେହି ନୀତି ଅନୁସାରେ କଂଗ୍ରେସ ଚଳିବ ।୧୦୧
ଏକଛତ୍ର ନୀତିକୁ ମୁଁ ନ କରେ ପସନ୍ଦ
କରୁଛି ତହିଁ ବିପକ୍ଷେ ତୀବ୍ର ପ୍ରତିବାଦ । ୧୦୨
ଯୁଦ୍ଧ ଚଳନାରେ ଏହା କହିବା ଉଚିତ
ଯେଉଁମାନେ କହୁଛନ୍ତି ନୁହେଁ ଯୁକ୍ତିଯୁକ୍ତ ।୧୦୩
ବର୍ତ୍ତମାନ ଯୁଦ୍ଧ ପରିସ୍ଥିତି କିଛି ନାହିଁ
ଅହିଂସା ନୀତିରେ କେବେ ଯୁଦ୍ଧ ହେବନାହିଁ ।
ତେବେ ଗଣତନ୍ତ୍ର ନୀତି କିମ୍ପା ନ ରହିବ
କାର୍ଯ୍ୟରେ ନ ଥିଲେ ହେଲେ ନୀତିରେ ରହିବ ।
ଯେବେ ଅକର୍ମା ହୋଇଣ ବସିବା ସକଳେ
ଆତ୍ମହତ୍ୟା କରାଯାଉ ଛୁରିଦେଇ 'ଗଳେ ।୧୦୬
କଂଗ୍ରେସ ସଦସ୍ୟଙ୍କର ଅଛି ଅଧିକାର
କରିବେ କି ନ କରିବେ ଏ କଥା ନିକର ।୧୦୭
ଅକର୍ମ ଅଟଇ ବଡ଼ ଜବର କଲମ
ବୁଦ୍ଧିମାନ ଲୋକ ଏହି ତତ୍ତ୍ୱ ନ ମାନନ୍ତି ।୧୦୮
ପ୍ରକୃତରେ ଅକରମ ଅଟଇ ମରଣ
ଏହି ନୀତି କଂଗ୍ରେସର ହେଲା ବର୍ତ୍ତମାନ ।୧୦୯
ରାଜନୈତିକ ଜୀବନ କଂଗ୍ରେସର ମଲା
ଅକର୍ମନୀତି ହେତୁରୁ ଏହିକଥା ହେଲା । ୧୧୦
ତେଣୁ ମୁଁ କହୁଛି ହେଉ ଏ କଥା ବିଚାର
କଂଗ୍ରେସ ବଇଠକରେ ଆଲୋଚନା କର ।୧୧୧
ନୀତି ନିୟମ ସକଳ ନ ହେଲେ ବଦଳ
ଭୁଷୁଡ଼ିଯିବ ଅବଶ୍ୟ କଂଗ୍ରେସର ମୂଳ । ୧୧୨
ବିଂଶ ବରଷ ପୂର୍ବରୁ ଯେଉଁ ନୀତି ଥିଲା
ଏତେକାଳ ସେ ନୀତିର ପରୀକ୍ଷା ହୋଇଲା ।୧୧୩

ଏତେକାଳ ଅଭିଜ୍ଞତା ପରେ କ ହୋଇବ
କଂଗ୍ରେସ ବଇଠକରେ ଯାଞ୍ଚ କରାଯିବ । ୧୧୪
ଭବିଷ୍ୟତ କାର୍ଯ୍ୟପନ୍ଥା ମତ କସ ହେବ
ସମଗ୍ର ବଇଠକରେ ଠିକଣା ହୋଇବ । ୧୧୫
ଏହ ମୂଳ ପ୍ରଶ୍ନରେ ହେଉଛି ଗଣ୍ଡଗୋଳ
ଗାନ୍ଧଜୀ ଜବାବ ଦେଲେନାହିଁ ପରିଷ୍କାର ।୧୧୬
ଗୋଟିଏ ଇପୋଲେଇଦେଇ ଜବାବ ସେ ଦେଲେ
ମନ୍ତ୍ରୀମାନଙ୍କ ଇସ୍ତଫା କଥା ସେ ବାଢ଼ିଲେ ।୧୧୭
ଗାନ୍ଧ ନଜ ମୁଖେ ଯାହା କଲେ ସିଉକାର
ତହିଁରୁ ତାହାଙ୍କ ଯୁକ୍ତି ଦଶୁଛି ଅସାର । ୧୧୮
ଗାନ୍ଧ ବୋଲନ୍ତ ତାହାଙ୍କ ନଜ ବନ୍ଧୁଗଣ
ବିଶ୍ୱାସୀ ଦକ୍ଷିଣହସ୍ତ ଅଟନ୍ତ ସେ ପୁଣ । ୧୧୯
ଏମନ୍ତ ସଦସ୍ୟ କାର୍ଯ୍ୟକାରୀ ସମିତିର
ଅହିଂସାମାନ୍ତି ପାଳନ ନ କଲେ ନକର ।୧୨୦
ଯେପରି ଅହିଂସା ମତ କହୁଛନ୍ତ ସେହ
ପୂର୍ଣ୍ଣମାତ୍ରାରେ ହଜମ କଲେନାହିଁ କେହ ।୧୨୧
ଏ କଥା ଗାନ୍ଧଜୀ କହୁଛନ୍ତ ବାରବାର
ଆବର କରନ୍ତ ନଜ ମୁଖେ ସିଉକାର । ୧୨୨
ଅହିଂସାର ସମ୍ପୂର୍ଣ୍ଣ ଆଦର୍ଶ ଅଛି ଯାହା
ନଜେ ଗାନ୍ଧ ପାଳପାର ନାହାନ୍ତି ତାହା ।୧୨୩
କପରି ଆଶା କରନ୍ତ ଜନସାଧାରଣ
ପୂର୍ଣ୍ଣ ଅହିଂସା ମତ ସେ କରିବେ ପାଳନ ।୧୨୪
ଜୀବନବ୍ୟାପି ସାଧନା ଗାନ୍ଧ କରୁଛନ୍ତ
ପୂର୍ଣ୍ଣ ଆଦର୍ଶ ତଥାପି ପାଇ ନ ପାରନ୍ତ । ୧୨୫
ସାଧାରଣ ନରନାରୀ କଂଗ୍ରେସ ଭକତ
କଂଗ୍ରେସର ଲକ୍ଷ ଲକ୍ଷ ସଦସ୍ୟ ବହୁତ । ୧୨୬
ସାଧନାର ସ ଅକ୍ଷର ଯେହୁ ନ ଜାଣନ୍ତ
କପରି ସାଧିବେ ଏହ ଅସମ୍ଭବ ମତ । ୧୨୭

ଜଣେ କେହି ଅବା ଅଧିକାଂଶ ଭକ୍ତ କେବେ
ଏ ମାନ ସାଧିପାରିବେ ନକେବେ ନ ସମ୍ଭବେ ।
ଆଜୀବନ ସାଧି ନିଜେ ଲଭି ନ ପାରିଲେ
ଜନସାଧାରଣ କରି ନ ପାରିବେ ହେଲେ ।୧୨୯
ତେଣୁ ମୁଁ ବିଶ୍ବରେ ଏହି ଆଶା ଅସମ୍ଭବ
ସ୍ଵାଧୀନତା ପାଇଁ ଯୁଦ୍ଧ କେବେହେଁ ନ ହେବ ।
ଏପରି ଅଦ୍ଭୁତ ମତ କଳ୍ପନା ଯେ କରେ
କଂଗ୍ରେସକୁ ରାଜନୀତି କ୍ଷେତ୍ରରେ ସେ ମାରେ ।
ମନ୍ତ୍ରୀଙ୍କ ଇସ୍ତଫା କଥା କି କହିବି ମୁହିଁ
ଏ ପଦତ୍ୟାଗର ମୂଲ୍ୟ କିଛି ମାତ୍ର ନାହିଁ ।୧୩୨
ବାହାର ଦୃଶ୍ୟ କେବଳ ଏ ତ୍ୟାଗ ଅଟଇ
ନକଲେ ଏପରି ମୁହିଁ ଦେଖାଇବେ କାହିଁ ।୧୩୩
ଆଗରୁ ମୁଁ କହିଥିଲି ଆଉ କେତେ ଥର
କିଛି ମୂଲ୍ୟ ନ ରହିବ ଏ ପଦତ୍ୟାଗର । ୧୩୪
ମନ୍ତ୍ରୀ ପଦତ୍ୟାଗ ପରେ ହେଲେ ଆନ୍ଦୋଳନ
ଏ ପଦତ୍ୟାଗର କିଛି ମୂଲ୍ୟ ହେବ ଜାଣ ।୧୩୫
ଗାନ୍ଧିଜୀ ବୋଇଲେ ଦେଶ ପ୍ରସ୍ତୁତ ନୁହଇ
ତେବେ କିମ୍ପାଇ ବୋଇଲେ ପଦତ୍ୟାଗପାଇଁ ।
ମନ୍ତ୍ରୀପଦ ତ୍ୟାଗ ତେଣୁ ନ ଥିଲା ଉଚିତ
ମାତପଙ୍ଗେ କାର୍ଯ୍ୟକ୍ରମ ନ ହେଲା ସଙ୍ଗତ ।୧୩୭
ଏ ବକ୍ତବ୍ୟେ ଗାନ୍ଧି ଯାହା ଦେଉଛନ୍ତି ମତ
ସେଥିରୁ ଏମନ୍ତ ଭାବ ହେଉଛି ବ୍ୟକତ । ୧୩୮
ମନ୍ତ୍ରୀପଦ ଗ୍ରହଣ କରିବା ଯାହା ହେଲା
ମିଥ୍ୟାଭିତ୍ତି ଉପରେ ସେ ନିଷ୍ପତ୍ତି ହୋଇଲା ।
ଏବେ ଗାନ୍ଧି କହୁଛନ୍ତି ମନ୍ତ୍ରୀମାନେ ଯାଇ
ସ୍ଵାଧୀନତା ବାଟେ କିଛି ନକଲେକ ସେହି ।୧୪୦
ଅନ୍ୟାନ୍ୟ ସୁବିଧା ଯେତେବଡ଼ ହେଲେ ହେଉ
ସେ ସବୁ ନ ଗୁଡ଼ି କି କରନ୍ତେ ସେତୁ ଆଉ ।

କିନ୍ତୁ ମନ୍ତ୍ରୀମାନେ ଯେତେକାଳ କାର୍ଯ୍ୟ କଲେ
ବିପରୀତ ମତି ସେଥୁ ଅନୁସରିଥିଲେ । ୧୪୨
ତଥାଚ ସେ ସମୟରେ କୁହାଯାଉଥିଲା
ଯେ ଟିକିଏ ସୁବିଧା ଏଥିରେ ଲଭ ହେଲା ।୧୪୩
ଶେଷରେ ସେ ସବୁର ଏମନ୍ତ ଫଳ ହେବ
ସ୍ୱାଧୀନତା ମିଳିବାରେ ସାହାଯ୍ୟ କରିବ ।୧୪୪
ବର୍ତ୍ତମାନ ଦେଖାଗଲା ପୁରା ବିପରୀତ
ସ୍ୱାଧୀନତା ପଥେ ବାଧା ହେଲା ଏ ସମସ୍ତ ।୧୪୫
ଏଥିପାଇଁ ଦାୟୀ କଂଗ୍ରେସର ନେତାମାନେ
କଂଗ୍ରେସର ମର୍ଯ୍ୟାଦା ବଢ଼ିଲା ନାହିଁ ଧାନେ ।
କଂଗ୍ରେସର ଦୁର୍ବଳତା ଦାଣ୍ଡରେ ପଡ଼ିଲା
ମନ୍ତ୍ରୀଗିରି କରି କିଛି ଫଳ ନ ମିଳିଲା । ୧୪୭
ଗାନ୍ଧିଜୀ ବୋଲନ୍ତି ମନ୍ତ୍ରୀ କାର୍ଯ୍ୟ କରୁଥିଲେ
ଯୁଦ୍ଧ ବିଷୟେ ତାହାଙ୍କୁ କିଛି ନ ପୁଚ୍ଛିଲେ ।୧୪୮
ଏପରି ଅପମାନରେ ରହନ୍ତେ କିପରି
ତେଣୁ ସେମାନେ ଛାଡ଼ିଲେ ତାଙ୍କ ମନ୍ତ୍ରୀଗିରି ।
ଏତିକିମାତ୍ର କାରଣ ନୁହଇ ଏଥିର
ଛାଡ଼ୁଥିଲେ ଛାଡ଼ିଥାନ୍ତେ ଆଗରୁ ନିକର । ୧୫୦
ଗାନ୍ଧିଜୀ ବୋଲନ୍ତି ଅପମାନ ହେବା ପରେ
ମନ୍ତ୍ରୀମାନେ କେତେକାଳ ଗାଦିରେ ରହିଲେ ।
ଏଥିର କାରଣ ଗାନ୍ଧି ନିଜେ ଯା କହିଲେ
ସେଥିରୁ ବୁଝିପାରୁଛି କଥା ମୁହିଁ ଭଲେ । ୧୫୨
କାର୍ଯ୍ୟକାରୀ ସମିତି ବୋଇଲେ ସରକାର
ଯେଉଁ ଭ୍ରମକଲେ ତାହା ସଂଶୋଧନ କର ।୧୫୩
କଂଗ୍ରେସର ମନ୍ତ୍ରୀମାନେ ଅଛନ୍ତି ଗାଦିରେ
ସମର ବିଷୟ ତାଙ୍କୁ ନ କହିଲ ଥରେ । ୧୫୪
ନ ହେଲା କି ମନ୍ତ୍ରୀମାନଙ୍କର ଅପମାନ
ଏବେ କହୁଛି ଏ ଭ୍ରମ କର ସଂଶୋଧନ ।୧୫୫

ତେବେ ଭାରତ ସମରେ ସହଯୋଗ ଦେବ
ସମର ଖର୍ଚ୍ଚପ୍ସ ସବୁ ସାହାଯ୍ୟ କରିବ । ୧୫୬
ସମିତି ଏପରି ଯେଉଁ ଢଙ୍ଗ କଲେ ପୁଣ
ନୁହଇ କି ଏହା ଗୁରୁତର ଅପମାନ । ୧୫୭
ସରକାର ଏ ନୀତିରୁ ବୁଝିଲେ ଏମନ୍ତ
କଂଗ୍ରେସ ସଂଗ୍ରାମପାଇଁ ନୁହଇ ପ୍ରସ୍ତୁତ । ୧୫୮
ଏହି ଦୁର୍ବଳତା ଦେଖି ସୁବିଧା ଖୋଜିଲେ
ଉପଯୁକ୍ତ ଉତ୍ତର ଦେବାକୁ ସେ ନ ମଙ୍ଗିଲେ ।୧୫୯
କାର୍ଯ୍ୟକାରୀ ସମିତିକି ବୁଦ୍ଧି ନ ଦିଶିଲା
ମନ୍ତ୍ରୀ ପଦତ୍ୟାଗ ଅଭିନୟ କରାଇଲା । ୧୬୦
ପ୍ରକୃତ ଅର୍ଥ ଏହାର ଅଟଇଟି ଏହା
ଭିନ୍ନ ଅର୍ଥ କରିବାକୁ ନାହିଁ ଅନ୍ୟ ରାହା ।୧୬୧
ପରିଶେଷରେ କହୁଛି ମୋର ନିବେଦନ
ଏଥିରେ ଉଦ୍ଦେଶ୍ୟ ମୋର ନାହିଁ କିଛି ଭିନ୍ନ ।
ହିଂସା ଅହିଂସା କଥା ମୁଁ କିଛି କହୁନାହିଁ
ଅନ୍ୟାୟ ଅନୀତି କଥା କିଛି କହୁନାହିଁ । ୧୬୩
ମୁଁ କହୁଛି ଯାହା ସବୁ ହେଉଛି ବିଚାର
ଅସଲ ପ୍ରଶ୍ନକୁ ଅପ୍ରାସଙ୍ଗିକ ନ କର । ୧୬୪
କଂଗ୍ରେସର ଯାହା ରଜନୀତି କାର୍ଯ୍ୟକ୍ରମ
ତାହିଁସଙ୍ଗେ ଏ ସବୁର କିଛି ନାହିଁ ଜାଣ ।୧୬୫
ଦାବି ମୋର କଂଗ୍ରେସର ଯାହା ମୂଳନୀତି
ତାହିଁର ପରିବର୍ତ୍ତନ ହେଉ ହେ ଝଟତି । ୧୬୬
ବର୍ତ୍ତମାନ କାର୍ଯ୍ୟକ୍ରମ ଯେ ସବୁ ହେଉଛି
ଅହିଂସା ନୀତି ଦିଗରୁ ତାକୁ ନ ଦେଖୁଛି ।୧୬୭
ବିଶ୍ୱାସ ମୋହର ବର୍ତ୍ତମାନ କାର୍ଯ୍ୟକ୍ରମ
ପ୍ରକୃତରେ ଅଟଇ ନିଷ୍ଫଳ ଅକରମ । ୧୬୮
କଉଁଣସି ବ୍ୟକ୍ତିକଥା କହୁନାହିଁ ମୁହିଁ
ବଦଳୁ କଂଗ୍ରେସ ନୀତି ଦାବି ମୁଁ କରଇ ।୧୬୯

ଏ କଥା ନିଷ୍ପତ୍ତି ହେଉ କଂଗ୍ରେସ ମେଳାରେ
ଜପ୍ତିହେବାକୁ କଂଗ୍ରେସ ଯେବେ ଇଚ୍ଛା କରେ ।
କଂଗ୍ରେସ ବଞ୍ଚି ରହିବ ଯେବେ ଇଚ୍ଛା କର
ଏ ପ୍ରଶ୍ନର ସମାଧାନ ବଇଠକେ କର । ୧୭୧
ଏହିପରି ନାନା ଯୁକ୍ତି ତରକ ଦେଖାଇ
କଂଗ୍ରେସ ମତ ବଦଳି କହୁଛନ୍ତି ସେହି । ୧୭୨
ସୁଭାଷ ଯାହା କହନ୍ତି ଅତି ଚମତ୍କାର
ତାହାଙ୍କ ଭାଷା ଅଟଇ ଅତି ଅସୁନ୍ଦର । ୧୭୩
ସେ ବୋଲନ୍ତି କଂଗ୍ରେସର କର୍ତ୍ତା ଯାହା କଲେ
ଗୋଇଠାମାରି ଇଂରେଜ ସବୁ ଠେଲିଦେଲେ ।
କଂଗ୍ରେସ ସମିତି ଯାହା ଯାହା ଦାବି କଲେ
ଗୋଇଠାଦେବା ଗୋଡ଼କୁ ପୁଣି ସେ ଘୃଣିଲେ ।
ତଥାପି କରତାଙ୍କର ମୋହ ଛାଡୁ ନାହିଁ
ସେହି ଇଂରଜଙ୍କ ପାଦ ଘୃଣୁଛନ୍ତି ଯାଇ ।୧୭୭
ଇଂରେଜ ସରକାର ତ ଦ୍ୱାର ବନ୍ଦ କଲେ
କଂଗ୍ରେସ କର୍ମୀ ଦ୍ୱାର ମେଲିଇ ବସିଲେ ।
ବୋଇଲେ ମର୍ଯ୍ୟାଦା ପୂର୍ଣ୍ଣ ସମାଧାନ ପାଇଁ
କଂଗ୍ରେସ ସଦା ସର୍ବଦା ପ୍ରସ୍ତୁତ ଅଛଇ । ୧୭୮
ରାଜମତି ନୁହିଁଇ ବୈଷ୍ଣବମତି ଏହା
ଯେ ଯାହା ବୁଝିବ ପଛେ ବୁଝୁଥାଉ ତାହା ।
ଜଣେ ଅଧିକ ମନକୁ ମାନିବ ଏ ମତି
ସ୍ୱାଧୀନତା ପ୍ରୟାସୀ ଜାତିର ଏ ଦୁର୍ଗତି । ୧୮୦
ସ୍ୱାଧୀନତା ନୁହେଁ କେତେଜଣଙ୍କ ଖିଆଲ
ଜୀବନ ମରଣ ପ୍ରଶ୍ନ ଅଟେ ଏ ନିକର । ୧୮୧
ଯେଉଁ ମତି କହୁଅଛ ଗୁହାରି ଗୁହାରି
ଗୋଇଠାଦେବା ପାଦକୁ ପୁଣି ଘୃଣ ଯାଇ ।୧୮୨
ଦେଖାଯାଉ ଭାରତ ଏଥିରେ କି କରିବ
ଏ ମତିକି ଗ୍ରହଣ କରିବ ନ କରିବ । ୧୮୩

ଇଂରେଜ ସରକାରଙ୍କ ଡ଼ାକରା ଆସିଲେ
ବଡ଼ଲାଟ ଭବନକୁ ଦଉଡ଼ୁଛ ହେଲେ । ୧୮୪
ତୀର୍ଥ ସମାନ ସେ ଲାଟ ଭବନ ମଣୁଛ
ବାରବାର ଡ଼ାକରାରେ ଦଉଡ଼ ଯାଉଛ । ୧୮୫
ଗୋଇଠାଖାଇ ସେ ପାଦ ପୁଣି ଧରୁଅଛ
ଅପମାନ ବୋଲି ଏ କଥାକୁ ନ ମଣୁଛ ।୧୮୬
କିନ୍ତୁ ତବ ସହଯୋଗୀ ହୋଇ ବାଉଁଆଦଳ
ତାଙ୍କ ବେଳକୁ କ୍ରୋଧରେ ହୁଅ ଜରଜର ।୧୮୭
ହିଂସାମାତ୍ର ପ୍ରୟୋଗ କରୁଛ ତାଙ୍କ ପ୍ରତି
ପ୍ରତିହିଂସା କରି ଦାଉ ସାଧୁଅଛ ନିତି । ୧୮୮
ସତ୍ୟ ଅହିଂସା ନୀତିକି ଦେଇ ଜଳାଞ୍ଜଳି
ସେମାନଙ୍କୁ କ୍ରୋଧଭରେ ଦେଉଅଛ ବଳି ।୧୮୯
ଏହିପରି କରୁଛନ୍ତି ବହୁ ତିରସ୍କାର
ଗାନ୍ଧିଜୀଙ୍କି ଦେଉଛନ୍ତି ଏହି ପୁରସ୍କାର । ୧୯୦
ଶିଷ୍ଟାଚାର ଲଙ୍ଘି ସେହୁ ବୋଲନ୍ତି ଏ ମାନ
ଏହି କଥାରେ ଭାରତ ହେବାକୁ ସ୍ୱାଧୀନ ।୧୯୧
କଂଗ୍ରେସର ବର୍ତ୍ତମାନ ଏହି ପରିସ୍ଥିତି
ଦେଖାଯାଉ ଚକ୍ରପାଣି କି କରୁଅଛନ୍ତି । ୧୯୨
ବୋଲେ ଧନ ଜଗବନ୍ଧୁ ଅହେ ଦଇତାରି
ସିଞ୍ଚିଦିଅ ଭାରତରେ ତବ କୃପାବାରି । ୧୯୩
ଜଗତରେ ଶାନ୍ତିବାରି ଦିଅ ପ୍ରଭୁ ଢ଼ାଳି
ସକଳେ ରହନ୍ତୁ ସୁଖେ ତବ ନାମ ଭାଳି ।୧୯୪

ଇତି, ଶ୍ରୀ ଭାରତ-ଚରିତାମୃତେ ମାନବେନ୍ଦ୍ର ମତ ବର୍ଣ୍ଣନେ ପଞ୍ଚାନବେ ଅଧ୍ୟାୟଃ ।



# ଛୟାନବେ ଅଧ୍ୟାୟ

ଅନଘା ଉବାଚ

ଆହେ ଗୁରୁଦେବ ଶୁଣ ମୋର ନିବେଦନ
କଂଗ୍ରେସର ଘଟଣାମାନ କହିଲେ ଆପଣ ।   ୧
ବହୁତ ବିଷୟ ଜ୍ଞାନ ତହୁଁ ଲାଭକଲି
ଏତେକାଳ ବହୁତଙ୍କୁ ଭୁଆଁ ବୁଲିଥିଲି ।   ୨
ଆହୁରି କଥାଏ ଏବେ ପଚାରୁଛି ଶୁଣ
ଓଡ଼ିଶା ମନ୍ତ୍ରୀମଣ୍ଡଳ କି କି କଲେ ପୁଣ ।   ୩

ସନଘା ଉବାଚ

ଓଡ଼ିଶା ପ୍ରଦେଶେ ବଡ଼ ଚହଳ ପଡ଼ିଲା
ଲାଟ ସଭାକୁ କଂଗ୍ରେସ ଦଳ ଯିବା ହେଲା । ୪
କଂଗ୍ରେସ ସଦସ୍ୟ ଯେବେ ଅଧିକ ସଂଖ୍ୟାରେ
ଜିଣିପାରିବେ ଯେବେ ସେ ଭୋଟ ସମରରେ ।୫
ତେବେ କଂଗ୍ରେସ ହାତକୁ ନେବ ଅଧିକାର
କଂଗ୍ରେସ ସଦସ୍ୟ ମନ୍ତ୍ରୀ ହୋଇବେ ନିକର ।୬
କଂଗ୍ରେସ ମନ୍ତ୍ରୀ-କଲେକ ଶାସନ ଗ୍ରହଣ
ଲୋକ ହିତପାଇଁ କାର୍ଯ୍ୟ କରିବେ ଦ୍ୱିଗୁଣ ।୭
ଲୋକମାନେ ଭରି ଉତ୍ସାହରେ ଭୋଟ ଦେଲେ
କଂଗ୍ରେସ ସଦସ୍ୟ ବେଶି ସଂଖ୍ୟାରେ ଜିଣିଲେ ।
ତିନି ଜଣ ମନ୍ତ୍ରୀ ହେଲେ ଓଡ଼ିଶା ସଭାରେ
ଟଣା ଓଟରା ଲାଗିଲା ନିର୍ବାଚନ ବେଳେ ।   ୯
ବିଶ୍ୱନାଥ, ବୋଧରାମ, ନିତ୍ୟାନନ୍ଦ ତିନି
ମନ୍ତ୍ରୀ ଭୋଟ ସମରେ ଏମାନେ ଗଲେ ଜିଣି ।୧୦
ମୁଖପାତ୍ର ଉପମୁଖପାତ୍ର ବାଛୁହେଲେ
ନନ୍ଦ, ମୁକୁନ୍ଦ ଏ ଭୋଟ ଯୁଦ୍ଧରେ ଜିଣିଲେ ।୧୧
ଅନ୍ୟ ଯାହାଙ୍କର ମନେ ଅଭିଳାଷ ଥିଲା
ସେମାନଙ୍କ ବାସନା ତ ପୂରଣ ନ ହେଲା ।୧୨

ବାସନା ପୂରଣ ହେଲନାହିଁ ଯାହାଙ୍କର
ମନେ ମନେ ଅସନ୍ତୋଷ ରହିଲା ତାଙ୍କର ।୧୩
ବିଶ୍ୱନାଥ ପାଟମନ୍ତ୍ରୀ ହେଲେ ଓଡ଼ିଶାରେ
ଦଳପତି ହେଲେ ସେହୁ ସଦସ୍ୟ ମଧ୍ୟରେ ।୧୪
ବିପକ୍ଷଦଳେ ରହିଲେ ଚବିଶ ସଦସ୍ୟ
କଂଗ୍ରେସଦଳେ ସଦସ୍ୟ ହୋଇଲେ ଛବିଶ ।୧୫
ଏହି ପରକାରେ ଲିଟସଭା ଗଢ଼ା ହେଲା
କଂଗ୍ରେସ ସରକାରର ଶାସନ ଚଳିଲା । ୧୬
ଦୁଇ ବର୍ଷ ଗୃର ମାସ ଗୃଳିଲେ ଶାସନ
ଲୋକହିତ କାର୍ଯ୍ୟରେ ଏମାନେ ଦେଲେ ମନ ।
ପ୍ରଜାସତ୍ତ୍ୱ ଆଇନକୁ କଲେ ସଂଶୋଧନ
ଉଠାଇଦେଲେ ଦାଖଲଖାରଜ ରେସମ । ୧୮
ସ୍ଥିତିବାନ ସତ୍ତ୍ୱ ସ୍ୱଚ୍ଛନ୍ଦରେ ବିକା ହେଲା
ଜମିଦାରଙ୍କର ଆଉ ଅଧିକାର ଗଲା । ୧୯
ପରଜା ବାଡ଼ି ଗଛରେ ତାର ଅଧିକାର
ନ ପଚାରି କାହାକୁ ସେ କାଟିବେ ନିକର ।୨୦
ଅନ୍ୟାୟ ପାଉଣା ଜମିଦାର ନେବନାହିଁ
ନେଲେ ଜେଲଖାନାଘର ଭୋଗିବଟି ସେହି ।୨୧
ଏହିପରି କେତେ କଟକଣା କରାଗଲା
ସଂଶୋଧନ ଆଇନ ଦେଶରେ ଜାରିହେଲା ।୨୨
ମହାଜନ ଆଇନ ଯେ ଜାରି କରାଗଲା
ମହାଜନ ପାଇଁ ବହୁ କଟକଣା ହେଲା । ୨୩
ମୂଳଠାରୁ ସୁଧ କେବେ ବେଶି ନ ହୋଇବ
ସୁଧ ହାର ପୂର୍ବଠାରୁ ବହୁ ଊଣା ହେବ । ୨୪
ମହାଜନ ମନଇଚ୍ଛା ସୁଧ ନେଉଥିଲା
ଏ ଆଇନ ସେ ପ୍ରଥାକୁ ରଦ୍ଦ କରିଦେଲା । ୨୫
ମହାଜନ ଯେବେ ଅନ୍ୟାୟରେ କିଛି ନେବ
ତହିଁପାଇଁ ଗୁରୁତର ଦଣ୍ଡ ସେ ଭୋଗିବ । ୨୬

ମଠ ଦେଉଳ ସମ୍ବନ୍ଧେ ଆଇନ ହୋଇଲା
ତହିଁର ସୁରକ୍ଷାପାଇଁ ବିଧି ଖଞ୍ଜାଗଲା । ୨୭
ବିଶୁଦ୍ଧ ଖାଦ୍ୟ ଦରବ ମିଳିବ କିପରି
ତହିଁପାଇଁ ଆଇନେକ ହୋଇଥିଲା ଜାରି । ୨୮
ମିଶାଖାଦ୍ୟ ଦରବା କେ ବିକି ନ ପାରିବେ
ଧରାପଡ଼ିଲେ କଠୋର ଦଣ୍ଡ ସେ ଭୋଗିବେ । ୨୯
ନିଶା ନିବାରଣ ପାଇଁ ଆଇନ ହୋଇଲା
ବହୁତ କାଇଦା କଟକଣା କରାଗଲା । ୩୦
ବାଲେଶ୍ୱରଠାରେ ନିଶା ନିବାରଣ ପାଇଁ
ବହୁ ବ୍ୟୟେ କାର୍ଯ୍ୟକ୍ଷେତ୍ର ଖୋଲିଥିଲେ ଯାଇ ।
ନିରକ୍ଷର ଦୂର କରିବାରେ ଦେଲେ ମନ
ଶିକ୍ଷାପ୍ରଣାଳୀ ମୂଳରୁ ହେବ ସଂଶୋଧନ । ୩୨
ଦେଶୀୟ ଶିଳ୍ପ କିପରି ପ୍ରସାର ହୋଇବ
ଖଦଡ଼ର ପ୍ରବୃତ୍ତି ବହୁତ କରାଯିବ । ୩୩
ବନ୍ୟା ବିପତ୍ତି କିପରି ଦେଶୁଁ ଦୂର ହେବ
ତହିଁପାଇଁ କି କି କାର୍ଯ୍ୟ ଯୋଜନା ହୋଇବ ।
ବିଶାରଦ ଅଣାଇ ତଦନ୍ତ ଲଗିଥିଲା
କି ଉପାୟ କଲେ ଏ ବିପତ୍ତି ଯିବ ଭଲା । ୩୫
ସମବାୟ ସମିତି ସଂସ୍କାରେ ଦେଲେ ମନ
ସଂସ୍କାର କରି କରିବେ ନୂତନ ଗଠନ । ୩୬
ଜମି ବନ୍ଧକ ଆଇନ ଏକ ଜାରିହେଲା
ଜମି ବନ୍ଧା ଦେଇ ଟଙ୍କାନେବା ବିଧି ଥିଲା । ୩୭
ଆଉ କେତେ ନୂଆ ନୂଆ ଆଇନ ହୋଇଲା
କର୍ମଚାରୀଙ୍କ ଦରମା ଯାଞ୍ଚ କରାଗଲା । ୩୮
ଏପରି କର୍ମଯୋଜନାମାନ କରାଗଲା
ଏହି ସମୟରେ ପଦ ଛାଡ଼ିବାର ହେଲା । ୩୯
ଶାସନକଳ ଗହନ ଜଙ୍ଗଲ ସମାନ
କଳନା କରିବାପାଇଁ ଗଲା କେତେଦିନ । ୪୦

ଶାସନ କାର୍ଯ୍ୟରେ ଜ୍ଞାନ ନ ଥିଲା କାହାରି
ଅଭିଜ୍ଞ ହେବାକୁ କିଛି କାଳ ଗଲା ସରି । ୪୧
ଗଣତନ୍ତ୍ରର ଉପରେ ଅଛନ୍ତି ବାଗଧରି
ଏଣେତେଣେ ହେଲେ ଦେବେ ବାଗକୁ ଓଟାରି ।
ତେଣେ ଲୋକେ ଭୋଟଦେଇ ବାଗ ଧରିଛନ୍ତି
କି କଲ ତାହାଙ୍କ ହାତେ ବାଗ ଓଟାରନ୍ତି ।୪୩
ଦୁଇନାବେ ଗୋଡ଼ ଦେଲେ ଦଶା ଯାହା ହେବ
ମନ୍ତ୍ରୀମାନଙ୍କର ଦଶା ସେହିପରି ଭାବ । ୪୪
ଦୁଇଟି ଅଙ୍କୁଶ ଦୁଇ ପଟରେ ରହିଲା
ଦୁଇ ପଟ ଜଗି କାମ କରିବା ପଡ଼ିଲା । ୪୫
ହାତେ ମାପି ଭୂଖଣ୍ଡକ ମନ୍ତ୍ରୀଏ ଚଳିଲେ
ତହିଁ ଭିତରେ ଏତିକ କାମ କରିଥିଲେ । ୪୬
ଆଉ ଯାହା କରିବାକୁ ଥିଲାକ କଳ୍ପନା
ପଦତ୍ୟାଗ ପରେ ସବୁ ଆଶା ହେଲା ଚୂନା ।୪୭
ଏତିକରେ ମନ୍ତ୍ରୀଙ୍କର ନ ଥିଲା ନିସ୍ତାର
ନିଜ ଦଳ ମଧ୍ୟରେ ନ ହେଲା ଏକମେଳ । ୪୮
ରୁଷାରୁଷି ଭୁଷାଭୁଷି ଠେସାଠେସି କେତେ
କଂଗ୍ରେସ କର୍ତ୍ତାଙ୍କଠାକୁ କଥା ଗଲା ଯେତେ ।୪୯
ବଡ଼ ବଡ଼ କର୍ତ୍ତାମାନେ କଟକ ଆସିଲେ
ମନ୍ତ୍ରୀଙ୍କ ବିରୁଦ୍ଧେ ଅଭିଯୋଗ ଯାଞ୍ଚ କଲେ ।୫୦
ଭାଗ୍ୟବଳେ ସେ ସବୁରୁ ପାଇଲେ ନିସ୍ତାର
ଲାଗିଲା ଭୁମୁଳ ସମାଲୋଚନା ସମର । ୫୧
କେ ନିଆଁ ଖୁଣ୍ଟା ମାଡ଼ିଲା କେହୁ ନିନ୍ଦାକଲା
ଅତି ଉଲଗ୍ନ ଭାବରେ ଦାପୁଡ଼ିକା ଗାଇଲା । ୫୨
ତେଣେ ବେକଂଗ୍ରେସଦଳ ସୁବିଧା ପାଇଲେ
ତୀବ୍ର ଆଲୋଚନା କରି ସୁକଟ ଦେଖିଲେ ।୫୩
ଜମିଦାର ମହାଜନ ମଠାଧିଶମାନେ
ଉତ୍ୟକ୍ତ ହୋଇଲେ ନୂଆ ଆଇନ ବିଧାନେ ।୫୪

ସେମାନଙ୍କ ସ୍ୱାର୍ଥରେ ବହୁତ ହାନି ହେଲା
ସ୍ୱଭାବେ ତାହାଙ୍କ ମନ କ୍ରୋଧରେ ଜଳିଲା ।୫୫
ଚତୁର୍ଦ୍ଦିଗେ ମନ୍ତ୍ରୀ ନିନ୍ଦା ବହ୍ନି ମାଡ଼ିଗଲା
ଆହାବୋଲି କହିବାକୁ ଜଣେ କେ ନ ଥିଲା ।୫୬
ମଣିଷ ହୋଇ କାହାର ଭ୍ରମ ତ୍ରୁଟି ନାହିଁ
ମନ୍ତ୍ରୀମାନେ ଭ୍ରମଶୂନ୍ୟବୋଲି କହୁନାହିଁ । ୫୭
ଜାଣନ୍ତେ ବା ଅଜାଣନ୍ତେ ତ୍ରୁଟି ହୋଇଥିବ
ଏପରି କାହାର ନ ହୋଇଲା ମନଭାବ । ୫୮
ତିଳକୁ ତାଳ କରିବା ସ୍ୱଭାବ ଲୋକର
ଏହି ମତରେ ଚଳିଲା ସକଳ ବେଭାର । ୫୯
ମନ୍ତ୍ରୀଗିରି ପାଇଟିର ନିନ୍ଦା କରାଗଲା
ବ୍ୟକ୍ତିଗତ ନିନ୍ଦା କୁତ୍ସା ସୁଆଙ୍ଗ ଲାଗିଲା । ୬୦
ଓଡ଼ିଶାର ଅଧିକାଂଶ ସମ୍ବାଦପତ୍ରର
ମନ୍ତ୍ରୀନିନ୍ଦା ଗୀତ ଗାଇ କଲେକ ବେପାର ।୬୧
ନିନ୍ଦା ଘୋଷଣା ବାଜିଲା ସହରେ ବଜାରେ
ସତ୍ୟ ମିଥ୍ୟା ଜଣାଗଲା ନାହିଁକ ବେଭାରେ ।୬୨
ଏତିକରେ କେତେଲୋକ ସନ୍ତୁଷ୍ଟ ନ ହେଲେ
ଗ୍ରାମେ ଗ୍ରାମେ ସଭାକରି ମନ୍ତ୍ରୀନିନ୍ଦା କଲେ ।୬୩
ଘରେ ବାହାରେ ବଇରି ହେଲେ ମନ୍ତ୍ରୀଙ୍କର
କପରି ଏ ମନ୍ତ୍ରୀଦଳ ଭାଙ୍ଗିବ ଚଞ୍ଚଳ । ୬୪
ଏମାନେ କପରି ଶୀଘ୍ର ଏ ପଦ ଛାଡ଼ିବେ
ଅନ୍ୟମାନେ ମନ୍ତ୍ରୀହୋଇ ପିପାସା ମେଣ୍ଟିବେ ।
ଦେଶହିତ ଲୋକହିତ ଉପରି ଢାଙ୍କୁଣି
ଅସଲ ମରମ କେହି ନ ପାରିବ ଜାଣି । ୬୬
ଦେଶହିତ ଲୋକହିତ ଆବରଣ ଦେଇ
ମନ୍ତ୍ରୀ ବିରୁଦ୍ଧେ ପ୍ରଚୁର ହେଲା ଭାହି ଭାହି ।୬୭
ପ୍ରଦେଶ ଭିତରେ ହେଲା ଏହି ଗଣ୍ଡଗୋଳ
କଂଗ୍ରେସର କର୍ତ୍ତାମାନେ ବୁଝିଲେ ସକଳ ।୬୮

ଏ ସବୁ ରହସ୍ୟ ବୁଝି କଲେକ ବିଧାନ
ମନ୍ତ୍ରୀମଣ୍ଡଳ ରହିବେ ତାହାଙ୍କ ଅଧୀନ । ୬୯
ପ୍ରାଦେଶିକ ସମିତିର ନାହିଁ ଅଧିକାର
ମନ୍ତ୍ରୀ ତାହାଙ୍କ ଅଧୀନ ନ ହେବେ ନିକର ।୭୦
ପ୍ରାଦେଶିକ ସମିତିର ଏ କ୍ଷମତା ଥିଲେ
ମନ୍ତ୍ରୀମାନେ ଯାଇଥାନ୍ତେ କେତେକାନ୍ତୁ ହେଲେ ।
ଯାହାହେଉ ବିଶ୍ୱନାଥ ବନ୍ତ ଧୀର ସ୍ଥିର
ସହିଲେ ସକଳ ମାତ ପଞ୍ଚର ପ୍ରକାର । ୭୨
ଏ ନିନ୍ଦାସ୍ତୁତିକି ସେହୁ ଭ୍ରୂକ୍ଷେପ ନ କଲେ
ନିଜ କର୍ତ୍ତବ୍ୟ ପଥରେ ସଧୀରେ ଚଳିଲେ ।୭୩
ତାଙ୍କ ଦୁଇ ସଙ୍ଗୀ ମଧ୍ୟ ସେହି ମତ ଧରି
ମନ୍ତ୍ରୀନିନ୍ଦା ସାଗରୁ ସେ ହୋଇଗଲେ ପାରି ।
ଉପର ଆଦେଶ ମାନି ପଦ ଛାଡ଼ିଦେଲେ
ମାନେ ମାନେ ଏ ନିନ୍ଦାରୁ ପାର ହୋଇଗଲେ ।
କାନ ବଧିର ହୋଇଲା ନିନ୍ଦାଗୀତ ଶୁଣି
ଏବେ ଛୁରିଆଡ଼େ ସର୍ବେ ହେଲେ ତୁନିତାନି ।
ଏବେ ଦେଶବାସୀ ନିଜ ମୁଖ ନିଜେ ଦେଖ
ଏହିପରି ସ୍ୱାୟତ୍ତ ଶାସନ ପରଖ । ୭୭
ଗାଁଆଁ କନିଆଁ ସିଙ୍ଗାଣିନାକୀ କଥାଅଛି
ଗୋଦଣ୍ଡିଗୋଡ଼କୁ ଅନାବୋଲି କେ କହୁଛି ।୭୮
କେତେକାନ୍ତୁ ଏ ସବୁ ପ୍ରବାଦ ଚଳୁଅଛି
ଏ ସବୁ ପ୍ରବାଦେ ମିଥ୍ୟା ନାହିଁ ଲେଶେ କିଛି ।
ଏ ମାତି ପଶିଲା ଏବେ କଂଗ୍ରେସ ଭିତରେ
ଆପଣା ଭିତରେ ଏହି ଖିଡ଼ି ଚଳାଇଲେ ।।୮୦
ବିଚାରିଲେ ନାହିଁ ସର୍ବେ ହେଲେ ଏକମେଳ
କଂଗ୍ରେସ ଦଳର ସିନା ବୃଦ୍ଧି ହେବ ବଳ ।୮୧
କଂଗ୍ରେସ ମନ୍ତ୍ରୀମଣ୍ଡଳ ଯେବେ ଭ୍ରମ କଲେ
ସଂଶୋଧନ କରିବାକୁ କେହି ନ ପାରିଲେ ।୮୨

ବନ୍ଧୁଭାବେ କରିଥିଲେ ଏ ସବୁ ବିଚାର
ହୋଇଥାନ୍ତା ଦେଶର ବହୁତ ଉପକାର । ୮୩
ସତ ମିଛ ସବୁ ନେଇ ଦାଣ୍ଡରେ ଥୋଇଲେ
ଆପଣା ସ୍ୱରୂପ ଆପେ ଚିହ୍ନାଇ ହୋଇଲେ ।୮୪
ବାହାରୁ ବିଚାରପତି ସେହୁ ବା ଅଇଲେ
ଓଡ଼ିଆଜାତି କପରି ଦେଖି ଶୁଣିଗଲେ । ୮୫
ମହାତ୍ମାଗାନ୍ଧି, ରାଜେନ୍ଦ୍ର ପ୍ରସାଦ, ଠକ୍କର
ସକଳେ ତଉଲି ନେଇଲେ କଏ କ ପ୍ରକାର ।୮୬
ପରନିନ୍ଦା କାରବାର ଯେମାନେ କରନ୍ତି
ଅବଶେଷେ ଆପେ ସେହୁ ନିନ୍ଦିତ ହୁଅନ୍ତି । ୮୭
ଭଗବାନଙ୍କ ସୃଷ୍ଟିରେ ଏହି ବୁଝାମଣା
ଜାଣି ଶୁଣି ଲୋକମାନେ ହୁଅନ୍ତି ଅଜଣା । ୮୮
କ୍ରୋଧ ଲୋଭ ମୋହବଶେ ପାଶୋରି ପକାନ୍ତି
ନିଜେ ପୁଣି ସେହି ଦୋଷେ ଦୂଷିତ ହୁଅନ୍ତି ।୮୯
ଭାଇ ବନ୍ଧୁଙ୍କର ଦୋଷ ଦେଖାଗଲା ଯେବେ
ଗାଳି ନିନ୍ଦାରେ ସୁଧାର ନ ହୋଇବ କେବେ ।
ସ୍ନେହଭରେ ତାଙ୍କ ପାଶେ ବୁଝାଇ କହିଲେ
ବହୁ ଉପକାର ହେବ ଉଭୟର ବଳେ । ୯୧
ଏଥିରେ କାହାରି ଉପକାର ହେଲାନାହିଁ
ଏ ମାତରେ କଛି କାମ କରାଗଲା ନାହିଁ । ୯୨
କ୍ରୋଧାନ୍ଧ ହୋଇଲେ ଲୋକେ ନିନ୍ଦାଗୀତ ଗାଇ
ବନ୍ୟାରେ ସକଳ ନିନ୍ଦା ଗାଳି ଗଲା ଧୋଇ ।୯୩
ଲୋକ ସାଧାରଣ ଗାଳି ନିନ୍ଦା ଶୁଣି ଶୁଣି
ବୁଝିନେଲେ କାହିଁପାଇଁ ହେଉଛି ଏ ପୁଣି ।୯୪
ଶିକ୍ଷା ଦେଖି ନ ପାରି ଏ ହୁଅନ୍ତି ଏପରି
କପରି ପାଇବେ ଆପେ ଆପେ ମନ୍ତ୍ରୀଗିରି ।୯୫
ଯେ ଯେତେ କହିଲେ ତାଳି ପରେ ତାଳିଦେଇ
ପାରିଲେନାହିଁ ଅସଲ ମରମ ଲୁଚାଇ । ୯୬

ଗଣତନ୍ତ୍ର ଶାସନରେ ଅଛି ବହୁ ଦୋଷ
ଏ କଥା ପୂର୍ବଅଧ୍ୟାରେ କହୁଛି ବିଶେଷ । ୯୭
ଯେଉଁମାନେ କର୍ମକର୍ତ୍ତା ଏ ଶାସନେ ହେବେ
'ମୁଁ ମୋର' ଦୁଇଟି ଭାବ ଅବଶ୍ୟ ତେଜିବେ ।
ସମଦରଶୀ ହୋଇଣ କାମ କରୁଥିଲେ
କାହାର ବାଟ ନ ଥିବ କହିବାକୁ ଭଲେ ।୯୯
ଏ ପଥରୁ ବିଚଳିତ ହୋଇଲେ କିଞ୍ଚିତ
ଡାକୁ ତ୍ୟାଗ କରିବେ ଏ ଲୋକ ନିଯୁକ୍ତ ।୧୦୦
ଆନ ଲୋକମାନଙ୍କର ଅଟଇ ଉଚିତ
ନ୍ୟାୟମାର୍ଗ ଧରି ସେହୁ ଚଳିବେ ନିଶ୍ଚିତ ।୧୦୧
ନିଜଦେଶ ଲୋକ ମନ୍ତ୍ରୀ ବୋଲି ଏ ଆଶାରେ
କାନକୁହା ମାନ୍ତ୍ର ଛୁଡ଼ି ରହିବେ ଦୂରରେ ।୧୦୨
ମନ୍ତ୍ରୀଙ୍କ ନ୍ୟାୟ ବିଚାରେ ବାଧା ଦେବେନାହିଁ
ଏ କଥା ସେ କଥା କରିଦିଅ ମୋହପାଇଁ ।୧୦୩
ନ କଲେ ମୋ କଥା ମୁହିଁ କରିବି ଅନିଷ୍ଟ
ଭାଙ୍ଗିଦେଇପାରେ ଅକ୍ଳେଶରେ ମନ୍ତ୍ରୀହାଟ ।୧୦୪
ଆଜି କେତେଜଣ ମୋର ସାଥିକ ଆଣିବି
ଅବିଶ୍ୱାସ ପ୍ରସ୍ତାବ ମୁଁ ଆଗତ କରିବି । ୧୦୫
ଏପରି ଧମକ ଦେଇ କଲେ ପ୍ରଭାବିତ
ମନ୍ତ୍ରୀମଣ୍ଡଳର ମନ ହେବ ବିଚଳିତ । ୧୦୬
ସକଳଙ୍କୁ ସନ୍ତୁଷ୍ଟ କରିବ କଲେ ମନ
କାହାକୁ ସନ୍ତୁଷ୍ଟ କରି ନ ପାରିବ ପୁଣ । ୧୦୭
ସବୁଚି ବିଧିଦୃଷ୍ଟିରେ ପଡ଼ିବ ଶେଷରେ
ତିନି ତୁଣ୍ଡେ ହେଲା ତ କୁକୁର ହୋଇପାରେ ।
ଭଗବାନ ହେଲେ ଏ ମାନ୍ତରେ ଭୂତ ହେବେ
ମାନବ ମନ୍ତ୍ରୀକି ଏଥୁ ଉଦ୍ଧାର ପାଇବେ ।୧୦୯
ତେଣୁ କହୁଛି ଏ ମାନ୍ତ ଅଟଇ ବିଷମ
ସକଳେ ସମଦରଶୀ ହେବାର ଉତ୍ତମ । ୧୧୦

ମନ୍ତ୍ରୀଙ୍କି ମନ୍ତ୍ରୀ ବୋଲଣ ସଦା ଭାବୁଥିବ
ଦେଶଲୋକ ବୋଲି ଊଣା ଜ୍ଞାନ ନକରିବ ।୧୧୧
ନ୍ୟାୟ ବସ୍ତୁରେ ସବେ ହୋଇଲେ ସହାୟ
ନ ଥିବ କାହାରି ପ୍ରତି ମନ୍ତ୍ରୀଙ୍କର ଭୟ । ୧୧୨
ଇଂରେଜମାନେ ଆମ୍ଭଙ୍କୁ କରନ୍ତି ଶାସନ
କପରି ମତରେ ସେହୁ ଚଳୁଛନ୍ତି ଜାଣ । ୧୧୩
ବହୁ ସଦଗୁଣ ଅଛି ସେହୁମାନଙ୍କର
ଶିକ୍ଷା କରିବା ଉଚିତ ଅଟଇ ଆମ୍ଭର । ୧୧୪
ଶତ୍ରୁ ହେଲେ ହେଉ ପଛେ ଥିଲେ ଭଲ ଗୁଣ
ତାଙ୍କୁ ଗୁରୁକରି ଶିକ୍ଷା କର ପୁଣ ପୁଣ । ୧୧୫
ସମଦରଶୀ ସକଳେ ହୋଇ ନ ପାରିଲେ
ଗଣତନ୍ତ୍ର ଶାସନ ଚଳିବ ନାହିଁ ଭଲେ । ୧୧୬
ଯେଉଁ ଦଳ ଯେତେବେଳେ ଭୋଟରେ ଜିଣିବ
ଜିଣିବା ପର୍ଯ୍ୟନ୍ତ ଦଳଗତ ଭାବ ଥିବ । ୧୧୭
ଭୋଟ ସମରରେ ଜିଣି କଲେକ ଶାସନ
ସମଦରଶୀ ଭାବରେ ଚଳାଇବ କାମ । ୧୧୮
ହଳିବ ନାହିଁ ନାଟିକା ଆବର ଘଟିକା
ଏ ଯୋଗ ଦେଖିଣ ଲୋକେ ହୋଇବେ ତାଟକା
ସମଦରଶୀ ନକତ ଅଟେ ଏହୁପରି
ଶାସନେ ସକ୍ଷମ ହେବ ପାରି ଯେବେ ଧରି ।୧୨୦
ସତ୍ୟ ଅହିଂସା ସାଧନା ପୂର୍ଣ୍ଣ ଯାର ହେବ
ଏ ନକତ ଧରିବାକୁ ସକ୍ଷମ ହୋଇବ । ୧୨୧
ରାଜନୀତି ନୁହଇ ପିଲାଙ୍କ ଧୂଳିଖେଳ
ଉତ୍ତମ ଶାସନ ହେବ ହେଲେ ଏକମେଳ ।୧୨୨
ଏକମେଳ ହୋଇ ସମଦରଶୀ ହୋଇବ
ତେବେ ଈଶ୍ୱର ରାଜ୍ୟର କଳ ଚଳାଇବ ।୧୨୩
ସକଳେ ସବୁ କାମକୁ ସକ୍ଷମ ନ ହେବେ
ଯାହା ହାତେ ଯାହା ହେବ ବାଣ୍ଟି କରୁଥିବେ ।

ଯାହାର ଯେ ଗୁଣ ଅଛି ତାକୁ ପୂଜାକର
ତାହାହାରା ସେହି କାମ କରାଅ ନିକର ।୧୨୫
ହିଂସା ଦ୍ୱେଷ ପରଶ୍ରୀକାତର ଭାବ ଛାଡ଼
ଇଚ୍ଛା କରୁଅଛପେବେ ହୋଇବାକୁ ବଡ଼ ।୧୨୬
ସବୁରି ପ୍ରତି ସବୁରି ସ୍ନେହ ଶ୍ରଦ୍ଧା ଥିବ
ଯାହାହାତେ ଯାହା ହେବ ସେହି ତା କରିବ ।
ଶ୍ରେଷ୍ଠ ଯୁଦ୍ଧରେ ଯେ ଜଣି ନେବ ଯେଉଁ କାମ
ସକଳ ସୁବିଧା ଦିଅ ହେଉ,ସେ ସକ୍ଷମ । ୧୨୮
ସେ ଯେବେ ନିଜ ବୁଦ୍ଧିରେ କରି ନ ପାରିବ
ଆପେ ଆପେ କାମ ଛାଡ଼ି ଅଲଗା ହୋଇବ ।
ଶ୍ରେଷ୍ଠ ସମର ସରିଲେ ପଛକଥା ଭୁଲ
ଭ୍ରାତୃଭାବେ ଯୋଡ଼ିହୋଇ ହୁଅ ଏକମେଳ ।୧୩୦
କାର୍ଯ୍ୟ ସାଧନପାଇଁକି ସର୍ବେ ଅଣ୍ଟା ଭିଡ଼ି
ମନରୁ ସକଳ ପଛ କଥାମାନ ଛାଡ଼ି । ୧୩୧
ସକଳେ ଏକତନ୍ତ୍ରରେ ବନ୍ଧା ହେବ ଯେବେ
ଗଣତନ୍ତ୍ର ଶାସନ ଚଳିବ ଭଲେ ତେବେ ।୧୩୨
କହିଲି ବିସ୍ତୃରି କଥା ଯା ଦିଶିଲା ମୋତେ
ଭ୍ରମ ତ୍ରୁଟିଥିଲେ ଗାଳିଦେଇ ମାରିଁ ମୋତେ ।
ମୁଁ ଚାହେଁ ଓଡ଼ିଆଜାତି ନ ହେଉ ନିର୍ଜନ
ବୁଦ୍ଧି ହେଉ ପ୍ରାଚୀନ ଭାରତ ଶତଗୁଣ । ୧୩୪
ଜ୍ଞାନବୃଦ୍ଧ ତଳେ ବସି କହୁଛି ଏ ମାନ
ନ ଭାବ ଏମନ୍ତ ହେ ପାଠକ ଶ୍ରୋତାଗଣ ।୧୩୫
ତୁମ୍ଭପରି ଜଣେ ମୁହିଁ ଅଟେ ମହାଦୋଷୀ
ଏ ତତ୍ତ୍ୱ ପ୍ରଚାର କରି ହେଉନାହିଁ ଖୁସି । ୧୩୬
ମରମେ ମରମେ ପୀଡ଼ା କରେ ଅନୁଭବ
ଭଗବାନଙ୍କ କରୁଣା କେବେ ଲାଭ ହେବ ।୧୩୭
ପୂରୁବ ପରି କେବେ ବା ମିଳିବ ସମ୍ମାନ
ମୁଣ୍ଡ ଟେକି ଓଡ଼ିଆ ଉଠିବ ସିଂହ ସମ ।୧୩୮

ଶିକ୍ଷା ସାହିତ୍ୟ ଶିଳ୍ପରେ ହୋଇବ ଉନ୍ନତ
ଶୌର୍ଯ୍ୟ ବୀର୍ଯ୍ୟ ଲଭକରି ରଖିବ ମହତ୍ତ୍ୱ ।୧୩୯
ଯେଯେଉଁ କାର୍ଯ୍ୟକ୍ଷେତ୍ରରେ ଅଛ ଯେତେବେଳେ
ନିଜ ଜାତି ହିତ ଚିନ୍ତା କରୁଥିବ ହେଲେ ।୧୪୦
ନିଜେ ଅରଜି ମୁଁ ଖାଇ ପିଇ ଚାଲିଯିବି
ଜାତି ହିତପାଇଁ ମୁହିଁ କିସ ଦେଇଯିବି । ୧୪୧
ଶିକ୍ଷିତ ସମାଜ ଯେହୁ ରହୁଛ ଉପରେ
ବେଶି ଦାୟିତ୍ୱ ଅଛିଟି ତୁମ୍ଭରି ଉପରେ ।୧୪୨
ତୁମ୍ଭେମାନେ ମୂଲ୍ୟବାନ ସମ୍ପଦ ଜାତିର
ତୁମ୍ଭଙ୍କୁ ନେଇ ଏ ଜାତି କରିବ ସମ୍ବଳ । ୧୪୩
ଜାତିର ମହତ୍ତ୍ୱ ତୁମ୍ଭେମାନେ ବଢ଼ାଇବ
ତବ ଗୁଣ ନେଇ ଜାତି କରିବ ଗୌରବ ।୧୪୪
ତୁମ୍ଭେମାନେ ନ ଦେଲେ ଏଣିକି ମନଧ୍ୟାନ
ଓଡ଼ିଆଜାତି ହୋଇବ ଦିନୁଦିନ ହୀନ । ୧୪୫
ଦେଖ ଏ ଜଗତେ ଜ୍ଞାନ ବିଜ୍ଞାନ ବଳରେ
କିପରି ଉନ୍ନତି କରୁଛନ୍ତି ଏ ସଂସାରେ । ୧୪୬
ସେମାନଙ୍କୁ ଜ୍ଞାନଗୁରୁ କରିବା ଉଚିତ
ତେବେ ବଢ଼ିବ ଆମ୍ଭର ଜାତୀୟ ମହତ୍ତ୍ୱ ।୧୪୭
ବୃଥା ଦ୍ୱନ୍ଦ କଳହରେ ସମୟ ନ କାଟ
ଏ ମତି ଧରିଲେ ବନେ ହୋଇଯିବା ଶ୍ରେଷ୍ଠ ।
କେତେ ଅଭାବ ରହିଛି ଓଡ଼ିଆ ଜାତିର
ତାକୁ ପୂରଣ କରିବାପାଇଁ ଯତ୍ନ କର । ୧୪୯
ଗୁଣ ଅରଜନ ଯେବେ କରି ନ ପାରିବା
ପରସ୍ପର କଳହେ କି ବଡ଼ଜାତି ହେବା । ୧୫୦
ନିର୍ଗନ୍ଧକିଂଶୁକ ଫୁଲପରି ହେବା ନାହିଁ
ଗୁଣ ଲଭ କରିଦିଅ ବାସ ଚହଟାଇ । ୧୫୧
ଆନ ଜାତି ସଙ୍ଗେ ଯେବେ ହୋଇବା ସମାନ
ସେମାନଙ୍କ ପରି ଭାଇ ହୁଅ ଗୁଣବାନ । ୧୫୨

ଉଚ୍ଚଶିକ୍ଷା ଲାଭକରି କି ଲାଭ ହୋଇବ
ଏଥିରେ କି ଏ ଜାତିର ସ୍ୱଭାବ ବଢ଼ିବ । ୧୫୩
ମୋଟାଦରମା ପାଇଣ ଗୃହକର୍ମ ପାଇବ
ଏଥିରେ କି ଏ ଜାତିର ବିଭବ ବଢ଼ିବ । ୧୫୪
କେବଳ ଭୋଗ ବିଳାସେ ମନ ଦିଅନାହିଁ
ଚିନ୍ତାକର କି କରୁଛ ଜାତି ହିତପାଇଁ । ୧୫୫
ଏ ଚିନ୍ତା ମନରୁ ଯେବେଁ କରିଦେବ ଦୂର
ଜାତିହନ୍ତା ମହାପାପ ଲଭିବ ନକର । ୧୫୬
ଯାହାର ଯା ଶକ୍ତି ଅଛି ତହିଁରୁ କିଞ୍ଚିତ
ଆପଣା ଜାତିହିତରେ ଲଗାଅ ସନ୍ତତ । ୧୫୭
ଏ ଦାୟିତ୍ୱଜ୍ଞାନ ଯେବେ ହେବ ପ୍ରତ୍ୟେକର
ଅଚିରେ ଜାତି ଉନ୍ନତ ହୋଇବ ନିକର ।୧୫୮
ନିଷ୍କାପର କର୍ମୀ ହେଲେ ଏ ଜାତି ଉଠିବ
ଫାଙ୍କା ଆବାଜରେ କିଛି କାମ ନ ହୋଇବ ।
ଅମୃତଲାଲ ଠକ୍କର ନାମ ଶୁଣିଅଛ
କିପରି ନିଷ୍କାମ କର୍ମୀ ତାହାଙ୍କୁ ଦେଖିଛ ।୧୬୦
କାଠିଆବାଡ଼ରେ ଘର ଏହି ଭାରତରେ
କେତେ କାର୍ଯ୍ୟ କରୁଛନ୍ତି ଆସି ଓଡ଼ିଶାରେ ।
ଓଡ଼ିଶାରେ ଯେତେବେଳେ ଦୁର୍ଭିକ୍ଷ ପଡ଼ିଲା
ଦାନାକନା ଲୋକଙ୍କୁ କିଛିହିଁ ନ ମିଳିଲା ।୧୬୨
ସେ ଅକାଳବେଳେ ଗାନ୍ଧି କଲେ ଆବେଦନ
ହେ ଭାରତବାସୀ ଓଡ଼ିଶାକୁ ଦିଅ ଦାନ ।୧୬୩
ଠକରଙ୍କୁ ପଠାଇଲେ ଓଡ଼ିଶାକୁ ଯାଅ
ଯେ ଟଙ୍କା ମିଳିବ ତାକୁ ବାଣ୍ଟି କୁଣ୍ଟି ଦିଅ ।୧୬୪
ଗାନ୍ଧିଙ୍କ ଆଦେଶ ପାଇ ଠକର ଆସିଲେ
ଓଡ଼ିଶାରେ ରହି ବହୁକାଳ କାର୍ଯ୍ୟ କଲେ ।୧୬୫
ଗ୍ରାମେ ଗ୍ରାମେ ବୁଲି ବୁଲି ଦୁଆରେ ଦୁଆରେ
ଲୋକଙ୍କ ଅବସ୍ଥା ନିଜ ଆଖିରେ ଦେଖିଲେ ।

ବାଣ୍ଟିଲେ ଚୂଡ଼ା ଗୁଡ଼ଳ ଅନେକ ବସନ
ଲୋକଙ୍କର ଦୁଃଖ କଷ୍ଟ କଲେକ ହରଣ ।୧୬୭
ଲୋକସେବା ବ୍ରତ କରିଛନ୍ତି ସେ ଠକର
ଯେଉଁଠି ଆପଦ ହେଲା ସେଠାରେ ହାଜର ।
ପତିତପାବନ ବାନା ସେହୁ ଧରିଛନ୍ତି
ପତିତ ଉଦ୍ଧାର କାର୍ଯ୍ୟେ ସଦା ଲାଗିଛନ୍ତି ।୧୬୯
ହରିଜନମାନଙ୍କର ସେବକ ପ୍ରଧାନ
ସେହି କାର୍ଯ୍ୟ ରାତ୍ରି କରୁଛନ୍ତି ନିଶି ଦିନ ।୧୭୦
ବୟସ ହେଲାଣି ତାଙ୍କୁ ସତୁରି ବରଷ
ଆଡ଼ମ୍ବର ଶୂନ୍ୟ ସଦା କାର୍ଯ୍ୟେ ନିରଳସ ।୧୭୧
ସେବା କାର୍ଯ୍ୟ ବିନୁ ଆଉ କିଛି ନ ଜାଣନ୍ତି
ରାଜନୀତି ଚର୍ଚ୍ଚାରେ ମନ ନ ଦିଅନ୍ତି । ୧୭୨
ସନ୍ନ୍ୟାସୀ ଭାବରେ ସେହୁ କାଟୁଛନ୍ତି ଦିନ
ଦିନ ରାତି କରୁଛନ୍ତି ଭାରତ ଭ୍ରମଣ । ୧୭୩
ନରନାରାୟଣ ସେବା କରିଛନ୍ତି ବ୍ରତ
ସେହି ଧରମ କରମେ ସଦା ସେ ନିଯୁକ୍ତ ।୧୭୪
ସତୁରି ବରଷ ପୂର୍ଣ୍ଣ ଆୟୁ ତାହାଙ୍କର
ଗାନ୍ଧି ବୋଇଲେ ତାହାଙ୍କୁ ଦିଅ ପୁରସ୍କାର ।
ସତୁରି ହଜାର ଟଙ୍କା ଥଳି ତାଙ୍କୁ ଦେବ
ସେହି ଧନ ହରିଜନ ସେବାରେ ଲାଗିବ ।୧୭୬
ଗାନ୍ଧିଙ୍କ ଆଦେଶ ଶୁଣି ପ୍ରଭୁ ଭଗବାନ
ଅଣାଇଦେଲେ ତୁରିତ ବାଞ୍ଛାକଲା ଧନ ।୧୭୭
ଲକ୍ଷେ ଅଠର ହଜାର ଧନ ଆସିଗଲା
ଠକର ବାପାଙ୍କୁ ପୁରସ୍କାର ଦିଆଗଲା । ୧୭୮
ହରିଜନ ପାଣ୍ଠିରେ ସେ ଧନ ଦିଆଯିବ
ହରିଜନଙ୍କ ସେବାରେ ସେ ଧନ ଲାଗିବ ।୧୭୯
ସଂସାର ଜଞ୍ଜାଳ ନାହିଁ ଠକର ବାପାର
ସକଳଙ୍କୁ ଦେଖନ୍ତି ସେ ପୁତ୍ର ପରିକାର । ୧୮୦

ନିର୍ମଳ ଶାନ୍ତ ପବିତ୍ର ଉଦାର ମୂରତି
ସଦା ପ୍ରସନ୍ନ ବଦନ ନ ଥାଏ ବିରକ୍ତି । ୧୮୧
ରାଗ ଦ୍ୱେଷ ଅହଙ୍କାର ଲେଶମାତ୍ର ନାହିଁ
ଗାନ୍ଧିଙ୍କର ପ୍ରଧାନ ବିଶ୍ୱାସୀ ଭକ୍ତ ସେହି ।୧୮୨
କେତେଦିନ ତାଙ୍କ ସଙ୍ଗେ କାମ କରିଥିଲି
ତାଙ୍କଠାରୁ ବହୁଶିକ୍ଷା ଲାଭ କରିଥିଲି । ୧୮୩
ତାଙ୍କପରି ଜଣେ କର୍ମୀ ଯେଉଁ ଦେଶେ ଥିବ
ସେ ଦେଶର ମହାଭାଗ୍ୟ ପୂର୍ଣ୍ଣ ଗଉରବ ।୧୮୪
ତାଙ୍କ ଗୁଣକୁ ମୋହର କୋଟି ନମସ୍କାର
ଦୀର୍ଘଜୀବନ ତାହାଙ୍କୁ ଦିଅନ୍ତୁ ଈଶ୍ୱର । ୧୮୫
ତାଙ୍କଠାରେ ପ୍ରଭୁଙ୍କର ଅପାର କରୁଣା
ନିହଉନାହାନ୍ତି ଠକର କେବେ ପଥବଣା ।୧୮୬
ନିନ୍ଦା ସ୍ତୁତିକି କେବେ ସେ କାନ ନ ଦିଅନ୍ତି
ପଦ ପଦବୀ କ୍ଷମତାପାଇଁ ନ ଝୁରନ୍ତି । ୧୮୭
ଲୋକସେବାରେ ତାଙ୍କର ପରମ ଆନନ୍ଦ
ଦେବେ ମହାପ୍ରଭୁ ତାଙ୍କୁ ସେ ପରମପଦ ।୧୮୮
ଏପରି ଦେଶସେବକ ଅତ୍ୟନ୍ତ ବିରଳ
ଦେଶସେବା କର୍ମେ ସେହୁ ଦିବାରାତ୍ର ଭୋଳ ।
ଏ ବୃଦ୍ଧ ବୟସେ ବୁଲୁଛନ୍ତି ଅହରହ
ବସି ରହିବାକୁ ତିଳେ ନାହିଁ ମନ ଥୟ । ୧୯୦
ଖରା ବରଷା କାକର ଶୀତ ନ ମାନନ୍ତି
ନିରଳସଭାବେ ସଦା କର୍ମ କରୁଛନ୍ତି । ୧୯୧
ଏ କଥା ଲେଖିଲାବେଳେ ପଡ଼ୁଅଛି ମନେ
ଅଛଇ ଉତ୍କଳେ ନିଷ୍ଠାପର କର୍ମୀ ଜଣେ ।୧୯୨
ଆଚାର୍ଯ୍ୟ ହରିହରଙ୍କ ନାମ ଅଛି ଜଣା
ଉତ୍କଳ କର୍ମୀମାନଙ୍କ ମଧ୍ୟରେ ପୁରୁଣା । ୧୯୩
ଠକରଙ୍କ ଗୁଣଗ୍ରାମ ଯେତେ ମୁଁ ଲେଖୁଛି
ତହିଁରୁ କେତେକ ଗୁଣ ତାଙ୍କଠାରେ ଅଛି ।୧୯୪

ନିଷ୍ଠାପର ଦେଶର ସେବକ ଜଣେ ସେହି
ତାଙ୍କ ସମକକ୍ଷ ଜଣେ କେହି ଦିଶୁନାହିଁ ।୧୯୫
ବିଭୁ କୃପାବଳେ ସେ ହୁଅନ୍ତୁ ଦୀର୍ଘାୟୁଷ
ଲୋକସେବା ଧର୍ମକରି ଲଭନ୍ତୁ ସନ୍ତୋଷ ।୧୯୬
ବୋଲେ ଦୀନ ଜଗବନ୍ଧୁ ନୀଳାଚଳପତି
ଲୀଳାଖେଳା କରି ଖଣ୍ଡ ଲୋକଙ୍କ ଦୁର୍ଗତି ।୧୯୭

ଇତି ଶ୍ରୀ ଭାରତ-ଚରିତାମୃତେ ଉତ୍କଳ ମନ୍ତ୍ରୀମଣ୍ଡଳ କାର୍ଯ୍ୟ ବିବରଣେ ଠକ୍କର ଚରିତ ବର୍ଣ୍ଣନେ ଛୟାନବେ ଅଧ୍ୟାୟଃ ।



# ସତାନବେ ଅଧ୍ୟାୟ

## ପୃଥ୍ୱୀରାଜ ଚରିତ

ଶୁଣ ଆହେ ସୁଜ୍ଞଜନ ଅପୂର୍ବ ଚରିତ
ଦିଲ୍ଲୀର ଅପରନାମ ଅଟେ ଇନ୍ଦ୍ରପ୍ରସ୍ଥ । ୧
ଅନଙ୍ଗପାଳ ଦିଲ୍ଲୀର ଥିଲେ ଅଧିପତି
ଅପୁତ୍ରିକ ଥିଲେ ସେହୁ ବୃଦ୍ଧ ନରପତି । ୨
ପୃଥ୍ୱୀରାଜ ତାହାଙ୍କର କନ୍ୟାର ନନ୍ଦନ
ବିଚାରିଲେ ତାଙ୍କ ହସ୍ତେ ଦେବେ ସିଂହାସନ ।୩
ବାନପ୍ରସ୍ଥ ହୋଇ ବଦରିକାଶ୍ରମେ ଯିବେ
ସେହିଠାରେ ରହି ଇଷ୍ଟଦେବ ଆରାଧିବେ । ୪
ସେହି ବୃଦ୍ଧ ରାଜାଙ୍କର ଦୁଇ କନ୍ୟା ଥିଲେ
ଜ୍ୟେଷ୍ଠା ସୁନ୍ଦରୀ କନୌଜ-ରାଜରାଣୀ ଥିଲେ ।୫
କନିଷ୍ଠା କମଳା ଆଜମୀର ରାଜରାଣୀ
ପୃଥ୍ୱୀରାଜ କମଳାର ପୁତ୍ର ଥିଲେ ପୁଣି । ୬
ଜୟଚନ୍ଦ୍ର ସୁନ୍ଦରୀର ଅଟନ୍ତି ସନ୍ତାନ
ପୃଥ୍ୱୀରାଜ ପାଇଲେ ଯେ ଦିଲ୍ଲୀ ସିଂହାସନ । ୭

ପ୍ରକାଶ୍ୟ ରାଜସଭାରେ ଏହି କାର୍ଯ୍ୟ ହେଲା
ମହାକ୍ରୋଧେ ସୁନ୍ଦରୀ ସେଠାରେ ପ୍ରବେଶିଲା । ୮
ବୋଇଲା ହେ ପିତା ମୁଁ କି ଅପରାଧ କଲି
ଜ୍ୟେଷ୍ଠାକନ୍ୟା ହୋଇ ସିଂହାସନ ନ ପାଇଲି । ୯
ଏ କି ଅବିଚାର ତବ ବୁଝିପାରୁନାହିଁ
କେଉଁ ଅପରାଧୁଁ ଅପମାନ ଭୋଗିଲଇଁ । ୧୦

ଅନଙ୍ଗପାଳ ଉବାଚ

ଶୁଣ ବତ୍ସେ ବୃଥା କ୍ରୋଧ କର ସମ୍ବରଣ
ଦେଖ ଆର୍ଯ୍ୟାବର୍ତ୍ତ ଦଶା କି ହୋଇବ ପୁଣ ।
ଦୁରନ୍ତ ତୁରୁକ ପୁଣି କରି ଆୟୋଜନ
ଆକ୍ରମଣ କରିବାକୁ କରୁଛନ୍ତି ମନ । ୧୨
ଏହି ଅସମୟେ ରାଜ୍ୟ କଲେକି ବଣ୍ଟନ
ଅନିବାର୍ଯ୍ୟ ବଳହାନି ହୋଇବ ତ ଜାଣ । ୧୩
ପ୍ରଜାମାନେ ଅସନ୍ତୁଷ୍ଟ ହୋଇବେ ନିକର
ଜୟଚନ୍ଦ୍ର ନେଉ ଯେତେ ଧନରତ୍ନ ମୋର । ୧୪
କୁବେର ସମ୍ପଦ ତୁଲ୍ୟ ଅଛି ଯା ଭଣ୍ଡାରେ
ମଣି ମୁକ୍ତା ଆଦି ସବୁ ତାକୁ ଦେଇପାରେ । ୧୫
ରାଜ୍ୟଠାରୁ ବେଶି ମୂଲ୍ୟ ହୋଇବ ତାହାର
ଦେଖିଲେ ପ୍ରମାଣ ତୁହି ପାଇବୁ ନିକର । ୧୬

ସୁନ୍ଦରୀ ଉବାଚ

ଭିକ୍ଷୁକ ଯାଚକ ନୁହେଁ ମୋହର ସନ୍ତାନ
ରାଜଦ୍ୱାରେ ଭିକ୍ଷାମାଗି ନେଇଯିବ ଧନ । ୧୭
ରାଜ ରାଜେଶ୍ୱର ଅଟେ ସନ୍ତାନ ମୋହର
ପାଶୋରିଦେଲକି ଏ କଥା ହେ ନୃପେଶ୍ୱର । ୧୮
ଲକ୍ଷ୍ମୀ ପ୍ରସାଦୁଁ ଯା ରାଜ୍ୟ ବୈକୁଣ୍ଠ ସମାନ
ସେ ଆସି ଧନ ମାଗିବ ଏ କି ଅପମାନ । ୧୯
କ୍ଷତ୍ରୀୟକୁଳରେ ଜନ୍ମ ଅଟଇ ମୋହର
କରେ ତରବାରି ଥିଲେ କାହାକୁ କି ଡର । ୨୦

ଭୁଜବଳେ ରାଜ୍ୟ ନେଇପାରିବ ଯେ କାଳେ
ପୁଣି ଆସି ଦେଖା କରିବ ମୁଁ ତେତେବେଳେ ।
ଏହା କହି ସୁନ୍ଦରୀ କନୌଜେ ଫେରିଗଲା
ଅନଙ୍ଗପାଳ ପୃଥ୍ୱୀଙ୍କ ଏମନ୍ତ ଭାଷିଲା । ୨୨

ଅନଙ୍ଗପାଳ ଉବାଚ

ଶୁଣ ପୃଥ୍ୱୀ ତୁମ୍ଭେ ମୋର ସନ୍ତାନ ସମାନ
ମନେ ରଖିଥିବୁ ବତ୍ସ ଏ ମୋର ବଚନ । ୨୩
ଅଧର୍ମରେ ଅର୍ଜନ କରିବ ଯେତେ ଧନ
ଭୋଜ୍ୟ ଭୋକ୍ତା ଧ୍ୱଂସ ହେବ ଶାସ୍ତ୍ରର ବଚନ ।
ଏହି ଅବିଚାରର ଫଳେ ଏମନ୍ତ ଘଟିବ
ଏହି ଦିଲ୍ଲୀ ସିଂହାସନ ରସାତଳେ ଯିବ । ୨୪
ତୋମର ଚୌହାନ ଆଦି ରାଜପୁତଗଣ
ଲୋପ ପାଇବେ ଭାରତୁ ଜାଣରେ ନନ୍ଦନ ।୨୬
କାୟମନବାକ୍ୟେ ପୂଜଅଛି ନାରାୟଣ
ଏ କଥା ଘଟିବ ନଷ୍ଟେ ନ ହୋଇବ ଆନ ।୨୭
ଏହିଠାରେ ବଟବୃକ୍ଷ ମଞ୍ଜି ବୁଣାହେଲା
କ୍ରମେ କ୍ରମେ ଏହି ବୀଜ ଅଙ୍କୁର ଉଠିଲା । ୨୮
ଜୟଚନ୍ଦ୍ର ଉଦ୍ଧତ୍ୟତେ ଦେଶଦ୍ରୋହୀ ହେଲା
ହିଂସା ଅନଳ ଭାରତେ କ୍ରମେ ଜଳାଇଲା । ୨୯
ବିରାଟ ବିଶାଳ ହିନ୍ଦୁ ଜାତି ପୃଥ୍ୱୀ ସହ
ଏହି ଅନଳରେ ପଡ଼ି ହେଲେ କହମହ । ୩୦
ତେଣେ ଦେଖ ମହମ୍ମଦଘୋରୀ ବୀରବର
ଗଜନୀ ନଗରେ ବସି କଲେକ ବିଚାର । ୩୧
ପାତ୍ର ମିତ୍ର ଘେନି ଏକ ସଭା କରାଇଲା
ଦକ୍ଷିଣ ଦିଗେ କୁତବ ଆନନ୍ଦେ ବସିଲା । ୩୨
ନବଯଉବନ କାନ୍ତି ଅତ୍ୟନ୍ତ ଉଜ୍ଜ୍ୱଳ
ଉତ୍ସାହେ ପ୍ରଦୀପ୍ତ ମୁଖ ଦିଶେ ଢଳଢଳ । ୩୩

ଆରଦର୍ପେ ପୂରିଅଛି ଶରୀର ତାହାର
ନବୀନ ସୁନ୍ଦର ବପୁ ଦିଶେ ମନୋହର । ୩୪
ବାମପାଶେ ହାମଜ୍ଜାବ ଗମ୍ଭୀର ମୂରତି
ଲଲାଟରେ ଚିନ୍ତାରେଖା ଫୁଟି ଦିଶେ ଅତି ।୩୫
ଦୁହିଁଙ୍କ ମଧ୍ୟରେ ସାଧୁଭକ୍ତ ମୌନୁଦ୍ଦୀନ
କରେ ଜପାମାଳା ଧରି ହୋଇଲେ ଆସୀନ ।୩୬
ନାଭିଦେଶ ଚୁମ୍ବୁଅଛି ଲମ୍ବ ଶ୍ମଶ୍ରୁଜାଳ
ପ୍ରଶାନ୍ତ ବଦନ କାନ୍ତି ଦିଶଇ ଉଜ୍ଜ୍ୱଳ । ୩୭
ରାଜଦୂତ ସ୍ୱପ୍ନ ଠିଆ ହୋଇଲେ ଅଦୂରେ
ସମସ୍ତେମେ ଠିଆ ହୋଇଛନ୍ତି ନତଶିରେ । ୩୮
ମଧୁର ବଚନେ ଘୋରୀ ଭାଷିଲେ ଏମନ୍ତ
ପଚାରୁଛି ଯାହା ମୁହିଁ କହ ଆରେ ଦୂତ । ୩୯

ଘୋରୀ ଉବାଚ

ଏତେଦିନ ହିନ୍ଦୁସ୍ଥାନ ମଧ୍ୟରେ ରହିଲ
କହ ମୋତେ ସେ ଦେଶରେ କେମନ୍ତ ଦେଖିଲ
କିପରି ସେ ଦେଶ କିସ ସମ୍ପଦ ବିଭବ
ଲୋକଙ୍କ ପ୍ରକୃତି, ଧର୍ମ ବିସ୍ତାରି କହିବ । ୪୧

ଆଲି ଉବାଚ

ଅଦ୍ଭୁତ ଅପୂର୍ବ ଦେଶ ଅଟେ ହିନ୍ଦୁସ୍ଥାନ
ସୌନ୍ଦର୍ଯ୍ୟ ମାଧୁର୍ଯ୍ୟେ ଗଢ଼ିଛନ୍ତି ଭଗବାନ ।୪୨
ଆହା କି ଅପୂର୍ବ ଦେଶ ନିରୂପମ ଛବି
ସୁନୀଳ ଆକାଶେ ସଦା ଭ୍ରମେ ଶଶୀ ରବି । ୪୩
ନିତି ନିତି ଚନ୍ଦ୍ରାଲୋକ ତପନ କିରଣ
ଆକାଶେ ନକ୍ଷତ୍ରରାଜି ଦିଶେ ସୁଶୋଭନ । ୦୪
ତୁଷାର ଝଟିକା ସେ ଦେଶରେ ଦେଖାନାହିଁ
ବରଷକଯାକ ମନ୍ଦମଳୟ ବହଇ । ୪୫
ଅମୃତ ସଲିଳେ ପୂର୍ଣ୍ଣ ନଦୀ ସ୍ରୋତସ୍ୱତୀ
ଆହା କି ସୁନ୍ଦର ଦିଶେ ତରୁ ବନସ୍ପତି । ୪୬

ବିଶାଳ କାୟା ବିସ୍ତାର ଶୋଭଇ ସେ ଦେଶ
କାହିଁ ଗିରିମାଳା କାହିଁ ଅରଣ୍ୟ ବିଶେଷ । ୪୭
ଗଗନ ପରଶି ଗିରି କାହିଁ ଶୋଭାପାଏ
କେଉଁଠାରେ ନଦୀ କଳକଳ ନାଦେ ବହେ ।୪୮
ଷଡ଼ରସ ଫଳ ମୂଳ ସୁଗନ୍ଧ କୁସୁମ
କାହିଁ ଶୁଣାଯାଏ ପକ୍ଷୀ ସୁମଧୁର ସ୍ୱନ । ୪୯
ଖଣି ଗରଭରୁ ମଣି ହୁଁଏ ଉତପନ୍ନ
ସାଗର ଭିତରୁ ମିଳେ ମୁକୁତା ରତନ । ୫୦
ସେ ଦେଶର ନାରୀ ଅଟେ ଅତି ଅନୁପମା
ସେ ଦେଶରେ ଲୀଳାଖେଳା କରୁଛନ୍ତି ରମା ।୫୧
ଧନଜନ ଗୋପଲକ୍ଷ୍ମୀ ସମୃଦ୍ଧ ନଗରୀ
କି ବର୍ଣ୍ଣିବି ପ୍ରଭୁ ତାର ଅନୁପମ ଶିରୀ । ୫୨
ସ୍ୱର୍ଗ ସ୍ୱର୍ଗ ବୋଲି ସିନା କହୁଛନ୍ତି ଲୋକ
ମର୍ତ୍ତ୍ୟରେ ସ୍ୱରଗଠାରୁ ଅଟେ ସେ ଅଧିକ । ୫୩
ଦେଖିଲି ଦିଲ୍ଲୀ କନୌଜ ମଥୁରା ନଗରୀ
ବାରାଣସୀ ପୁଣ୍ୟତୀର୍ଥ ଅନୁପମ ଶିରୀ । ୫୪
ଯେତକ ସ୍ଥାନମାନ ମୁହିଁ ନେତ୍ରରେ ଦେଖିଲି
ଧନ୍ୟ ମୋ ଜୀବନ ନେତ୍ର ପବିତ୍ର ମୁଁ କଲି ।୫୫
ଭାଷା ନାହିଁ ମୋର ସବୁ ବର୍ଣ୍ଣନା କରିବି
ପ୍ରକୃତ ଛବି ତାହାର ଶ୍ରୀମୁରେ ମୁଁ ଦେବି ।୫୬

ଯୋଗୀ ଉବାଚ

ହାନଫ ହିଶାୟୁ ଦୂତ କହ ଏବେ ତୁମ୍ଭି
କେଉଁସ୍ଥାନେ ଗଲୁ କେଉଁସ୍ଥାନେ ଥିଲୁ ରହି ।୫୭

ହାନଫ ଉବାଚ

ଯୋଗୀ ଋଷି ସନ୍ନ୍ୟାସୀର ଦେଶେ ଯାଇଥିଲି
ନାନାସ୍ଥାନ ଭ୍ରମି ଭ୍ରମି ସକଳ ଦେଖିଲି । ୫୮
ତୀର୍ଥ ଗ୍ରାମ ନଗର ଯେ ଦେବାଳୟମାନ
ଯଜ୍ଞଶାଳା ଆଦି ସ୍ଥାନ କଲି ଦରଶନ । ୫୯

ହିନ୍ଦୁଙ୍କ ଧରମ କର୍ମ ସକଳ ଦେଖିଲି
ହ୍ରୀଂ କ୍ଲୀଂ ଓଁକାର ଶବ୍ଦ ସକଳ ଶୁଣିଲି । ୬୦
ଦେଖିଲି ହିନ୍ଦୁମାନଙ୍କ ଆଗୃର ବେଭାର
ଶାସ୍ତ୍ରପାଠମାନ ସବୁ ଶୁଣିଲି ତାଙ୍କର । ୬୧
ସବୁ ଦେଖି ଶ୍ରୀହଜୁର ବୁଝି ପାରୁନାହିଁ
ବିଧାତା ଅଧମଜାତି ସୃଜିଲ୍ କିମ୍ପାଇ । ୬୨
ଥୋଇଲା ସେ ଜାତିକି ଏ ମନୋହର ଦେଶେ
ମୂର୍ତ୍ତି ପୂଜାକରି ଯେହୁ ପରମେଶେ ରୁଷେ । ୬୩
ଅଦ୍ଭୁତ ଅଟଇ ଧର୍ମ ହିନ୍ଦୁମାନଙ୍କର
କେହୁ ନଦୀ କେ ପର୍ବତ କେ ପୂଜେ ପଥର । ୬୪
କେହୁ ଆଖି ବୁଜ କରୁଅଛୁ ଶୂନ୍ୟ ଧ୍ୟାନ
ଅହିଂସା ପରମଧର୍ମ କେ କରେ ପାଳନ । ୬୫
କେହୁ ନୃତ୍ୟକରେ ନରବଳି କରି ଦାନ
କେହୁ ଶୈବ କେହୁ ଶାକ୍ତ କେ ବୈଷ୍ଣବ ପୁଣ ।
କେ ଏ ବୌଦ୍ଧ କେହୁ ଜୈନ ପୂଜା କରୁଅଛୁ
ହିତାହିତଜ୍ଞାନ କାର ନ ଦେଖିଲି କିଛୁ । ୬୭
ମୁକ୍ତି ଲଭପାଇଁ କେହୁ ନଦୀଜଳେ ବୁଡ଼େ
କେହୁ ନାଚି ନାଚି ଦାଣ୍ଡେ ଧୂଳିପରେ ଗଡ଼େ ।
ରଥ ଚକତଳେ ପଡ଼ି କେହୁ ନିଷ୍ପେଷିତ
କେହୁ ଜିଭ କାଟିଦେଇ ବୁହାଏ ରକତ । ୬୯
କେହୁ ନିଜ ବକ୍ଷେ ନିଜେ ଶୂଳ ବିଦ୍ଧକରେ
କେହୁ ଜଳନ୍ତା ଅନଳେ ଆନନ୍ଦେ ବିହରେ ।୭୦
ମୃତ ପତିସଙ୍ଗେ ପତ୍ନୀ ପଡ଼ଇ ଅନଳେ
ନିର୍ମମ ନିଷ୍ଠୁର ରୀତି ଦେଖିଲି ମୁଁ ଡ଼ୋଳେ ।୭୧
ସକଳେ ନିଜକୁ ହିନ୍ଦୁବୋଲି ଗର୍ବକରେ
କିନ୍ତୁ ପରସ୍ପର ମଧ୍ୟେ ପ୍ରେମ ନାହିଁ ଭଲେ । ୭୨
ଉଚ୍ଚବର୍ଣ୍ଣ ନୀଚବର୍ଣ୍ଣ ଭେଦଭାବ ଅଛି
ଜଣକୁ ଜଣେ ଛୁଇଁଲେ ଛୁଆଁ ହେଉଅଛି । ୭୩

ଜାତି ଜାତି ମଧ୍ୟରେ ରହିଅଛି ବହୁ ବାଦ
ସଦା ସର୍ବଦା ଲାଗିଛି ନାନା ବିସମ୍ବାଦ । ୭୪
ନୁହନ୍ତି ସେ ବୁଦ୍ଧିହୀନ ତର୍କରେ ନିପୁଣ
ଅଛି ତାହାଙ୍କର ବହୁ ଶାସ୍ତ୍ରାଦି ପୁରାଣ । ୭୫
ଦେଖି ହିନ୍ଦୁ ଲୋକଙ୍କର ଏମନ୍ତ ଦୁର୍ଗତି
ଅନ୍ତର ମୋର ବ୍ୟଥିତ ହେଉଅଛି ଅତି । ୭୬

ଘୋର୍ଷି ଉବାଚ

ଜାହାନ୍ଦର କି ଦେଖିଲୁ ହିନ୍ଦୁସ୍ଥାନେ ଯାଇ
ଠିକେ ଠିକେ ଯାହା ଦେଖିଅଛୁ କହ ତୁହି ।୭୭

ଜାହାନ୍ଦର ଉବାଚ

ହିନ୍ଦୁସ୍ଥାନ ସମ ଦେଖି ନାହିଁ ଏ ଧରାରେ
ସତ୍ୟ ସତ୍ୟ ତିନିବାର ସତ୍ୟ କହିପାରେ । ୭୮
କିନ୍ତୁ ଯେଉଁ ଫଣିଶିରେ ଥାଏ ମହାମଣି
ତାହାର ଦନ୍ତରେ ବିଷ ପୂର୍ଣ୍ଣଥାଏପୁଣି । ୭୯
ବଳ ବୀର୍ଯ୍ୟ ହିନ୍ଦୁର ମୁଁ ଦେଖିଲି ନୟନେ
ବୀରଜାତିବୋଲି ହିନ୍ଦୁମାନଙ୍କୁ ମୁଁ ମଣେ । ୮୦
ଦୁର୍ଦ୍ଧର୍ଷ ସମରକ୍ଷେତ୍ରେ ଅଟନ୍ତି ସେମାନେ
ଧର୍ମପ୍ରାଣ ଅଟନ୍ତି ସେ ନିଶ୍ଚୟ ମୁଁ ଜାଣେ । ୮୧
ହେଲେ ହେଉପଛେ ତାଙ୍କ ଧର୍ମ ଭ୍ରମପୂର୍ଣ୍ଣ
ସେହି ଧର୍ମପାଇଁ ହିନ୍ଦୁ ଦେଇପାରେ ପ୍ରାଣ । ୮୨
ପ୍ରଜାମାନେ ରାଜଭକ୍ତ ଅଟନ୍ତି ସେ ଦେଶେ
ମରିପାରେ ପ୍ରଜାଗଣ ରାଜାର ଆଦେଶେ । ୮୩
ଏକସୂତ୍ରେ ବନ୍ଧା ହୋଇଛନ୍ତି ହିନ୍ଦୁଗଣ
ଥିଲେ ଥାଉପଛେ ଜାତି ଜାତି ଭିନ୍ନାଭିନ୍ନ ।୮୪
ଉଚିତ ନୁହଇ ହିନ୍ଦୁସ୍ଥାନ ଆକ୍ରମଣ
ଅଛି ସେ ଦେଶରେ ବୃକ୍ଷ ବଟ ତାର ନାମ ।୮୫
ମହାବାହୁ ସେହି ବୃକ୍ଷ କରିଛି ବିସ୍ତାର
ଆବୋରି ରଖିଛି ସେହୁ ଗ୍ରାମ ବା ନଗର ।୮୬

ଶାଖାରୁ ତାହାର ସୂକ୍ଷ୍ମ ସୂକ୍ଷ୍ମ ମୂଳ ଆସି
ତଳ ପ୍ରଦେଶରେ ଅଛି ଭୂମିକୁ ପରଶି । ୮୭
ସେହି ମୂଳ କ୍ରମେ କ୍ରମେ ମହାତରୁ ହୁଏ
ଭୂମିରୁ ଆକର୍ଷି ରସ ନିଜେ ପୁଣି ନିଏ । ୮୮
ମୂଳ ବୃକ୍ଷ ଧ୍ୱଂସହେଲେ ସେ ରହେ ଜୀବିତ
ସେହିପରି ହିନ୍ଦୁଜାତି ଅଛଇ ନୟୁତ । ୮୯
ମୂଳଚ୍ଛେଦ ଉତ୍ପାଟନ ହୋଇଲେ ବୃକ୍ଷର
ଶାଖା ପୁଣି ବଞ୍ଚି ରହିଥିବଟି ନିକର । ୯୦
ଏପରି ବଇରୀ ସଙ୍ଗେ ବିବାଦ ନ କର
କି ଫଳ ମିଳିବ ଏଥୁଁ କରନ୍ତୁ ବିଚାର । ୯୧
ହିନ୍ଦୁର ପ୍ରତିମା ଭାଙ୍ଗି କି ଫଳ ମିଳିବ
ସେ ଦେଶ ଲୁଣ୍ଠନ କରି କି ଲାଭ ପାଇବ ।୯୨
ଗଜଦଳେ ବଳୀୟାନ ଅଟେ ହିନ୍ଦୁଜାତି
ଗଜଯୂଥ ଘେନି ସେହି ସମର କରନ୍ତି । ୯୩
ଅଶ୍ୱ ଗଜ ପଦାତିକ ଅସି ଶୂଳ ବାଣ
ଏ ସମ୍ପଦ ନେଇ ହିନ୍ଦୁ କରିପାରେ ରଣ । ୯୪
ନାହିଁ କାହାର ଶକତି ସମକକ୍ଷ ହେବ
ହିନ୍ଦୁମାନଙ୍କର ଗତିପଥେ ବାଧା ଦେବ । ୯୫
କେହି ଯେବେ ହିନ୍ଦୁଙ୍କର ପ୍ରତିଦ୍ୱନ୍ଦ୍ୱୀ ହେବ
ମୁହୂର୍ତ୍ତକେ ବାଧାପାଇ ଚୂର୍ଣ୍ଣ ହୋଇଯିବ । ୯୬
ପଦାତିକ ଶର ବିନ୍ଧିବାରେ ଅଦ୍ୱିତୀୟ
ଅବ୍ୟର୍ଥ ଶର ସନ୍ଧାନେ ଜାଣନ୍ତି ନିଶ୍ଚୟ । ୯୭
ସଚଳ ପର୍ବତସମ ଗଜଯୂଥ ଚଳେ
କେହି ଜିଣି ନ ପାରିବ ତାଙ୍କୁ ଅବହେଳେ ।୯୮
ଗଜ ପଦାତିକ ସୈନ୍ୟ ବଡ଼ ବଳବାନ
ବିଶ୍ୱାସ ମୋର ପାରିବେନାହିଁ ମୁସଲମାନ ।୯୯
କରନ୍ତୁ ଏଥୁଁ ବିଚାର ଉଚିତ ପ୍ରକାରେ
ଆଉ କିଛି କହି ପାରୁନାହିଁ ବିଶେଷରେ ।୧୦୦

ଘୋଷା ଉବାଚ

ଯାଅ ଦୂତ ଆଜ୍ଞାପାଇ ଗଲେ ଦୂତଗଣ
ଘୋଷା ବୋଇଲେ ଶୁଣିଲ ଆହେ ସଭାଜନ ।
କହ ବର୍ତ୍ତମାନ କିସ ଅଟେ ତୁମ୍ଭ ମତ
ଶୁଣିଲ ତ ସବିଶେଷେ ଭାରତ ଚରିତ । ୧୦୨

କୁତବ ଉବାଚ

ହିନ୍ଦୁ ବୀର୍ଯ୍ୟବାନ ସତ୍ୟ ନାହିଁଟି ସଂଶୟ
କୁସଂସ୍କାରେ ଭ୍ରମନ୍ତି ସର୍ବଦା ଅନ୍ଧ ପ୍ରାୟ ।୧୦୩
କାସିମ ଦେବଳପୁରୀ ଆକ୍ରମିଲା ଯେବେ
କି ଘୋଷଣା କଲା ହିନ୍ଦୁ ଶୁଣ କହେ ଏବେ ।
ଯାବତ ମନ୍ଦିର ଚୂଳେ ପତାକା ଉଡ଼ିବ
ଶତ୍ରୁ ସୈନ୍ୟ ଜଣେ କେହି ପଶି ନ ପାରିବ ।
ବଡ଼ କୌଶଳୀ କାସିମ ଏ ଘୋଷଣା ଶୁଣି
ଅସ୍ତ୍ର ପେଶି ଧ୍ୱଜକୁ ସେ ପକାଇଲା ହାଣି ।୧୦୬
ଛିଡ଼ିଲା ପତାକା ହିନ୍ଦୁ ହେଲା ପରାଜିତ
ଶିଶୁପରି ବ୍ୟବହାର ହିନ୍ଦୁର ନିୟତ । ୧୦୭
ଆଲୋର ଭୂପତି ନାମ ଅଟଇ ଦାହିର
ଦୈବଜ୍ଞ ଡାକି ଏମନ୍ତ କଲାକ ବିଚାର । ୧୦୮
ପଚାରିଲା କହ ଶୁକ୍ର କି ରାଶିରେ ଅଛି
ଯୁଦ୍ଧର କି ଫଳ ହେବ କହ ପଚାରୁଛି । ୧୦୯
ଦୈବଜ୍ଞ ବୋଇଲା ଶୁକ୍ର ତବ ସମ୍ମୁଖରେ
ଅଛି ବଇରୀର ଶୁକ୍ର ପଶ୍ଚାତ ଭାଗରେ । ୧୧୦
ଯୁଦ୍ଧରେ ଜିଣିବ ଶତ୍ରୁ ଏ ପାଠ ଲେଖୁଛି
ଭୂପତି ବୋଇଲେ କହ ପ୍ରତିକାର ବାଞ୍ଛି ।୧୧୧
ସୁବର୍ଣ୍ଣ ଶୁକ୍ର ପ୍ରତିମା ବଣିଆ ଗଢ଼ିଲା
ରାଜାଙ୍କ ପୃଷ୍ଠଦେଶରେ ଦୃଢ଼େ ବନ୍ଧା ହେଲା ।
ପାତ୍ରମନ୍ତ୍ରୀମାନେ ମିଳି ପ୍ରତିମା ବାନ୍ଧିଲେ
ଯୁଦ୍ଧେ ଜୟ ହେବବୋଲି ରାଜାଙ୍କୁ କହିଲେ ।

ଏଥିରେ ବିଶ୍ୱାସ କରି କଲାକ ସମର
ନ ବୁଝିଲ୍ କିଞ୍ଚିମାତ୍ର ନିଜ ବଳାବଳ । ୧୧୪
ମୁସଲମାନଙ୍କ ସଙ୍ଗେ କଲାକ ସମର
ଅବଶେଷେ ପ୍ରାଣ ଦେଲ୍ ନ ପାଇ ନିସ୍ତାର ।୧୧୫
ଜାଣେ ପ୍ରଭୁ ଯୁଦ୍ଧେ ହିନ୍ଦୁ ଦେଇପାରେ ପ୍ରାଣ
ଶୃଙ୍ଖଳା ସମରନୀତି ନାହିଁ କିଛି ଜ୍ଞାନ । ୧୧୬
ଅତି ସରଳ ସ୍ୱଭାବ ଅଟଇଁ ହିନ୍ଦୁର
ଖୋଜେ ଦିନ କ୍ଷଣ ଶୁଭ ଅଶୁଭ ଯୋଗବାର ।
ନ ଜାଣଇ ବ୍ୟାଧି ବହ୍ନି ସମର ସଙ୍କଟେ
କାଳ କ୍ଷେପକଲେ ଘୋର ସର୍ବନାଶ ଘଟେ ।
ନ ଜାଣେ ପୁରୁଷକାର ଦୈବ ନେଇ ଚଳେ
ଚକ୍ଷୁ ଥାଇ ଅନ୍ଧହୋଇ ଭ୍ରମେ ସଦାବେଳେ ।
ଛିଙ୍କ ହାଇ କାକ ଶୃଗାଳର ରବ ଶୁଣି
ପଲ୍ଲି ପତନରେ ମହା ପରମାଦ ଗଣି । ୧୨୦
ଅଳପକେ ହୋଇପଡ଼େ ମହା ବିଶୃଙ୍ଖଳ
ବ୍ୟୁହ ଭଙ୍ଗି ପଳାଯାନ୍ତି ଯଥା ମେଷପାଳ । ୧୨୧
ନିଜ ବଳ ଉପରେ ନିଜର ଆସ୍ଥା ନାହିଁ
ରାଜପତନେ ନିସ୍ୱଣ ନିର୍ଜୀବ ହୁଅଇ । ୧୨୨
ଦାହିର ଅନଙ୍ଗପାଳ ହସ୍ତୀପରେ ବସି
ସମର ପ୍ରାଙ୍ଗଣେ ପ୍ରବେଶିଲେ ହୋଇ ଖୁସି ।୧୨୩
ଅଗ୍ନି ଶରଘାତେ ହସ୍ତୀ ଗଲାକ ପଳାଇ
ସୈନ୍ୟମାନେ ପଳାଇଲେ ସନ୍ତ୍ରସ୍ତ ହୋଇ ।
ହିନ୍ଦୁ ଶାସ୍ତ୍ରେ ଲେଖାଅଛି ବିଷୟ ଏମନ୍ତ
ମୁସଲମାନ ଆସିଲେ ହେବେ ପରାଜିତ । ୧୨୫
ତୁର୍କି ରାଜ୍ୟ ପ୍ରତିଷ୍ଠିତ ହେବ ଭାରତରେ
ଶାସ୍ତ୍ରଥିରୁ ହିନ୍ଦୁ ଅଛି ମହାଚିନ୍ତା ଘୋରେ ।୧୨୬
ଏତିକ ବେଳରେ ଯେବେ ଭାରତକୁ ଯିବା
ହିନ୍ଦୁମାନଙ୍କୁ ଜିଣିଣ ବଳେ ରାଜ୍ୟ ନେବା ।୧୨୭

## ଘୋରୀ ଉବାଚ

ମାମୁଦଙ୍କ ପରି ନାହିଁ ଅଭିଳାଷ ମୋର
ଥରେ ଦେଖାଦେଇ ପୁଣି ହୋଇବ ଅନ୍ତର ।
ବାଞ୍ଛା ମୋର ସ୍ଥାୟୀରାଜ୍ୟ ହେବ ପ୍ରତିଷ୍ଠିତ
ହିନ୍ଦୁସ୍ଥାନେ ଜୟବାନା ଉଡ଼ିବ ନିୟତ । ୧୨୯
ହେ କୁତବ ନିଅ ତୁମ୍ଭେ ଏ କାର୍ଯ୍ୟର ଭାର
ହିନ୍ଦୁସ୍ଥାନେ ଯିବାପାଇଁ ଆୟୋଜନ କର ।୧୩୦
ଦେଶ ଦେଶାନ୍ତରୁ ଘେନିଆସ ସେନାଦଳ
ଶୁଣିଛ କି ଯାହା ସେ କହିଲା ଜାହାନ୍ଦର ।୧୩୧
ଗଜ ପଦାତିକ ବଳେ ହିନ୍ଦୁ ବଳବାନ
ହୁଅନାହିଁ ବିଚଳିତ ଏ ବାର୍ତ୍ତା ଶୁଣିଣ । ୧୩୨
ମତ୍ତଗଜ ରଣାଙ୍ଗନେ ଘଟାଏ ବିପଦ
ମିତ୍ର ବଇରୀ ଉଭୟ ମଣନ୍ତି ଆପଦ । ୧୩୩
ଭୟ ଯେବେ ପାଏ ଗଜ ନ ମାନେ ଅଙ୍କୁଶ
ପାଦେ ଦଳିଦେଇ ଲୋକ କରେ ସର୍ବନାଶ ।
ପଦାତିକ ଶ୍ରାନ୍ତହେଲେ ସମର କ୍ଷେତ୍ରରେ
ଦୂରପଥ ପର୍ଯ୍ୟଟନ କରି ସେ ନ ପାରେ ।୧୩୫
ଶିଥିଳ ହୁଅଇ ଗତ୍ର ଲୌହବର୍ମ ଭାର
ସହି ନ ପାରଇ ବେଶି ଯୁଦ୍ଧକ୍ଲେଶ ଘୋର ।୧୩୬
ଆମ୍ଭମାନଙ୍କର ଅଶ୍ୱ ପରିଶ୍ରମୀ ଅଟେ
ଅଳ୍ପାହାରେ ହୋଇ ତୁଷ୍ଟ ଦିନ ରାତି ଖଟେ ।
ଦ୍ରୁତକାୟୀ ଅଟେ ତାର ସହେ ବହୁ ଶ୍ରମ
ଉଲମ୍ଫନେ ସନ୍ତରଣେ ଅଟଇ ସେ କ୍ଷମ ।୧୩୭
ଗିରି ଆରୋହଣ କରେ ଅଭ୍ୟାସ ତାହାର
ଅଶ୍ୱବଳେ ଗଜ ପଦାତିକ ଜିଣିପାର । ୧୩୯
ଯାଅ ବେଗେ କର ଯାଇ ସବୁ ଆୟୋଜନ
କାଳ ବିଳମ୍ବ ନ କର କରିବା ଗମନ । ୧୪୦

କପୋତ ଉପରେ ଯଥା ପଡ଼ଇ ସଞ୍ଚାଣ
ହିନ୍ଦୁଦେଶ ତଥା ମୁଁ କରିବ ଆକ୍ରମଣ । ୧୪୧
ସେ ଦେଶ ଲୋକ ପ୍ରକୃତି ଜାଣେ ମୁଁ ଉତ୍ତମ
ନାହାନ୍ତି ବିକ୍ରମଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ଜାଣ । ୧୪୨
ଥିଲେ ଥାଉ ହିନ୍ଦୁଙ୍କର ସୁଗୁଣ ଅପାର
ଜାତି ବୈରିଭାବେ ସଦା ସେହୁ ଧୁରନ୍ଧର । ୧୪୩
ସତ୍ୟ ଧର୍ମ ଭ୍ରଷ୍ଟ ହୋଇଛନ୍ତି ହିନ୍ଦୁମାନେ
ପତନ ହୋଇବ ମୁହିଁ ଭଲକରି ଜାଣେ । ୧୪୪
ତୃଣ ରଜ୍ଜୁ ହୋଇ ଯେବେ ବନ୍ଧନ ହୁଅଇ
ମତ୍ତଗଜ ବାନ୍ଧିବାକୁ ସକ୍ଷମ ଅଟଇ । ୧୪୫
କିନ୍ତୁ ହିନ୍ଦୁଙ୍କର ନାହିଁ ସେପରି ବନ୍ଧନ
ଶତ ଜାତି ଶତ ଭାଷା ଶତ ଶତ ଧର୍ମ । ୨୪୬
ରାଜ୍ୟ ମଧ୍ୟେ ଶତ ରାଜ୍ୟ ଅଛଇ ହିନ୍ଦୁର
ନିଜ ଧ୍ୱଂସପାଇଁ ସଦା ଦ୍ୱନ୍ଦ୍ୱ ପରସ୍ପର । ୧୪୭
କପରି ବନ୍ଧନ ଅବା ମିଳନ ସମ୍ଭବ
ଏହି ଦୋଷେ ହିନ୍ଦୁ ନିଶ୍ଚେ ସମରେ ହାରିବ ।
ଆମ୍ଭେମାନେ ଏକ ଜାତି ଏକ ଧର୍ମବଳେ
ଏକତା ସୂତ୍ରେ ବନ୍ଧାହୋଇଛୁ ସକଳେ । ୧୪୯
ଆମ୍ଭେମାନେ ଏକ ଭୂପତିର ଆଜ୍ଞାଧୀନ
ଆମ୍ଭେମାନେ ସେମାନଙ୍କୁ କଲେ ଆକ୍ରମଣ ।
ସ୍ରୋତ ମୁଖେ ବାଲି ସମ ସେହୁ ଭାସିଯିବେ
ଆଉ ଏକ ଗୂଢ଼କଥା ଶୁଣ ହେ ସରବେ । ୧୫୧
ଗୃହଛିଦ୍ର କହିବାକୁ ନୁହନ୍ତି କୁଣ୍ଠିତ
ଚିରଦିନ ଏହି ରୀତି ବୁଝିଛି ମୁଁ ସତ୍ୟ । ୧୫୨
କେବେ କେ ବିଦେଶୀ ଯେବେ ଭାରତକୁ ଆସେ
ଦେଶଦ୍ରୋହୀ କେହି ହିନ୍ଦୁ ପ୍ରବେଶ ତା ପାଶେ ।
ଗୃହଛିଦ୍ରମାନ କହି ପକ୍ଷ ନିଏ ତାର
ଏମନ୍ତ ଅଟଇ ହିନ୍ଦୁମାନଙ୍କ ବେଭାର । ୧୫୪

ବୀର ସିକନ୍ଦର ଯେବେ ପଞ୍ଜାବେ ପଶିଲା
ତକ୍ଷଶିଳା ପତି ତାହାଙ୍କର ପକ୍ଷ ନେଲା ।୧୫୫
ଅଶ୍ୱ ଅର୍ଥ ଆଦି ତାର ଶିବିରେ ପେଶିଲା
ଗୁପ୍ତ ସମାଚାର କହି ଶରଣ ପଶିଲା । ୧୫୬
ସୁଲତାନ ମାମୁଦ ଯେ କାଳେ ଆସିଥିଲା
ଧନ ଜନ ଦେଇ ଶିବାନନ୍ଦ ପକ୍ଷ ନେଲା ।୧୫୭
ହିନ୍ଦୁସ୍ଥାନେ ଯାଇ ଯେବେ ପ୍ରବେଶ ହୋଇବା
ସେହି ହିନ୍ଦୁଠାରୁ ବହୁ ସାହାଯ୍ୟ ପାଇବା ।୧୫୮
ଐଶ୍ୱର୍ଯ୍ୟ ଗୌରବ ଦିଲ୍ଲୀ ଅଟେ ଅଗ୍ରଗଣ୍ୟ
ଆଗରୁ ସମ୍ବାଦ ମୁହିଁ ପେଶିଅଛି ପୁଣ । ୧୫୯
ଦିଲ୍ଲୀ ରାଜ୍ୟେ ବିଷବୃକ୍ଷ ହୋଇଛି ରୋପଣ
ବୃଦ୍ଧରାଜା ତୀର୍ଥବାସେ କରିବ ଗମନ । ୧୬୦
ଭାଇ ଭାଇରେ ବିବାଦ ଲାଗିବ ସତ୍ୱର
ଗୋଟିକୁ ହାତ କରିବ ନାଶିବ ଅପର ।୧୬୧
ଥରେ ଦିଲ୍ଲୀ ଯେବେ ମୋର ଅଧୀନ ହୋଇବ
ଦୃଢ଼େ ଜାଣ ଏ ଭାରତ କରଗତ ହେବ ।୧୬୨
ତେଣେ ଦେଖ ଭାରତରେ କି କି ସମାଚାର
ପୃଥ୍ୱୀରାଜ ନେଲେ ଦିଲ୍ଲୀ ସିଂହାସନ ଭାର ।୧୬୩
ଜୟଚନ୍ଦ୍ର ମହାକ୍ରୋଧେ ପ୍ରଜ୍ୱଳିତ ହେଲା
ପୃଥ୍ୱୀର ସରବନାଶ କରିବ ପାଞ୍ଚିଲା । ୧୬୪
ରାଜସୂୟଯଜ୍ଞ ଏକ କଲା ଆୟୋଜନ
ସକଳ ନରପତିଙ୍କୁ ହେବ ନିମନ୍ତ୍ରଣ । ୧୬୫
ପୃଥ୍ୱୀରାଜ ଦିଲ୍ଲୀର ପ୍ରଧାନ୍ୟ ରକ୍ଷାପାଇଁ
ଏ ଯଜ୍ଞ ନିମନ୍ତ୍ରଣରେ ସେ ଆସିବେ ନାହିଁ ।୧୬୬
ଏହି ଜନରବ ଚରିଆଡ଼େ ଶୁଣାଗଲା
ଗୁରୁ ଭୃଙ୍ଗାଚାର୍ଯ୍ୟ ଜୟଚନ୍ଦ୍ରଙ୍କୁ କହିଲା । ୧୬୭

ଭୃଙ୍ଗାଚାର୍ଯ୍ୟ ଉବାଚ

ଥିଲି ପରିବାସେ ମୁହିଁ ପାଇଲି ଖବର
ଯୁଦ୍ଧପାଇଁ ଆୟୋଜନ ଲଗିଛି ତୁମ୍ଭର । ୧୬୮

କାହାସଙ୍ଗେ କାହିଁପାଇଁ ହୋଇବ ସମର
ଜାଣିପାରେ କି ଏଥିର ସଠିକ ଖବର । ୧୬୯

ଜୟଚନ୍ଦ୍ର ଉବାଚ

ଦିଲ୍ଲୀଶ୍ୱର ପୃଥ୍ୱୀରାଜ ସହିତ ସମର
କରିବବୋଲି ମୁଁ ସବୁ କରିଅଛି ସ୍ଥିର ।୧୭୦
ସେହିହେତୁ ସୈନ୍ୟ ଆୟୋଜନ ହେଉଅଛି
ଶୁଣ ଗୁରୁଦେବ ମୁହିଁ ନୃକର କହୁଛି । ୧୭୧

ଭୃଙ୍ଗାଚାର୍ଯ୍ୟ ଉବାଚ

କି କ୍ଷତି ବା ଅପରାଧ କରିଅଛି ତବ
କାହିଁପାଇଁ ପୃଥ୍ୱୀରାଜ ସଙ୍ଗେ ଯୁଦ୍ଧ ହେବ ।୧୭୨

ଜୟଚନ୍ଦ୍ର ଉବାଚ

ଜାଣ ଆହେ ଗୁରୁଦେବ କ୍ଷତ୍ରୀୟର ମାନ
ସବୁ କ୍ଷତିଠାରୁ ବଡ ଅଟଇ ପ୍ରମାଣ । ୧୭୩
ଅତି ତୁଚ୍ଛ ଅଟେ ପ୍ରାଣ ସେମାନ ଆଗରେ
ମାତାମହ ବସି ଦିଲ୍ଲୀ ରାଜସଭା ତଳେ । ୧୭୪
ସବଳ ସମର୍ଥ ହସ୍ତେ ଦେଲେ ସିଂହାସନ
ବରିଲେ ମୁଁ ଅଧମ ଭିକ୍ଷୁକ ସମାନ । ୧୭୫
ମୋତେ କିଛି ଧନଦେଇ କରିବେ ସନ୍ତୋଷ
ଏହାଠାରୁ ବଳି ଅପମାନ ଅଛି କିସ । ୧୭୬
ରାଠୋର ଅଟେ ଦୁର୍ବଳ ସବଳ ଚୌହାନ
ଜନମାର ଉପରୋଧେ ଗଲି ଏତେଦିନ । ୧୭୭
କରି ନ ଥିଲି ସେ ହେତୁ କୃପାଣ ଗ୍ରହଣ
ତେଣୁ ରାଜସୂୟ ଯଜ୍ଞ କରୁଅଛି ଜାଣ । ୧୭୮
ଯଜ୍ଞ ମୋର ଯେଉଁଦିନ ହେବ ଉଦ୍‌ଯାପନ
ସାର୍ବଭୌମପଦ ମୁହିଁ କରିବି ଧାରଣ । ୧୭୯
ଦେଖ ଗୁରୁଦେବ କଳିଯୁଗେ ଭାରତରେ
ରାଜସୂୟ ଯଜ୍ଞ କରିନାହିଁ ଥରେହେଲେ ।୧୮୦

ପୃଥ୍ୱୀରାଜ ନିମନ୍ତ୍ରଣ କଲେକି ଗ୍ରହଣ
କେଉଁଶଳେ ମୋ ଉଦ୍ଦେଶ୍ୟ କରିବି ସାଧନ ।
ରାଠୋର ପ୍ରଧାନ ବୋଲି କଲେ ସ୍ୱୀକାର
ବିଦ୍ୱେଷ କରୁଛନ୍ତି ନାହିଁ ତାଙ୍କ ସଙ୍ଗେ ମୋହର ।
କିନ୍ତୁ ଲୋକଙ୍କ ମୁଖୁଁ ଯାହା ଶୁଣୁଅଛି ମୁହିଁ
ଯଜ୍ଞ ସ୍ଥାନକୁ କେବେହେଁ ସେ ଆସିବ ନାହିଁ ।
ଯଜ୍ଞ କର୍ମେ ପ୍ରତିଦ୍ୱନ୍ଦ୍ୱୀ ହୋଇ ବାଧା ଦେବ
ତେଣୁ ମୁହିଁ ପାଞ୍ଚୁଅଛି ଆହେ ଗୁରୁଦେବ ।
ଦ୍ୱାରପାଳ ମୂରତି ତାହାର କରାଇବ
ହାତେ ବେତ ଧରାଇ ସଭାରେ ବସାଇବ ।୧୮୫
ଏମନ୍ତ ଚିହ୍ନ ଦେଖିଲେ ବଡ଼ କ୍ରୋଧ ହେବ
ଶକ୍ତି ଥିଲେ ଆସି ସେହୁ ପ୍ରତିଶୋଧ ନେବ ।
ନ କରି ପାରିଲେ ସହିବ ସେ ଅପମାନ
କେ ଦୁର୍ବଳ କେ ସବଳ ହୋଇବ ପ୍ରମାଣ ।

ଭୃଙ୍ଗାଗୁର୍ଯ୍ୟ ଉବାଚ

ଘୋରବ୍ୟଥା ଲାଗେ ମନେ ଦେଖି ଏ ବେଭାର
ମହାଘୋର ସଙ୍କଟ ସମସ୍ତ ଭାରତର । ୧୮୮
ଭାତୃଭେଦ ଜାତିଭେଦ ଏହି ସମୟରେ
କଲ୍ୟାଣକର ହୋଇବ ବୋଲି ନ ବୁଝିରେ ।
ଯାଇଥିଲି ତୀର୍ଥଯାତ୍ରା କରିବାକୁ ମୁହିଁ
ଏ ସବୁ ସମ୍ବାଦ ଶୁଣି ସିନା ଆସିଲଇଁ । ୧୯୦
ବନ୍ଧୁମାନେ ଶାନ୍ତି ସୁଖ ନାହିଁ ମୋ ମନରେ
ଭାବୁଛି ଭାରତ ଦଶା କିସ ହୋଇପାରେ ।୧୯୧
ଗୁରୁ ମୁଁ ତୁମ୍ଭର ଶୁଣ ମୋର ଉପଦେଶ
ଭୁଲିଯାଅ ହିଂସା କ୍ରୋଧ ଅଭିମାନ ଦ୍ୱେଷ ।
ସମ୍ମିଳିତ ହୁଅ ବୀର ପୃଥ୍ୱୀରାଜ ସହ
ଶିଖାଅ ସମରନୀତି ମିଳଣ ଉଭୟ । ୧୯୩

ରାଠୋର ଚୌହାନ ସୈନ୍ୟ ହୁଅନ୍ତୁ ଶିକ୍ଷିତ
ଦୁହେଁ ମିଳିମିଶି କାର୍ଯ୍ୟକର ହେ ନୃପତି ।୧୯୪
ହୁତାଶନ ସଙ୍ଗେ ବାୟୁ ସାଥିହେବ ଯେବେ
କିଏ ପରାସ୍ତ କରିବ ଦେଖାଯିବ ତେବେ ।୧୯୫
ଝଡ଼ବେଗ ପ୍ରତିରୋଧ କରେ ମହୀଧର
ସେହିପରି ଦୁହେଁ ହୁଅ ବନ୍ଧୁ ପରିକର । ୧୯୬
ପ୍ରତି ପଦେ ଯବନଙ୍କୁ ଦୁହେଁ ବାଧା ଦିଅ
ପ୍ରାଣପଣେ ସ୍ୱାର୍ଥ ସୁଖ ସବୁ ବଳି ଦିଅ । ୧୯୭
ନିରେଖି ଯବନ ଦେଖୁ ହିନ୍ଦୁତ୍ୱ କପର
ଶିଳାରେ ଗଠିତ ନୁହେଁ ଧୂଳିକଣା ପରି ।୧୯୮
ରୁଦ୍ଧହେଉ ତୁରୁକର ପୂର୍ବମୁଖୀ ଗତି
ଦେଖୁ ଶତ୍ରୁ ହିନ୍ଦୁର ଅଛଇ କି ଶକତି । ୧୯୯
ଶତ୍ରୁ କରଗତ ହୁଏ ଜନ୍ମଭୂମି ଯାର
ବୃଥା ଦ୍ୱେଷ ଅଭିମାନ ଦିଶେ କି ସୁନ୍ଦର ।୨୦୦
କି ଲାଞ୍ଛନା ପରସେବା ବୁଝିବ ସେ କାଳେ
ଦାସତ୍ୱ ଶୃଙ୍ଖଳ ଗଳେ ପଡ଼ିବ ଯେ କାଳେ ।
ଆତ୍ମୀୟ କଳହ ଯେବେ ଏଡ଼େ ତୃପ୍ତିକର
ପଶ୍ଚାତେ କରିବ ବର୍ତ୍ତମାନ ଅସୁନ୍ଦର । ୨୦୧
ହିନ୍ଦୁ ବୌଦ୍ଧ ଜୈନ ଅବା ଚଣ୍ଡାଳ ବ୍ରାହ୍ମଣ
ରକ୍ଷା ନାହିଁ ସକଳେ ନୋହିଲେ ସମ୍ମେଳନ ।
କରନାହିଁ ଦିଲ୍ଲୀଶ୍ୱରଙ୍କୁ ଏ ଅପମାନ
ଜଳାଅ ନାହିଁ ଏ ସର୍ବଗ୍ରାସୀ ହୁତାଶନ ।୨୦୪
କି ନ କଲେ ଯୁଧିଷ୍ଠିର ନ ପଡ଼େ କି ମନେ
ତୋଷିଲେ ଦୁର୍ଯ୍ୟୋଧନଙ୍କୁ ଯଜ୍ଞ ଅବସାନେ ।
ଆଗେ ଯେବେ କୁରୁକ୍ଷେତ୍ର ଆୟୋଜନ ହେବ
ଯଜ୍ଞ ସମାପନ କେବେ ହୋଇ ନ ପାରିବ ।
ଭାଇ ବିବାଦରେ କେବେ କାର ନାହିଁ ହିତ
ଉଭୟେ ଧ୍ୱଂସ ହୋଇବ ଜାଣ ହେ ନିଶ୍ଚିତ ।

ଏତେ ଉପଦେଶ ଦେଇ ଗୁରୁ ପରୁଶିଲେ
କି କହୁଛ ଜୟଚନ୍ଦ୍ର କହ ମୋତେ ହେଲେ ।
ଜୟଚନ୍ଦ୍ର ମନ ଭିତରେ ନରମ ନ ହେଲା
ଗୁରୁ ଉପଦେଶ ସବୁ ପାଣିରେ ପଡ଼ିଲା ।୨୦୯
ଭାରତର ରାଜନ୍ୟବୃନ୍ଦଙ୍କୁ ନିମନ୍ତ୍ରଣ
ସଂଯୁକ୍ତା କନ୍ୟାର ସ୍ୱୟମ୍ବର ହେଲା ପୁଣ ।୨୧୦
ଦ୍ୱାରପାଳ ମୂରତି ସେ ଯତନେ କରାଇ
ଯଜ୍ଞଦ୍ୱାରେ ଥୋଇଲା ସେ ମୂରତିକି ନେଇ ।
ପୃଥ୍ୱୀରାଜ ଏ ସକଳ ସମ୍ବାଦ ପାଇଲା
ଗୁପ୍ତଚର ପଠାଇ ସେ ସକଳ ବୁଝିଲା । ୨୧୨
ଛଦ୍ମବେଶେ ପୃଥ୍ୱୀ ଯଜ୍ଞସ୍ଥଳେ ପ୍ରବେଶିଲା
ଦ୍ୱାରପାଳ ମୂର୍ତ୍ତି ପାଶେ ଲୁଚି ରହିଥିଲା ।୨୧୩
ରାଜକନ୍ୟା ସଂଯୁକ୍ତା ସେ କାଳେ ପ୍ରବେଶିଲା
ଦ୍ୱାରପାଳ ମୂର୍ତ୍ତିଗଳେ ବରମାଳା ଦେଲା ।୨୧୪
ଛଦ୍ମବେଶୀ ପୃଥ୍ୱୀ ସଂଯୁକ୍ତାର କର ଧରି
ବେଗେ ନେଇ ଅଶ୍ୱଠାରେ ବସାଏ ଓଟାରି ।
କଷାଘାତ କରି ଅଶ୍ୱ ଦଉଡ଼ାଇ ନେଲା
ଗୃହୁଁ ଗୃହୁଁ ଗଙ୍ଗାନଦୀ କୂଳେ ପ୍ରବେଶିଲା ।୨୧୬
ତରୀପରେ ସଂଯୁକ୍ତାକୁ ବସାଇଲା ନେଇ
ଅଦୃଶ୍ୟ ହୋଇଲା ତରୀ କ୍ଷିପ୍ରବେଗେ ଯାଇ ।
ଜଳନ୍ତା ଅନଳେ ଏହା ଘୃତାହୁତି ଦେଲା
ବିବାଦ ଅନଳ ଦାବାନଳ ସମ ହେଲା ।୨୧୮
ଭାଇ ବିବାଦ ଅନଳ ଜଳିଲା ଭାରତେ
ଏ ସୁଯୋଗ ନେଲା ଘୋରୀ ବିଦେଶିର ଭୂତେ ।
ଭାରତ ଏହି ବିବାଦେ ପର ପଦାନତ
ଭାତୃ ବିବାଦ କଦାପି ନୁହଇ ଉଚିତ । ୨୨୦
ପୃଥ୍ୱୀରାଜ ମହାକାବ୍ୟେ ଏପରି ବର୍ଣ୍ଣନ
ଇଚ୍ଛାକଲେ ପାଠକର ଆନନ୍ଦ ସୃଜନ ।୨୨୧

ମହାଶିକ୍ଷା ଲଭହେବ ସେ କାବ୍ୟ ପଢ଼ିଲେ
କି ହୁଏ ରାଜ୍ୟର ଦଶା ଭ୍ରାତୃ ବିବାଦରେ ।୨୨୨
ଭାରତର ଦଶା ଆଜ ଅଟଇ ଏମନ୍ତ
ସ୍ୱଦେଶ ଅର୍ଥେ ବୁଝନ୍ତି ଗ୍ରାମକୁ ନିଶ୍ଚିତ । ୨୨୩
ସ୍ୱଜାତି ଅର୍ଥେ ବୁଝନ୍ତି ନିଜ ସମ୍ପ୍ରଦାୟ
ସମ୍ପ୍ରଦାୟ ଭେଦେ ଲଗେ ସନ୍ତତ କଳହ ।
ଭାରତ ସନ୍ତାନ ବୋଲି କେହି ନ ବୁଝନ୍ତି
ଏ ଦୃଢ଼ ବିଶ୍ୱାସ ନାହିଁ ପ୍ରେମ ବା ଭକତି ।୨୨୫
ରାଜା ଚିନ୍ତା କରୁଅଛି ନିଜ ରାଜ୍ୟପାଇଁ
ପ୍ରଜା ଭାବେ ତାର ଶସ୍ୟକ୍ଷେତ୍ର ଗଲା କାହିଁ ।
ମହାଜନ ନିଜ ବ୍ୟବସାୟ ଚିନ୍ତାକରେ
ଜମିଦାର ନିଜ ଜମିଦାରିରେ ବିହରେ ।୨୨୭
କର୍ମଚାରୀ ନିଜ କର୍ମକ୍ଷେତ୍ର କରେ ସାର
ଛାତ୍ର ଭାବେ ବିଦ୍ୟାଳୟ ଭାରତ ତାହାର ।୨୨୮
ଆସମୁଦ୍ରହିମାଚଳ ସ୍ୱଦେଶ ମୋହର
ଏ ଜାତୀୟ ମହାଭାବ ଅଛି ବା କାହାର ।୨୨୯
ଆଚଣ୍ଡାଳ ଦ୍ୱିଜ ସର୍ବେ ସ୍ୱଦେଶୀ ସ୍ୱଜାତି
ଏକର ବିଧ୍ୱଂସେ ଆନ ବିନାଶ ନିଶ୍ଚିତି ।୨୩୦
ଅରେମାନେ ଏ କଥା କେ ନ କରେ ସ୍ମରଣ
କପରି ହେବ ଭାରତେ ଜାତୀୟ ଜୀବନ ।୨୩୧
ଦେଶଦ୍ରୋହୀ·ଦେଇ ଯେବେ କେ ବକ୍ତୃତା କରେ
ଶ୍ରୋତାଗଣ ଅବାକ ହୋଇଣ ଶୁଣେ ଧୀରେ ।
ଆଳସ୍ୟ ଜଡ଼ତା ଘୋଟି ରହିଛି ଦେଶରେ
ମତାନ୍ତର ମନାନ୍ତର ଲୀଳାଖେଳା କରେ ।୨୩୩
କେ କାହା ମୁହଁକୁ ଚାହିଁ କଥା ନ କହଇ
କହିଲେ ପେଟ ଭିତରେ ଆନ ଭାବୁଥାଇ ।୨୩୪
ଯାବତ୍ ଏ ଭେଦଭାବ ଭାରତୁ ନ ଯିବ
ଭାରତୀୟ ଏକଜାତି ଭାବ ନ ହୋଇବ । ୨୩୫

ସାନ ବଡ଼ ସର୍ବେ ଆମ୍ଭେ ଭାରତ ସନ୍ତାନ
ଭାରତ ହିତରେ ଆମ୍ଭେ ଦେଇପାରୁ ପ୍ରାଣ ।
ଥିଲେ ଥାଉପଛେ ମତାନ୍ତର ମନାନ୍ତର
ଭାରତ ହିତ ସୂତ୍ରରେ ବନ୍ଧନ ନକର । ୨୩୭
ଏହାକୁ ବୋଲନ୍ତି ସିନା ଜାତୀୟ ଜୀବନ
ଏ ଭାବପ୍ରତି କାହାର ନାହିଁ ତିଳେ ଧ୍ୟାନ ।୨୩୮
ଯେ ଯାହା ନିଜ ସ୍ୱାର୍ଥିରେ ସଦା କର୍ମ କରେ
ଭାରତର ହିତଚିନ୍ତା କେ ତିଳେ ନ କରେ ।
ଗାନ୍ଧି ଯେଉଁ ହିତବାଣୀ କହୁଛନ୍ତି ଏତେ
ଏ କାନେ ପଶି ସେ କାନେ ଯାଉଅଛି ନିତ୍ୟେ ।
ସେ ଚୁମ୍ବକ ଯାର ହୃଦେ ପାଇନାହିଁ ସ୍ଥାନ
ସେ ବାଣୀ ଶୁଣିବାପାଇଁ ନ ଦେବ ସେ ଧ୍ୟାନ ।
ଆହେ ମହାପ୍ରଭୁ ତବ କରୁଣା ତଡ଼ିତ
ଦିଅ ଫେରାଇ ସକଳ ହୃଦରେ ଭରିତ ।୨୪୨
ଦେଶାତ୍ମବୋଧ ଶକତ ଜାଗିଉଠୁ ଖରେ
ଜାତୀୟ ଜୀବନ ଜାଗୁ ସକଳ ହୃଦରେ । ୨୪୩
ସ୍ୱଦେଶ ପ୍ରେମରେ ସର୍ବେ ହୋଇ ମତ୍ତଭୋଳ
କର୍ମକ୍ଷେତ୍ରେ କର୍ମୀ ହୋଇ ଲଭନ୍ତୁ ମଙ୍ଗଳ ।
ବୋଲେ ଦୀନ ଜଗବନ୍ଧୁ ହେ ଜଗତନାଥ
ଜଗତ ମଙ୍ଗଳ ମୋର କାମନା ସତତ । ୨୪୫
ତବ ଜଗତ ମଙ୍ଗଳ କର ହେ ବିଧାନ
ଶାନ୍ତିରେ କାଳ କାଟନ୍ତୁ ଏ ଭାରତ ଜନ ।୨୪୬

ଇତି ଶ୍ରୀ ଭାରତ-ଚରିତାମୃତେ ପୃଥ୍ୱୀରାଜ ଚରିତ ବର୍ଣ୍ଣନେ ସପ୍ତାନବେ ଅଧ୍ୟାୟଃ ।



# ଅଠାନବେ ଅଧ୍ୟାୟ

ଅପୂର୍ବ ଚରିତ ଏବେ ଶୁଣ ହେ ସୁଜନ
ବିଷମ ସମସ୍ୟା ଏଠି ହୋଇଲା ପୂରଣ । ୧
ବହୁକାଳ ହେଲା ଗାନ୍ଧି କରୁଛନ୍ତି ଧ୍ୟାନ
ଏକମେଳ ହୋଇବେ ଯେ ହିନ୍ଦୁ ମୁସଲମାନ । ୨
ଦୁହେଁ ମିଳିମିଶି ଯେବେ ଧାବ ନ କରିବେ
ସ୍ୱାଧୀନତା ଭାରତ ପାଇବ ନାହିଁ କେବେ । ୩
ବିଲାତ ମନ୍ତ୍ରୀ କହିଲେ ଏହି ଦୋହି ଦେଇ
ଗାନ୍ଧିଙ୍କର ସବୁ ଯୁକ୍ତି କାଟିଦେଲେ ସେହି । ୪
ହିନ୍ଦୁ ମୁସଲମାନ ଏକମତ ନ ହୋଇଲେ
ଶାସନ ସଂସ୍କାର ହୋଇ ନ ପାରିବ ହେଲେ । ୫
ଏହା କହିଦେଇ ଜେଟଲାଣ୍ଡ ତୁନି ହେଲେ
ନିଜଦେଶ ଯୁଦ୍ଧ ଆୟୋଜନରେ ଲାଗିଲେ । ୬
ଏଣେ ଭାରତରେ ଗାନ୍ଧି କଲେକ ବିଚାର
ଜହରଲାଲଙ୍କୁ ଦିଆଗଲା ସବୁ ଭାର । ୭
ମୁସଲମାନ ସଭାର ସେନାପତି ଜିନା
ସେ ରାଜି ହୋଇଲେ କଥା ତୁଣ୍ଡିଯିବ ସିନା । ୮
ଜହରଲାଲ ତାହାଙ୍କ ସଙ୍ଗେ କଥାହେଲେ
କପଟ ମିଳନ ହେବବୋଲି ପଚାରିଲେ । ୯

ଜହରଲାଲ ଉବାଚ

ବୁଝି ଭାଇ ଜିନା ଏହି ସଙ୍କଟ ସମୟ
ଦୁଇ ଜାତି ନ ମିଳିଲେ ହେବ ପରାଜୟ । ୧୦
ଏହି କଥାମୂଳେ ସରକାର ଟାଳ ଦେଲେ
ସ୍ୱରାଜ୍ୟ ମିଳିବନାହିଁ ଦୁହେଁ ନ ମିଳିଲେ । ୧୧
ତୁମ୍ଭ ଆମ୍ଭ ମତଭେଦ ଅଟେ ଘରକଥା
ଏ କଥା ମୀମାଂସା ପାଇଁ କିମ୍ପା ଘୂରେ ମଥା ।

ଆଗେ ସ୍ୱାଧୀନତା ଧନ ହାସଲ କରିବା
ପରେ କିଏ କି ପାଇବ ବିଚାର କରିବା । ୧୩
ଦୁଇଜାତି ପ୍ରତିନିଧି ବୈଠକ ହେବ
ସେଠାରେ ସକଳ ପ୍ରଶ୍ନ ମୀମାଂସା ହୋଇବ ।୧୪
ତୁମ୍ଭ ନ୍ୟାଯ୍ୟ ଦାବି ତୁମ୍ଭେ ଅବଶ୍ୟ ପାଇବ
ଏଥିରେ କାହାରି ଦୁଇମତ ନ ହୋଇବ । ୧୫
ଯାବତ ସୁବିଧା ତୁମ୍ଭପାଇଁ କରାଯିବ
ପ୍ରତିନିଧି ବୈଠକ ନିଷ୍ପତ୍ତି କରିବ । ୧୬
ଯେବେ ତୁମ୍ଭେ ଆମ୍ଭେ ଏକମତ ହୋଇଯିବା
ଦେଖାଯିବ କିପରି ସ୍ୱାଧୀନ ନ ହୋଇବା ।୧୭
ସବୁ ଶ୍ରମ ପଣ୍ଡହେବ ମିଳନ ନ ହେଲେ
ତେଣୁ କହୁଛି ବିଚାର କର ଏହା ଭଲେ ।୧୮
ସ୍ୱରାଜ୍ୟ ମିଳିଲେ ସିନା ଏ ସବୁ ବିଚାର
ନ ମିଳୁ କିମ୍ପାଇଁ କର ଏତେ ଗଣ୍ଡଗୋଳ ।୧୯
ସ୍ୱରାଜ୍ୟ ମିଳିଲେ ପ୍ରତିନିଧି ସଭା ହେବ
ଶାସନ ଖସଡ଼ା ତେତେବେଳେ କରାହେବ ।୨୦
ଯେପରି କଲେ ସକଳ ସୁବିଧା ହୋଇବ
ସେପରି ବିଧି ବିଧାନମାନ ଖଞ୍ଜାଯିବ । ୨୧

ଜିନା ଉବାଚ

ଏ କଥାରେ ଏକମତ ହେଉନାହିଁ ମୁହିଁ
ତବ ମତ ସଙ୍ଗେ ମୋର ମତ ମିଳୁନାହିଁ ।୨୨
କଂଗ୍ରେସଠାରେ ଆମ୍ଭର ନାହିଁକ ବିଶ୍ୱାସ
ସର୍ବନାଶ କରିଅଛି ଆମ୍ଭର କଂଗ୍ରେସ । ୨୩
କଂଗ୍ରେସ ମନ୍ତ୍ରୀମଣ୍ଡଳ ଯେ ଶାସନ କଲେ
ମୁସଲମାନଙ୍କୁ ସୁଦୃଷ୍ଟିରେ ନ ଦେଖିଲେ ।୨୪
ସେମାନଙ୍କ ପ୍ରତି କଲେ ନାନା ଅବିଚାର
କୁ ନାଯ୍ୟ ଭାଗ ନ ଦେଲେ ଆବର ।

ଭାରତ ଯେବେ ସ୍ୱାଧୀନ ସାମ୍ରାଜ୍ୟ ହୋଇବ
ମୁସଲମାନଙ୍କ ଦାବି ଅକ୍ଷୂନ୍ନ ରହିବ । ୨୭
ମୁସଲମାନଙ୍କ ଭାଗ କେତେ ସେ ପାଇବେ
ଏ କଥା ଆଗେ ନିଷ୍ପତ୍ତି ନ ହୋଇବ ଯେବେ ।
କଂଗ୍ରେସ ସହିତ ଆମ୍ଭେ ଯୋଗ ଦେବୁନାହିଁ
ମୁସଲମାନ ପକ୍ଷରୁ କହୁଅଛୁ ମୁହିଁ । ୨୮
ଗାନ୍ଧି ଜହରଲାଲଙ୍କ ସଙ୍ଗେ କଥା ହେଲି
ସେମାନଙ୍କ କଥାରେ ମୋ ମନ ନ ମାନିଲା ।୨୯
ସଂଖ୍ୟାନ୍ୟୂନ ଜାତି ଦାବି ମୀମାଂସା ନ ହେଲେ
କଂଗ୍ରେସ ଦାବିରେ ମତ ଦେବୁ ନାହିଁ ଭଲେ ।
ଇଂରେଜ ସରକାରର କର୍ତ୍ତବ୍ୟ ନିକର
ଆମ୍ଭ ଦାବି ପ୍ରଥମରେ କରନ୍ତୁ ବିଚାର । ୩୧
ଯାବତ ଆମ୍ଭର ଦାବି ମୀମାଂସା ନ ହେବ
ତାବତ ଭାରତ ସ୍ୱାଧୀନତା ନ ପାଇବ । ୩୨
ଆଗେ ସକଳ ସୁବିଧା କର ଆମ୍ଭପାଇଁ
ପଛକେ ବିଚାରକର ଆନ କଥା ଯାଇ । ୩୩

ଗାନ୍ଧି ଉବାଚ

ଜିନାଙ୍କ ବଚନ ଶୁଣି ଗାନ୍ଧିଜୀ ବୋଇଲେ
ପ୍ରକୃତ କଥା ତ ତୁମ୍ଭେ ନ ବୁଝିଲ ଭଲେ ।୩୪
କଂଗ୍ରେସର ଦାବି ଅଟେ ଅତ୍ୟନ୍ତ ଉଦାର
ସମଗ୍ର ଭାରତ ପାଇଁ କହୁଛୁ ନିକର । ୩୫
ଭାରତରେ ଯେତେ ଜାତି ବାସ କରୁଛନ୍ତି
କଂଗ୍ରେସ ସବୁରିପାଇଁ ସ୍ୱରାଜ୍ୟ ଚାହାନ୍ତି । ୩୬
ଭାରତ ସ୍ୱାଧୀନ ହେଉ କିଏ ନ ଚାହୁଁଛି
ଭାରତେ ଏପରି ଜଣେ ଥିବା ନ ଦେଖୁଛି ।୩୭
ଭାରତବାସୀ ମାନେ ସ୍ୱରାଜ୍ୟ ଚାହାନ୍ତି
ହିନ୍ଦୁ ମୁସଲମାନ ଆଦି ଯେ କେହି ଅଛନ୍ତି ।୩୮

ଏ ବିଷୟେ ସମ୍ପ୍ରଦାୟ ଭେଦ କିଛି ନାହିଁ
ଏ ବିଷୟେ ଏକମତ ନ ହୁଅ କମ୍ପାଇ । ୩୯
ସ୍ୱରାଜ୍ୟ ମିଳିଲେ ପଛେ ଭାଗ ବଣ୍ଟାଯିବ
ମୁସଲମାନଙ୍କ ଦାବି ବିଚାର ହୋଇବ । ୪୦
ସାତ କୋଟି ମୁସଲମାନ ଭାରତେ ଅଛନ୍ତି
ସଂଖ୍ୟାନ୍ୟୂନ ଜାତି ମଧ୍ୟେ ପ୍ରଥମ ଅଟନ୍ତି । ୪୧
ସେମାନଙ୍କ ଦାବି ଅଗ୍ରେ ହୋଇବ ବିଚାର
ନିର୍ଭର ଜବାବ ମୁହିଁ ଦେଉଛି ନିକର । ୪୨
ଯେପରି ସୁବିଧା ହେବ ତୁମ୍ଭମାନଙ୍କର
ପ୍ରତିନିଧି ବଇଠକେ ସବୁ ହେବ ସାର । ୪୩
ଶାସନ ଖସଡ଼ା ଆମ୍ଭେମାନେ କରିବେଳେ
ମିଳିମିଶି ସିଦ୍ଧାନ୍ତ କରିବା ଚେତେବେଳେ ।୪୪
ଏ ତ ଆମ୍ଭ ଘରକଥା ଘରେ ତୁଟିଯିବ
ଏଥିପାଇଁ କଥାଁ କମ୍ପା ଦାଣ୍ଡରେ ପଡ଼ିବ । ୪୫
ସରକାର କାହିଁପାଇଁ ଏ କଥା ବୁଝିବେ
ଏହି କାରଣରୁ କମ୍ପା ସ୍ୱରାଜ୍ୟ ନ ଦେବେ ।୪୬
ସଂଖ୍ୟାନ୍ୟୂନ ଜାତି କଥା ଉଠୁଛି କମ୍ପାଇ
ସରକାର ଦେଉଛନ୍ତି କମ୍ପା ଏହି ଦୋହି । ୪୭
ହେ ଇଂରେଜ ସରକାର ସଫାକରି କହ
ଭାରତ ସ୍ୱାଧୀନ ହେବଟିକି ହେ ନିଶ୍ଚୟ । ୪୮
ଯେଉଁ ଉଦ୍ଦେଶ୍ୟରେ ଯୁଦ୍ଧ କରୁଛ ଦେଶରେ
ସେ ଉଦ୍ଦେଶ୍ୟ ପାଳିବଟି ଆମ୍ଭ ଭାରତରେ ।୪୯
ସଂଖ୍ୟାନ୍ୟୂନ ସ୍ୱାର୍ଥ କଥା ଉଠାଅ କମ୍ପାଇ
ମୂଳକଥା ସଙ୍ଗେ ତ ଏଥିର କିଛି ନାହିଁ । ୫୦
ଭାରତ ସ୍ୱାଧୀନ ହେବ ଆଗେ କହିଦିଅ
ପରେ ଏ ସବୁ ନିଷ୍ପତ୍ତି ହୋଇବ ନିଶ୍ଚୟ । ୫୧
ଆମ୍ଭଘରେ ବସି ଆମ୍ଭେ ଏହା ତୁଟାଇବୁ
ଶାସନ ଖସଡ଼ାବେଳେ ବିଚାର କରିବୁ । ୫୨

ପ୍ରତିନିଧି ବଇଠକେ ଏ କଥା ପଡ଼ିବ
ତୁମ୍ଭେ ବାଧା ନ ଦେଲେ ଏ ଦଣ୍ଡକେ ତୁଟିବ
ମୁସଲମାନଙ୍କ ସଙ୍ଗେ ମିଳାମିଶା ପାଇଁ
ଦ୍ୱାର ଉନ୍ମୁକ୍ତ ରହିଛି ଚିନ୍ତା କାହିଁପାଇଁ । ୫୪
ଆଶା ଅଛି ମୋର ଏହା ଅବଶ୍ୟ ତୁଟିବ
ଯେ ଯାହା ସନ୍ତୋଷଭଳ ସବୁ କରାଯିବ । ୫୫
ସକଳ ଗୋଷ୍ଠିରୁ ପ୍ରତିନିଧି ବଛା ହେବ
ମୁସଲମାନଙ୍କ ପ୍ରତିନିଧି ମଧ୍ୟ ଥିବ । ୫୬
ଶାସନ ଖସଡ଼ା ଏହି ସଭା ଗଢ଼ିଦେବ
ଯେ ଯାହାର ନ୍ୟାଯ୍ୟ ଦାବି ସେ ନିଶ୍ଚେ ପାଇବ ।
ଆହେ ସରକାର କିଛି ସଂଶୟ ନ କର
କିଛିମାତ୍ର ଗଣ୍ଡଗୋଳ ନ ହେବ ନିକର । ୫୮
ଏହିପରି ପରିସ୍ଥିତି ରହିଥିବା ବେଳେ
ଜିନା ଏକ ଘୋଷଣା ଭାରତେ ଜାରିକଲେ ।୫୯

ଜିନା ଉବାଚ

କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଲେ ଆଜ୍ଞାହେଲା
ତାଙ୍କ ଶାସନରୁ ଲୋକ ମୁକତି ଲଭିଲା । ୬୦
କେତେଦିନ ରହି କଲେ ଯେତେ ଅତ୍ୟାଚାର
ପାଶୋର ନ ଯିବ ମନୁ ଜାଣ ହେ ନିକର ।୬୧
ଊନବିଂଶ ଊନଚାଳିଶ ଯେ ସାଲ ଜାଣ
ଡିସେମ୍ବର ମାସର ଦ୍ୱାବିଂଶ ଦିନ ଘେନ । ୬୨
ଏ ଦିନକୁ ପାଳ ସର୍ବେ ମୁକତି ଦିବସ
କଂଗ୍ରେସ କବଳୁ ରକ୍ଷାପାଇ ହେଲୁ ତୋଷ ।
ଏହି ମରମରେ ସେହି ଦିନକୁ ପାଳିବ
ସ୍ଥାନେ ସ୍ଥାନେ ସଭା କରି ଆନନ୍ଦିତ ହେବ ।୬୪
ହେ ମୁସଲମାନ ଭାଇ ଏ ଦିବସ ପାଳି
ମୁକ୍ତି ଦିବସରେ ହୁଅ ଆନନ୍ଦରେ ଭୋଳ ।୬୫

ଏ ଘୋଷଣା ଶୁଣିଆଜେ ପ୍ରଚାର ଲଭିଲା
ଏହା ଶୁଣି ଭାରତରେ ଚହଳ ପଡ଼ିଲା । ୬୬
ଯେ ଏହା ଶୁଣିଲା ସେହୁ ହୋଇଲା ଅବାକ
ମିଳନ ବିଚାରବେଳେ ପଡ଼ିଲା ଚଡ଼କ । ୬୭
ବଙ୍ଗଳାର ପ୍ରାନ୍ତମନ୍ତ୍ରୀ ଫଜଲୁଲ ହକ୍
ସେ ବୋଇଲେ ଜିନା ଭାଇ କହିଦେଲେ ହକ ।
ସେ ବୋଇଲେ ଜିନା ଭାଇ ଯେ କଥା କହିଲେ
ତାଙ୍କସଙ୍ଗେ ସେହୁ ପୂର୍ଣ୍ଣ ଏକମତ ହେଲେ ।୬୯
ମନକଥା ପରସ୍ପର ମିଶାଇ କହିଲେ
ସେ କଥାରେ ମିଛ କିଛିମାତ୍ର ନାହିଁ ବୋଲେ ।୭୦
ଆଉ କେତେ ମୁସଲମାନ ନିନ୍ଦାବାଦ କଲେ
ଜିନାଙ୍କ କଥାକୁ କେହି ପସନ୍ଦ ନ କଲେ ।୭୧
ସେମାନେବୋଇଲେ ଜିନା ଯେ ଘୋଷଣାକଲେ
ଗୋଷ୍ଠି ବିବାଦ ଏଥିରେ ବଢ଼ିପାରେ ହେଲେ ।
ଏତେବେଳେ ଏପରି କରିବା ଅନୁଚିତ
ସ୍ୱରାଜ୍ୟ ଲାଭ ପଥରେ କଣ୍ଟକ ନିଶ୍ଚିତ । ୭୩
ଲକ୍ଷ ଲକ୍ଷ ମୁସଲମାନ ପ୍ରତିବାଦ କଲେ
ଜିନାଙ୍କ କଥାକୁ ଆମ୍ଭେ ମାନୁନାହିଁ ବୋଲେ ।୭୪
ସମଗ୍ର ମୁସଲମାନ ପକ୍ଷରୁ ନକର
ଜିନାଙ୍କର କହିବାର ନାହିଁ ଅଧିକାର । ୭୫
ଜହରଲାଲ ବୋଇଲେ ଆଚ୍ଛା କଥା ହେଲା
ମିଳାମିଶା କଥାବେଳେ ଏ ନୃତ୍ୟ ଲାଗିଲା ।୭୬
ଜିନାଙ୍କର ମତିଗତି ଯେପରି ଦେଖୁଛି
ଅତି ଅସୁନ୍ଦର କଥା ମତେ ଏ ଲାଗୁଛି । ୭୭
ଥିଲା ମିଳାମିଶା କଥା ହେବ ଆଲୋଚନା
ଏତେବେଳେ ଯେଉଁ ରୂପ ଦେଖାଇଲେ ଜିନା ।
ଅଯଥା କଂଗ୍ରେସ ନିନ୍ଦା କରୁଛନ୍ତି ସେହି
କେଉଁ ମୁହେଁ ମିଳାମିଶା କଥା କହିବେ ଁ ।୭୯

ଯେବେ ମୁଁ ଯାଇ ତାହାଙ୍କୁ ସେ କଥା କହିବି
କଂଗ୍ରେସ ମାନ ମହତ୍ତ୍ୱ ତଳେ ପକାଇବି । ୮୦
ଗାନ୍ଧିଜୀ ଜିନାଙ୍କ କଥା ପସନ୍ଦ ନ କଲେ
ଏ ମତଗତ ଦେଖି ସେ ବିସ୍ମିତ ହୋଇଲେ ।୮୧
କେତେ ହିନ୍ଦୁ କେତେ ମୁସଲମାନ ନିନ୍ଦୁଛନ୍ତି
ଜିନା ଏ କଥାମାନଙ୍କୁ କାନ ନ ଦିଅନ୍ତି । ୮୨
ବୋଲନ୍ତି ସେ ଯାହା କହୁଛନ୍ତି ସବୁ ସତ
କଂଗ୍ରେସ ଶାସନେ ଦୋଷ ଅଛି ତ ବହୁତ ।୮୩
ଗୋଟି ଗୋଟି କରି ଅଭିଯୋଗ ଅଛି ଯେତେ
ପ୍ରମାଣ କରିପାରିବି ଦୃଷ୍ଟାନ୍ତ ସହିତେ । ୮୪
ବ୍ରିଟିଶରାଜା ବସାନ୍ତୁ ଏକ ପଞ୍ଚାୟତ
ତାଙ୍କ ଆଗେ ସବୁକଥା ପକାଅ ନିୟତ । ୮୫
ସେମାନେ ବିଚାର କରି ଯାହା ଦେବେ ମତ
ଜଣାଯିବ କେତେ ମିଛ ଅବା କେତେ ସତ ।
ଜହରଲାଲ କହିଲେ ଏ କଥା ନ ହେବ
ଯେପରି ପଞ୍ଚାୟତକୁ କଂଗ୍ରେସ ନ ଯିବ । ୮୭
କଂଗ୍ରେସକୁ ପଣ୍ଡ କରିବାକୁ ଏ ବିଚାର
ସରକାର ସଙ୍ଗେ ସେହି ଲଢ଼ୁଛି ନିକର । ୮୮
ତେଣୁ ସରକାରୀ ପଞ୍ଚାୟତ ହେବନାହିଁ
ପୃଥିବୀ ଜାତିସଂଘକୁ ମାନିପାରେ ମୁହିଁ । ୮୯
ଚାଲ ଜାତିସଂଘ ଆଗେ କଥା ପକାଇବା
ସେ ଯାହା କହିବେ ସେହି କଥାକୁ ମାନିବା ।୯୦
ହେଗ ସହରରେ ଅଛି ବିଚାର ମନ୍ଦିର
ସେଠାକୁ ଗଲେ ଆପତ୍ତି ହେବନାହିଁ କାର ।୯୧
ଏହିପରି ଲୀଳା ଲାଗିଅଛି ଭାରତରେ
ପାର୍ଲିଆମେଣ୍ଟର ବଇଠକ ବିଲାତରେ । ୯୨
ସେଠାରେ ଭାରତ କଥା ଆଲୋଚନାବେଳେ
ଭାରତ 'ମନ୍ତ୍ରୀ ସେଠାରେ ଏମନ୍ତ ଭାଷିଲେ ।୯୩

## ଭାରତମନ୍ତ୍ରୀ ଜେଟ୍‌ଲଣ୍ଡ ଉବାଚ

ଭାରତବାସୀ କାହିଁକି କରୁଛ ସନ୍ଦେହ
ଉପନିବେଶ ଶାସନ ପାଇବ ନିଶ୍ଚୟ । ୯୪
ଇଂରେଜ ସରକାରର ଏ ଉଦ୍ଦେଶ୍ୟ ଅଛି
ଏହି କଥା ବାରମ୍ବାର ପ୍ରକାଶ ହେଉଛି । ୯୫
ଯୁଦ୍ଧ ଶେଷେ ଏହି କଥା ହୋଇବ ବିଚାର
ଏଥିରେ ଭାରତବାସୀ ସଂଶୟ ନ କର । ୯୬
କିନ୍ତୁ ଏ କଥା ହେବାରେ ବାଧା ଏକ ଅଛି
ସଂଖ୍ୟାନ୍ୟୂନ ଗୋଷ୍ଠି ଦାବି ତୁଟିନାହିଁ କିଛି ।
ମୁସଲମାନଙ୍କ ସଂଖ୍ୟା ନୁହେଁ ଅତି ନ୍ୟୂନ
ସାତ କୋଟି ଲୋକ ସେହୁ ଏହା ଭଲେ ଜାଣ ।
ଶତ ଶତ ବର୍ଷଧରି ଥିଲେ ସେ ଶାସକ
ପ୍ରାଚୀନ ଇତିହାସରେ ଅଛି ତାଙ୍କ ଟେକ ।୯୯
ସମର ବିଦ୍ୟାରେ ଥିଲା ଦକ୍ଷତା ତାଙ୍କର
ସାମରିକ ଜାତି ସେହୁ ଥିଲେକ ନିକର ।୧୦୦
ବର୍ତ୍ତମାନ ଆମ୍ଭ ସୈନ୍ୟବିଭାଗରେ ଜାଣ
ମୁସଲମାନ ଅଛନ୍ତି ଅନେକ ପ୍ରମାଣ । ୧୦୧
ଏମନ୍ତ ଗୋଟିଏ ଗୋଷ୍ଠି ଅଟେ ମୁସଲମାନ
ସେମାନଙ୍କ ସଙ୍ଗେ ଯେବେ ନ ହେବ ମିଳନ ।
ତେବେ ଏ ପ୍ରଶ୍ନ କପରି ମୀମାଂସା ହୋଇବ
ସରକାର ଏ ମିଳନ କରି ନ ପାରିବ । ୧୦୩
ହିନ୍ଦୁ ମୁସଲମାନ ଦୁହେଁ ଆପଣା ଭିତରେ
ଏ କଥା ଆଗ ନିଷ୍ପତ୍ତି କର ଆଗେ ଘରେ ।
ଦୁହେଁ ମିଳିମିଶି ଯେବେ ଦାବି କରିପାର
ଅବଶ୍ୟ ହେବ ତହିଁର ଉଚିତ ବିଚାର । ୧୦୫
ଯାବତ ଏ ମିଳାମିଶା ହୋଇ ନ ପାରିବ
ତାବତ କଂଗ୍ରେସ ଦାବି ନିଷ୍ପତ୍ତି ନ ହେବ ।

କିନ୍ତୁ ଜିନାଙ୍କ ଘୋଷଣା ନୁହଇ ଉଚିତ
ଜଣା ଯାଉନାହିଁ ମତେ ଏହା ଯୁକ୍ତିଯୁକ୍ତ ।୧୦୭
ମୁକ୍ତିଦିବସ ପାଳନ କଥା ଯା କହିଲେ
ମୋତେ ଏ କଥା ପସନ୍ଦ ଦିଶୁନାହିଁ ତିଳେ ।
ଏହି ବାଣୀ ଶୁଣାଇଲେ ମନ୍ତ୍ରୀ ବିଲାତରେ
ସେ କଥା ପ୍ରକାଶହେଲା ଆସି ଭାରତରେ ।୧୦୯
ଜହରଲାଲ ପ୍ରଭୃତି ଏ କଥା ଶୁଣିଲେ
ଏ ବାଣୀରେ ନୂଆ ଆଶା କିଛି ନ ପାଇଲେ ।

## ଜହରଲାଲ ଉବାଚ

ଭାରତମନ୍ତ୍ରୀ ଯେ କଥା ବିଲାତେ କହିଲେ
ପସନ୍ଦ ଲାଗିଲାନାହିଁ ମୋତେ ତିଳେହେଲେ ।
ମୂଳ ପ୍ରଶ୍ନ କଥା ସଫା ଫିଟାଇ ନ କହି
ସେହି ଗୋଳିଆ ଭାବରେ ଗଲେ ସବୁ କହି ।
ଅସଲ ପ୍ରଶ୍ନର କିଛି ନ ଦେଲେ ଉତ୍ତର
ଗୋଷ୍ଠି ବିବାଦ କଥାକୁ କଲେ ସେହୁ ସାର ।
ଯାବତ ଏହି ଉତ୍ତର ସେହୁ ଦେଉଥିବେ
ତାବତ ଏ ମିଳାମିଶା ନ ହୋଇବ କେବେ ।
ମୁସଲମାନଙ୍କ କଥା ଯେପରି କହିଲେ
ସେ କଥା ଶୁଣିଣ ଜିନା ଆହୁରି ଫୁଲିଲେ ।୧୧୫
ଏଥିରେ ଗୋଷ୍ଠି ବିବାଦ ତୁଟି ନ ପାରିବ
ବୃଦ୍ଧି ହେବାର ଅଟଇ ଅଧିକ ସମ୍ଭବ । ୧୧୬
ଭାରତ ସ୍ୱାଧୀନ ହେବ ଯଦି କହିଦେବ
ଏ ସବୁ ବିବାଦ ଅବିଳମ୍ବେ ତୁଟିଯିବ । ୧୧୭
ବାରବାର ଏହି କଥା କୁହା ଯାଉଅଛି
ତହିଁର ଉତ୍ତର ସଫାହୋଇ ନ ମିଳୁଛି । ୧୧୮
ଭାରତ ଲୋକେ ଶାସନ ଖସଡ଼ା ଗଢ଼ିବେ
ନିଜେ ସେମାନେ ତାଙ୍କର ବିଧାତା ହୋଇବେ ।

ଏ କଥାକୁ ସରକାର କଲେ ସ୍ୱୀକାର
ସକଳ ବିବାଦ ତୁଟି ପାରିବ ସତ୍ୱର । ୧୨୦
ଶାସନ ଯନ୍ତ୍ର ଯାବତ ତୁମ୍ଭ ହସ୍ତ ଥିବ
ତାବତ ଏ ଗୋଷ୍ଠି ପ୍ରଶ୍ନ ମୀମାଂସା ନ ହେବ ।
ଜହରଲାଲ ଏପରି ମତ ପ୍ରକାଶିଲେ
ଆଉ ଆଉ ନେତୃବୃନ୍ଦ ଏକମତ ହେଲେ ।୧୨୨
ରାଜଗୋପାଳଆଚାରି, ରାଜେନ୍ଦ୍ର ପ୍ରସାଦ
ପଟେଲ, ଗାନ୍ଧିଜୀ ଆଦି ଲଭିଲେ ବିଷାଦ ।୧୨୩
ସକଳେ ମନ୍ତ୍ରୀଙ୍କ ବାଣୀ ଆଲୋଚନା କଲେ
ଭିନ୍ନଭିନ୍ନ କରି ନିଜ ମତ ପ୍ରକାଶିଲେ । ୧୨୪
ମନ୍ତ୍ରୀଙ୍କ ବାଣୀକି କେହି ନ କଲେ ପସନ୍ଦ
ସକଳେ ଏ ବାଣୀ ଶୁଣି ହେଲେ ନିରାନନ୍ଦ ।୧୨୫
ସକଳେ ବୋଇଲେ ସରକାର ଇଚ୍ଛାକଲେ
ଏ ବିବାଦ ନିଷ୍ପତ୍ତି ହୋଇବ ଅବହେଳେ ।୧୨୬
ଗାନ୍ଧି ଯେଉଁ ପ୍ରସ୍ତାବ ଆଗତ କରିଥିଲେ
ସେ ତ ଅବିକଳ ସେହିକଥା କହିଥିଲେ ।୧୨୭
ପ୍ରଭେଦ ମଧ୍ୟରେ ଅଛି ଏତିକମାତର
କେଉଁକଥା ଆଗ କିଏ ପଛ ବା ନିକର ।୧୨୮
ଗାନ୍ଧି ବୋଲନ୍ତି ପ୍ରଥମେ ମାତ୍ର କଥା କହି
ଭାରତ ପୂର୍ଣ୍ଣ ସ୍ୱରାଜ୍ୟ ପାଇବ ନିଶ୍ଚୟ । ୧୨୯
ସ୍ୱରାଜ୍ୟର ଶାସନ ଖସଡ଼ା ହେଲାବେଳେ
ସଂଖ୍ୟାନ୍ୟୁନଙ୍କ କଥା ଶୁଣିବ ସେ କାଳେ ।୧୩୦
ସେମାନେ ଯେପରି କଲେ ସନ୍ତୁଷ୍ଟ ହୋଇବେ
ସେପରି ବିଧିବିଧାନମାନ ଖଞ୍ଜି ଦେବେ । ୧୩୧
ଭାରତ ମନ୍ତ୍ରୀ ବୋଲନ୍ତି ସେ କଥା ନ ହେବ
ଆଗେ ସଂଖ୍ୟାନ୍ୟୁନଙ୍କ ଆପତ୍ତି ମେଣ୍ଟିବ ।୧୩୨
ସବୁ ଗୋଷ୍ଠି ମିଳି ଦାବି କରିବ ଯେ କାଳେ
ସ୍ୱରାଜ୍ୟ ମାତ୍ର ଘୋଷଣା ହେବ ତେତେବେଳେ ।

ମିଳାମିଶା ପଥରେ କଣ୍ଟକ ଅଟେ ଜିନା
ମିଳାମିଶା ହେବ ସେହୁ ରାଜିହେଲେ ସିନା ।
କଉଁଣସି କଥାରେ ସେ ରାଜିହେଲେ ନାହିଁ
ଓଲଟି ଘୋଷଣା କଲେ ମୁକ୍ତିଦିନ ପାଇଁ । ୧୩୫
ଏବେ ପୁଣି କଲେ ସେହୁ ଆଉରେକ ଫିକର
କଂଗ୍ରେସ ବିରୋଧି ଯେହୁ ଏ ଦିନକୁ ପାଳ ।୧୩୬
ହିନ୍ଦୁ ମୁସଲମାନ ଯେତେ କଂଗ୍ରେସ ବିପକ୍ଷ
ମୁକ୍ତିଦିବସ ପାଳନ ହେଉ ତାଙ୍କ ଲକ୍ଷ୍ୟ । ୧୩୭
କଂଗ୍ରେସ ଶାସନେ ଯେହୁ ଥିଲ ଅସନ୍ତୁଷ୍ଟ
ଏବେ ମନ୍ତ୍ରୀମାନେ ଗଲେ ହୁଅ ସର୍ବେ ତୁଷ୍ଟ ।
ଜାତି ବର୍ଣ୍ଣ ନିର୍ବିଶେଷେ ପାଳ ଏ ଦିବସ
ଆଜ୍ଞାହେଲ କଂଗ୍ରେସ ଶାସନ ହେଲ ଧ୍ୱଂସ ।
ଏହି ମନୋଭାବ ଜିନା ଯାହା ପ୍ରକାଶିଲେ
ମିଳନପଥରେ ଏକ କଣ୍ଟକ ହୋଇଲେ ।୧୪୦
ଏହି ପରିସ୍ଥିତି ହୋଇଅଛି ଭାରତରେ
ସକଳେ ଲାଗିଅଛନ୍ତି ଏ ବାକ୍ୟଯୁଦ୍ଧରେ । ୧୪୧
କଥାଅଛି କଥା କହି ଜାଣିଲେ ସୁନ୍ଦର
କର୍ଣ୍ଣରେ ଶୁଣିବାପାଇଁ ଲାଗଇ ମଧୁର । ୧୪୨
ରାଜନୀତି କଥା ଅଟେ ଅତି ଚମତ୍କାର
ବାହ୍ୟ ଆବରଣ ତାର ଅତି ମନୋହର ।୧୪୩
ବହୁଳ ବକ୍ରଭାବରେ ଶବଦ ଖଞ୍ଜିବ
ପ୍ରତି ଶବଦର ଦୁଇ ଦୁଇ ଅର୍ଥ ଥିବ । ୧୪୪
ଶ୍ରୋତା ବୁଝିବାକୁ ଅର୍ଥ ଏକ ପରକାର
ବକ୍ତା ଆନଭାବ ମନେ ପୋଷଇ ନିକର ।୧୪୫
ଯେତେବେଳେ ଯେଉଁ ଅର୍ଥ ଆବଶ୍ୟକ ହେବ
ତେତେବେଳେ ସେହିପରି ଅର୍ଥ କରାଯିବ ।୧୪୬
ସରଳ ଭାବରେ ସତ୍ୟ କେବେ ନ କହିବ
ମଧୁର ବଚନ କହି ସଦା ତୋଷୁଥିବ । ୧୪୭

ଅପ୍ରିୟ ଭାଷାରେ କେବେ କଥା ନ କହିବ
ସତ୍ୟକୁ ଗୋପନ ରଖି କଥା କହୁଥିବ । ୧୪୮
ଆଜକାଲି ଯୁଗର ଏ ନୀତି ପରମାଣ
ଏହି ନୀତି ପାଳି ଲୋକେ କହନ୍ତି ବଚନ ।୧୪୯
ରାଜନୀତି ଯାହାଙ୍କର ଅଟେ କାରବାର
ବଚନ ଚାତୁରି ଯୋଗେ ସେହୁ ଧୁରନ୍ଧର ।୧୫୦
ଯେତେ ବୁଦ୍ଧିମାନ ଯେହୁ ସେ ତେତେ ଚତୁର
ରାଜନୀତିକ୍ଷେତ୍ରେ ତାର ବହୁତ ଆଦର । ୧୫୧
ଆହେ ପ୍ରଭୁ ସକଳ ହୃଦରେ ତୁମ୍ଭେ ଅଛ
କାହାକୁ କେତେପ୍ରକାର ପ୍ରେରଣା ଦେଉଛ ।
ତୁମ୍ଭର ପ୍ରେରଣା ପାଇ ଲୋକ କାର୍ଯ୍ୟ କରେ
କିଏ ଭଲ କିଏ ମନ୍ଦ ପ୍ରକଟେ ବେଭାରେ ।୧୫୩
କିଏ ସାଧୁ କିଏ ଚୋର କିଏ ଠକାଇତ
ବିଚିତ୍ର ଚରିତ୍ରେ ପୂରିଅଛି ଏ ଜଗତ । ୧୫୪
କିଏ ଦେବତା କିଏ ବା ଅଟଇ ଅସୁର
ବିଚିତ୍ରତା ଗୁଣ ଅଟେ ଏହି ଜଗତର । ୧୫୫
ତବ ଇଚ୍ଛାରେ ଚଳୁଛି ଏ ବିଶ୍ୱ ଜଗତ
ତବ ପ୍ରେରଣାରେ ପ୍ରାଣୀ ହୁଏ ଆତଜାତ ।୧୫୬
କିଏ ହଣାହଣି ମରାମରି ହେଉଛନ୍ତି
କିଏ ଜପାମାଳା ଧରି ତପସ୍ୟା କରନ୍ତି ।୧୫୭
ଦେଉଳ ତୋଳି କେ ତବ ମୂରତି ପୂଜଇ
କିଏ ଦେଉଳ ଦେଖିଲେ ଗୋଇଠା ମାରଇ ।
କିଏ ବ୍ୟୋମଯାନ ଧରି ଆକାଶେ ଉଡ଼ଇ
କିଏ ଅବା ପାଦେମାତ୍ର ଚାଲି ନ ପାରଇ ।୧୫୯
ରାତି ନାହିଁ ଦିନ ନାହିଁ କିଏ କର୍ମ କରେ
କିଏ ରୋଗେ ଛଟପଟ ହୋଇ ଦିନ ସାରେ ।
ଏ ବିଚିତ୍ର ଲୀଳାମଣା କହିଲେ ନ ସରେ
ତବ ଇଚ୍ଛା ପୂର୍ଣ୍ଣ ହେଉଅଛି ଜଗତରେ ।୧୬୧

କାହିଁକି ଏପରି ହୁଏ ପ୍ରଭୁ ତୁମ୍ଭେ ଜାଣ
ଦୀନ ଜଗବନ୍ଧୁ ନେଲା ଚରଣେ ଶରଣ ।୧୭୨

ଇତି ଶ୍ରୀ ଭାରତ-ଚରିତାମୃତେ ଜନୀ ଜେଂଟଲେଣ୍ଡ ପ୍ରଭୃତି ସମ୍ବାଦେ ଅଠାନବେ ଅଧ୍ୟାୟଃ ।



# ଅନେଶ୍ବତ ଅଧ୍ୟାୟ

## ଗୀତା ଚରିତ

ଶୁଣ ହେ ସୁଜନ ଜନେ ଅପୂର୍ବ ଚରିତ
ଗୀତା ନାମେ ଅଛି ଭାରତରେ ଧର୍ମଶାସ୍ତ୍ର । ୧
ସକଳ ଶାସ୍ତ୍ର ମୁକୁଟମଣି ଅଟେ ସେହି
ଭଗବାନ ଶ୍ରୀକୃଷ୍ଣ ଶ୍ରୀମୁଖେ ଥିଲେ କହି । ୨
ସକଳ ଶାସ୍ତ୍ର ସମୁଦ୍ର କରିଣ ମନ୍ଥନ
ବାହାରକଲେ ଏ ଗୀତା ଅମୃତ ସମାନ । ୩
ବେଦାନ୍ତ ଉପନିଷଦ ବେଦ ଆଦି ଶାସ୍ତ୍ର
ଗାଈରୂପେ ସେ ସମସ୍ତ ହୋଇଲେ ଏକତ୍ର । ୪
ଅର୍ଜ୍ଜୁନ ବାଛୁରି ଦୋଗ୍‌ଧା ଗୋପାଳ ନନ୍ଦନ
ଦୁହିଁଲେ ଦୁଗ୍‌ଧ ମହତ ଗୀତା ରସାୟନ । ୫
ସୁଧୀମାନେ ପାନକରି ମୁକତି ଲଭିବେ
ଭବ ପାପ ତାପ ଆଧି ବ୍ୟାଧି ବିନାଶିବେ । ୬
ଗୀତା ମାହାତ୍ମ୍ୟ ଅମାପ କହିଲେ ନ ସରେ
ଗୀତା ତୁଲ୍ୟ ଶାସ୍ତ୍ର ଆଉ ନାହିଁ ଏ ସଂସାରେ ।୭
ସ୍ୱୟଂ ଭଗବାନ କହିଛନ୍ତି ଶ୍ରୀମୁଖରେ
ମୁଁ ଅଛି କେବଳ ଦେଖ ଗୀତା ଆଶ୍ରୟରେ ।୮
ଗୀତା ମୋ ପରମଗୁହ୍ୟ ଗୀତା ଜ୍ଞାନବଳେ
ତ୍ରିଲୋକ ପାଳନ କରୁଅଛି ଜାଣ ହେଲେ । ୯

ଏଥୁଁ ଅଧିକ ମାହାତ୍ମ୍ୟ କି ଅଛି ଗୀତାର
ଗୀତା ଧର୍ମ ଗୀତା କର୍ମ ଗୀତା ଜ୍ଞାନସାର ।୧୦
ସୃଷ୍ଟି ପ୍ରଳୟ ପାଳନ ତତ୍ତ୍ୱ ଏଥି ଅଛି
ଗୀତା ମତ ଅନୁସରି ସଂସାର ଚଳୁଛି । ୧୧
ମାନବ ଜାତିର ଧର୍ମଶାସ୍ତ୍ର ଅଟେ ଗୀତା
ଜ୍ଞାନୀଙ୍କି ଅମୃତ ସମ ଅଜ୍ଞାନୀଙ୍କୁ ପିତା । ୧୨
ସବୁ ଧର୍ମ ସମନ୍ୱୟ ଅଛି ଏ ଶାସ୍ତ୍ରରେ
ସକଳ ଧର୍ମଶାସ୍ତ୍ରର ମାଞ୍ଜି ତା ଗର୍ଭରେ । ୧୩
ଗୀତାଶାସ୍ତ୍ର ପାଠକରି ତତ୍ତ୍ୱ ଯେ ବୁଝିବ
ଆଉ ଅନ୍ୟଶାସ୍ତ୍ର ପାଠ ଲୋଡ଼ା ନ ହୋଇବ ।୧୪
ଏମନ୍ତ ଅମୂଲ୍ୟ ଶାସ୍ତ୍ର ଲୋକେ ନ ପଢ଼ନ୍ତି
ନାନାଦି ଶାସ୍ତ୍ର ଜଙ୍ଗଲେ ପଶି ଭ୍ରମୁଥାନ୍ତି । ୧୫
ଗୀତା ଅଟେ କଳ୍ପବୃକ୍ଷ ଯେ ଯାହା ବାଞ୍ଛିବ
ଗୀତା ପାଠକଲେ ତାହା ଅବଶ୍ୟ ପାଇବ ।୧୬
ଏମନ୍ତ ଅମୂଲ୍ୟ ଗ୍ରନ୍ଥ ନ ପଢ଼େ ଯେ ଜନ
ଗୀତାମତ ଅନୁସରି ନ କାଟେ ଜୀବନ । ୧୭
ମାନବ ଜନ୍ମ ତାହାର ବୃଥା ହୋଇଯିବ
କେଡ଼େବଡ଼ ସୁବିଧା ସୁଯୋଗ ହରାଇବ । ୧୮
ଗୀତାପାଠ ହେବ ଯେତେବେଳେ ଘରେ ଘରେ
ଗୀତାମତ ଅନୁସରି ଚଳିବେ ସକଳେ । ୧୯
ଗୀତାମତ ଅନୁସରି ସାଧନା ନ କଲେ
ନ ଚଳିବେ ଲୋକେ ସତ୍ୟ ଅହିଂସା ପଥରେ ।
ଗାନ୍ଧି ଏହି ଗୀତା ତତ୍ତ୍ୱମାନ ବଖାଣନ୍ତି
ସତ୍ୟ ଅହିଂସା ପାଳିବା ପାଇଁ କହୁଛନ୍ତି । ୨୧
ଗୀତାଜ୍ଞାନ ନ ହେଲେ ଏ ସାଧନା ନ ହେବ
କେବଳ ବକ୍ତୃତା ଧୁଣି ଫଳ ନ ହୋଇବ ।୨୨
ବକ୍ତୃତାକୁ ଅନୁସରି ନ କଲେ କରମ
ସାଧନାରେ ସିଦ୍ଧିଲାଭ ନ ହେବଟି ଜାଣ ।୨୩

ରାଜନୀତି ଧର୍ମନୀତି କରମର ନୀତି
ସକଳ ଗୀତାରେ ଅଛୁ ଜାଣ ହେ ସୁମନ୍ତି । ୨୪

ଗୌର ଉବାଚ

ରାଜନୀତି କଥା କମ ଅଛଇ ଗୀତାରେ
ବୁଝି ନ ପାରଇ କିଛୁ କହିଦିଅ ବାରେ । ୨୫
ସମାଜ ନୀତି କପରି ଏଥିରୁ ଶିଖିବ
କିଏ ଅବା ଧର୍ମନୀତି କିପରି ବୁଝିବ । ୨୬
ଗୀତାର ଏ ଗୂଢ଼ତତ୍ତ୍ୱ କହନ୍ତୁ ଆପଣ
ବୁଝା ଯାଉନାହିଁ ଏ ରହସ୍ୟ କିଛୁ ଜାଣ । ୨୭
ଶୁଣିଛୁ ଗୀତା ପଢ଼ିଲେ ହୁଏ ସଦଗତି
ତେଣୁ ଗୀତାପାଠ କରୁଅଛୁ ମୁହିଁ ନିତି । ୨୮
ଅନ୍ୟ କିଛୁ ତତ୍ତ୍ୱ ଏ ଗୀତାର ନ ଜାଣଇ
କହନ୍ତୁ ମୋତେ ଏ ତତ୍ତ୍ୱ ଆପଣ ବୁଝାଇ ।୨୯

ଜଗା ଉବାଚ

ଶୁଣ ହେ ଗଉର ଏବେ ପଚାରିଲ ଯାହା
ଗୋଟି ଗୋଟି କରି ଶୁଣ କହିବି ମୁଁ ତାହା ।
ରାଜନୀତିରୁ ଗୀତାର ହୋଇଲା ଜନମ •
ଅର୍ଜୁନକୁ ଭାଗ ଦେଲା ନାହିଁ ଦୁର୍ଯ୍ୟୋଧନ ।୩୧
ପାଞ୍ଚିଲା ଏ ଭାରତରେ ସମ୍ରାଟ ହୋଇବ
ଏକଛତ୍ର ଆଧିପତ୍ୟ ଭାରତେ କରିବ । ୩୨
ଅର୍ଜୁନକୁ ସୂଚିଅଗ୍ରେ ଭୂମି ଦେବନାହିଁ
ଏ ପ୍ରତିଜ୍ଞା କରି ଦେଲା କୃଷ୍ଣଙ୍କୁ ଫେରାଇ । ୩୩
ଶ୍ରୀକୃଷ୍ଣ ଶାନ୍ତିପ୍ରସ୍ତାବ ଘେନି ଯାଇଥିଲେ
ପାଞ୍ଚପଡ଼ା ଅର୍ଜୁନଙ୍କୁ ଦିଅ ହେ ବୋଇଲେ ।୩୪
ନ୍ୟାୟ୍ଯଧର୍ମ ଦେଖାଇ ସେ ବହୁତ କହିଲେ
ଫଳରେ ବହୁତ ଅପମାନ ସେ ପାଇଲେ ।୩୫
ଦୁର୍ଯ୍ୟୋଧନ ଦୁଷ୍ଟବୁଦ୍ଧି କେବେ ନ ଛାଡ଼ିଲା
ଭାଇକି ଭାଗ ନ ଦେବବୋଲି ସ୍ଥିର କଲା ।୩୬

ଭଲ ଭଲ ଉପଦେଶ ଯେତ୍କ ଯେତେ ଦେଲ
ସେ ସେତେ କହିଲେ କାହା କଥା ନ ଶୁଣିଲା ।
ଶକୁନ ବୁଦ୍ଧି ରେ ପଡ଼ି ଧରମ ହୁଡ଼ିଲା
ପଞ୍ଚପାଣ୍ଡବଙ୍କୁ କଉଶଳେ ସେ ଛଡ଼ିଲା । ୩୮
ଆଚାର୍ଯ୍ୟ ଦୋଷେ ଦୋଷୀହେଲା ଦୁର୍ଯ୍ୟୋଧନ
ନାନା ଅତ୍ୟାଚାର ସେତ୍କ କଲା ପୁନଃ ପୁନଃ ।୩୯
ପାଣ୍ଡବ ଦୁର୍ବଳ ଦୁର୍ଯୋଧନ ଅତି ବଳୀ
ସବଳ ଦୁର୍ବଳ ମଧ୍ୟେ ହେଲା ଘୋର କଳି ।୪୦
ଦୁର୍ବଳର ସାହା ହେଲେ କୃଷ୍ଣ ଭଗବାନ
ମହାଭାରତ ସମର ଏଥୁଁ ହେଲା ଜାଣ । ୪୧
ଯୁଦ୍ଧ କରିବାକୁ ଦୁହେଁ କମର କଷିଲେ
କୁରୁକ୍ଷେତ୍ର ସମର ଭୂମିରେ ପ୍ରବେଶିଲେ । ୪୨
ପାଣ୍ଡବ ରଥେ ଶ୍ରୀକୃଷ୍ଣ ସାରଥି ହୋଇଲେ
କୁରୁକ୍ଷେତ୍ରକୁ ପାଣ୍ଡବ ରଥ ବାହିନେଲେ । ୪୩
କୁରୁକ୍ଷେତ୍ର ମଧ୍ୟରେ ରଥକୁ ନେଇ କଲେ
ଅର୍ଜୁନକୁ ସମର ବିଭବ ଦେଖାଇଲେ । ୪୪
ଉଭୟ ପକ୍ଷରେ ଛନ୍ତି ଆତ୍ମୀୟ ସ୍ୱଜନ
ଦେଖି କମ୍ପେ ଥରହର ହେଲେ ଅରଜୁନ ।୪୫
ବୋଇଲେ ଏ ରାଜ୍ୟଭୋଗେ ମୋର ଲୋଡ଼ାନାହିଁ
ଆତ୍ମୀୟ ସ୍ୱଜନ ମାରିବାର ନ ଯୋଗାଇ । ୪୬
ଭିକ୍ଷା ମାଗି ପେଟ ପୋଷିବାର ଅଟେ ଭଲ
ମାରିବ ଭାଇ ବନ୍ଧୁଙ୍କୁ ଲାଗେ ମୋତେ ଶଲ ।
ଏ କଥା କେବେହେଁ ମୁହିଁ କରି ନ ପାରିବ
ଗୁରୁଜନମାନଙ୍କୁ ମୁଁ ମାରି ନ ପାରିବ । ୪୮
ଏପରି ବିଷାଦ ଜାତ ହେଲା ଅର୍ଜୁନର
ବସିପଡ଼ିଲେ ସେ ରଥ ଉପରେ ସତ୍ୱର । ୪୯
କର୍ମ କରିବାକୁ ଅରଜୁନ ଆସିଥିଲେ
କର୍ମବିମୁଖ ହୋଇଣ ଏବେ ସେ ବସିଲେ ।୫୦

ତେଣେ ଶତ୍ରୁ ସେନାମାନେ ହୋଇଛନ୍ତି ରୁଣ୍ଡ
ଯୁଦ୍ଧ କରିବାକୁ ହେଉଛନ୍ତି ଲଣ୍ଡଭଣ୍ଡ । ୫୧
ନାନା ଉପଦେଶ ଦେଇ କହିଲେ ଅଚ୍ୟୁତ
ଏତେବେଳେ ଏପରି ହେବାର ଅନୁଚିତ ।୫୨
ଏ ଅବସ୍ଥା ଦେଖି ଲୋକେ ତୁମ୍ଭଙ୍କୁ ହସିବେ
ନିନ୍ଦାକରି ନାନା ଅକୀରତ୍ତି ସେ ଘୋଷିବେ ।୫୩
ବୋଲିବେ ଅର୍ଜ୍ଜୁନ ସମ ବୀର ଆସିଥିଲା
ବିପକ୍ଷ ପକ୍ଷକୁ ଦେଖି ଡରେ ପଳାଇଲା । ୫୪
ଯନ୍ତ୍ରାନ୍ତଲୋକର ଅକୀରତ୍ତି ମୃତ୍ୟୁସମ
କପରି ସହିପାରିବ ଏତେ ଅପମାନ । ୫୫
ଅର୍ଜ୍ଜୁନ ଏ ସବୁ କଥା କିଛି ନ ଶୁଣିଲା
ଅବଶେଷେ ଶ୍ରୀକୃଷ୍ଣଙ୍କୁ ଏମନ୍ତ ପୁଚ୍ଛିଲା । ୫୬
ଆପଣଙ୍କୁ ଗୁରୁଦେବ କଲି ମୁଁ ଟି ମୋହର
ବୁଝିପାରୁନାହିଁ କିଛି କର୍ତ୍ତବ୍ୟ ମୋହର । ୫୭
ନମସ୍ତେ ହେ ଗୁରୁଦେବ କରେ ପ୍ରଣିପାତ
କି କର୍ତ୍ତବ୍ୟ ମୋର ଦେବ କହନ୍ତୁ ନିଭୃତ ।୫୮
ବିଷମ ବ୍ୟାପାରେ ଦେବ ପଡ଼ିଅଛି ମୁହିଁ
ବୁଝି ପାରୁନାହିଁ ଯୁଦ୍ଧ କରିବି କି ନାହିଁ । ୫୯
ଶିଷ୍ୟ ହେଲି ମୁଁ ତୁମ୍ଭର କହ କି କରିବି
ଯୁଦ୍ଧ କରିବି କି ସମରରୁ ଫେରିଯିବି । ୬୦
ଏ ହିଂସା ସମର ନ କରିବି ହୁଏ ମନ
କର୍ତ୍ତବ୍ୟପଥ ଦେଖାଇ ଦିଅନ୍ତୁ ଆପଣ । ୬୧
ଏପରି ବିନମ୍ରଭାବେ ଅର୍ଜ୍ଜୁନ ପୁଚ୍ଛିଲେ
ଉତ୍ତରେ ଶ୍ରୀକୃଷ୍ଣ ଗୀତାତତ୍ତ୍ୱ ବୁଝାଇଲେ ।୬୨
ଗୀତାତତ୍ତ୍ୱ ବୁଝି ଅରଜୁନ ଯୁଦ୍ଧ କଲେ
ସମରେ ପଞ୍ଚପାଣ୍ଡବ ବିଜୟୀ ହୋଇଲେ ।୬୩
ଧର୍ମରାଜ୍ୟ ସ୍ଥାପିତ ହୋଇଲା ଭାରତରେ
ଯୁଧିଷ୍ଠିର ଭାରତର ସମ୍ରାଟ ହୋଇଲେ । ୬୪

କୁରୁବଂଶ ନିଜ ପାପେ ଧ୍ୱଂସ ହୋଇଗଲା
ଭାରତରୁ ପଶୁବଳ ବିନାଶ ଭଜଲା । ୨୫
ରାଜା ରାଜ୍ୟର ସମ୍ବନ୍ଧ ନେଇ ଯେଉଁ ନୀତି
ରାଜନୀତି ବୋଲି ସେହି ନୀତିକୁ କହନ୍ତି । ୨୬
ତେଣୁ କହୁଛି ଗଉର ବୁଝ ଏ ମରମ
ରାଜନୀତିରୁ ହୋଇଛି ଗୀତାର ଜନମ । ୨୭
ରାଜା ପ୍ରଜା ଗୀତାତତ୍ତ୍ୱ ମାନି ଚଳୁଥିଲେ
ରାଜ୍ୟରେ ପ୍ରମାଦ କିଛି ନ ପଡ଼ିବ ଭଲେ ।୨୮

ଗଉର ଉବାଚ

କହିଲେ ଆପଣ ଗୀତା ଜନମ କାରଣ
ଆଉ କଥାଏ ପୁଚ୍ଛିବି କହନ୍ତୁ ଆପଣ । ୨୯
ହିଂସାକର୍ମ ଅଟେ ପୁଣ ସମର ବ୍ୟାପାର
ଅହିଂସା ପରମଧର୍ମ ଅଟଇ ନିକର । ୩୦
ଭଗବାନ ଶ୍ରୀକୃଷ୍ଣ କିମ୍ପାଇ ଏହା କଲେ
ହିଂସାକର୍ମ କରିବାକୁ ପାର୍ଥଙ୍କୁ କହିଲେ । ୩୧
ପାର୍ଥ ସମର କରିବାପାଇଁ ମନାକଲା
ଅହିଂସା ଧର୍ମ ପଥରେ ଯିବ ମନକଲା । ୩୨
ଭଗବାନ ଗୀତାତତ୍ତ୍ୱ ସକଳ କହିଲେ
ଅଠର ଅଧ୍ୟାରେ ଏତେ ଉପଦେଶ ଦେଲେ ।
ଗୀତାତତ୍ତ୍ୱ ଏତେ ବୁଝି କଲେକି ସମର
ନୁହେଁ କି ସମର ହିଂସା କରମ ନିକର । ୩୪
ଏମନ୍ତ ସଂଶୟ ମନେ ହେଉଛି ମୋହର
ଏ ବିଷମ ତତ୍ତ୍ୱ ମୋତେ କହନ୍ତୁ ନିକର । ୩୫

ଜଗା ଉବାଚ

ଏ ବଡ଼ ବିଷମ ତତ୍ତ୍ୱ ପଚାରିଲ ଯାହା
ମତେ ଯାହା ଜଣାଅଛି କହୁଛି ମୁଁ ତାହା ।୩୬
ଏ ବଡ଼ ଗୂଢ଼ ରହସ୍ୟ କଠିନ ବ୍ୟାପାର
ବୁଝିଲେ ସହଜ ନ ବୁଝିଲେ କଷ୍ଟକର । ୩୭

ନିଜ ସୁଖ ଅଭିଳାଷ ଚରିତାର୍ଥ ପାଇଁ
କର୍ମ କରେ ଆନ ମନେ ଦୁଃଖ କଷ୍ଟ ଦେଇ ।୭୮
ସେ କରେ ହିଂସା କରମ ଜାଣ ହେ ଗଜର
ସେପରି କରମ କଲେ ନାହିଁଟି ନିସ୍ତାର । ୭୯
ହିଂସା ଅହିଂସା ଅଟଇ ମନର ବିକାର
ସେ ମନ କର୍ମ କରାଏ ନାନା ପରକାର । ୮୦
କାମନାର ବଶହୋଇ କଣ୍ଠମ କରାଏ
କାମନାର ଅନୁରୂପ ଫଳଭୋଗୀ ହୁଏ । ୮୧
ସେ କାମ ଅନନ୍ତମୁଖୀ ବଡ଼ ଭୟଙ୍କର
ନିଜ ସ୍ୱାର୍ଥପାଇଁ କରେ ନାନାବିଧ ବେଭାର ।୮୨
ପ୍ରକୃତ ସୁଖ ବା କିସ ଜାଣି ନ ପାରଇ
କ୍ଷଣିକ ସଂସାର ସୁଖେ ସଦା ମଜ୍ଜିଥାଇ । ୮୩
ସେହି ସୁଖ ଲାଭପଥେ ଯେହୁ ବାଧା ଦିଏ
ତାହାପ୍ରତି ହିଂସାଭାବ ମନେ ଜାତ ହୁଏ । ୮୪
ସେ ବାଧା ବିନାଶ କଲେ ସୁଖ ପ୍ରାପ୍ତି ହେବ
ଏହି କାମନା ମନରେ ହୁଏ ଉଦଭବ । ୮୫
ସେ କଣ୍ଟା ଉପାଡ଼ିବାକୁ ଯେତେ କର୍ମ କରେ
କାୟମନ ବାକ୍ୟେ ତାହା ହିଂସାରୂପ ଧରେ ।
ହିଂସାର ସ୍ୱରୂପ ଅଟେ ମହାଭୟଙ୍କର
କେତେବେଳେ କି ବେଶରେ ହୁଏ ଅବତାର ।
କଳ ବଳ ଛଳ କଉଶଳ ଅସ୍ତ୍ର ତାର
ଗୁଳିଗୁଳା ବନ୍ଧୁକ ବା ଖଣ୍ଡା ଖପରର । ୮୮
ଲହ ଲହ ଜିହ୍ୱା କାଢ଼ି କେବେ ବିଚରଇ
କେବେ ଅବା ରଣଚଣ୍ଡୀ ରୂପ ସେ ଧରଇ ।୮୯
ମହା ବିକଟାଳ ରୂପ ଅଟଇ ତାହାର
ମାନବ ଦେହେ ବିହରି ପିଅଇ ରୁଧିର । ୯୦
ଯେଉଁ ମାନବ ହିଂସାର ହୁଅଇ ଅଧୀନ
ହିଂସା ହରଇ ତାହାର ହୃଦୁଁ ଦିବ୍ୟଜ୍ଞାନ । ୯୧

ମୋହ ଅନ୍ଧକାରେ ତାର ଜ୍ଞାନକୁ ଘୋଡ଼ାଏ
ପ୍ରକୃତ ସୁଖ ସ୍ୱରୂପ ଦେଖାଇ ନ ଦିଏ । ୯୨
ସଂସାର କ୍ଷଣିକ ସୁଖେ ହୁଏ ମତ୍ତଭୋଳ
ଆହାର ନିଦ୍ରା ମୈଥୁନ ଭୟର ଏ ଫଳ । ୯୩
ଏ ସବୁ ଲଭିବାପାଇଁ ସଦା କରେ ଶ୍ରମ
ସକଳ ବୁଦ୍ଧି ଜ୍ଞାନର ଏହି ପରିଣାମ । ୯୪
କାମ କ୍ରୋଧ ଲୋଭ ମୋହ ମଦ ଯେ ମାତ୍ସର୍ଯ୍ୟ
ଏ ସକଳ ହୁଅଇ ତାହାର ଅଇଶ୍ୱର୍ଯ୍ୟ । ୯୫
ଏ ସବୁ ଲଭିବାପାଇଁ ହିଂସାଅସ୍ତ୍ର ଧରେ
ଦମ୍ଭ ଦର୍ପ ଧରି ଏହି ସଂସାରେ ବିହରେ । ୯୬
ନିଜେ ସୁଖୀ ହେବାପାଇଁ କରେ ସବୁ କାମ
ହିଂସାଅସ୍ତ୍ରବଳେ କରେ ପ୍ରତିକାର ମାନ । ୯୭
ସେ ସୁଖ ପଥରେ ଯେହୁ ବାଧା ଜନମାଏ
ହିଂସାଅସ୍ତ୍ର ଧରି ତାକୁ ବଳେ ଦଣ୍ଡ ଦିଏ । ୯୮
ନିଜ ସ୍ୱାର୍ଥପାଇଁ କରେ ସକଳ କରମ
ସ୍ୱାର୍ଥସିଦ୍ଧି ମୂଳ କରେ ପରମ ଧରମ । ୯୯
ଏହି ସ୍ୱାର୍ଥରୁ ଜନମ ହୁଅଇ ଅନର୍ଥ
ଅନର୍ଥକୁ ମଣଇ ପରମ ପୁରୁଷାର୍ଥ । ୧୦୦
ହିଂସା ନଉକାରେ ବସି ଭବ ପାରାବାରେ
ଯାବତ ଜୀବନ ସେହୁ ଲୀଳାଖେଳା କରେ ।୧୦୧
ଏହି ସ୍ୱାର୍ଥ ସିଦ୍ଧିପଥେ ମନ ଦଉଡ଼ଇ
ଫଳରେ ଅମାପ ପାପ ବଳେ ଅରଜଇ ।୧୦୨
ଏହି ପାପୀମାନେ ରୂପ ଧରନ୍ତି ମଗର
ସ୍ୱାର୍ଥ ନଉକାରେ କରି ଛିଦ୍ର ଯେ ଅପାର ।୧୦୩
ତେଣୁ ବଳେ ନଉକାଟି ସାଗରେ ବୁଡ଼ଇ
ଜନ୍ମ ମରଣ ଯାତନା ଲୋକେ ଭୋଗୁଥାଇ ।୧୦୪
ନିଜେ କରତା ବୋଲି ସେ କରେ ଅହଙ୍କାର
ନ ପାଞ୍ଚେ କରତା ଜଣେ ଅଛି ସଂସାରର ।୧୦୫

ଦୃଢ଼େ ବିଶ୍ୱାସ ନ କରେ ଅଛନ୍ତି ଈଶ୍ୱର
ହରତା କରତା ଧାତା ଏହି ସଂସାରର ।୧୦୭
ମୁଁ ମୁଁ ବୋଲିଣ ସଦା ଧରେ ଜପାମାଳା
ମୋର ମୋରବୋଲି ସଂସାରରେ ବାନ୍ଧେଭେଳା
ମୁଁ ମୋର ଭାବରୁ ହିଂସା ହୁଅଇ ଜନମ
ନାନା ଆକାର ଧରି ସେ କରାଏ କରମ ।୧୦୮
କାମନା ଅଟେ ହିଂସାର ପରମ ସୁହୃତ
ଦୁହେଁ ମିଳିମିଶି ବିଷ କରନ୍ତି ସଂଯାତ । ୧୦୯
ଏହି ବିଷ ପିଇ ଲୋକ ହୁଏ ଜରଜର
ଦେଖି ନ ପାରଇ ନିଜ ସ୍ୱରୂପ ନିକର । ୧୧୦
ନିଜକୁ ନିଜେ ନ ଚିହ୍ନି ଭ୍ରମଇ ଅନ୍ଧାରେ
ଆଲୋକ ଦେଖି ନ ପାରେ ହୃଦୟ କନ୍ଦରେ ।
ଯାବତ ଏ ମୋହ ଅନ୍ଧକାର ନ ଭୁଟିବ
ତାବତ ହିଂସା କରମମାନ କରୁଥିବ । ୧୧୨
ନିଜକୁ ନିଜେ ଚିହ୍ନିଲେ ହିଂସାଭାବ ଯିବ
ଅହିଂସା ପରମ ଧର୍ମ ପାଳନ କରିବ । ୧୧୩
କିପରି ଏହି ଧରମ କରିବ ପାଳନ
ଗୀତାରେ କହିଅଛନ୍ତି ପ୍ରଭୁ ଭଗବାନ । ୧୧୪
ଗୀତାର ଚରମ ଶିକ୍ଷା ଭଗବାନ ଦେଲେ
ସକଳ ଧରମ ଛାଡ଼ି ବୋଲିଣ କହିଲେ । ୧୧୫
ଏକା ମୁହିଁ ଏ ବିଶ୍ୱର ଅଟଇ ନିଧାନ
ଏ ବିଶ୍ୱାସେ ମୋଠାରେ ଯେ ପଶିବ ଶରଣ ।
ସକଳ ପାପରୁ ତାକୁ କରିବି ମୁଁ ମୋକ୍ଷ
ଶୋଚନା ନ କର ଆହେ ବିଶ୍ୱବାସୀ ଲୋକ ।
ଏ ଅଭୟବାଣୀ ଯେହୁ ବିଶ୍ୱାସ କରିବ
ଦୃଢ଼ଭାବେ ଏ ବିଶ୍ୱାସ ମନରେ ପୋଷିବ ।୧୧୮
ସକଳ ଫଳ ବାସନା ମନରୁ ତେଜିବ
ନିଷ୍କାମ-ଭାବରେ ସବୁ କରମ କରିବ । ୧୧୯

ମୋ ସୃଷ୍ଟି ହିତପାଇଁ କ ଲୋଡ଼ା ଯେ କରମ
କରିବ ସେ ସବୁ ସୁମରିଣ ମୋର ନାମ ।୧୨୦
ସକଳ କର୍ମ କରିବ ଲୋକ ହିତପାଇଁ
ଏମନ୍ତ କର୍ମରେ ପାପ ପୁଣ୍ୟ କିଛି ନାହିଁ ।୧୨୧
ନିଜସ୍ୱାର୍ଥ ଏମନ୍ତ କର୍ମରେ ନାହିଁ ଲେଶ
ତେଣୁ ଏ କର୍ମ ଅହିଂସା ଅଟଇ ଅବଶ୍ୟ ।୧୨୨
ଈଶ୍ୱର ସୃଷ୍ଟିର ହିତ ଲୋକ ହିତପାଇଁ
ଯେ ଜନ ନିଜ କର୍ତ୍ତବ୍ୟ ମଣି କରୁଥାଇ ।୧୨୩
ସକଳ ଭୂତରେ ରହିଛନ୍ତି ଭଗବାନ
ସକଳ ନିୟନ୍ତା ହର୍ତ୍ତାକର୍ତ୍ତା ବୋଲି ଜାଣ ।୧୨୪
ସକଳ ଭୂତରେ ମୋତେ ଯେ ଦେଖିପାରିବ
ମୋଠାରେ ସକଳ ଭୂତ ଅବଶ୍ୟ ଜାଣିବ ।୧୨୫
ଈଶ୍ୱରବାଣୀ ତାହାକୁ ଅବଶ୍ୟ ଶୁଭିବ
ସେହି ବାଣୀ ଅନୁସରି କର୍ତ୍ତବ୍ୟ କରିବ । ୧୨୬
ଏମନ୍ତ ଜ୍ଞାନ ଲଭି ଯେ କର୍ତ୍ତବ୍ୟ କରଇ
ତା ମନରେ ସ୍ୱାର୍ଥ ଚିନ୍ତା କିଛି ନ ରହଇ ।୧୨୭
କର୍ତ୍ତବ୍ୟ ଜ୍ଞାନରେ ସେହି ଯେଉଁ କର୍ମ କରେ
ମରିବା ମାରିବାପାଇଁ ସଂଶୟ ନ କରେ ।୧୨୮
ଅଧର୍ମ ବିନାଶ ପାଇଁ ଯେ କର୍ମ କରିବ
ଲେଶମାତ୍ର ହିଂସାଭାବ ତହିଁରେ ନ ଥିବ ।୧୨୯
ଈଶ୍ୱରର ଅଭିପ୍ରେତ କରମ ଯେ କରେ
ଲେଶମାତ୍ର ହିଂସା ଦ୍ୱେଷ ନ ଥାଏ ତହିଁରେ ।
ଏ ଗୂଢ଼ତତ୍ତ୍ୱ ଅର୍ଜ୍ଜୁନ ବୁଝି ନ ପାରିଲେ
ଭଗବାନ ତେଣୁ ବିଶ୍ୱରୂପ ଦେଖାଇଲେ ।୧୩୧
ବିସ୍ମୟ ହୋଇ ଅର୍ଜ୍ଜୁନ ଦେଖିଲେ ସକଳ
ଯାହାଙ୍କୁ ମାରିବାପାଇଁ ତାଙ୍କ ମନେ ଡ଼ର ।୧୩୨
ଈଶ୍ୱର ତାହାଙ୍କ ପ୍ରାଣ ହରି ନେଇଛନ୍ତି
ଆପଣା ପାପରୁ ସେହି ଆପେ ମରିଛନ୍ତି । ୧୩୩

ଭଗବାନ ବୋଇଲେ ଦେଖ ହେ ଅରଜୁନ
କମ୍ପାଇ ମନେ ଭାବନା କରୁଅଛ ପୁଣ । ୧୩୪
କେବଳ ନିମିତ୍ତ ମାତ୍ର ହୋଇ ଠିଆହେବ
ମୁଁ ଯାକୁ ମାରିସାରିଛି ତାକୁଇ ମାରିବ ।୧୩୫
ମୋ ନାମ ସୁମରି ଯୁଦ୍ଧ ଅରଜୁନ କର
ହିଂସାଭାବ ଏ କର୍ମରେ ନାହିଁଟି ନକର ।୧୩୬
ଏ ତ ଧର୍ମଯୁଦ୍ଧ ଏଥି ଦୋଷ କିଛି ନାହିଁ
ସ୍ୱର୍ଗଦ୍ୱାର ଖୋଲିଅଛି ଯୁଦ୍ଧକର ଯାଇ । ୧୩୭
କ୍ଷତ୍ରିୟ ତୁମ୍ଭେ ତୁମ୍ଭର କର୍ତ୍ତବ୍ୟ କରିବ
ହିଂସାକର୍ମ ନୁହେଁ ଏହା ପାପ ନ ଲାଗିବ ।୧୩୮
ଏ ତତ୍ତ୍ୱଜ୍ଞାନ ପାଇଣ ଅର୍ଜୁନ ଲଢ଼ିଲେ
ମରମ ନ ବୁଝି ସିନା ଶୋକ କରୁଥିଲେ ।୧୩୯
ଧର୍ମ ଧାରଣା ଅଟଇ ଈଶ୍ୱର ସୃଷ୍ଟିର
ସେ ଧାରଣା ରକ୍ଷାକର୍ମ ଅଟେ ଈଶ୍ୱରର ।୧୪୦
ସେ ଧାରଣା ପରେ କେହୁ କଲେକ ଆଘାତ
ଧର୍ମଗ୍ଲାନି ହୁଏ ଏହା ଜାଣିବ ନିଶ୍ଚିତ । ୧୪୧
ତେତେବେଳେ ଭଗବାନ ହୋଇ ଅବତାର
ଅନ୍ୟାୟ ଅତ୍ୟାଚାରକୁ କରନ୍ତି ସଂହାର ।୧୪୨
ଦୁର୍ଯୋଧନ ଅନ୍ୟାୟ ଅକର୍ମମାନ କଲା
ହିତ ଉପଦେଶମାନ କିଛି ନ ଶୁଣିଲା । ୧୪୩
କୃଷ୍ଣ ଭଗବାନ ଯାଇ ଭଲଲୋକି କଲେ
ଗାଳି ମାଡ଼ଖାଇ ଅପମାନରେ ଫେରିଲେ ।
ନ୍ୟାୟ ଧରମ କଥାକୁ ସେ କାନ ନ ଦେଲା
ଏହି ପାପ ପଥେ ଯାଇ ବିନାଶ ଭଜିଲା ।୧୪୫
ଦୁଷ୍ଟ ନିବାରିଣ ସନ୍ଥ ପାଳିବା ଧରମ
ଭଗବାନଙ୍କର ଅଟେ ପରମ କରମ । ୧୪୬
କର୍ତ୍ତବ୍ୟ ଜ୍ଞାନରେ ଯେହୁ ଏ କର୍ମ କରଇ
ହିଂସା ଦ୍ୱେଷ ପାପ ଏଥି କିଛି ନ ଲାଗଇ ।୧୪୭

ଏହି ଧର୍ମତତ୍ତ୍ୱ ଶିକ୍ଷା ଦେଲେ ଭଗବାନ
ଶିକ୍ଷା ଲଭି ସମର କଲେକ ଅରଜୁନ । ୧୪୮
ତେଣୁ ଅର୍ଜୁନଙ୍କୁ କିଛି ପାପ ନ ଲାଗିଲା
ଭଗବାନଙ୍କୁ ସୁମରି ସମରେ ପଶିଲା । ୧୪୯
ସମର କରିବା ଧର୍ମ ଅଟେ କ୍ଷତ୍ରିୟର
ଧର୍ମଯୁଦ୍ଧ କଲେ ସ୍ୱର୍ଗ ଲଭିବ ନିକର । ୧୫୦
ରାଜ୍ୟ ରକ୍ଷା କରିବା କର୍ତ୍ତବ୍ୟ କ୍ଷତ୍ରିୟର
ଧର୍ମରେ ରାଜ୍ୟ ପାଳିବ ଏ କଥା ନିକର ।୧୫୧
ଅନ୍ୟାୟ ଅଧର୍ମ ଯେବେ ପ୍ରବଳ ହୋଇବ
ସେ ସବୁ ସଂହାର କରି ରାଜ୍ୟକୁ ପାଳିବ ।୧୫୨
ରାଜାର ଏହା କର୍ତ୍ତବ୍ୟ ଶାସ୍ତ୍ରରେ ବିହିତ
ତେଣୁ ଭଗବାନ ତାଙ୍କୁ କହିଲେ ଏମନ୍ତ ।୧୫୩
ନରମାନଙ୍କ ମଧ୍ୟରେ ନରପତି ମୁହିଁ
ଦୁଷ୍ଟ ନିବାରଣ କରି ସନ୍ଥଙ୍କୁ ପାଳଇ । ୧୫୪
ଯେ ରାଜା ନିଜ କର୍ତ୍ତବ୍ୟ ପାଳି ନ ପାରିବ
ବିଷ୍ଣୁକଳା ନାହିଁ ବୋଲି ତାଠାରେ ଜାଣିବ ।
ସିଂହାସନ ସେହୁ କେବେ ରଖି ନ ପାରିବ
ନିଜ ଦୋଷେ ନିଜରାଜ୍ୟ ହରାଇ ବସିବ ।୧୫୬
ନିଜ ଭୋଗ ଅଭିଳାଷେ ଯେହୁ ମନ ଦିଏ
ସେହି ସ୍ୱାର୍ଥସିଦ୍ଧି ଲାଗି ସବୁ କରୁଥାଏ । ୧୫୭
ରାଜ୍ୟ ଲୋକହିତ ପ୍ରତି ଦୃଷ୍ଟି ନ ଦିଅଇ
ଆପଣା ସୁଖରେ ସଦା ମତ୍ତଭୋଳ ହୋଇ ।୧୫୮
ହିଂସା କର୍ମ କରି ସେହୁ ଧନ ଆଣେ ଘରେ
ସକଳ ଧନ ଲଗାଏ ଭୋଗ ବିଳାସରେ ।୧୫୯
ଈଶ୍ୱର ସୃଷ୍ଟିର ହିତ ନ ପାଞ୍ଚଇ ମନେ
ଲୋକହିତ କଥା ମନେ ନପକାଏ ଧାନେ ।୧୬୦
ଏମନ୍ତ ଲୋକର କର୍ମ ଅଟେ ହିଂସାକର୍ମ
ନୁହେଁ ଏହା ଭଗବାନଙ୍କର ଇଚ୍ଛା ଧର୍ମ ।୧୬୧

ହିଂସା ଅହିଂସାର ତତ୍ତ୍ୱ ଏଥୁଁ ଭଲେ ବୁଝି
ଯାହା ଯାହା କୁହାଗଲା ଧ୍ୟାନଦେଇ ହେଜ ।

ଗଉର ଉବାଚ

ଏ ବଡ଼ ଗହନତତ୍ତ୍ୱ କହିଲେ ଆପଣ
ବୁଝି କି ପାରିବେ ଏହା ଲୋକସାଧାରଣ ।୧୬୩
ହିଂସା ଅହିଂସାର ତତ୍ତ୍ୱ କହିଲେ ଆପଣେ
ଆଉ କସ ତତ୍ତ୍ୱ ଗୀତା କରିଛି ବଖାଣ ।୧୬୪
ଗୀତା ଅର୍ଥ ସହଜ ନୁହଁଇ ବୁଝିଲିଁ
କି ଉପାୟେ ସହଜରେ ବୁଝିପାରେ ମୁହିଁ ।୧୬୫
ଗୀତାର ସ୍ୱରୂପ ଅର୍ଥ କପରି ବୁଝିବ
ସକଳ ବିଷୟ ମତେ ଠିକେ କହିଦେବ ।୧୬୬

ଜଗା ଉବାଚ

ଗୀତାର ବିରାଟ ରୂପ ଦେଖ ହେ ଗଉର
ସର୍ବଜ୍ଞାନ ଧର୍ମ ଉପନିଷଦର ସାର । ୧୬୭
ଗୀତାରେ ବହୁତ ଗୂଢ଼ ରହସ୍ୟ ରହିଛି
ଶ୍ରେଷ୍ଠମୋକ୍ଷ ଶାସ୍ତ୍ରବୋଲି ଏହା ବୋଲାଇଛି ।
ସାତ ଶହ ଶ୍ଳୋକରେ ଗୀତାର କଳେବର
ପଢ଼ିବାପାଇଁକି ଅତି ସରଳ ସୁନ୍ଦର । ୧୬୯
ମାତ୍ର ଏହାର ମରମ କଷ୍ଟେ ଜଣାଯାଏ
ଭଗବାନ କୃପାବିନୁ ସୁଗମ ନ ହୁଏ । ୧୭୦
କେତେ ପରକାର ବ୍ୟାଖ୍ୟା ହେଉଛି ଏହାର
ମତଭେଦ ଦେଖାଯାଏ ନାନା ପରକାର ।୧୭୧
ଯେ ପାଣ୍ଡେ ନିଜବୁଦ୍ଧିରେ ଗୀତାର୍ଥ ବୁଝିବ
ଯୁକ୍ତିତର୍କ ବଳେ ତାହା ଠିକଣା କରିବ ।୧୭୨
ପଦେ ପଦେ ବାଧା ସେହୁ ପାଇବ ନିକର
କଳି ନ ପାରିବ ସାରମରମ ତାହାର । ୧୭୩
ଯୁକ୍ତିତର୍କ କଷ୍ଟିମାତ୍ର ଗୀତାଶାସ୍ତ୍ରେ ନାହିଁ
ଖାଣ୍ଟି ସିଦ୍ଧାନ୍ତ କେବଳ ଏଥିରେ ଅଛଇ ।୧୭୪

ଏହା କର ବା ନ କର ବିଧି ବା ନିଷେଧ
ଗୀତାରେ କୁହାଯାଇଛି ଉପଦେଶବାଦ ।୧୭୫
ଗୁରୁ ଯେପରି ଶିଷ୍ୟକୁ ଦିଏ ଉପଦେଶ
ଗୀତାରେ ଲେଖାଯାଇଛି ତେମନ୍ତ ଆଦେଶ ।
କାହିଁକି କରିବ ଅବା କମ୍ପା ନ କରିବ
ଏମନ୍ତ ଯୁକ୍ତିତର୍କ ଶାସ୍ତ୍ରରେ ଅଭାବ । ୧୭୭
ପିତା ଯେ କାଳେ ପୁଅକୁ ଉପଦେଶ ଦିଏ
କାହିଁକି ଏହା କରିବବୋଲି ତ ନ କହେ ।
ଶାସ୍ତ୍ର ଉପଦେଶମାନ ସେହିପରି ଜାଣ
ଯୁକ୍ତିତର୍କ ଆଲୋଚନା ନ ଥାଏ ପ୍ରମାଣ ।୧୭୯
ଯୁକ୍ତିତର୍କ କଲେ ଶାସ୍ତ୍ର ବୁଝି ନ ପାରିବ
ଶାସ୍ତ୍ରର ମରମ କିଛି କଳନା ନ ହେବ । ୧୮୦
ଗୀତାରେ ଯେ ତତ୍ତ୍ୱମାନ ହୋଇଛି ବ୍ୟାଖ୍ୟାନ
ଅତୀନ୍ଦ୍ରିୟ ଅଲୌକିକ ଅଦୃଷ୍ଟ ପ୍ରମାଣ । ୧୮୧
ସେ ବିଷୟେ ଯୁକ୍ତିତର୍କ କରି କି ହୋଇବ
ପରିଶେଷେ ନାସ୍ତିକ ବା ଜଡ଼ବାଦୀ ହେବ ।୧୮୨
ଯୁକ୍ତି ତର୍କେ ବୁଝିପାର ବାହାର ବିଷୟ
ଅନୁମାନ ପ୍ରତ୍ୟକ୍ଷରେ କରିପାର ଥୟ । ୧୮୩
ଯେଉଁ ବିଷୟର ଶାସ୍ତ୍ର ଅଟଇ ପ୍ରମାଣ
ପ୍ରମାଣ ନାହିଁ ଯାହାର ଶାସ୍ତ୍ର ବିନୁ ଆନ ।୧୮୪
ସେ ବିଷୟ ବୁଝିବାକୁ ଶାସ୍ତ୍ର ମାତ୍ର ସଖା
ଶାସ୍ତ୍ର ନ ମାନିଲେ କିଛି ଦିବନାହିଁ ଦେଖା ।୧୮୫
ଶାସ୍ତ୍ର ଉପରେ ବିଶ୍ୱାସ ନାହିଁ ଯାହାଙ୍କର
ସେମାନଙ୍କ କଥା ଅଟେ ଆନ ପରକାର ।୧୮୬
ସ୍ୱର୍ଗରାଜ୍ୟରେ ଦେବତା ଅଛି କି ନ ଅଛି
ଜନ୍ମାନ୍ତର ବୋଲି କିଛି ଅଛି ବା ନ ଅଛି ।୧୮୭
ସ୍ୱର୍ଗ ବା ଈଶ୍ୱର ବୋଲି ଅଛି କିବା ନାହିଁ
ପ୍ରତ୍ୟକ୍ଷ ଅନୁମାନରେ ବୁଝା ନ ପଡ଼ଇ । ୧୮୮

ଶାସ୍ତ୍ର କେବଳ ପ୍ରମାଣ ଏ ସବୁ ତତ୍ତ୍ୱର
ଶାସ୍ତ୍ର ବିଶ୍ୱାସ ନ କଲେ ନାହିଁ କିଛି ଫଳ ।୧୮୯
ଶାସ୍ତ୍ରରେ ବିଶ୍ୱାସ କଲେ ଏ ତତ୍ତ୍ୱ ଜାଣିବ
ଶାସ୍ତ୍ର ବିଶ୍ୱାସ ନ କଲେ ଧନ୍ଦ ହୋଇଥିବ ।୧୯୦
ସ୍ୱର୍ଗ ଅନ୍ତରୀକ୍ଷ ମର୍ତ୍ତ୍ୟ ଏ ତିନି ଭୁବନ
ଭୂ ଭୁବଃସ୍ୱ ଅଟଇ ଏ ତିନିର ନାମ । ୧୯୧
ଏ ତିନିଭୁବନ ନାମ ଅଟଇ ସଂସାର
ଏଥିରେ ବିଷୟ ଅଛି ନାନା ପରକାର । ୧୯୨
ଯାହା ଦେଖାଯାଏ ଅବା ଅନୁମାନ ହୁଏ
ସେସବୁ ଲୌକିକ ବୋଲି ସଂସାରେ ବୋଲାଏ ।
ଦେଖା ନ ଯାଏ ଯାହାର ନାହିଁ ଅନୁମାନ
ଅଲୌକିକ ବିଷୟଟି ଅଟେ ସେ ପ୍ରମାଣ ।୧୯୪
ପରମାର୍ଥ ଶାସ୍ତ୍ର ଅଟେ ଗୀତାଶାସ୍ତ୍ର ଜାଣ
ମୋକ୍ଷଶାସ୍ତ୍ରମାନଙ୍କରେ ଅଟେ ଏ ପ୍ରଧାନ ।୧୯୫
ଅନନ୍ତ ଅଜଣା ରାଜ୍ୟ ଅମୃତ ସମାନ
ସେହି ରାଜ୍ୟ କଥା ଗୀତା କରଇ ବଖାଣ ।୧୯୬
ସେ ରାଜ୍ୟେ ପ୍ରବେଶ ପାଇଁ ଯେଉଁ ପଥ ଅଛି
ସେ ପଥ ଗୀତା ଲୋକଙ୍କୁ ଦେଖାଇ ଦେଇଛି ।
ଏ ସଂସାର ରାଜ୍ୟ ପାର ହୋଇଯିବା ପରେ
ପ୍ରବେଶ ହୋଇବ ସେହି ଅମୃତ ରାଜ୍ୟରେ ।
ସଂସାର ଅଟେ ଅଶ୍ୱତ୍ଥ ବୃକ୍ଷର ସମାନ
ଅତି ଦୃଢ଼ ଅଟେ ତାର ମୂଳଚେରମାନ ।୧୯୯
ଯେତେ ଶାସ୍ତ୍ର ଅସ୍ତ୍ର ହେଲେ କାଟି ନ ପାରିବ
ସାଧନାହିଁ କାହାର ସେ ବୃକ୍ଷ ଉପାଡ଼ିବ ।୨୦୦
ସଂସାର ଅଶ୍ୱତ୍ଥବୃକ୍ଷ କାଟିବା ନିମିତ୍ତ
ଅସଙ୍ଗ ଅଟଇ ଜାଣ ଏକମାତ୍ର ଶସ୍ତ୍ର । ୨୦୧
ସଂସାର ସହିତ ଯେହୁ ସଙ୍ଗ ନ କରିବ
ସେହି ଏକା ଏ ଅଶ୍ୱତ୍ଥବୃକ୍ଷକୁ କାଟିବ । ୨୦୨

ଗୀତା ଏହି ଉପଦେଶ ଦେଇଅଛି ଜାଣ
ପରିଷ୍କାର କହିଛନ୍ତି ଏହା ଭଗବାନ । ୨୦୩
ଅସଙ୍ଗ ଶସ୍ତ୍ରରେ ଯେହୁ ସେ ବୃକ୍ଷ କାଟିବ
ସେହି ଏକା ମୋ ପରମପଦ ପ୍ରାପ୍ତହେବ ।୨୦୪
ଯୁକ୍ତି ତର୍କ ବାଦ ବିସମ୍ବାଦ ଆଦି ଯେତେ
ପ୍ରମାଣ କରି ନ ପାରେ ଏ ତତ୍ତ୍ୱ କଷ୍ମିତେ ।
ଗୀତାକୁ ବିଶ୍ୱାସ କଲେ ଏ ତତ୍ତ୍ୱ ବୁଝିବ
ଗୀତା ଉପଦେଶମାନ ସାଧନା କରିବ । ୨୦୬
ସାଧନା ନ କଲେ ସିଦ୍ଧି କେବେ ନ ହୋଇବ
କେବଳ ଗୀତା ପଠନେ ଫଳ ନ ପାଇବ ।
ଶୁକ ପାଠକରେ ନିତି ଘରେ କୃଷ୍ଣ ରାମ
ବିରାଡ଼ି ଧରିଲାବେଳେ ନ ପଢଇ ନାମ ।୨୦୮
କେଁଏ କେଁଏ ଶବଦ ବାହାରେ ତେତେବେଳେ
ନାମପାଠ ବିସ୍ମରଣ ହୁଏ ସେତେବେଳେ ।୨୦୯
ସେହିପରି ନିତି ଗୀତା ପାଠ କରୁଥିବ
ଅସଲ କାମବେଳକୁ ସବୁ ପାଶୋରିବ । ୨୧୦
ସାଧନା ବିହୁନେ ଗୀତା ପାଠର ଏ ଫଳ
ଗୀତାରେ ଏ ଉପଦେଶ ଦେଲେ ଆଦିମୂଳ ।
ପଠନ କରି ଗୀତାର ମରମ ବୁଝିବ
ବୁଝିସାରି ସାଧନାରେ ମନ ବଳାଇବ । ୨୧୨
ଭଗବାନଙ୍କ ଚରଣେ ପଶିବ ଶରଣ
କୃପାକର ମହାପ୍ରଭୁ କରିବ ଜଣାଣ । ୨୧୩
ଗୀତା ଅର୍ଥ ମୋତେ ପ୍ରଭୁ ହେଉ ହେ ସୁଗମ
ସେ ମର୍ମ ବୁଝିବାପାଇଁ ଦିଅ ସଦଜ୍ଞାନ । ୨୧୪
ନମସ୍ତେ ହେ ମହାପ୍ରଭୁ ସତ୍ୟ ସନାତନ
ବିଶ୍ୱରୂପାତ୍ମକ ପ୍ରଭୁ ନିତ୍ୟ ଚଇତନ୍ୟ । ୨୧୫
ସର୍ବଲୋକର ଆଶ୍ରୟ ନିର୍ଗୁଣ ପରମ
ଅଦ୍ୱୈତ ତତ୍ତ୍ୱ ସାକ୍ଷାତ ମୁକ୍ତିର କାରଣ ।୨୧୬

ନମସ୍ତେ ହେ ପରଂବ୍ରହ୍ମ ଜଗତ ବ୍ୟାପକ
ଏ ଜଗତ ମୂଳାଧାର ଅଟ ତୁମ୍ଭେ ଏକ ।୨୧୭
ତୁମ୍ଭେ ତ ଶରଣ୍ୟ ପ୍ରଭୁ ତୁମ୍ଭେ ତ ବରେଣ୍ୟ
ତୁମ୍ଭେ ବିଶ୍ୱରୂପ ତୁମ୍ଭେ ଜଗତ କାରଣ ।୨୧୮
ତୁମ୍ଭେ ପ୍ରଭୁ ଅଟ ଜଗତର ପିତାମାତା
ତୁମ୍ଭେ ହରତା କରତା ପାଳନ ବିଧାତା ।୨୧୯
ସର୍ବାପର ତୁମ୍ଭେ ପ୍ରଭୁ ନିଶ୍ଚଳ ଅନନ୍ତ
ନିର୍ବିକଳ୍ପ ଅଟ ତୁମ୍ଭେ କି ବୁଝିବ ତତ୍ତ୍ୱ । ୨୨୦
ଭୟମାନଙ୍କ ମଧ୍ୟରେ ତୁମ୍ଭେ ମହାଭୟ
ଭୀଷଣ ମଧ୍ୟରେ ମହାଭୀଷଣ ନିଶ୍ଚୟ । ୨୨୧
ଜଗତ ପ୍ରାଣୀର ତୁମ୍ଭେ ଏକମାତ୍ର ଗତି
ପତିତଜନମାନଙ୍କୁ ଦିଅ ହେ ମୁକତି । ୨୨୨
ମହା ଉଚ୍ଚପଦ ଯେତେ ତହିଁର ନିୟନ୍ତା
ରକ୍ଷକମାନଙ୍କ ପରେ ରକ୍ଷକ କରତା । ୨୨୩
ଅବିନାଶୀ ଅଟ ତୁମ୍ଭେ ଆବର ପରେଶ
ସକଳ ରୂପରେ ବିରାଜୁଛ ଅହର୍ନିଶ । ୨୨୪
ସକଳ ଇନ୍ଦ୍ରିୟାଗମ୍ୟ ଅଟ ଅନିର୍ଦ୍ଦେଶ
ସତ୍ୟ ସନାତନ ପ୍ରଭୁ ଆହେ ଜଗଦୀଶ । ୨୨୫
ହେ ଅବ୍ୟକ୍ତ ତତ୍ତ୍ୱ ପ୍ରଭୁ ଅଚିନ୍ତ୍ୟ ଅକ୍ଷର
ବ୍ୟାପକ ଅବ୍ୟକ୍ତ ପ୍ରଭୁ ଆହେ ନିରାକାର ।୨୨୬
ଜଗତ ପ୍ରକାଶାଧୀଶ ଜଗତ କାରଣ
ଏକମାତ୍ର ତୁମ୍ଭେ ପ୍ରଭୁ ଭଜନ ସ୍ମରଣ । ୨୨୭
ନମଇ ଜଗତସାକ୍ଷ୍ୟ ତବ ଶ୍ରୀଚରଣ
ନିରାଶ୍ରୟମାନଙ୍କର ଆଶ୍ରୟ ପ୍ରଧାନ । ୨୨୮
ହେ ଭବଜଳଧିପୋତ ନେଲି ମୁଁ ଶରଣ
ସୁଗମ ହେଉ ହେ ପ୍ରଭୁ ମୋତେ ଗୀତାଜ୍ଞାନ ।
ଏପରି ପ୍ରାର୍ଥନା କରି ଗୀତା ପାଠକର
ଗୀତାର ମରମ ଜାଣିପାରିବ ନିକର । ୨୩୦

ଗୀତା ଅର୍ଥ ନେଇଅଛି ନାନା ମତାନ୍ତର
ସବୁ ଅର୍ଥ ପାଠକରି ସମନ୍ୱୟ କର । ୨୩୧
ସଂସ୍କୃତ ଭାଷାରେ ଅଛି ଏକ ବିଶେଷତ୍ୱ
ପ୍ରତି ଶବଦର ଅର୍ଥ ହୋଇବ ବହୁତ । ୨୩୨
ଗୀତା ମୂଳସୂତ୍ର ଯେହୁ ବୁଝି ନ ପାରିବ
ଅର୍ଥ ଜଙ୍ଗଲରେ ପଶି ଭ୍ରମି ହେଉଥିବ । ୨୩୩
ଅନେକ ପଦ ଅଛଇ ଅତୀବ କଠିନ
ବୁଝି ନ ପାରିବ ତାକୁ ସାଧାରଣଜ୍ଞାନ । ୨୩୪
ଅକର୍ମେ କର୍ମ ଦେଖିବ କର୍ମେ ଅକରମ
ଏତିକରେ କିଏସେ ବୁଝିବ କି ମରମ । ୨୩୫
ଏହିପରି ଅଛି କେତେ ଗୂଢ଼ତତ୍ତ୍ୱମାନ
ବୁଝି ନ ପାରିବ ତାକୁ ଲୋକ ସାଧାରଣ ।୨୩୬
ଶଙ୍କର, ମଧୁସୂଦନ, ରାମାନୁଜ ପୁଣ
ବଲ୍ଲଭ ଆଚାର୍ଯ୍ୟ, ବଳରାମ, ହନୁମାନ । ୨୩୭
ଏମାନେ ଗୀତାର ଅର୍ଥ ଟୀକା କରିଛନ୍ତି
ଭିନ୍ନ ଭିନ୍ନ ପରକାରେ ଟୀକା ଲେଖିଛନ୍ତି ।୨୩୮
ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତବାଦ
କି ଅବା କାହାର ମତ ଅଟେ ଦ୍ୱୈତବାଦ ।
ଏତେ ବାଦ ମୂଳକରି ଅର୍ଥ ଲେଖିଛନ୍ତି
କେ ବୋଲେ ପ୍ରଧାନ ମାର୍ଗ ଅଟଇ ଭକତି ।
କେ ବୋଲେ କର୍ମ କେ ବୋଲେ ଜ୍ଞାନଟି ପ୍ରଧାନ
ଯେ ଯାହା ମତରେ ଗୀତାତତ୍ତ୍ୱ ଭିନ୍ନ ଭିନ୍ନ ।
ଶ୍ରଦ୍ଧା ସହିତ ଯେ ଗୀତା ପଠନ କରିବ
ଗୀତାର ପ୍ରକୃତ ଅର୍ଥ ତାକୁ ଜଣାଯିବ । ୨୪୨
ନିର୍ମଳ ଚିତ୍ତ ଅଟଇ ଯେଉଁ ପାଠକର
ଗୀତା ଅର୍ଥ ଦେଖାଯିବ ତାହାକୁ ନିକର ।୨୪୩
ନିଷ୍କାମ ଭାବରେ ଯେହୁ କରମ କରିବ
ତାହାର ଚିତ୍ତ ଅବଶ୍ୟ ନିର୍ମଳ ହୋଇବ ।୨୪୪

ଗୀତାରେ ଯେମନ୍ତ ମାର୍ଗ ହୋଇଛି ବର୍ଣ୍ଣନ
ସେହି ମାର୍ଗ ଅନୁସରି କରିବ ସାଧନ । ୨୪୫
ସେହି ସାଧନାରେ ଯେହୁ ସିଦ୍ଧି ଲଭ କରେ
ଗୀତାର୍ଥ ବିଜ୍ଞାନ ସେହୁ ଲଭେ ସହଜରେ ।୨୪୬
ଗୀତା ପଢ଼ିବାକୁ ଯାର ନାହିଁ ଅଧିକାର
ଗୀତା ଅର୍ଥ ତାକୁ କେବେ ନ ହେବ ଗୋଚର ।
ଗୀତା ପାଠକରି କର୍ମଯୋଗ ଆଚରିବ
ନିଷ୍କାମ କର୍ମକରଣେ ମନ ବଳାଇବ । ୨୪୮
ଚିତ୍ତ ନିର୍ମଳ ଯାହାର ହେଉଥିବ ଯେତେ
ଗୀତା ଅର୍ଥ ପ୍ରକାଶ ହୋଇବ ତେତେତେତେ ।
ଭଗବାନ ତାହାପ୍ରତି କରୁଣା କରିବେ
ଗୀତା ଅର୍ଥ ସହଜରେ ବୁଝିବ ସେ ତେବେ ।
ଯେ ଲୋକ ଯେପରି ଜ୍ଞାନୀ ଧ୍ୟାନୀ ବା ସାଧକ
ଭଗବାନଙ୍କ କରୁଣା ଲଭେ ସେ ଅଧିକ ।୨୫୧
ଗୀତା ଅର୍ଥ ସେହି ପରମାଣେ ସେ ବୁଝଇ
ଗୀତା ଅର୍ଥ ବୁଝିବାକୁ ଅଧିକାରୀ ସେହି ।୨୫୨
ଯେଉଁମାନେ ଅଜ୍ଞାନୀ କରମ ସଙ୍ଗୀ ପୁଣ
ଯାହାଙ୍କଠାରେ ପୂରିଛି ରଜ ତମ ଗୁଣ । ୨୫୩
ଆପଣା ସ୍ୱାର୍ଥ କାର୍ଯ୍ୟରେ ଯେହୁ ମାତିଥାନ୍ତି
ଈଶ୍ୱରଙ୍କଠାରେ ଯେ ବିଶ୍ୱାସ ନ କରନ୍ତି ।୨୫୪
କାମ କ୍ରୋଧ ବଶୀଭୂତ ହୁଅଇ ଯେ ଜନ
ସଂସାରର ସୁଖ ଭୋଗେ ସଦା ଯାର ମନ ।୨୫୫
ବିଶ୍ୱାସ ନ କରେ ଯେହୁ ଈଶ୍ୱର ବଚନ
ଶ୍ରଦ୍ଧା ନ କରଇ ଯେହୁ ଶୁଣି ସେ କଥନ ।୨୫୬
ସେ ବାଣୀ ଶୁଣି ଯେ ମନେ କରଇ ସଂଶୟ
ଗୀତାପାଠେ ଅଧିକାରୀ ନୁହେଁ ସେ ନିଶ୍ଚୟ ।
ଅଧିକାରୀ ନୋହି ଯେହୁ ଗୀତାପାଠ କରେ
ପ୍ରକୃତ ଅର୍ଥ ନ ବୁଝି ଯାଏ କୁପଥରେ । ୨୫୮

ଗୀତା ପଢ଼ି କେତେମାନ ଫଳନାହିଁ ତାର
ବିପରୀତ ଅର୍ଥ ବୁଝି ଲଭଇ କୁଫଳ । ୨୫୯

ଗଉର ଉବାଚ

ଗୀତାର ଯେଉଁ ମାହାତ୍ମ୍ୟ କହିଲେ ଆପଣ
ଦେଖୁଛି ଅତ୍ୟନ୍ତ ଗୂଢ଼ ତହିଁର ମରମ । ୨୬୦
କପରି ସାଧନା କଲେ ଗୀତାର୍ଥ ବୁଝିବ
ସାର ସାର କଥାମାନ ବୁଝାଇ କହିବ । ୨୬୧
ଅଷ୍ଟାଦଶ ଅଧ୍ୟାୟ କେ କଣ୍ଠସ୍ଥ କରଇ
କେହି ଅବା ନିତି ଗୀତାପାଠ ଅଭ୍ୟାସଇ ।୨୬୨
ଏଥିରେ କିଛି ଫଳ କି ନ ହୁଏ ତାହାର
କପରି ସାଧନା କଲେ ହୋଇପାରେ ଫଳ ।

ଜଗା ଉବାଚ

ଫଳ କାମନା ମନରୁ ସବୁ ଛାଡ଼ିଦେବ
କର୍ତ୍ତବ୍ୟ ଜ୍ଞାନରେ ଗୀତା ପଠନ କରିବ ।୨୬୪
ନିଷ୍କାମ ଭାବରେ ଗୀତା ପାଠକଲେ ନିତି
ତହିଁର ମରମମାନ ବୁଝିବ ଝଟିତି । ୨୬୫
ଶୁଦ୍ଧ ପୂତ ନିର୍ମଳ ଭାବରେ ଯେ ବସିବ
ଦମ୍ଭ ଅହଙ୍କାର ଗର୍ବ ମନରେ ନ ଥିବ । ୨୬୬
ଶ୍ରଦ୍ଧାରେ ଭଗବାନଙ୍କୁ କରିବ ସ୍ମରଣ
କରିବ ନିଷ୍କଳଚିତ୍ତେ ଉପଯୁକ୍ତ ଧ୍ୟାନ । ୨୬୭
ଭଗବାନଙ୍କର କୃପା ତେବେ ଲଭହେବ
ଗୀତାର ପ୍ରକୃତ ଅର୍ଥ ତେବେ ସେ ବୁଝିବ ।
ଯେତେ ଯେତେ ଶ୍ରଦ୍ଧାସହ ପାଠ କରୁଥିବ
କ୍ରମେ କ୍ରମେ ତାର ମର୍ମ ବୁଝି ପାରୁଥିବ ।୨୬୯
ମର୍ମ ବୁଝି ସାଧନା କରିବ ଯେତେବେଳେ
ସିଦ୍ଧି ଲଭହେବ ସିନା ଯାଇଁ ତେତେବେଳେ ।
ପ୍ରଥମେ ଗୀତା ମାହାତ୍ମ୍ୟ କହୁଅଛି ଶୁଣ
ଗୀତା ଅଟେ ମୋକ୍ଷଶାସ୍ତ୍ରମାନଙ୍କ ପ୍ରଧାନ ।୨୭୧

ପରବିଦ୍ୟାରୂପିଣୀ ଏ ଗୀତା ଶାସ୍ତ୍ର ଜାଣ
ପଢ଼ି ସାଧିଲେ ହୋଇବ ଜନ୍ମ ଦିବ୍ୟଜ୍ଞାନ ।
ପରମେଶ୍ୱରର ଯେଉଁ ପରମ ଭାବନା
ଗୀତାପାଠେ ମନେ ଦୃଢ଼ ହୋଇପାରେ ସିନା ।
ଜ୍ଞାନ ହେଲେ ମୁକ୍ତିହେବ ଏ କଥା ନିଶ୍ଚୟ
ଜ୍ଞାନ ବିହୁନେ ମୁକତି ନ ହେବାର ଥୟ ।୨୭୪
ହିନ୍ଦୁଶାସ୍ତ୍ରର ଏ କଥା ଅଟଇ ସିଦ୍ଧାନ୍ତ
ଗୀତା ଜ୍ଞାନର ପରମ ଆକାର ନିଶ୍ଚିତ ।୨୭୫
ଗୀତା ଭଗବାନଙ୍କର ଶ୍ରୀମୁଖ ବଚନ
ବୋଇଲେ ଗୀତା ମୋ ହୃଦ ପାର୍ଥ ଭଲେ ଜାଣ
ଗୀତା ମୋ ପରମପଦ ଗୁରୁ ମୋ ପରମ
ଗୀତା ମୋ ପରମବିଦ୍ୟା ବ୍ରହ୍ମରୂପା ପୁଣ ।୨୭୭
ସଂସାର ସାଗର ତରିବାକୁ ଇଚ୍ଛା ଯାର
ଗୀତା ମନେ ଧରି ସେହି ସୁଖେ ହେବ ପାର ।
ପାଦେ ଅକ୍ଷରେ ବା ଶ୍ଳୋକେ ଯେ ପଢ଼ଇ ନିତି
ଶ୍ରଦ୍ଧା ବିଶ୍ୱାସେ ପଢ଼ିଲେ ଲଭିବ ମୁକତି ।୨୭୯
ଈଶ୍ୱରର ଅନୁକମ୍ପା ଅବଶ୍ୟ ଲଭିବ
ସକଳ ଧରମ ଛାଡ଼ି ଯେ ଶରଣ ନେବ । ୨୮୦
ବୋଲେ ଦୀନ ଜଗବନ୍ଧୁ ହେ ପରମେଶ୍ୱର
ଶରଣ ରକ୍ଷଣ ବାନା ଆହେ ଚକ୍ରଧର । ୨୮୧
ଚକ୍ରରେ ମୋ ଅଜ୍ଞାନ ଗଣ୍ଠିକି ଛେଦି ଦିଅ
ଦିବ୍ୟଜ୍ଞାନ ଦିଅ ପ୍ରଭୁ ହୁଅ ହେ ସଦୟ । ୨୮୨

**ଇତି** ଶ୍ରୀ ଭାରତ-ଚରିତାମୃତେ ଗୀତା ଚରିତେ ଊନଶତ ଅଧ୍ୟାୟଃ ।



## ଶତ ଅଧ୍ୟାୟ

ଗଉର ଉବାଚ

ଓଡ଼ିଶାରେ ହେଲା କମ୍ପା ପାଇକ ବିଦ୍ରୋହ
କିଏ ସେନାପତି ହୋଇ ଚଳାଇଲା କହ । ୧

ବିଦ୍ରୋହର ଇତିହାସ ଜାଣିବାକୁ ମନ
କହନ୍ତୁ ସେ ଚରିତ ହୋଇଣ ସୁପ୍ରସନ୍ନ । ୨

ଜଗା ଉବାଚ

ଶୁଣ ଯାହା ପଚାରିଲ କହୁଛି ଉତ୍ତର
ଓଡ଼ିଶାରେ ଥିଲେ ଜଗବନ୍ଧୁ ବିଦ୍ୟାଧର । ୩
ଓଡ଼ିଶା ମହାରାଜାଙ୍କ ବକସି ସେ ଥିଲେ
ବଡ଼ ପ୍ରତାପୀ ସେ ଥିଲେ ତାହାଙ୍କ ଅମଳେ ।୪
ତାଙ୍କ ଘର ଖାନଦାନ ଥିଲା ଓଡ଼ିଶାରେ
ରୋଡ଼ଙ୍ଗଗଡ଼ରେ ସେହୁ ବାସ କରୁଥିଲେ । ୫
ପ୍ରଧାନ ସେନାପତି ସେ ଥିଲେ ଓଡ଼ିଶାର
ସକଳ ପାଇକ ସୈନ୍ୟ ଅଧୀନ ତାଙ୍କର । ୬
ଓଡ଼ିଶାର ରାଜବଂଶ ଯେଉଁ କାଳୁ ଥିଲା
ବକସି ବଂଶ ସେ କାଳୁ କାର୍ଯ୍ୟ କରୁଥିଲା । ୭
ରୋଡ଼ଙ୍ଗ କିଲା ଜାଗିର ଭୋଗ କରୁଥିଲେ
ଅଠରଶ ତିନ ସାଲେ ଇଂରେଜ ଆସିଲେ ।୮
ଓଡ଼ିଶାରେ ଇଂରେଜ ରାଜତ୍ୱ ଜାରିହେଲା
ଓଡ଼ିଶା ସେ ଦିନୁ ସ୍ୱାଧୀନତା ହରାଇଲା । ୯
ଓଡ଼ିଶାର ବୀରତ୍ୱ ଯେ ଇତିହାସେ ଖ୍ୟାତ
ରଣ ବିଦ୍ୟାରେ ସେମାନେ ଥିଲେକ ପଣ୍ଡିତ ।୧୦
ପଦାତିକ ସୈନ୍ୟମାନେ ଥିଲେକ ପାଇକ
ନିଷ୍କର ଜାଗିର ଭୋଗୁଥିଲେକ ଅନେକ । ୧୧
ସୁଖ ସ୍ୱଚ୍ଛନ୍ଦରେ ଖାଇ ପିଇ ଚଳୁଥିଲେ
ହୃଷ୍ଟପୁଷ୍ଟ ବଳିଷ୍ଠ ବିଖ୍ୟାତ ମଲ୍ଲ ଥିଲେ । ୧୨
ବଇଶି ପ୍ରତି ଖାତିର ନ ଥିଲା ତାଙ୍କର
ଆଦେଶ ଅପେକ୍ଷାକରି ଚଳନ୍ତି ନକର । ୧୩
ବଂଶଗତ ବିଦ୍ୟା ଥିଲା ସମର ତାଙ୍କର
ଆବହମାନକାଳରୁ ଥିଲେକ ସେ ବୀର । ୧୪

ଇଂରେଜ ଅମଳ ଆସି ପ୍ରବେଶ ଯେ କାଳେ
ଦ୍ୱିତୀୟ ମୁକୁନ୍ଦଦେବ ରାଜା ତେତେବେଳେ ।
ଚବିଶକୁଦ ରାଜାଙ୍କ ପ୍ରଗନା ସିଗଇ
ମରହଟ୍ଟା ଅମଳରୁ ଥିଲେ ସେ ହରାଇ । ୧୭
ଆଶା ଥିଲା ଇଂରେଜ ହାତକୁ ରାଜ୍ୟ ଗଲେ
ସେ ସବୁ ସମ୍ପତ୍ତି ଫେର ପାଇବେ ସେ ଭଲେ ।
ସେହି ଆଶା ମନେ ପୋଷି କଲେକ ବାହାର
ଇଂରେଜ ସଙ୍ଗେ ବିଦ୍ରୋହୀ ନ ହେବେ ନକର ।
କେତେଦିନ ଗଲା ତାଙ୍କ ଆଶା ନ ପୂରିଲା
ତେଣୁ ତାଙ୍କ ମନେ ଅସନ୍ତୋଷ ଜନମିଲା ।୧୯
ଜଗନ୍ନାଥ ଦେଉଳର ରକ୍ଷଣାବେକ୍ଷଣ
ପ୍ରାଚୀନକାଳରୁ ଥିଲା ରାଜାଙ୍କ ଅଧୀନ । ୨୦
ଇଂରେଜମାନେ ତାଙ୍କଠୁଁ ସେହି ଭାର ନେଲେ
ତାଙ୍କ କର୍ମଚାରୀମାନେ ଦେଉଳ ଲୁଟିଲେ । ୨୧
ମୁକୁନ୍ଦଦେବ ଏଥିରେ ହେଲେ ମର୍ମାହତ
ଅନ୍ୟରାଜା ସଙ୍ଗେ କଲେ ମନ୍ତ୍ରଣା ଗୁପତ । ୨୨
ଇଂରେଜଙ୍କ କାନକୁ ଏପରି କଥା ଗଲା
ଇଂରେଜଙ୍କ ମନେ ଘୋର ସନ୍ଦେହ ଜନ୍ମିଲା ।
ଇଂରେଜ ସୈନ୍ୟ ଖୋରଧା ଆକ୍ରମଣ କଲେ
ଧରାହୋଇ ମୁକୁନ୍ଦଦେବ ଯେ ବନ୍ଦୀହେଲେ ।୨୪
କେତେଜଣ ସୈନ୍ୟ ଫାଶିକାଠରେ ଝୁଲିଲେ
ମୁକୁନ୍ଦଦେବ ମେଦନୀପୁରରେ ରହିଲେ । ୨୫
କେତେକାଳ ପରେ ସେହୁ ହୋଇଲେ ମୁକତ
ଖୋରଧା ଇଂରେଜଙ୍କର ହେଲା କରଗତ ।୨୬
ପାଇକମାନେ ଜାଗିରି ଜମି ଭୋଗୁଥିଲେ
ଇଂରେଜ ସେ ଜମିପରେ କର ବସାଇଲେ ।୨୭
ତେତେବେଳେ ଇଂରେଜର ଯେତେ କର୍ମଚାରୀ
ଅଧିକାଂଶ ସେଥିରୁ ଯେ ଥିଲେକ ବଙ୍ଗାଳୀ ।୨୮

ଜଣେ କେହି ଓଡ଼ିଆ ସେ କର୍ମରେ ନ ଥିଲା
ଖଜଣା ଆଦାୟପାଇଁ ଅତ୍ୟାଚାର ହେଲା । ୨୯
ଫସଲରୁ ଅଂଶ କର ନିଆ ଯାଉଥିଲା
ଅଥବା କଉଡ଼ି ତା ବଦଳେ ଚଳୁଥିଲା । ୩୦
ଇଂରେଜ ଅମଳେ ହେଲା ଟଙ୍କା କାରବାର
ଦେବାପାଇଁ ପାଇକଙ୍କୁ ହେଲା କଷ୍ଟକର । ୩୧
କର୍ମଚାରୀମାନେ ନାନା ଅତ୍ୟାଚାର କଲେ
ନ୍ୟାୟ ଅନ୍ୟାୟ ପାଉଣା କସିକରି ନେଲେ ।
ଏଥିରେ ଖୋରଧାବାସୀ ହୋଇଲେ ଉତ୍ୟକ୍ତ
ମନେ ମନେ ଅସନ୍ତୋଷ ହୋଇଲେ ବହୁତ ।୩୩
ଚିଲିକା କୂଳରେ ଲୁଣ ମରା ହେଉଥିଲା
ଲୁଣ କାରବାର କରି ଲୋକ ଚଳୁଥିଲା । ୩୪
ପାଇକମାନେ ଛ'ମାସେ ଗୃହରେ ଚଳନ୍ତି
ବାକି ଛ'ମାସେ ଲବଣ ବେପାର କରନ୍ତି ।୩୫
ଇଂରେଜମାନେ ଏ ଲୁଣମରା ବନ୍ଦକଲେ
ତାଙ୍କ ଦେଶ ଲୁଣ ଆଣି ଭାରତେ ବିକିଲେ ।୩୬
ପାଇକମାନଙ୍କ କଷ୍ଟ ଦ୍ୱିଗୁଣ ବଢ଼ିଲା
ପେଟ ପୋଷିବାର ସବୁ ଦ୍ୱାର ରୁଦ୍ଧହେଲା ।୩୭
ଏହିପରି ଅସନ୍ତୋଷ ବହ୍ନି କୁହୁଳିଲା
ଜଳିବାପାଇଁ ସୁବିଧା ସୁଯୋଗ ଘଟିଲା । ୩୮
ଜଗବନ୍ଧୁ ବିଦ୍ୟାଧର ଏହି ସମୟରେ
ରୋଡ଼ଙ୍ଗ କିଲ୍ଲା ତାଙ୍କର ହରାଇ ବସିଲେ । ୩୯
ଇଂରେଜମାନେ ଓଡ଼ିଶା ଆସିଥିଲାବେଳେ
ବଙ୍ଗଦେଶ କର୍ମଚାରୀ ସଙ୍ଗେ ଆଣିଥିଲେ । ୪୦
ଇଂରେଜମାନେ ଓଡ଼ିଶା ଅଧିକାର କଲେ
ଲୋକଙ୍କର ରୀତି ନୀତି ସେ ଜାଣି ନ ଥିଲେ ।୪୧
ବଙ୍ଗଦେଶ କର୍ମଚାରୀ ଯାହା ବୁଝାଇଲେ
ସେହିକଥା ଅନୁସାରେ ସେମାନେ ଚଳିଲେ ।୪୨

ବଙ୍ଗଦେଶ କର୍ମଚାରୀ ଯେ ସବୁ ରହିଲେ
ରାଜସ୍ୱ ଆଦାୟ ଭାର ଥିଲା ତାଙ୍କ ମୂଳେ । ୪୩
ପୂର୍ବଭାରତୀୟ ସଙ୍ଗେ ଇଂରେଜ ଶାସକ
ଅର୍ଥ ଶୋଷଣ କରିବା କଲେ ମୁଖ୍ୟ ଲକ୍ଷ । ୪୪
କର୍ମଚାରୀମାନେ ଅର୍ଥ ଦେଇ ତୋଷକଲେ
ଯେନ କେନ ପ୍ରକାରେ ସେମାନେ ଅର୍ଥ କଲେ ।
ବରଷକେ ଥରେ ଅବା ଦୁଇ ବରଷରେ
ଓଡ଼ିଶାର ଜମି ଜମା ବନ୍ଦୋବସ୍ତ କଲେ । ୪୬
ଥରକୁଥର ରାଜସ୍ୱ ବଢ଼ିଲା ବହୁତ
କର ବୃଦ୍ଧି ପୀଡ଼ାପାଇ ଲୋକେ ହେଲେ ବ୍ୟସ୍ତ ।
ଲୋକମାନେ ବୃଦ୍ଧି କର ଦେଇ ନ ପାରିଲେ
ଘର ଦ୍ୱାର ଛାଡ଼ି ପଳାଇବେ ବିଚାରିଲେ । ୪୮
ରାଜସ୍ୱ ଆଦାୟ ସୁଖେ ହୋଇ ନ ପାରିଲା
କ୍ରମେ ଲୋକଙ୍କର ଜମି ନିଲାମ ହୋଇଲା । ୪୯
ବଙ୍ଗଦେଶ କର୍ମଚାରୀ ବୋଇଲେ ଏମନ୍ତ
ଓଡ଼ିଆମାନେ ବଣୁଆ ଅସଭ୍ୟ ନିଶ୍ଚିତ । ୫୦
ଲେଖାପଢ଼ା ଏ ଦେଶ ଲୋକଙ୍କୁ ଜଣାନାହିଁ
ଜମି ନିଲାମ ହୋଇଲେ କେ କିଣିବେ ନାହିଁ । ୫୧
କଲିକତାଠାରେ ଯେବେ ନିଲାମ ହୋଇବ
ବହୁ ଅର୍ଥ ତେବେ ଜମିଦାରୀରୁ ମିଳିବ । ୫୨
ଗୋରା କର୍ମଚାରୀମାନେ ଏ କଥା ଶୁଣିଲେ
ସେହି ପ୍ରସ୍ତାବରେ ସେହୁ ସ୍ୱୀକାର କଲେ । ୫୩
ଏହି ସୂତ୍ରେ ଓଡ଼ିଶାର କେତେ ଜମିଦାରୀ
କଲିକତାଠାରେ ତେଣୁ କିଣିଲେ ବଙ୍ଗାଳି । ୫୪
କେତେ ମୂଲ୍ୟବାନ ଜମିଦାରୀ ବିକାହେଲା
କର୍ମଚାରୀ ବେନାମୀ ପ୍ରକାରେ କିଣିନେଲା । ୫୫
କୃଷ୍ଣଚନ୍ଦ୍ର ସିଂହ ନାମେ ବଙ୍ଗାଳି ଦେବାନ
ଓଡ଼ିଶା ସରକାରରେ ଥିଲେ ସେହୁ ଜାଣ । ୫୬

ରାଜାଙ୍କ ଗୋଡ଼ଙ୍ଗପରେ ଦୃଷ୍ଟି ପକାଇଲେ
କଉଶଳେ ନେବାପାଇଁ ଷଡ଼ଯନ୍ତ୍ର କଲେ । ୫୭
ଅଠରଶ ନଅ ସାଲେ ବନ୍ଦୋବସ୍ତ ହେଲା
ତାହାଙ୍କ ଆପଣା ଲୋକ ନାମେ କରାଇଲା ।୫୮
ଜଣେ ଭାଇ ତାହାଙ୍କର କାର୍ଯ୍ୟ କରୁଥିଲେ
ରାଜସ୍ୱ ଆଦାୟୁ ଭାର ସେହୁ ନେଇଥିଲେ । ୫୯
ଇଂରେଜ ଶାସନ ପରେ ଗୋଡ଼ଙ୍ଗ କିଲ୍ଲାର
ବାର୍ଷିକ ରାଜସ୍ୱ କିଛି ଥିଲାକ ନିକର । ୬୦
ଅଠରଶ ଚାରି ସାଲଠାରୁ ବିଦ୍ୟାଧର
କୃଷ୍ଣଚନ୍ଦ୍ର ଭାଇ ଜମା ଦେଉଥିଲେ କର । ୬୧
କୃଷ୍ଣଚନ୍ଦ୍ରଙ୍କର ଭାଇ ସୁଯୋଗ ପାଇଲେ,
ରାଜାଙ୍କ ଓଗେର ଜମା ମୂଳେ ଲେଖୁଥିଲେ ।୬୨
ବନ୍ଦୋବସ୍ତରେ ରାଜାଙ୍କ ଗୋଡ଼ଙ୍ଗ ସାମିଲ
କୃଷ୍ଣଚନ୍ଦ୍ରଙ୍କ ଆତ୍ମୀୟ ନାମେ କଲେ ଜାଲ ।୬୩
ତେଣୁ ସେହୁ ଦୁଇଥରେ ସତ୍ତ୍ୱ ଲାଭ କଲେ
ନିଲାମ ହୋଇଲା ସତ୍ତ୍ୱ କଲିକତାଠାରେ । ୬୪
କୃଷ୍ଣଚନ୍ଦ୍ର ନିଜେ ନିଲାମରେ ଡାକିନେଲେ
ରାଜାଙ୍କ ଗୋଡ଼ଙ୍ଗ କିଲ୍ଲା ଜମିଦାର ହେଲେ ।୬୫
ଦଖଲ କରିବାପାଇଁ ଗୋଡ଼ଙ୍ଗ ଆସିଲେ
ଜଗବନ୍ଧୁ ସେଥିରେ ବହୁତ ବାଧା ଦେଲେ ।୬୬
କୃଷ୍ଣଚନ୍ଦ୍ର କମିଶନରଙ୍କୁ ଜଣାଇଲେ
ବୁଲର ସାହେବ ତାଙ୍କ ଅପିଲ ବୁଝିଲେ । ୬୭
ଜଗବନ୍ଧୁଙ୍କର ସତ୍ତ୍ୱ ଅପ୍ରମାଣ ହେଲା
କୃଷ୍ଣଚନ୍ଦ୍ର ଗୋଡ଼ଙ୍ଗରେ ଦଖଲ ପାଇଲା । ୬୮
ଜଗବନ୍ଧୁ ଏହା ଦେଖି ନିରୂପାୟ ହେଲେ
ଭିକ୍ଷୁକ ହୋଇଣ ସେହୁ ଦାଣ୍ଡରେ ବସିଲେ ।୬୯
ବିଚାରିଲେ ମକଦ୍ଦମା କରି କିସ ହେବ
ମକଦ୍ଦମା ପାଇଁ ଧନ କେଉଁଠୁ ମିଳିବ । ୭୦

ବଙ୍ଗାଳି କର୍ମଚାରୀଏ ସବୁଠି ଅନନ୍ତ
କ୍ଷମତାଶାଳୀ ସେମାନେ ସବୁଠି ଅଟନ୍ତ । ୭୧
ବଙ୍ଗାଳି ବିରୁଦ୍ଧେ ଯେବେ ନାଲିଶ କରିବେ
ସେହି ବଙ୍ଗାଳିମାନେ ତ ବିଚାର କରିବେ ।୭୨
ଓଡ଼ିଆର ସତେ ଦାବି ହେବ କି ପ୍ରମାଣ
ଏ କଥା ନୁହେଁ ସମ୍ଭବ ମାନୁନାହିଁ ମନ । ୭୩
ଲଜ୍ଜା ଅପମାନ ହେବବୋଲି ବିଚାରିଲେ
ଦୁଇ ବର୍ଷ କାଳ ବହୁ କଷ୍ଟରେ ଚଳିଲେ ।୭୪
ଖୋରଧାବାସୀଏ ଦେଇ କିଛି କିଛି ଦାନ
ଜଗବନ୍ଧୁଙ୍କୁ ଏପରି ଚଳାଇଲେ ଜାଣ । ୭୫
ଜଗବନ୍ଧୁ ଏହିପରି ବହୁକଷ୍ଟ ପାଇ
ବିଚାରିଲେ ଏଥିକି ଉପାୟ କିଛି ନାହିଁ । ୭୬
ଗଜପତି ରାଜ୍ୟ ଯେବେ ହୋଇବ ଉଦ୍ଧାର
ଏ ସବୁ କଷଣ ତେବେ ହୋଇପାରେ ଦୂର ।
ଏ ଖବର ସାରାଦେଶେ ହୋଇଲା ପ୍ରଚାର
ଅସନ୍ତୋଷ ବହ୍ନି ଜଳି ଉଠିଲା ପ୍ରଖର । ୭୮
ଇଂରେଜଙ୍କ ଆଗମନେ ଲୋକେ ରୁଷ୍ଟ ଥିଲେ
ଏ ସବୁ ବ୍ୟାପାର ଦେଖି ହତଶ୍ରଦ୍ଧ ହେଲେ ।୭୯
ପାଇକମାନେ ପୂର୍ବରୁ ଅସନ୍ତୁଷ୍ଟ ଥିଲେ
ଏ ସବୁ ଖବର ପାଇ ଏକଜୁଟ ହେଲେ । ୮୦
ବିଦ୍ରୋହ ଅଗ୍ନିକି ଡେଇଁପଡ଼ିଲେ ହଠାତ୍
ନୂତନ ରଣ ନୀତିରେ ନ ଥିଲେ ପଣ୍ଡିତ ।୮୧
ମାତ୍ର ପ୍ରାଚୀନ ପାହାଡ଼ ବାଟଘାଟ ଜଣା
ଇଂରେଜ ସଇନମାନେ ହେଲେ ପଥ ବଣା ।୮୨
ଅଠରଶ ସତର ସାଲରେ ଏ ଘଟିଲା
ପାଇକ ବିଦ୍ରୋହ ନାମେ ଏହା ଖ୍ୟାତ ହେଲା ।
ପ୍ରଥମେ ମାଘ ମାସରେ ଏମନ୍ତ ଘଟିଲା
ଘୁମୁସରରୁ ପାଞ୍ଚଶ କନ୍ଧ ଆସିଗଲା । ୮୪

ଖୋରଧାକୁ ଆସି ସେହୁ ବିଦ୍ରୋହୀ ହୋଇଲେ
ପାଇକମାନେ ତାହାଙ୍କ ସଙ୍ଗେ ଯୋଗଦେଲେ ।
ବାଣପୁର ସରକାରୀ କଚେରି ଭାଙ୍ଗିଲେ
ବହୁ ଧନ ନେଇଯାଇ ହସ୍ତଗତ କଲେ । ୮୬
ସେଠାରୁ ଖୋରଧାଠାକୁ ଅଗ୍ରସର ହେଲେ
ପଥରେ ବହୁତ ସଂଖ୍ୟା ବୃଦ୍ଧି ଲଭ କଲେ ।୮୭
ଖୋରଧାର କର୍ମଚାରୀ ଏ ସମ୍ବାଦ ପାଇ
ଆଗରୁ ପଳାଇଗଲେ ସାବଧାନ ହୋଇ । ୮୮
ବିଦ୍ରୋହୀମାନେ ସେଠାରେ ପ୍ରବେଶ ହୋଇଲେ
ସରକାରୀ ଘର ସବୁ ଭାଙ୍ଗି ପକାଇଲେ । ୮୯
ଖଜଣାଖାନାକୁ ସେହୁ ଲୁଟିକରି ନେଲେ
ଲେମ୍ବାଇ ପ୍ରଗଣାଦଳେ ଆକ୍ରମଣ କଲେ । ୯୦
କଟକ ନଗରେ ଏ ସମ୍ବାଦ ପ୍ରବେଶିଲା
ଇଂରେଜ ସେନାବାହିନୀ ସେଠାରୁ ଆସିଲା ।୯୧
ଇମ୍ପି ସାହେବ ସେ କାଳେ ଥିଲେ ମେଜେଷ୍ଟର
ସଙ୍ଗରେ ସିପାହୀ ସେନ ଆସିଲେ ସତ୍ୱର । ୯୨
ବହୁତ ସାହସ ସେନ ସେହୁ ଆସିଥିଲେ
ଉପଦ୍ରବ ଦେଖି ସେହୁ ବାଟରେ ଲୁଚିଲେ ।୯୩
ପାଇକମାନେ ତାହାଙ୍କୁ ଆକ୍ରମଣ କଲେ
ପ୍ରାଣ ସେନ ବାଲକାଟିଠାରେ ସେ ଲୁଚିଲେ ।
କ୍ରମେ କ୍ରମେ ପାଇକଙ୍କ ସଂଖ୍ୟା ବୃଦ୍ଧି ହେଲା
ତିନ ହଜାର ସରିକ ସଂଖ୍ୟା ବଢ଼ିଗଲା । ୯୫
ବାଲକାଟିଠାରୁ ମେଜେଷ୍ଟର ପଳାଇଲେ
ଗୁପ୍ତ ଗୁପ୍ତ କଟକରେ ଯାଇ ପ୍ରବେଶିଲେ । ୯୬
ସରକାରଙ୍କୁ ଲେଖିଲେ ଇମ୍ପି ମେଜେଷ୍ଟର
ମେଳ କରିଅଛି ଜଗବନ୍ଧୁ ବିଦ୍ୟାଧର । ୯୭
ମୁକୁନ୍ଦଦେବଙ୍କୁ ସିଂହାସନେ ବସାଇବ
ଏହି ଉଦ୍ଦେଶ୍ୟରେ ଲଗାଇଛି ଉପଦ୍ରବ । ୯୮

ଏହାପରେ ପାଇକେ ପିପିଲିଠାକୁ ଗଲେ
ଥାନାଘର ପୋଡ଼ିଦେଇ ସେ ଦଖଲ କଲେ ।୯୯
ଦଳେ ଇଂରେଜଙ୍କ ସୈନ୍ୟ ପୁରୀକୁ ଆସିଲେ
ଖୋରଧାରେ ସମର ଆଇନ ଜାରିକଲେ ।୧୦୦
ବହୁସଂଖ୍ୟକ ପାଇକ ପୁରୀକୁ ଆସିଲେ
ସୁକଳ ଗ୍ରାମ ବାଟରେ ସେମାନେ ଆସିଲେ ।
ସରକାରୀ କଚେରିକୁ ପୋଡ଼ି ଭସ୍ମ କଲେ
ଇଂରେଜସେନାଙ୍କ ସଙ୍ଗେ ଦି'ଘଣ୍ଟା ଲଢ଼ିଲେ ।
ମନ୍ଦିରର କର୍ମଚାରୀ ସହର ନିବାସୀ
ପାଇକମାନଙ୍କ ସଙ୍ଗେ ଗଲେ କେତେ ମିଶି ।
ପଣ୍ଡାମାନେ କରିଦେଲେ ଏମନ୍ତ ପ୍ରଚାର
ଇଂରେଜ ରାଜତ୍ୱ ଲୋପ ହୋଇଲା ନିକର ।
ଖୋରଧା ରାଜା ନେଲେଣି ତାଙ୍କ ସିଂହାସନ
ସେନା ସେନାପତିମାନେ କଲେ ପଳାୟନ ।
ଏହାପରେ କେତେଦିନ ଏମନ୍ତ ଘଟିଲା
ଖୋରଧା ଆଡ଼ରୁ ସେନାପତି ଆସିଥିଲା ।୧୦୬
ପାଇକ ଗ୍ରାମମାନଙ୍କୁ ପୋଡ଼ି ଭସ୍ମ କଲେ
ଅବଶେଷେ ଆସି ସେ ପୁରୀରେ ପ୍ରବେଶିଲେ ।
ପାଇକମାନଙ୍କ ପରେ ତୋପ ବରଷିଲା
ତେଣୁ ପାଇକ ସମସ୍ତେ ଛତ୍ରଭଙ୍ଗ ଦେଲା ।୧୦୮
ପାଇକମାନଙ୍କ ସଙ୍ଗେ ହେଲାକ ସମର
ଶାରଙ୍ଗଗଡ଼ ଦୁର୍ଗକୁ କଲେ ଅଧିକାର । ୧୦୯
କଟକ ଜିଲ୍ଲାରେ ଏ ବିଦ୍ରୋହ ବ୍ୟାପିଗଲା
କନିକା କୁଜଙ୍ଗ ଯୋଗଥିବା ଜଣାଗଲା । ୧୧୦
ଅସୁରେଶ୍ୱର, ତିରଣ, ହରିହରପୁର
ପାଇକମାନେ ଏ ସବୁ କଲେ ଅଧିକାର ।୧୧୧
ଗୋପ ଥାନା ଆଦି ସବୁ ପୋଡ଼ି ପକାଇଲେ
ମୁକୁନ୍ଦଦେବଁ ଆବର ବନ୍ଦୀ ହୋଇଗଲେ ।୧୧୨

କ୍ରମେ କ୍ରମେ ଏ ବିଦ୍ରୋହ ଊଣା ହୋଇଗଲା
କୁଜଙ୍ଗର ସ୍ଥାନମାନ ହସ୍ତଗତ କଲା । ୧୧୩
ପାଇକମାନେ ସେଠାରେ ହୋଇଲେ ପରାସ୍ତ
ବିଦ୍ରୋହୀ ନାୟକମାନେ ସର୍ବେ ହେଲେ ଧୃତ ।
କୁଜଙ୍ଗରାଜା ଯେ ଆତ୍ମସମର୍ପଣ କଲେ
ବନ୍ଦୀ ହୋଇ ତେଣୁ ରାଜା ଧରା ହୋଇଗଲେ ।
ଅପରାଧି ଧୃତ ହୋଇଁ ଖୋର୍ଦ୍ଧା ଆସିଲେ
ବିଗୁରରେ କେତେଜଣ ଫାଶୀ ପାଇଥିଲେ ।
ଜଗବନ୍ଧୁ ଗିରଫାକ ହୋଇ ଚିରହେଲେ
ଗିରି ସ୍ଥାନେ ଗିରି ଗଛେ ଝଙ୍ଗା ହୋଇଥିଲେ ।
ଅଠରଶ ଛବଶ ସାଲରେ ଶାନ୍ତ ହେଲା
ଉପଦ୍ରବମାନ ସବୁ ଊଣା ହୋଇଗଲା । ୧୧୮
ପାଇକଙ୍କ ହିତେ ଜଗବନ୍ଧୁ ପ୍ରାଣ ଦେଲେ
ଇତିହାସ ତାଙ୍କ ନାମ ଲେଖି ସାଇତିଲେ ।୧୧୯
ରାଖାଲ ବାବୁ ଲେଖିଲେ ଜଗବନ୍ଧୁ ବୀର
ଆନଦେଶ ହୋଇଥିଲେ ବୋଲନ୍ତେ ନକର ।
ସେ ଜଣେ ଜାଗିର୍ଦ୍ଦାର ଥିଲେ ଓଡ଼ିଶାରେ
ଆପଣା ଲୋକଙ୍କ ହିତେ ନିଜ ପ୍ରାଣ ଦେଲେ ।
ଓଡ଼ିଶାର ସମ୍ଭ୍ରାନ୍ତ ଲୋକଙ୍କ ହିତପାଇଁ
ପ୍ରାଣ ପ୍ରାୟଶ୍ଚିତ କରି ହେଲେ ସେ ବିଦ୍ରୋହୀ ।
ନୋହିଲେ ସମ୍ଭ୍ରାନ୍ତକୁଳ ହୋଇଥାନ୍ତା ଲୋପ
ସର୍ବନାଶ କରିଥାନ୍ତେ ବଙ୍ଗାଳ ଲୋଲୁପ ।୧୨୩
ଆଉ କେତେକାଳ ହୋଇଥାନ୍ତା ଅତ୍ୟାଚାର
ରକ୍ଷାକଲେ ସେ ସମସ୍ତ ବୀର ବିଦ୍ୟାଧର ।୧୨୪
ଜଣେ ବଙ୍ଗାଳ ଲେଖକ ଏହା ଲେଖିଗଲେ
ଜଗବନ୍ଧୁଙ୍କୁ ଅମର କରି ରଖିଦେଲେ । ୧୨୫
ସ୍ୱର୍ଣ୍ଣାକ୍ଷରେ ଇତିହାସେ ରହିବ ସେ ନାମ
ଉତ୍କଳେ ଏପରି ବୀର କେତେ ଥିଲେ ଜାଣ ।

ରଣ ବିଦ୍ୟା ଉତ୍କଳର ଗଲାଣି ପାଶୋରି
ଗୃହବିଦ୍ୟା ହୋଇଲାଣି ପାଇକର ସାର ।୧୨୭
କ୍ଷତ୍ରିୟ ଖଣ୍ଡାୟତର କୁଳବିଦ୍ୟା ଗଲା
ବୃଥା ଜାତି ଅଭିମାନେ ତାଙ୍କ ଦିନ ଗଲା ।୧୨୮
ସୁବିଧା ସୁଯୋଗ ନ ପାଇଲା ବୁଦ୍ଧିବୃତ୍ତି
ଦେଖାଇ ପାରିବ କାହୁଁ ପ୍ରାଚୀନ ଶକତି ।୧୨୯
ସୁପ୍ତସିଂହ ପରି ପଡ଼ି ରହିଛି ଏ ଜାତି
ଆହାର ବିହୁନେ ଶୁଷ୍କ ହେଲାଣି ଶକତି । ୧୩୦
ଘରକୋଣେ ପଡ଼ି ପଛେ ଏ ଜାତି ମରିବ
ଦୀନ ହୋଇ କା ପାଶେ ଠିଆ ନ ହୋଇବ ।
ଏହି ନୀତି ଧରି ଏ ଜାତିର ଅବନତି
କ୍ରମେ ଧ୍ୱଂସପଥେ ଏହୁ କରୁଅଛି ଗତି । ୧୩୨
ଜୀବନ ସଂଗ୍ରାମ କ୍ଷେତ୍ରେ ଏହା ଅନୁଚିତ
ଶୋଇ ରହିଲେ କିପରି ଚଳିବ ନିୟତ ।୧୩୩
ଏ ଯୁଗ ଧରମ ଅଟେ ଆନ ପରକାର
ଠେଲାପେଲା ନ ଚଳିଲେ ନାହିଁକି ନିସ୍ତାର ।୧୩୪
ଆଗେ ବଢ଼ି ଚଳିବାକୁ ଯେବେ ନ ଶିଖିବ
ପଛରେ ପଡ଼ି ଅକାଳେ ବିଲୟ ଭଜିବ ।୧୩୫
ପ୍ରାଚୀନ ଇତିହାସରେ ମୁଖ ଦେଖି ଏବେ
କି ଥିଲା କି ହୋଇଅଛି ବୁଝି ନିଅ ସରବେ ।
ଜାତୀୟ ଜୀବନ ଆଜ ନାହିଁ ଉତ୍କଳରେ
ମାତିଛନ୍ତି ଲୋକମାନେ ଆପଣା ସୁଖରେ ।୧୩୬
ସମୂହ ଜାତିର ହିତ କେହି ଭାବୁନାହିଁ
ସ୍ୱାର୍ଥଖେଳ ଖେଳୁଛନ୍ତି ଦେଇ ଜାତିଦାହି ।୧୩୭
ଆହେ ପ୍ରଭୁ ଭଗବାନ ଦିଅ ହେ ସୁମତି
ଅବିଳମ୍ବେ ଉତ୍କଳର ଯାଉ ଏ ଦୁର୍ଗତି । ୧୩୯
ଦୀନ ଜଗବନ୍ଧୁ ବୋଲେ ଆହେ ଚକାଡୋଳା
ତୁମ୍ଭେ ଅଟ ମହାପ୍ରଭୁ ଏ ଭବର ଭେଳା ।୧୪୦

ଇତି ଶ୍ରୀ ଭାରତ-ଚରିତାମୃତେ ଉତ୍କଳ ପାଇକବିଦ୍ରୋହ ବର୍ଣ୍ଣନେ **ଏକଶତ ଅଧ୍ୟାୟଃ** ।

# ଏକଶତ ଏକ ଅଧ୍ୟାୟ

ଗଉର ଉବାଚ

କଲିକତାଠାରେ ହିନ୍ଦୁ ମହାସଭା ହେଲା
କିଏ ସେ ସଭାରେ ସଭାପତି ହୋଇଥିଲା । ୧
କିଏ ସେଠି କି ଭାଷଣ ଦେଲେ ସେ ଏଥର
କହନ୍ତୁ ଆପଣ ମୋତେ ଏ ସବୁ ଖବର ।

ଜଗା ଉବାଚ

ପଚାରିଲ ଯାହା ଶୁଣ କହୁଛି ଗଉର
ବିନାୟକ ଦାମୋଦର ସବରକାରର । ୩
ନାମ ଶୁଣିଥିବ ତୁମ୍ଭେ ବର୍ଣ୍ଣୁଛି ମୁହିଁ
ପ୍ରଥମେ ତାଙ୍କ ଚରିତ ଶୁଣ କହିବଇଁ । ୪
ବିନାୟକ ଅଠରଶ ତେୟାଅଶୀ ସାଲେ
ମରଠା ବ୍ରାହ୍ମଣକୁଳେ ଜନମ ଲଭିଲେ । ୫
ନାଶିକ ସହରେ ଘର ଜାତିରେ ବ୍ରାହ୍ମଣ
ବୁଦ୍ଧି ତାହାଙ୍କର ଅଟେ ଅତି ବିଚକ୍ଷଣ । ୬
ଅସାଧାରଣ ପ୍ରତିଭା ଅଛି ତାହାଙ୍କର
ପିଲାଦିନୁ ପରିଚୟ ମିଳୁଛି ତାହାଁର । ୭
ବାର ତେର ବରଷ ବୟସ ଯେତେବେଳେ
ବିନାୟକ ବିଦ୍ୟାଳୟେ ପାଠ ପଢୁଥିଲେ । ୮
ହିନ୍ଦୁଆଉ ସମ୍ପ୍ରଦାୟ ଗଣ୍ଡଗୋଳ ହେଲା
ବିନାୟକ ତେତେବେଳେ ମନେ ପାଞ୍ଚିକଲା ।୯
ସହପାଠୀମାନଙ୍କୁ ଆପଣା ସଙ୍ଗେ ନେଲେ
ସମର ସମିତି ଏକ ଗଢ଼ି ଦେଇଥିଲେ । ୧୦
କେତେ ବର୍ଷ ପରେ ପୁଣି ପୁନା ଅଞ୍ଚଳରେ
ରାଜନୀତି ଆନ୍ଦୋଳନ ଚଳିଲା ପ୍ରଖରେ । ୧୧
ଯେଉଁ ଅଞ୍ଚଳରେ ମହାମାରୀ ହୋଇଥିଲା
ସେ ଅଞ୍ଚଳେ ଚିକିତ୍ସା ସୁବ୍ୟବସ୍ଥା ନୋହିଲା ।୧୨

ଇଂରେଜ କରମଚ୍ଚାରୀ କେତେଜଣ ଥିଲେ
ହାଣଖାଇ ସେ ଅଞ୍ଚଳେ ପ୍ରାଣ ହରାଇଲେ । ୧୩
ଷଡ଼ଯନ୍ତ୍ର ଅଭିଯୋଗେ କେତେ ଧରାହେଲେ
ତିଳକ ସେହି ସମୟେ ଧରା ହୋଇଥିଲେ । ୧୪
ଯେରଓ୍ୟାଡ଼ା କାରାଗାର ଭିତର ମହଲେ·
ରାଣାଡ଼େ ପ୍ରଭୃତି କେତେଜଣ ଫାଶୀହେଲେ ।
ଏ ସବୁ ଘଟଣା ଦେଖି ବୀର ବିନାୟକ
ଦାରୁଣବ୍ୟଥା ଲଭିଲେ ହୃଦରେ ଅନେକ ।୧୬
ଭାରତର ମୁକ୍ତିପାଇଁ ପ୍ରତିଜ୍ଞା ସେ କଲେ
ପ୍ରଚାର କଲେ ପ୍ରକାଶ୍ୟେ ଅବା ଗୁପତରେ ।୧୭
ନିଜ ମତ ବ୍ୟକ୍ତକଲେ ସଭା ସମିତିରେ
ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଲେ ।୧୮
ଫରଗୁସନ କଲେଜେ କଲେ ଅଧ୍ୟୟନ
ଯୁବକସଙ୍ଘ କରି ସେ ନେତା ହେଲେ ଜାଣ ।୧୯
ରାଜନୀତି ଆନ୍ଦୋଳନେ ସେହୁ ଯୋଗଦେଲେ
ସ୍ୱଦେଶୀ ଆନ୍ଦୋଳନରେ ଅଗ୍ରଣୀ ହୋଇଲେ ।
ବିଲାତି ବସନମାନ ଆଗ ପୋଡ଼ିଦେଲେ
ବିଲାତରେ ବାରିଷ୍ଟର ପଢ଼ିବାକୁ ଗଲେ । ୨୧
ସେଠାକୁ ଯାଇ ଭାରତ ସମିତି ସେ କଲେ
ଭାରତ ବିଷୟେ ଆନ୍ଦୋଳନ ଚଳାଇଲେ ।୨୨
ବାରିଷ୍ଟର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଲେ
କାର୍ଯ୍ୟ କରିବାକୁ ଅନୁମତି ନ ପାଇଲେ । ୨୩
ରାଜନୀତି ଚର୍ଚ୍ଚା ଯେଣୁ ସେହୁ କରୁଥିଲେ
ତେଣୁ ବାରିଷ୍ଟର କାମେ ଅଯୋଗ୍ୟ ହୋଇଲେ ।
ଗୁପ୍ତପୁଲିସ ତାହାଙ୍କ ପଛେ ପଛେ ଥିଲେ
ତାଙ୍କ ଗତିବିଧିକୁ ନଜର ରଖିଲେ । ୨୫
ମର୍ଲି ସାହେବ ଭାରତ ମନ୍ତ୍ରୀ ତେତେବେଳେ
କର୍ଜନଓ୍ୟାଲି ଶରୀର ରକ୍ଷକ ଯେ ଥିଲେ । ୨୬

ପ୍ରକାଶ୍ୟ ଦିବାଲୋକରେ କେ ତାଙ୍କୁ ହାଣିଲା
ମଦନଲାଲ ଧିଙ୍ଗଡ଼ା ଗିରଫ ହୋଇଲା । ୨୭
ସବରକାରର ଜଣେ ସଙ୍ଗୀ ସେହୁ ଥିଲା
ସେ ଧରା ହେବାରୁ ନିନ୍ଦାବାଦ ସଭା ହେଲା ।୨୮
ସବରକାର ସଭାରେ ଯୋଗ ଦେଲେ ଯାଇ
ନିନ୍ଦାବାଦ ପ୍ରସ୍ତାବରେ ମତ ଦେଲେ ନାହିଁ ।୨୯
ବିନାସୂକ ପ୍ରସ୍ତାବର ପ୍ରତିବାଦ କଲେ
ଏଥିପାଇଁ ସାହେବ ତାହାଙ୍କୁ ମାଡ଼ ଦେଲେ ।୩୦
ମାଡ଼ଖାଇ ତିଳେ ବିଚଳିତ ନ ହୋଇଲେ
ଅତି ଦୃଢ଼ତା ସହିତ ପ୍ରତିବାଦ କଲେ । ୩୧
ଲଠିମାଡ଼ ଖାଇ ତାଙ୍କ ମୁଣ୍ଡ ଫାଟିଗଲା
ଧାର ଧାର ହୋଇ ରକ୍ତ ମୁଣ୍ଡରୁ ବହିଲା । ୩୨
ତଥାପି ସେଉଁ ସାହେବ ତାଙ୍କୁ ମାଡ଼ ଦେଲେ
ଗୁଳି ଆକ୍ରମଣରୁ ସେ ତାଙ୍କୁ ବଞ୍ଚାଇଲେ । ୩୩
ପୁଲିସର ଖରଦୃଷ୍ଟି ସଦା ତାଙ୍କଠାରେ
ପରିବାର ଉପରେ ସେ ଅତ୍ୟାଚାର କଲେ ।୩୪
ଏ ଖବରୁ ପାଇ ପାରିସକୁ ପଳାଇଲେ
ସେଠାରେ ଏକ ଫରାସୀ ମହିଳା ଯେ ଥିଲେ ।
କାମା ଅଟଇ ସେ ମହିଳାଙ୍କ ନିଜ ନାମ
ସବରକାରଙ୍କୁ ସେ ଆଶ୍ରୟ ଦେଲେ ଜାଣ ।୩୫
କିଛିଦିନ ପରେ ଶୁଣି ବିଲାତ ଫେରିଲେ
ସେଠାରେ ସଙ୍ଗୀମାନଙ୍କୁ ଏକତ୍ରିତ କଲେ । ୩୬
ଉନବିଂଶ ଦଶ ସାଲେ ଗିରଫ ହୋଇଲେ
ବିଲାତରୁ ତଡ଼ାଖାଇ ଭାରତେ ଆସିଲେ । ୩୮
ଭାରତରେ ତାଙ୍କ କଥା ହୋଇବ ବିଚାର
ଏହିହେତୁ ଭାରତକୁ ଆସିବେ ନିକର । ୩୯
ବନ୍ଦୀ ହୋଇ ଭାରତକୁ ଆସୁଥିବାବେଳେ
ମାରସାଇଲେସ ବନ୍ଦରଠାରେ ପହଞ୍ଚିଲେ ।। ୪୦

ଜାହାଜରୁ ଡେଇଁପଡ଼ି ସମୁଦ୍ରେ ପଡ଼ିଲେ
ପହଁରି ପହଁରି ପଳାଇବା ଚେଷ୍ଟା କଲେ । ୪୧
ପହଁରିଯିବା ସମୟେ ଗୁଳିମାଡ଼ ହେଲା
ବୁଡ଼ାମାରି ଗୁଳି ଗୁଡ଼ିକମାନ ଏଡ଼ିଦେଲା । ୪୨
ଫ୍ରାନସ ଉପକୂଳରେ ଯାଇ ପ୍ରବେଶିଲେ
ସେଠାରେ ପୁଲିସ ପାଶେ ଯାଇ ଧରିନେଲେ ।
ଫ୍ରାନସର ସରକାର ତାଙ୍କୁ ନ ରଖିଲା
ବ୍ରିଟିଶ ସରକାରଙ୍କ ହାତେ ସମର୍ପିଲା । ୪୪
ସାରା ପୃଥିବୀରେ ହେଲା ଘୋର ଆନ୍ଦୋଳନ
ଫ୍ରାନସ ଶରଣାର୍ଥୀକୁ ନ ଦେଲା ଶରଣ । ୪୫
ପୁଣି ଫ୍ରାନସର ସରକାର ଦାବି କଲା
ସବରକାରଙ୍କୁ ଫେରି ନେବାକୁ ଚାହିଁଲା । ୪୬
ଇଂଲଣ୍ଡର ସରକାର ରାଜିହେଲେ ନାହିଁ
ବିଚାରପାଇଁ ଭାରତେ ଦେଲେକ ପଠାଇ । ୪୭
ଭାରତ ଅଦାଲତରେ ହେଲାକ ବିଚାର
ସବରକାର ବୋଇଲେ ନାହିଁ ଅଧିକାର । ୪୮
ଫରାସୀ ଅଦାଲତରେ ହୋଇବ ବିଚାର
ଭାରତ ଅଦାଲତରେ ନ ହେବ ବିଚାର । ୪୯
ଦାମୋଦରଙ୍କ ଆପତ୍ତି ନାମଞ୍ଜୁର ହେଲା
ଭାରତ ଅଦାଲତରେ ବିଚାର ହୋଇଲା । ୫୦
ଗୁରୁତର ଅଭିଯୋଗ ତାଙ୍କ ନାମେ ହେଲା
ବିଚାରରେ କାରାଗାର ଯିବେ ଆଜ୍ଞାହେଲା । ୫୧
ପଞ୍ଚାବନ ବରଷ ସେ କାରାଗାର ଯିବେ
ଆଣ୍ଡାମାନଠାରେ ବନ୍ଦୀହୋଇ ସେ ରହିବେ ।
କଳାପାଣିବୋଲି ଏହି ସ୍ଥାନଟି ବିଖ୍ୟାତ
ସେଠାକୁ ସବରକାର ଗଲେକ ନିଯୁତ । ୫୩
ଚଉଦ ବରଷକାଳ ସେଠାରେ ରହିଲେ
ଅନ୍ୟଗଣ ବନ୍ଦୀରୂପେ କାଳ କଟାଇଲେ । ୫୪

ଊନବିଂଶ ସପ୍ତତ୍ରିଂଶ ମଇ ମାସ ବେଳେ
ସବରକାର ସେଠାରୁ ଖଲାସ ପାଇଲେ । ୫୫
ହିନ୍ଦୁ ମହାସଭାର ସେ ସଭାପତି ହେଲେ
ଗତ ଦୁଇ ବରଷ ସେ କାର୍ଯ୍ୟ କରିଥିଲେ ।୫୬
ପୁଣି ଏ ବରଷ ସେହୁ ସଭାପତି ହେଲେ
ସୁଦୀର୍ଘ ଭାଷଣ ଏକ ସେହୁ ଦେଇଥିଲେ । ୫୭
ମନ୍ମଥନାଥ ମୁଖାର୍ଜୀ ମହାଶୟ ନାମ
ଉଚ୍ଚ ଅଦାଲତର ବିଚାରପତି ଜାଣ । ୫୮
ଅଭ୍ୟର୍ଥନା ସଭାର ସେ ସଭାପତି ଥିଲେ
ସେହୁ ଏକ ସୁଦୀର୍ଘ ଭାଷଣ ଦେଇଥିଲେ । ୫୯

ଗଉର ଉବାଚ

ସଭାପତିମାନଙ୍କର ଦେଲେ ପରିଚୟ
କି ଭାଷଣ ଦେଲେ ଜଣା ନ ଗଲା ନିଶ୍ଚୟ ।୬୦
ଭାଷଣରୁ ହୃଦୟର ଭାବ ଜଣାଯିବ
କେବଳ ପରିଚୟରୁ କି ଫଳ ମିଳିବ । ୬୧
ହିନ୍ଦୁ ମହାସଭା ନାମ କହିଲେ ଆପଣ
କଂଗ୍ରେସଠାରୁ ସେ ସଭା କାହିଁପାଇଁ ଭିନ୍ନ ।୬୨
ଏମାନେ କାହିଁକି କଂଗ୍ରେସରେ ନ ମିଶିଲେ
ହିନ୍ଦୁ ମହାସଭା ନାମେ ଭିନ୍ନ ସଭା କଲେ । ୬୩
ଏ ସବୁ ଜାଣିବାପାଇଁ ହେଉଛି ମୋ ମନ
ଦୟାକରି କହନ୍ତୁ ଏ ସବୁ ତଥ୍ୟମାନ । ୬୪

ଜଗା ଉବାଚ

ଅଭ୍ୟର୍ଥନା ସଭାପତି ଯେ ଭାଷଣ ଦେଲେ
ତାହାଁର ସାରାଂଶ କହୁଅଛି ଶୁଣ ଭଲେ । ୬୫
ବୋଇଲେ ହେ ସଭାଜନ ମନଦେଇ ଶୁଣ
ହିନ୍ଦୁଭାରତ ସମସ୍ୟା ଅଟଇ ବିଷମ । ୬୬
ମହାଘୋର ବିପତ୍ତି କାଳଟି ଏ ହିନ୍ଦୁର
ତାହାଁର ନିଦାନ ଶୁଣ କହୁଛି ନିକର । ୬୭

ଧୀରସ୍ଥିରଭାବେ ଶୁଣି କର ହେ ବିଚାର
ଭାବି ଚିନ୍ତି ସ୍ଥିରକର ତାର ପ୍ରତିକାର । ୬୮
ପରିଷ୍କାରଭାବେ ସବୁ ବିଷୟକୁ ଶୁଣି
ସକଳ ସଂଶୟ ମନୁ କର ହେ ଖଣ୍ଡନ । ୬୯
ନିଦାନ ବୁଝି ଔଷଧ ବ୍ୟବସ୍ଥା କରିବ
ତେବେ ହିନ୍ଦୁଭାରତର ରୋଗ ବ୍ୟାଧି ଯିବ । ୭୦
ପ୍ରଥମେ ସଭାପତିଙ୍କି ଦି'କଥା କହିବି
ତହିଁପରେ ମୋର ମନୋଭାବ ଜଣାଇବି । ୭୧
ଅଢ଼ାଇବରଷ ତଳେ ତୁମ୍ଭେ ମୁକ୍ତ ହେଲ
କଳାପାଣି ଘରୁ ଆସି ଦେଶେ ପ୍ରବେଶିଲ ।୭୨
ଦେଶବାସୀ ତେତେବେଳେ ବୁଝି ନ ପାରିଲେ
କି କର୍ମ କରିବ ଏବେ ତୁମ୍ଭେ ସ୍ୱଦେଶରେ ।୭୩
ଅଳ୍ପଦିନ ପରେ ସେ ସଂଶୟ ଦୂର କଲ
ହିନ୍ଦୁଭାରତ ପତାକା ଧରି ଠିଆ ହେଲ । ୭୪
ଆପଣା ପ୍ରକୃତି ଆପେ କଲ ହେ ପ୍ରକାଶ
ଧନ୍ୟ ତବ ସ୍ୱାର୍ଥତ୍ୟାଗ ପ୍ରବଳ ସାହସ । ୭୫
କେତେ ରାଜନୀତି ସ୍ରୋତ ବହୁଛି ଭାରତେ
କେଉଁଣସି ସ୍ରୋତେ ଭାସି ନ ଯାଇ ନିଶ୍ଚିତେ ।
ଦୃଢ଼ଭାବେ ପ୍ରକାଶ କରନ୍ତି ନିଜ ମତ
ନିଜବୁଦ୍ଧି ବିବେକରେ ଜାଣି ଯା ଉଚିତ । ୭୭
ସେହି ପଥେ ଚାଲିଅଛ ଦମ୍ଭ ସହିତରେ
ପିଲାଦିନୁ ଏ ଲକ୍ଷଣ ଅଛି ତୁମ୍ଭଠାରେ । ୭୮
ହିନ୍ଦୁଭାରତ ଉଦ୍ଧାରେ ବଳାଇଲ ମତି
କର୍ମକ୍ଷେତ୍ରେ ପ୍ରବେଶିଛ ଧରି ସେହି ନୀତି । ୭୯
ଜଡଭାବେ ଏ ହିନ୍ଦୁଭାରତ ପଡ଼ିଥିଲା
ତବ ବଂଶୀ ସ୍ୱନ ଶୁଣି ଜାଗ୍ରତ ହୋଇଲା । ୮୦
ପୁଣି ହିନ୍ଦୁଭାରତର ହୋଇବ ଉତ୍ଥାନ
ଅଚିରେ ଲବ୍ଧ କରିବ ପ୍ରାଚୀନ ସମ୍ମାନ । ୮୧

ତବ ଉପସ୍ଥିତ ଏଠି ଅପୂର୍ବ ବିଷୟ
ଉଦ୍ୟମ ଉତ୍ସାହ ତେଜ ଖେଳାଏ ନିଶ୍ଚୟ ।୮୨
ଆଜି ତୁମ୍ଭେ ହିନ୍ଦୁ ମହାସଭା ସେନାପତି
ତବ ପଛେ ଠିଆହେବ ନିଶ୍ଚେ ହିନ୍ଦୁଜାତି । ୮୩
ହିନ୍ଦୁଭାରତ ଉଠିବ ପୁଣି ମୁଁ କହୁଛି
ବହୁ ଚିନ୍ତାକରି ଏହା କହୁଛି ମୁଁ ବାଛି । ୮୪
ହିନ୍ଦୁ ଯେବେ ପୂର୍ବ ଉଚ୍ଚ ସମ୍ମାନେ ଉଠିବ
ବିଦେଶୀର ପରାଧୀନ କେବେ ନ ହୋଇବ ।୮୫
ପୃଥିବୀର ଆନ ଜାତିମାନେ ତେତେବେଳେ
ଲୋଭେ ଭାଗୀଦାରବୋଲି ବିଗୃରିବେ ବଳେ ।
ପୂର୍ବ ଯଶ କୀର୍ତ୍ତି ଜ୍ଞାନ ଗରିମା ବିଭବ
ମନେପଡ଼ିଲେ ଜନମେ ଅପୂର୍ବ ଗରବ । ୮୭
ପରାଧୀନ ଜାତି ଯାର ନାହିଁ ବର୍ତ୍ତମାନ
ସମ୍ବଳ ଅଟଇ ତାର ଏକଇ ପ୍ରାଚୀନ । ୮୮
ଦୃଢ଼ ବିଶ୍ୱାସ ମୋହର ଅଛଇ ନିଯୁତ
ପ୍ରାଚୀନତା ଭୁଲି ଏ ଦୁର୍ଗତି ପରାପତ । ୮୯
ସାରାସଂସାର ଯେ କାଳେ ଥିଲା ଅନ୍ଧକାରେ
ଆଲୋକ ଦେଖାଇଥିଲା ହିନ୍ଦୁ ତେତେବେଳେ ।
ସକଳ ଗୁଣେ ପୂର୍ଣ୍ଣତା ଲାଭ କରିଥିଲା
ମାନବତ୍ୱ ଲାଭକରି ଜଗଦ୍‌ଗୁରୁ ହେଲା । ୯୧
ମାନସିକ, ଆଧ୍ୟାତ୍ମିକ, ନୈତିକ ଜଗତେ
ସମକକ୍ଷ କେ ନ ଥିଲା ହିନ୍ଦୁର ପୁରତେ । ୯୨
ବୈଷୟିକ ରାଜ୍ୟେ ସେହୁ ଥିଲେକ ପ୍ରଧାନ
ନିକୃଷ୍ଟ ପକ୍ଷରେ ଥିଲେ ସବୁରି ସମାନ । ୯୩
ସକଳ ବିଦ୍ୟାରେ ସେହୁ ଥିଲେକ ପଣ୍ଡିତ
ଗଣିତ ଜ୍ୟୋତିଷ ବିଦ୍ୟା ଅଥବା ସାହିତ୍ୟ ।୯୪
ଦେଶ ବିଦେଶରେ ଥିଲା ବଣିଜ ବେପାର
ଉପନିବେଶ ବହୁତ ଥିଲା ତାହାଙ୍କର । ୯୫

ପ୍ରାଚୀନ ବିଭବ କହିବାକୁ ବେଳ ନାହିଁ
ଶତମୁଖେ କହିଲେ ତା ଶେଷ ହେବନାହିଁ ।୯୬
ଜ୍ଞାନ ବିଜ୍ଞାନେ ଭାରତ ଥିଲକ ପ୍ରବୀଣ
ସ୍ୱର୍ଗପ୍ରାୟ ଏ ଭାରତ ଦେବଭୂମି ପୁଣ । ୯୭
କାହିଁକି ଅଧପତନ ହେଲା ଭାରତର
ହରାଇବସିଲା କମ୍ପା ସମ୍ମାନ ତାହାର । ୯୮
ପ୍ରକୃତ ନିଦାନ ତାର ନ ଜାଣଇ ମୁହିଁ
ଇତିହାସରେ ଏ କଥା ସ୍ପଷ୍ଟ ଲେଖା ନାହିଁ ।୯୯
ଗୁଡ଼ା ସେ କଥା ଘାଣ୍ଟିଲେ କି ଫଳ ମିଳିବ
ଗୋଟିଏ କଥା କହିଲେ ଯଥେଷ୍ଟ ହୋଇବ ।
ଅନ୍ତର୍ବିବାଦ ଏଥିର ପ୍ରଧାନ କାରଣ
ଭାତୃ ବିବାଦେ ଭାରତ ଛାରଖାର ଜାଣ ।୧୦୧
ବାହାରର ଉପଦ୍ରବ କ୍ରମେ ବୃଦ୍ଧି ହେଲା
ବିଦେଶୀ ଶାସନ ଭାରତକୁ ଗ୍ରାସିଦେଲା । ୧୦୨
ଅତ୍ୟାଚାରେ ପ୍ରପୀଡ଼ିତ ହୋଇ ଦିନୁଦିନ
ଭାରତର ଦଶା କ୍ରମେ ହେଲା ଧନହୀନ । ୧୦୩
ଉନ୍ନତି ବୃକ୍ଷ ଚୂଳରେ ଯେ ଭାରତ ଥିଲା
ଅବନତି ବୃକ୍ଷମୂଳେ ଆସି ବସ ପଡ଼ିଲା । ୧୦୪
ଆଉ ଦୁଇଟି କାରଣ ଏଥିରେ ମିଶିଲା
ହିନ୍ଦୁଙ୍କର ସଂଖ୍ୟାବଳ କ୍ରମେ ଊଣା ହେଲା ।୧୦୫
ମୁସଲମାନେ ପ୍ରଥମେ ଭାରତେ ଆସିଲେ
କିରସ୍ତାନ ଆସିଲେ କେତେକ ଦିନ ପରେ ।
ଏ ଦୁଇ ଧରମ ଯାକୁ ତାକୁ ଦୀକ୍ଷାଦେଲା
ହିନ୍ଦୁଧର୍ମରେ ଏ ନୀତି କେବେହେଁ ନ ଥିଲା ।୧୦୭
କେତେ ହିନ୍ଦୁ ସେଇ ଦୁଇ ଧର୍ମରେ ପଶିଲେ
ଆନ କେହି ଆସି ହିନ୍ଦୁ ହୋଇ ନ ପାରିଲେ ।
ହିନ୍ଦୁ ଧର୍ମ ନୀତି ରୀତି ଅତ୍ୟନ୍ତ କଠୋର
ନିଗଡ଼ ଜାତିବନ୍ଧନ ଅତ୍ୟନ୍ତ ନିଷ୍ଠୁର । ୧୦୯

ଅତ୍ୟାଚାର ପ୍ରପୀଡ଼ିତ ହୋଇ ହିନ୍ଦୁ କେତେ
ପଳାଇ ଏ ଦୁଇ ଧର୍ମେ ପଶିଲେ ନିଯୁତେ ।୧୧୦
ହିନ୍ଦୁ ନିଜେ ଏମାନଙ୍କୁ ସାଇତିଲ ନାହିଁ
ମୁସଲମାନ କିରସ୍ତାନ ହେଲେ ସେଥି ପାଇଁ ।
ମୁସଲମାନ କିରସ୍ତାନ ପ୍ରଚାରକମାନେ
ସଂଖ୍ୟାବୃଦ୍ଧି କରିବାରେ ଲାଗିଲେ ଯତନେ ।
ଏହି କାର୍ଯ୍ୟ କ୍ରମେ କ୍ରମେ ବୃଦ୍ଧି ଲାଭ କଲା
ହିନ୍ଦୁଙ୍କର ସଂଖ୍ୟାବଳ ଏତେଣୁ ଊଣାହେଲା ।୧୧୩
କେତେବର୍ଷ ପରେ କଥା ଧରା ପଡିଗଲା
କେତେଜଣ ଭାବୁକଙ୍କ ନଜରେ ପଡ଼ିଲା । ୧୧୪
ସେମାନେ ସତର୍କବାଣୀ ତେଣୁ ଶୁଣାଇଲେ
ହିନ୍ଦୁଜାତି କ୍ରମେ ମରୁଅଛି ସେ ବୋଇଲେ ।୧୧୫
ତେତେବେଳେ ଏ ବାଣୀ କେ ଖାତିର ନ କଲେ
ତେତେ ମନଯୋଗ ଦେଇ କେହି ନ ଶୁଣିଲେ ।
କଥା ସତବୋଲି ଲୋକେ ମନେ କରିଥିବେ
କିନ୍ତୁ ପ୍ରତିକାର କିସ ନ କଲେ କେ କେବେ ।
କେତେଦିନ ପରେ ଶୁଦ୍ଧି ସଂଗଠନ ହେଲା
ଉତ୍ତମଫଳ ହେବାର ତହିଁ ଜଣାଗଲା । ୧୧୮
କିନ୍ତୁ କେତେ ଲୋକ ଏହା ପସନ୍ଦ ନ କଲେ
ଧରମ ବିରୁଦ୍ଧ କାର୍ଯ୍ୟବୋଲି ବିଚାରିଲେ ।୧୧୯
ବଙ୍ଗ ପ୍ରଦେଶରେ ହିନ୍ଦୁ ସଂଖ୍ୟା କମିଗଲା
ପଞ୍ଜାବରେ ସେହି ଦଶା ଶେଷରେ ଘଟିଲା ।୧୨୦
ଏ ବିଷୟେ ନାନା ଲୋକଙ୍କର ନାନାମତ
ଏଥିକୁ ଉପାୟେ ମୋତେ ଦିଶୁଛି ଏମନ୍ତ ।୧୨୧
ଆପଣା ବିଶ୍ୱାସମତେ କାର୍ଯ୍ୟ କରିଯିବା
ଭିନ୍ନମତ ଥିଲେ କାରି କଳି ନ କରିବା ।୧୨୨
ବୁଝାଇ ସୁଝାଇ ନିଜେ କାର୍ଯ୍ୟ କରୁଥିଲେ
କିଛିହିଁ ପ୍ରମାଦ କେବେ ନ ପଡ଼ିବ ଭଲେ ।୧୨୩

ସବୁଜାତିଙ୍କ ସମାନ ଦୃଷ୍ଟିରେ ଦେଖିବା
ସ୍ନେହ ଶ୍ରଦ୍ଧା ସମ୍ମାନ ସହିତ ଚଳିଯିବା । ୧୨୪
ଆସମୁଦ୍ର ଇନ୍ଦୁନଦୀ ଭାରତବରଷ
ପିତୃଭୂମି ଦେବଭୂମିମାନେ ଯେ ଅବଶ୍ୟ ।୧୨୫
ତାଙ୍କୁ ହିନ୍ଦୁ ବୋଲିଣ ଯେ ନିଶ୍ଚିତ କହିବ
ଏଥିରେ କାହାର କିମ୍ପାଇ ଆପତ୍ତି ହୋଇବ ।୧୨୬
ମତ ଭେଦଥିଲେ ଆଜ କିଛି କ୍ଷତି ନାହିଁ
ନ କରିବେ ଦାବି ସର୍ବେ ଏକବେ କିମ୍ପାଇ ।
ଜାତୀୟ ମୁକ୍ତିପାଇଁ ଲଢ଼ିବେ ସକଳେ
ବାଧାବିଘ୍ନ କିଛିମାତ୍ର ନ ରହିବ ତଳେ । ୧୨୮
ସାଧାରଣ କାର୍ଯ୍ୟକ୍ଷେତ୍ରେ ସକଳେ ସମାନ
ଯେ ଯାହାର ନ୍ୟାଯ୍ୟଦାବି ପାଇବ ସେ ପୁଣ ।
ଜାତୀୟ ଏକତା ଚିନ୍ତା କରିବ ଯେ କାଳେ
ଜେତାଜିତ ଭେଦଭାବ ନଭୂଲିବ ହେଲେ ।୧୩୦
ଶାସକ ଶାସିତ ଭେଦ ଅବଶ୍ୟ ରହିବ
ଏ ମୂଳତତ୍ତ୍ୱ କେ କେବେ ଏଡ଼ି ନ ପାରିବ ।
ଯେଉଁ ବେଶେ ମୁସଲମାନ ଭାରତେ ଆସିଲେ
ସେହିପରି ବେଶଧରି ଇଂରେଜ ଆସିଲେ ।୧୩୨
ସେମାନେ ଯେଉଁ ପ୍ରମାଣେ ମିଶି ଯାଇଛନ୍ତି
ପଠାଣ ହିନ୍ଦୁଏ ସେହିପରି ମିଶିଛନ୍ତି । ୧୩୩
ପ୍ରାକୃତିକ ବାଧା ଘୁଞ୍ଚିଅଛି ସେ ପ୍ରମାଣେ
ଏ କଥା ନିରାଟ ସତ୍ୟ ଜାଣ ହେ ସୁଜନେ ।୧୩୪
ଇଂରେଜ ରାଜତ୍ୱପରେ ଥରେମାତ୍ର ଜାଣ
ଏକତ୍ରିତ ହୋଇଥିଲେ ହିନ୍ଦୁ ମୁସଲମାନ ।୧୩୫
ସିପାହୀ ବିଦ୍ରୋହବେଳେ ଏହା ଘଟିଥିଲା
ଟେମ୍ପୁଲ ସାହେବ ଏହା ସିଉକାର କଲା ।୧୩୬
ଉଭୟେ ମିଶିଲେ ଏକ ଜାତୀୟତାବଳେ
ଉଣାକଥା ଏହା ତୁହେଁ ଜାଣିଥାଅ ଭଲେ ।୧୩୭

ଜାତୀୟ କଂଗ୍ରେସ ଏହି ଜାତୀୟଭାବରେ
କାର୍ଯ୍ୟକ୍ରମ ସବୁ ମାନ ଚଳାଇଲେ । ୧୩୮
ହିନ୍ଦୁ ମୁସଲମାନ ଦୁହେଁ ଭାରତ ସନ୍ତାନ
ଏହି ଭାବ କଂଗ୍ରେସର ହେଲାକ ପ୍ରଧାନ ।୧୩୯
ଏ ମହତଭାବ ବଡ଼ ଯଥାର୍ଥ ଅଟଇ
ହିନ୍ଦୁମାନେ ଅକ୍ଲେଶରେ ବୁଝିଗଲେ ଭାଇ ।୧୪୦
ହିନ୍ଦୁ ଧରମ ସଂସ୍କୃତି ଅତ୍ୟନ୍ତ ଉଦାର
ଯେ ଆସିଲା ଭାରତକୁଁ କଲେ ତାକୁ ମୋର ।
ଭାରତେ ଯେ କଲା ଘର ତାକୁ ମୋର କଲେ
ତା ସହିତ ମିଳମିଶି ଚଳାଚଳ ହେଲେ ।୧୪୨
ଯେଉଁ କାରଣରୁ ହେଉ ଶାସକ ଆମ୍ଭର
ଏ ଜାତୀୟଭାବ ପ୍ରତି ହୋଇଲେ ଉଦାର ।୧୪୩
ତଥାଚ ହ୍ୟୁମ୍ ନାମେ ଯେ ସାହେବ ଥିଲେ
ପ୍ରଥମ କଂଗ୍ରେସ ସଭାପତି ହୋଇଥିଲେ । ୧୪୪
ସେ ତାଙ୍କ ବନ୍ଧୁଙ୍କଠାକୁ ଏମନ୍ତ ଲେଖିଲେ
କଂଗ୍ରେସ ଜନ୍ମ ହୋଇଲା ଆବଶ୍ୟକବେଳେ ।
ଏହିପରି ଅନୁଷ୍ଠାନ ଆବଶ୍ୟକ ଥିଲା
ଦଇବଯୋଗେ ଏ ଅନୁଷ୍ଠାନ ଗଢ଼ାହେଲା ।୧୪୬
ଇଂରେଜ ସମ୍ପର୍କବଳେ ଯେ ଶକ୍ତି ଜନ୍ମିବ
କଂଗ୍ରେସର ଦ୍ୱାରଦେଇ ଖଲାସ ହୋଇବ ।୧୪୭
ଯେଉଁ ଭାରତୀୟମାନେ ଏହି ଚିନ୍ତା କଲେ
ଧନ୍ୟବାଦ ଦେଉଅଛୁ ତାଙ୍କୁ ଅବହେଳେ ।୧୪୮
କଂଗ୍ରେସରେ ବହୁହିନ୍ଦୁ ଯୋଗଦାନ କଲେ
ଗୁଣ୍ଟିବା ମୁସଲମାନମାନେ ସଭ୍ୟ ହେଲେ ।୧୪୯
କେତେ ଦାନଯାଏ ଲୋକ ଏମନ୍ତ ଭାବଲେ
ଏ ଦୁଇ ଜାତି ଏକତ୍ର ମିଶି କାମ କଲେ ।୧୫୦
ଏମାନେ ମନ ମିଳାଇ ସକଳ କରିବେ
ଭାରତର ଅଭାବ ସକଳ ମେଣ୍ଟାଇବେ । ୧୫୧

ରାଜନୀତିକ୍ଷେତ୍ରେ ଅଛି ଯେ ସବୁ ଅଭାବ
ଏ ଦୁହିଁଙ୍କ ସହଯୋଗେ ସେ ସବୁ ଘୁଞ୍ଚିବ ।୧୫୨
କିନ୍ତୁ କଂଗ୍ରେସ ପାଖରେ ଆଉ ଏକଦଳ
ବିପରୀତ ଦିଗେ କାର୍ଯ୍ୟ କଲେ ହୋଇ ମେଳ ।
ଭାରତ ମୁକ୍ତି ଉଦ୍ଦେଶ୍ୟ ଅଟେ ହିନ୍ଦୁଙ୍କର
କିନ୍ତୁ ଭିନ୍ନପନ୍ଥା ଧରି ଚଳାଇବେ କଳ ।୧୫୪
ହିନ୍ଦୁଭାରତରେ ଇସଲାମ୍ ପ୍ରତିପତ୍ତି
ସ୍ଥାପନ କରିବାପାଇଁ ବଁଳାଇଲେ ମତି । ୧୫୫
ଏହିକଥା ମନେ ପୋଷି କାର୍ଯ୍ୟ ଚଳାଇଲେ
ଅଳପକାଳ ମଧ୍ୟରେ ଧରାପଡ଼ିଗଲେ । ୧୫୬
ସମ୍ପ୍ରଦାୟ ଭାବ ଧରି କଲେ ସବୁକାମ
ଆପଣା ପ୍ରତିଷ୍ଠା ପାଇଁ କଲେକ ଉଦ୍ୟମ ।୧୫୭
କଂଗ୍ରେସ ଭ୍ରମରେ ପଡ଼ି ବୃଥା ଆଶାକଲା
ମୁସଲମାନଙ୍କୁ ସାଇତିବ ବିଚାରିଲା । ୧୫୮
ସେମାନଙ୍କ ଦାବି ଯେବେ କରିବ ପୂରଣ
ଜାତୀୟ ସମସ୍ୟା ହୋଇଯିବ ସମାଧାନ । ୧୫୯
ହିନ୍ଦୁସ୍ୱାର୍ଥ ଯେତେ ନଷ୍ଟହେଲେ ପଛେ ହେଉ
ମୁସଲମାନ ଯା ଚୃହେଁ ତାକୁ ଦିଆଯାଉ ।୧୬୦
ଏପରିକଲେ ସେମାନେ ସନ୍ତୁଷ୍ଟ ହୋଇବେ
ଭାରତ ଦାବିରେ ସେହୁ ଯୋଗଦାନ ଦେବେ ।
କୋଡ଼ିଏ ବରଷକାଳ ଏହି ନୀତିବଳେ
କଂଗ୍ରେସର କର୍ମକର୍ତ୍ତାମାନେ କାର୍ଯ୍ୟକଲେ ।
ଯେତେ ଦାବିକଲେ ସବୁଥିରେ ହେଲେ ରାଜି
ଅବଶେଷେ ସକଳ ଭରସା ଗଲା ଭାଜି । ୧୬୩
ଯେତେ ରାଜିହେଲେ ତେତେ ଅଧିକ ମାଗିଲେ
ପଛକୁ କଂଗ୍ରେସ କର୍ତ୍ତାମାନେ କାବୁହେଲେ ।
ବନ୍ଦେମାତରଂ ପଦ୍ୟରୁ ପଦ କଟାହେଲା
ଶ୍ରୀଚନ୍ଦ୍ର ନିଶାଣମାନ କାଟି ଖାଇଗଲା । ୧୬୫

ଶତକଡ଼ା ଷାଠିଏ ସେ ମୃକଶ୍ରୀ ପାଇବେ
ବଙ୍ଗଦେଶରେ ଏ ସବୁ ଘଟିଛି ତ ଏବେ ।୧୬୬
ଏ ସବୁ ଦାବି ନ୍ୟାଯ୍ୟ ବା ଅନ୍ୟାଯ୍ୟ ଅଟଇ
ଏ କଥା କଞ୍ଚିତ କେହି ବିଚାରିଲେ ନାହିଁ ।୧୬୭
ଏତେକଥା କର ଫଳ ହେଲା ବିପରୀତ
ମୁସଲମାନଙ୍କ ଦାବି ବଢ଼ିଲା ସତତ । ୧୬୮
ବିସ୍ତୃତ ମୁସଲମାନ ରାଜ୍ୟର ସେ ଅଂଶ
ଏପରି ଅଛି ତାଙ୍କର ବିଶ୍ୱାସ ସାହସ । ୧୬୯
ପଶ୍ଚିମେ ମୁସଲମାନ ରାଜ୍ୟ ଅଛି ଯେତେ
ଯେଉଁପ୍ରଦେଶେ ପଠାଣ ଅଧିକ ଭାରତେ ।୧୭୦
ସ୍ୱାଧୀନ ମୁସଲମାନ ନେତୃତ୍ୱରେ ରହି
ବୃହତ ଜାତୀୟଭାବ ଗର୍ବ ମନେ ବହି । ୧୭୧
ବିଚାରନ୍ତି ସେମାନେ ନୁହନ୍ତି ସଂଖ୍ୟାନ୍ୟୁନ
ତାଙ୍କ ସଙ୍ଗେ ଅଛନ୍ତି ଅସଂଖ୍ୟ ମୁସଲମାନ ।୧୭୨
ଏହି ଦମ୍ଭ ଦର୍ପ ଅଛି ଅନ୍ତରେ ତାଙ୍କର
ତେଣୁ ସେମାନେ ବୋଲନ୍ତି ଆହେ ସରକାର ।
ସଂଶୋଧନ କରିଦିଅ ଶାସନ ଆଇନ
ତାକୁ ମାନିବାକୁ ରାଜିନୁହେ ମୁସଲମାନ । ୧୭୪
ହିନ୍ଦୁ ମୁସଲମାନ ମିଶି ନୁହେ ଏକ ଜାତି
ଦୁଇଟି ବୃହତ ଜାତି ଏମାନେ ଅଟନ୍ତି । ୧୭୫
ଦୁହିଙ୍କର ଧରମ ସଂସ୍କୃତି ଭିନ୍ନ ଭିନ୍ନ
ତେଣୁ ଖାପ ନ ଖାଉଛି ନୂତନ ଆଇନ ।୧୭୬
ଏହିପରି ନାନା ଯୁକ୍ତି ତରକ ଦେଖାଇ
ଦାବିକରନ୍ତି ସେମାନେ ସଂଶୋଧନପାଇଁ ।୧୭୭
ବୋଲନ୍ତି ମୁସଲମାନ ପ୍ରଦେଶ ଯେତେକ
ମୁସଲମାନଙ୍କ ରାଜ୍ୟ କରି ହେବ ସେତେକ ।୧୭୮
ଅବଶିଷ୍ଟ ଅଂଶ ଭାରତର ହିନ୍ଦୁ ରାଜ୍ୟ
ଏପରି ବାଣ୍ଟି ନଦେଲେ ନଚଳିବ କାର୍ଯ୍ୟ ।୧୭୯

ଏହିପରି ମନେ ଭାବ କାର୍ଯ୍ୟ ଯେ ଜାତିର
ଅନ୍ୟ ଜାତି ପ୍ରତି ଯାର ନାହିଁକ ଖାତିର ।୧୮୦
ହିନ୍ଦୁର ଭଲ ଅଥବା ମନ୍ଦ ହେଲେ ହେଉ
ମୁସଲମାନର ଠେକ ଏ ଭାରତେ ଥାଉ ।୧୮୧
ଏପରି ଦୁଇଟି ଜାତି ଏକତ୍ର କି ହେବ
ଗୋଟିଏ ଭାରତ ଜାତି କପରି ହୋଇବ ।୧୮୨
ଦୁଇ ଜାତିର ଅନ୍ତର ନିର୍ମଳ ନ ହେଲେ
ଜାତୀୟ ଏକତା କେବେଁ ନ ହୋଇବ ଭଲେ ।
ପ୍ରତିନିଧି ସଭା ହୋଇ ବିବାଦ ମେଣ୍ଟିବ
ଏକଥା ହୋଇବା ମଧ୍ୟ ଅଟେ ଅସମ୍ଭବ । ୧୮୪
ମୁସଲମାନ ବୋଲନ୍ତି ଗଣତନ୍ତ୍ର ପାଇଁ
ଏ ଭାରତ କେବେ ଉପଯୁକ୍ତ ହୋଇନାହିଁ ।୧୮୫
ଉଚିତ ଥିଲା ଆଗରୁ ହେବା ସାବଧାନ
ତେଣିକି ହିନ୍ଦୁଏ ଦେଲେ ନାହିଁ ମନଧ୍ୟାନ ।୧୮୬
ଶାସନ ସଂସ୍କାର ଯେତେବେଳେ କରାଗଲା
ସେତେବେଳୁ ସତର୍କ କେ ହୋଇ ନ ପାରିଲା ।
ହିନ୍ଦୁ ନାମ ଲୋପ କରାଗଲା ତେତେବେଳେ
ଅମୁସଲମାନ ବୋଲି ତାଙ୍କୁ ନାମ ଦେଲେ ।
ସାଧାରଣ ବୋଲି ନାମକରଣ ହୋଇଲା
ହିନ୍ଦୁ ନାମ ଶ୍ରେଷ୍ଠ ତାଲିକାରେ ନରହିଲା ।୧୮୯
ମୋ କ୍ଷୁଦ୍ର ବୁଦ୍ଧି କି ମୋତେ ଏମନ୍ତ ଦିଶୁଛି
ଭାରତ ଜାତୀୟ ଭାବ ସେ ଦିନୁ ମରିଛି । ୧୯୦
ଆପଣା ମର୍ଯ୍ୟାଦାଜ୍ଞାନ ଯେ ଜାତିର ଥିବ
ନିଜନାମ ଲୋପ ଦେଖି କେବେ କି ସହିବ?୧୯୧
ସେକାଳେ ଅଭିଭାବକ ଯେଉଁମାନେ ହେଲେ
ଏ ଅପମାନର ପ୍ରତିବାଦ ସେ ନ କଲେ ।୧୯୨
ବର୍ତ୍ତମାନ ପରିସ୍ଥିତି ଫଳରେ ଏମନ୍ତ
ହିନ୍ଦୁସ୍ଥାନ ହିନ୍ଦୁ ଜିଜ ବୋଲାଇଲା ସତ । ୧୯୩

ଜର୍ମାନୀରେ ଜଉ ନାମେ ଜାତି ଏକ ଅଛି
ସେ ଦେଶରୁ ହିଟଲର ତାଙ୍କୁ ତଡ଼ୁ ଅଛି । ୧୯୪
ହିନ୍ଦୁସ୍ଥାନେ ହିନ୍ଦୁ ଦଶା ଅଟେ ସେହିପରି
ଅଧିକ ପାଇବା ଆଉ ନାମଗନ୍ଧ ମରି । ୧୯୫
ଏକ ଜାତି ହେବା ଭାବ ଇଚ୍ଛାକଲେ ହେବ
ଇଚ୍ଛା ନ କଲେ ଜାତୀୟଭାବ ଅସମ୍ଭବ । ୧୯୬
ଏ ଦୁର୍ଦ୍ଦଶାପାଇଁ ହିନ୍ଦୁମାନେ ଏକା ଦାୟୀ
ମୁହଁ ଖୋଲି ସତକଥା ନ କହନ୍ତି କେହି ।୧୯୭
ସବୁବେଳେ ଡର କାଳେ କେ କସ ଭାବିବ
ଗୋଷ୍ଠି ଗତଭାବବୋଲି ନିନ୍ଦା କରିଦେବ ।୧୯୮
ଯେତେବେଳେ ଯେଉଁ କଥା ଆବଶ୍ୟକ ହେଲା
ପ୍ରକାଶ୍ୟ ଭାବରେ ସତ କଥା ନ କହିଲା ।୧୯୯
ଅଳପ ସଂଖ୍ୟକ ମୁସଲମାନ ସହଯୋଗୀ
ତାଙ୍କ ପାଇଁ ହିନ୍ଦୁମାନେ ହେବେ ସର୍ବତ୍ୟାଗୀ ।
ସାଇମନ ପଞ୍ଚାୟତ ଆସିଲା ଯେ କାଳେ
କଂଗ୍ରେସିଆ ବନ୍ଧୁ ମହାଭ୍ରମରେ ପଡ଼ିଲେ । ୨୦୧
ଭାଇ ପରମାନନ୍ଦ ଯା କହିଛନ୍ତି ଶୁଣ
ଯେସବୁ ପ୍ରସ୍ତାବ କରିଥିଲେ ସାଇମନ । ୨୦୨
ବର୍ତ୍ତମାନ ଆଇନରେ ଯାହାସବୁ ହେଲା
ସାଇମନ ପ୍ରସ୍ତାବ ତାଠାରୁ ଭଲଥିଲା । ୨୦୩
ମୁସଲମାନର ଯେଉଁ ସମ୍ପ୍ରଦାୟ ଦାବି
ସାଇମନ ନିନ୍ଦା କରିଥିଲେ ତାକୁ ଭାବି । ୨୦୪
ମୁସଲମାନଙ୍କ ସଭି ଦାବି କରିଥିଲେ
ସାଇମନ ତହିଁ ପ୍ରତି ଭ୍ରୂକ୍ଷେପ ନକଲେ । ୨୦୫
ସାମ୍ପ୍ରଦାୟିକ ସାଲିସ ଭିତ୍ତିପୂର ନାମ
ସାଇମନ ପ୍ରସ୍ତାବରେ ନ ଥିଲାକ ଜାଣ । ୨୦୬
ପ୍ରାଦେଶିକ ସ୍ୱାଧୀନତା ଆକାର ପ୍ରକାର
ସାଇମନ ପ୍ରସ୍ତାବରେ ଥିଲା ଉଚ୍ଚ ଦର । ୨୦୭

କଂଗ୍ରେସର ଆଦର୍ଶ ମାନିକେ ହୋଇଥିଲା
ନୂଆ ଆଇନରେ ତହୁଁ ମତ ଦର ହେଲା ।୨୦୮
କଂଗ୍ରେସ ଗ୍ରହଣକଲା ନୂତନ ବିଧାନ
ଗ୍ରହଣ ନ କଲା ସାଇମନ ବିଧିମାନ । ୨୦୯
ଭବିଷ୍ୟତ ଦୃଷ୍ଟି ଯେବେ ଥାନ୍ତା କଂଗ୍ରେସର
ହୋଇଥିଲେ କଂଗ୍ରେସର ନେତାଏ ଚତୁର ।
ସାଇମନ ବିଧି ବିଧାନକୁ ମାନଥାନ୍ତେ
ସେକଥା ନକରି ଭ୍ରମେ ପଡ଼ିଲେ ସମସ୍ତେ ।୨୧୧
କଂଗ୍ରେସ ସାଇମନକୁ କଲାକ ବର୍ଜନ
ନ ପଢ଼ିଲେ କେହି ସାଇମନଙ୍କ ବିଧାନ । ୨୧୨
ମୁସଲମାନ ସେଥିରେ ସନ୍ତୁଷ୍ଟ ନ ହେଲେ
ନଚେତ ଗ୍ରହଣ ସେହୁ କରିଥାନ୍ତେ ଭଲେ ।
ସରକାର ଏହା ଦେଖି ଏମନ୍ତ ଭାବିଲେ
କି କଲେ ମୁସଲମାନ ମଙ୍ଗିଯିବେ ହେଲେ ।
ଚିରକାଳ ମିତ୍ର ହୋଇଥିବେ ତାହାଙ୍କର
ଫଳରେ ନୂତନ ପ୍ରଥା ହୋଇଲା ତାଙ୍କର ।୨୧୫
ଗୋଲମେଜ ବଇଠକ ତିନ ଥର ହେଲା
ଭାରତ ଶାସନ ବିଧି ବିଚାର ପଡ଼ିଲା । ୨୧୬
ହିନ୍ଦୁ ବିଷୟ ସେଠାରେ କେହି ନ କହିଲା
ହିନ୍ଦୁ ଦାବିମାନ ବାଁଏବାଁଏ ଉଡ଼ିଗଲା । ୨୧୭
ଏଥିଲାଗି ନଳିମାରଞ୍ଜନ ଯା ଲେଖିଲେ
ଶୁଣ ସଜ୍ଜନେ ତାହା ମନଦେଇ ଭଲେ ।୨୧୮
ଦେଶ ଲୋକେ ନିଜକୁ ସାହାଯ୍ୟ ନ କରନ୍ତି
ସେମାନଙ୍କୁ ସାହାଯ୍ୟ କେ କରିବ କେମନ୍ତି ।
ଶୁଣିଛୁ ଲୋକେ କହନ୍ତି କଂଗ୍ରେସ ସମାନ
ଶୃଙ୍ଖଳିତ ଅନୁଷ୍ଠାନ ଆଉ ନାହିଁ ଜାଣ । ୨୨୦
ଭାରତର ସ୍ୱାଧୀନତା ପାଇଁ ଲଢ଼ୁଅଛି
କଂଗ୍ରେସ ହେତୁ ଯା କିଛି କ୍ଷମତା ମିଳୁଛି ।୨୨୧

କାଞ୍ଚି ସ୍ୱରାଜ୍ୟଲାଭ କରିଛି ଭାରତ
କଂଗ୍ରେସର ତ୍ୟାଗ ଯତ୍ନ ହେତୁ ତା ସମସ୍ତ ।
କଂଗ୍ରେସକୁ ନିନ୍ଦିବାକୁ ଇଚ୍ଛା ନୁହେଁ ମୋର
ଦୁଃଖହେଉଅଛି ମନେ କହିବାକୁ ମୋର ।୨୦୩
ଯେଉଁ ଅନୁଷ୍ଠାନ ତାର ନିଜ ଦାୟିତ୍ୱରେ
ଏତେକାଳ ଲଗିଅଛି ଜାତୀୟ ସମରେ । ୨୨୪
ତାକୁ ନିନ୍ଦିବାକୁ ମୋର ବଳୁନାହିଁ ମନ
ସମ୍ମାନ ସହିତ ଯାହା ଜହୁଅଛି ଶୁଣ । ୨୨୫
କଂଗ୍ରେସର ନୀତି ହେତୁ ମିଳନାହିଁ କିଛି
ବ୍ୟକ୍ତିଗତ ଶକ୍ତିରୁ ଯା କିଛି ହୋଇଛି ।୨୨୬
କଂଗ୍ରେସ ଯେଉଁ ନୀତିରେ କାମ କରିଅଛି
ହିନ୍ଦୁ ସ୍ୱାର୍ଥ ରକ୍ଷା କରି ପାରୁନାହିଁ କିଛି ।୨୨୭
ଗୋଟିଏ ଦୃଷ୍ଟାନ୍ତ ଦେଲେ ଯଥେଷ୍ଟ ହୋଇବ
ସାମ୍ପ୍ରଦାୟିକ ନିଷ୍ପତ୍ତି କଥା ମନେ ଭାବ । ୨୨୮
କଂଗ୍ରେସର ନୀତି ଏଥିପ୍ରତି ଅଟେ କିସ
ଗ୍ରାହ୍ୟ ବା ଅଗ୍ରାହ୍ୟ ସ୍ପଷ୍ଟ ନ କହେ କଂଗ୍ରେସ ।
ଏ ନୀତି ରହସ୍ୟ କିଛି ବୁଝିହୋଇ ନାହିଁ
ଏକ 'ଦୂତ' ମତ କିମ୍ପାଇଁ ନ କହ ଫିଟାଇ । ୨୩୦
ଡ଼ରୁଛ କି ସ୍ପଷ୍ଟ କଥା କହିବାକୁ ମନେ
ପସନ୍ଦ ନକରେ ଏହି ନୀତି ଭିଳାଧାନେ । ୨୩୧
କାହାର ମଙ୍ଗଳ କରୁଅଛ ଏ ନୀତିରେ
ଫିଟାଇ କହ କି ଭାବ ଅଛଇ ମନରେ । ୨୩୨
କଂଗ୍ରେସର ମତି ଗତି ବୁଝି ପାରୁ ନାହିଁ
ପଚାରୁଛି କଥା ଏକ ଦିଅ ମୋତେ କହି ।
କଂଗ୍ରେସ ନିଜ ଇଚ୍ଛାରେ ନେଲିକି ଶାସନ
କେତେ ପ୍ରଦେଶେ ମନ୍ତ୍ରୀତ୍ୱ କଲାକି ଗ୍ରହଣ ।୨୩୪
ଶାସନ ଯନ୍ତ୍ରକୁ ଭାଙ୍ଗିବାକୁ ମନ୍ତ୍ରୀ ଗଲେ
ସଙ୍କଟ ସମୟେ କିମ୍ପା ମନ୍ତ୍ରୀତ୍ୱ ଛାଡ଼ିଲେ ।୨୩୫

ଊନବିଂଶ ଶତ ଊନବିଂଶ ଯେ ସାଲରେ
ଶାସନ ପଦ୍ଧତି ଯାହା ଘୋଷଣା କରିଲେ । ୨୩୬
ସେହି ମତ ଆଜଯାକେ ଭାରତେ ଚଳୁଛି
ନୂତନ ବିଧିବିଧାନ ହୋଇନାହିଁ କିଛି । ୨୩୭
କେବଳ କଂଗ୍ରେସ ଯେଉଁ କଥା ଗୃହିଁଥିଲା
ସେଥିରେ ସେ କୃତକାର୍ଯ୍ୟ ହୋଇ ନପାରିଲା ।
ଏହି କାରଣରୁ ହୋଇ ପାରେ ବା ଉଚିତ
ମନ୍ତ୍ରୀମାନେ ଛାଡ଼ିବାର ତାହାଙ୍କ ମନ୍ତ୍ରୀତ୍ୱ । ୨୩୯
କଂଗ୍ରେସ ସହିତ ଯେତେ କଥାବାର୍ତ୍ତା ହେଲା
ହିନ୍ଦୁର ହିନ୍ଦୁତ୍ୱ ନାମ ଗନ୍ଧହିଁ ନ ଥିଲା । ୨୪୦
କଂଗ୍ରେସ ବ୍ୟତୀତ ହିନ୍ଦୁ ନାମ ନ ପଡ଼ିଲା
ସରକାର ସଙ୍ଗେ ଯେତେ ବେଭାର ଚଳିଲା ।
ହିନ୍ଦୁମାନେ ଏହି ପରିସ୍ଥିତିପାଇଁ ଦାୟୀ
ବିଚାରିଲେ କଂଗ୍ରେସ କରିବ ତାଙ୍କୁ ସାହି ।
ସମୟ ଆସିଛି ଏବେ କହିବାକୁ ସତ
ଏଣିକି ହିନ୍ଦୁ ଏଥିକି ନୁହର ପ୍ରସ୍ତୁତ । ୨୪୩
ଏତେ କାଳ ଧରି ବହୁ ଯତ୍ନ କରାଗଲା
ଏ ଦୁଇ ଜାତି ମଧ୍ୟରେ ଏକତା ନ ହେଲା ।
ଏକତା ହେଲେ ହୁଅନ୍ତା ଉଭୟ ମଙ୍ଗଳ
ମାତ୍ର ସକଳ ପ୍ରୟତ୍ନ ହୋଇଲା ବିଫଳ । ୨୪୫
ଯାବତ ଏପରି ମନୋବୃତ୍ତି ରହିଥିବ
ତାବତ ମିଳନ ଆଶା ଅଟେ ଅସମ୍ଭବ । ୨୪୬
ମୁସଲମାନର ଅଛି ଯେ ଜାତୀୟ ଭାବ
ସେମାନେ ଶ୍ରେଷ୍ଠ ବୋଲିଣ ମନରେ ଗରବ ।
ଏ କଥା ସେମାନେ ପ୍ରକାଶ୍ୟରେ କହୁଛନ୍ତି
ଇଂରେଜ ତାଙ୍କ ହାତରୁ ରାଜ୍ୟ ନେଇଛନ୍ତି ।
ଯଦି ସେ ଶାସନ ଭାର କାହା ହାତେ ଦେବେ
ତାଙ୍କଠାରୁ ନେଇଛନ୍ତି ତାଙ୍କୁ ଦେଇଦେବେ ।

ଏପରି ବଙ୍ଗଳା ଲାଟସଭାରେ କହିଲେ
ଆଜକାଲି କହୁଛନ୍ତି କେତେ ବକ୍ତୃତାରେ ।
ଏକଥା ଶୁଣିଲେ ଲୋକ କ ଭାବ ବୁଝିବ
ମୁଁ ବୁଝୁଛି ଏ ତ ସ୍ପଷ୍ଟ ନେତାଙ୍କର ଭାବ ।
ଧର୍ମ ସଂସ୍କୃତିରେ ସେ ହିନ୍ଦୁଙ୍କୁ ଜିଣିଛନ୍ତି
ଏହି ଭାବ ତାଙ୍କ ମନେ ସଦା ଖେଳୁଅଛି ।୨୫୨
ହିନ୍ଦୁ ମୁସଲମାନ ଭେଦଭାବର କାରଣ
ସେହି ଭାବ ଅଟଇ ଏହାଁ ଭଲକରି ଜାଣ ।
କେତେକ ଘଟଣା ଶୁଣ କହୁଅଛି ମୁହିଁ
ସେ ସବୁ ତ ମନରୁ ପାଶୋରି ଯାଇନାହିଁ ।
ମାଲବାରରେ ମୁସଲମାନ ଯାହା କଲେ
ରକତ ଗରମ ହୁଏ ସେ ସବୁ ଶୁଣିଲେ ।୨୫୫
ହିନ୍ଦୁ ଉପରେ ଭୀଷଣ ଅତ୍ୟାଚାର ହେଲା
କଂଗ୍ରେସ ତଦନ୍ତପାଇଁ କମିଟି ଏ କଲା । ୨୫୬
ଘଟଣାର ନ୍ୟାୟାନ୍ୟାୟ ତଦନ୍ତ କରିବ
ତଦନ୍ତକରି ତାହାର ମତ ପ୍ରକାଶିବ । ୨୫୭
କମିଟି ତଦନ୍ତ କରି କସ ମତ ଦେଲା
ତହିଁର ଖବର କିଛି ପ୍ରକାଶ ନ ହେଲା । ୨୫୮
ଜାତି ହିତ ଦୃଷ୍ଟିରୁ ପ୍ରକାଶ ଅନୁଚିତ
ଏପରି କାରଣ ଦେଇ ତା ରଖିଲେ ଗୁପ୍ତ ।
ଏହା ପଛେ ପଛେ ମୁଲତାନ ଅତ୍ୟାଚାର
ମୁସଲମାନ ମାନଙ୍କେ ଅତି ଭୟଙ୍କର । ୨୬୦
ନଗରଯାକ ହିନ୍ଦୁ ପରେ ଅତ୍ୟାଚାର ହେଲା
ଏଡ଼େ ନୀଚ ଅତ୍ୟାଚାର ଶୁଣା ତ ନ ଥିଲା ।
ଏହି ଅତ୍ୟାଚାର କରିଥିଲେ ମୁସଲମାନ
ମୁସଲମାନ ନେତା ଏ ମାନଙ୍କେ ଏମାନ ।୨୬୧
ମାଲକାନା ରାଜପୁତ ସେହି ସମୟରେ
ହିନ୍ଦୁ ହେଲେ ଅଥବା ଅଳପ ଦିନପରେ ।

ଏହି ସମ୍ପର୍କରେ ନାନା ଗଣ୍ଡଗୋଳ ହେଲା
ଆଗ୍ରା, ମଥୁରା, ଭରତପୁରରେ ଘଟିଲା ।୨୬୮
କୋହାଟର ଅତ୍ୟାଚାର ତାହା ପରେ ହେଲା
କୋଡ଼ିଏ ହଜାର ଲୋକ ଘରୁ ତଡ଼ା ହେଲା ।
ଘର ଦ୍ୱାର ଜମି ବାଡ଼ି ଛାଡ଼ି ଚାଲିଗଲେ
ଅନ୍ୟ ସ୍ଥାନେ ଯାଇ ସେହୁ ଶିଆପିଆ କଲେ ।
ଊନବିଂଶ ପଚିଶ ସାଲରେ ପାଟଣାରେ
କଲିକତାଠାରେ ଘୋର ଅତ୍ୟାଚାର କଲେ ।
ସେହି ବର୍ଷ ଶେଷରେ କ ହେଲା ଶୁଣ ବାରେ
ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କୁ ସେ ମାରି ପକାଇଲେ ।
ଆର୍ଯ୍ୟ ସମାଜ କେତେକ ପୁଣି ମରି ହେଲେ
ଦିଲ୍ଲୀଠାରେ ଲାଲା ଦୁଲିଚାନ୍ଦଙ୍କୁ ମାରିଲେ ।୨୬୯
ରଙ୍ଗିଲାରସୁଲ ଆନ୍ଦୋଳନ କଥା ଜାଣ
ହାଣକାଟ ମାରପିଟ ଲାଗିଲା ବହନ ।   ୨୭୦
ରାଜ ପାଲ ସେହି ଘଟଣାରେ ମରିଥିଲେ
ଭୋଳାନାଥ ସେନ ମଲେ କଲିକତାଠାରେ ।
ହାଇଦ୍ରାବାଦ, ଭୋପାଳ, ଭାବଲପୁରରେ
ରାମପୁର ଆଦି କେତେ ଦେଶୀୟ ରାଜ୍ୟରେ ।
ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ହେଲା
ହିନ୍ଦୁମାନଙ୍କୁ ସୁବିଧା କିଛି ନ ମିଳିଲା ।  ୨୭୩
ମୁସଲମାନ କ୍ଷମତା ଅକ୍ଷୁର୍ଣ୍ଣ ରହିବ
ଯାବତୀୟ ଅସୁବିଧା ହିନ୍ଦୁ ଭୋଗୁଥିବ ।  ୨୭୪
ଏଥିପାଇଁ ହିନ୍ଦୁମାନେ ଆନ୍ଦୋଳନ କଲେ
ଫଳରେ ବହୁତ ଅତ୍ୟାଚାର ସେ ସହିଲେ ।
ଶାସନ ସଂସ୍କାର ନାମେ ଯାହା ସବୁ ହେଲା
ମୁସଲମାନ କ୍ଷମତା ଅକ୍ଷୁର୍ଣ୍ଣ ରହିଲା ।   ୨୭୬
ମୁସଲମାନ ପ୍ରଜାଏ କାଶ୍ମୀର ଦେଶରେ
ରାଜାକୁ ତଡ଼ିବାପାଇଁ ନାନାକର୍ମ କଲେ ।୨୬୭

ବହୁକଷ୍ଟେ ସେ ବିପଦୁ ସେ ରକ୍ଷା ପାଇଲେ
ସାହାଗଞ୍ଜେ ମୁସଲମାନ ଅତ୍ୟାଚାର କଲେ ।
ସିରହଟରେ ଯାହା ଯାହା ହେଲା ଅତ୍ୟାଚାର
ଉଦ୍ଦେଶ୍ୟ କାରଣମାନ ନ କହିବା ଭଲ ।୨୭୯
ବଙ୍ଗଳା ପଞ୍ଜାବ କଥା କହିଲେ ନ ସରେ
ହିନ୍ଦୁମାନେ ସଂଖ୍ୟା ନ୍ୟୂନ ଦୁଇ ପ୍ରଦେଶରେ ।
ସମ୍ପ୍ରଦାୟ ଭାଗବଣ୍ଟା ହେଲା ଯେଉଁପରି
ଗଣତନ୍ତ୍ର ଜାତୀୟ ଭାବର୍ଟେ ତା ବଇରୀ । ୨୮୧
ମୁସଲମାନ ପାଠମନ୍ତ୍ରୀ ଦୁଇ ପ୍ରଦେଶରେ
ଅଧିକ ସଂଖ୍ୟାରେ ମୁସଲମାନ ଯେଉଁଠାରେ ।
ମୁସଲମାନ ସକଳ ସୁବିଧା ଭୋଗିବ
ହିନ୍ଦୁ ଜାତି ହିତ କଥା କେହି ନ ଶୁଣିବ ।୨୮୩
ସରକାର ହର୍ତ୍ତାକର୍ତ୍ତା ଯେଉଁମାନେ ଥିଲେ
ସମ୍ପ୍ରଦାୟ ଭାଗବଣ୍ଟା ପସନ୍ଦ ନ କଲେ । ୨୮୪
ଏତେ ନିନ୍ଦା ସତ୍ତ୍ୱେ ପୁଣି ସେହି କଥା ହେଲା
ଆଇନର ଛାପାମାର ଦୃଢ଼ତର ହେଲା । ୨୮୫
ଭାରତ ଜାତିକୁ ଭାଗ ଭାଗ କରା ହେଲା
ଏକଜାତି ମହାଭାବ ପଥେ ବାଧା ହେଲା ।୨୮୬
ମହାତ୍ମା ଗାନ୍ଧିଙ୍କ ଯେଉଁ ଉପବାସ ହେଲା
ସମ୍ପ୍ରଦାୟ ଭାଗ ଶେଷ ରୂପକୁ ଧରିଲା । ୨୮୭
ଏଥିପାଇଁ ଧନ୍ୟବାଦ ଗାନ୍ଧିଙ୍କି ଦେଉଛୁ
ଗାନ୍ଧିଙ୍କ ଉପବାସରୁ ଯେ ଫଳ ମିଳିଛୁ । ୨.
ଅନୁନ୍ନତ ଜାତିପାଇଁ ଭିନ୍ନ ସ୍ଥାନ ହେଲା
ହିନ୍ଦୁଙ୍କ ସଂଖ୍ୟାରୁ ତାଙ୍କୁ ଭାଗ ଦିଆଗଲା ।୨୮୯
ପ୍ରତିନିଧି ଦୁଇଶ ପଞ୍ଚାଶ ବଙ୍ଗଳାର
ହିନ୍ଦୁ ଭାଗ ହେଲା ଅଠାନ୍ତରି ନିକର । ୨୯୦
ବୁଝ ଏଥିରୁ ବଙ୍ଗଳା ହିନ୍ଦୁ ପରିସ୍ଥିତି
ନିରାଶ୍ରୟ ହୋଇ ନିରାଶାରେ ଚିନ୍ତାନ୍ୱିତ । ୨୯୧

ବୃଟି ହିନ୍ଦୁ ଭାଇମାନେ ଅବସ୍ଥା ଭୂମିର
ପାରିଲେ ଚଞ୍ଚଳ ଚିନ୍ତା କର ପ୍ରତିକାର । ୨୯୨
ନିଜ ଗୋଡେ ନିଜେ ଠିଆ ହେବନାହିଁ ଯେବେ
ତବ ଦୁଃଖ କଷ୍ଟ ଦୂର ନ ହୋଇବ କେବେ ।
ହିନ୍ଦୁ ପତାକା ତୁଳଇରେ ହୁଅ ଏକତ୍ରିତ
ଆପଣାର ପ୍ରତିକାର ନେଉ ହେ ଭୂରିତ ।୨୯୪
ଯାକୁ ତାକୁ କାହାକୁ ଅପେକ୍ଷା କର ନାହିଁ
ଚଳାଅ ନିଜ ସଂଗ୍ରାମ ନିଜ ଧର୍ମେ ଥାଇ ।୨୯୫
କେଉଁ ସମ୍ପ୍ରଦାୟ ସଙ୍ଗେ ନ କର ବିବାଦ
ନିଜ ନ୍ୟାଯ୍ୟ ଦାବି ଆମ୍ଭେ ପାଇଲେ ଆନନ୍ଦ ।
ସାଥିକ ଆସିଲେ କେହି ତା ସାଥିରେ ଯାଅ
ନ ଆସିଲେ ଏକା ଏକା ଅଗ୍ରସର ହୁଅ ।୨୯୭
କେହି ବାଧା ଦେଲେ ବାଧା ଲଙ୍ଘି ଆଗେଚାଲ
ଚଳାଅ ନିଜ ସଂଗ୍ରାମ ହୋଇ ଏକମେଳ । ୨୯୮
ଜାତୀୟ ମୁକତି ପାଇଁ ଲଢ଼ ଯଥା ଶକ୍ତି
ସାହା ହେବେ ଭଗବାନ ପ୍ରଭୁ ଶିଖିପତି ।୨୯୯
ଆଶାକରେ ସଭାପତି ଯୋଗ୍ୟ ସେନାପତି
ତାଙ୍କ ପରାମର୍ଶେ କାର୍ଯ୍ୟ ଚଳାଅ ଝଟିତି ।୩୦୦
ତାଙ୍କ ମୂଲ୍ୟବାନ ସମ୍ଭାଷଣ ଏବେ ଶୁଣ
ଯାହା କହିବେ ତହିଁକି ଦିଅ ମନ ଧ୍ୟାନ ।୩୦୧
ଆହେ ମହାପ୍ରଭୁ ବାରେ କର ହେ କରୁଣା
କରୁଣା ବିହୁନେ ଏ ଭାରତ ହୁଏ ବଣା ।୩୦୨
ନାନାଜାତି ନାନା ସ୍ୱାର୍ଥ ନାନା ମତ ଗତି
ଏକାଠି ହୋଇଲେ ସିନା ଲଭିବେ ମୁକତି ।
ସକଳେ ଏକ ମୁଖରେ ଡାକି ନ ପାରନ୍ତି
ନାନା ମତ ଭେଦ ନେଇ ବିବାଦ କରନ୍ତି ।୩୦୪
ବହୁତ ନାୟକ ଆଜକାଲି ଭାରତରେ
ପ୍ରତ୍ୟେକେ ବୋଲନ୍ତି ତାଙ୍କ କଥାରେ ଚଳିଲେ ।

ଭାରତ ହେବ ସ୍ୱାଧୀନ ନାହିଁଟି ସଂଶୟ
ଯେ ଯାହା ମତକୁ ସେହୁ କରେ ବଡ଼ଥୟ ।
ତେଣୁ ଲୋକମାନେ କିଛି ବୁଝି ନ ପାରନ୍ତି
ନ ବୁଝିପାରି କେବଳ ଭୁଆଁ ବୁଲୁଛନ୍ତି ।୩୦୭
ବୋଲେ ଧାନ ଜଗବନ୍ଧୁ ଆହେ ଯଦୁପତି
ବେଗେ ନାଶ କର ଭାରତର ଏ ଦୁର୍ଗତି ।୩୦୮

ଇତି ଶ୍ରୀ ଭାରତ-ଚରିତାମୃତେ ହିନ୍ଦୁ ମହାସଭା ଅଭ୍ୟର୍ଥନା ସଭାପତି ସମ୍ଭାଷଣ ବର୍ଣ୍ଣନେ ଏକଶତ ଏକ ଅଧ୍ୟାୟଃ ।



## ଏକଶତ ଦୁଇ ଅଧ୍ୟାୟ

ଗଉର ଉବାଚ

ଅଭ୍ୟର୍ଥନା ସଭାପତି କଥା ଶୁଣାଗଲା
କି କହିଲେ ଦାମୋଦର ଜଣା ତ ନ ଗଲା ।୧
ଓଡ଼ିଶାରେ ମୁସଲମାନଙ୍କ ସଂଖ୍ୟା ଊଣା
ତେଣୁ ବେଶି ଅତ୍ୟାଚାର ନ ପଡ଼ଇ ଜଣା । ୨
ହିନ୍ଦୁ ମୁସଲମାନ ବଡ଼ ସୁଖେ ଚଳୁଥିଲେ
ପରମ ଶାନ୍ତିରେ ଦୁହେଁ କାଳ କାଟୁଥିଲେ ।୩
ଆଜିକାଲି ଆନ ଦେଶ ପବନ ଆସିଲା
ମୁସଲମାନଙ୍କ ମନ କଳୁଷିତ କଲା । ୪
ତେଣୁ କେତେ ସ୍ଥାନେ ଶୁଣାଯାଏ ଗଣ୍ଡଗୋଳ
କପରି ଏ ଦୁଇ ଜାତି ହେବେ ଏକ ମେଳ ।୫
ବିନାୟକ କି କହିଲେ କହନ୍ତୁ ଆପଣ
ତାଙ୍କ କଥା ଶୁଣିବାକୁ ହୁଏ ମୋର ମନ । ୬

ଜଗା ଉବାଚ

ହିନ୍ଦୁ ପରେ ମୁସଲମାନ କରେ ଅତ୍ୟାଚାର
ବିସ୍ତାରି ସେ କଥା କହିଥିଲେ ଦାମୋଦର । ୭

ପୂର୍ବ ଅଧ୍ୟାୟରେ ମନମଥ ଯା କହିଲେ
ବିନାୟକ ତହୁଁ କିଛି ଅଧିକ ଭାଷିଲେ । ୮
ବିନାୟକ ବୋଇଲେ ଏ ଅଳ୍ପ ସମୟରେ
ସବୁ ଅତ୍ୟାଚାର କଥା ମୁଁ କହି ନ ପାରେ ।୯
ସିନ୍ଧୁଠାରୁ ଆସାମ ପ୍ରଦେଶ ପର୍ଯ୍ୟନ୍ତ
ହିନ୍ଦୁମାନେ ନାନା ପରକାରେ ପ୍ରପିଡ଼ୀତ ।୧୦
ଲୋମ ହରଷଣ କାଣ୍ଡ ହୋଇଅଛି ଯେତେ
ପୋଥିଟିଏ ହେବ ସବୁ କହିଲେ ପୁରତେ ।୧୧
ଡାକ ବଜାଇ କରନ୍ତି ଘୋର ଅତ୍ୟାଚାର
କେବଳ ଲୁଟିବେ ଧନ ହିନ୍ଦୁମାନଙ୍କର । ୧୨
ଅତି ନିକଟରେ ଯେ ସୁକୁର ପ୍ରଦେଶରେ
ଉତ୍ତର ପଶ୍ଚିମ ପ୍ରାନ୍ତ ପ୍ରଦେଶ ମଧ୍ୟରେ । ୧୩
ରକ୍ତାରକ୍ତି ଅତ୍ୟାଚାର ଯାହା ସବୁ କଲେ
ଆବର ଦେଖ ବଙ୍ଗଳା ପ୍ରଦେଶ ବିହାରେ ।୧୪
ଦୃଷ୍ଟାନ୍ତ ସ୍ୱରୂପ କେତେ କଥା କହୁଅଛି
ହିନ୍ଦୁ ଆନ୍ଦୋଳନ କାହିଁପାଇଁ ହୋଇଅଛି । ୧୫
ନିଜାମଙ୍କ ସରକାର ହିନ୍ଦୁ ବିରୁଦ୍ଧରେ
ଯେଉଁ ମାତ ନିୟମରେ ନାନା କାର୍ଯ୍ୟକଲେ ।
ଶାନ୍ତ ମାତ ଧର ହିନ୍ଦୁମାନେ ବାଧା ଦେଲେ
ଛଅମାସ କାଳ ଆନ୍ଦୋଳନ ଚଳାଇଲେ ।୧୭
ଆର୍ଯ୍ୟ ସମାଜର ଭାଇମାନେ ଯୋଗଦେଲେ
ସ୍ୱାମୀ ଦୟାନନ୍ଦଙ୍କର ଶ୍ରମସାର୍ଥ କଲେ । ୧୮
ହିନ୍ଦୁ ଚଉଦ ପନ୍ଦର ହଜାର ଯୁଟିଲେ
ନିଜାମ ବିରୁଦ୍ଧେ ଶାନ୍ତ ଯୁଦ୍ଧ ଚଳାଇଲେ ।୧୯
ହିନ୍ଦୁ ମହାସଭା ଏହି ଯୁଦ୍ଧ ଚଳାଇଲା
ଅବଶେଷେ ଶାସନ ସଂସ୍କାର ହେବ ହେଲା ।୨୦
ନିଜାମ ସରକାରଙ୍କୁ ଧନ୍ୟବାଦ ଦେଲା
ଅଭୟବାଣୀ ତାଙ୍କଠୁଁ ଶେଷକୁ ମିଳିଲା । ୨୧

କଂଗ୍ରେସ କାହିଁକି ଏହିଥିରେ ବାଧା ଦେଲା
ଶାସନ ସଂସ୍କାର ଦେଶୀ ରାଜ୍ୟ ଗୃହୁଁ ଥିଲା ।୨୨
ହାଇଦରାବାଦ ଅଟେ ରାଜ୍ୟ ବୃହତ୍ତମ
ଶାସନ ନୀତି ଏଠାରେ ମେଶରାପୂ ଜାଣ । ୨୩
ଭାରତରେ ଯେତେ ଯେତେ ରାଜା ରାଜ୍ୟ ଅଛି
ଏ ରାଜ୍ୟ ଶାସନ ଅତି ନିକୃଷ୍ଟ ହୋଇଛି । ୨୪
ରାଜକୋଟ ଅଟେ ଖଣ୍ଡେ ଛୋଟିଆ ତାଲୁକ
ସେଠା ଶାସନ ସଂସ୍କାର ହେଲା ଆବଶ୍ୟକ ।୨୫
ତହିଁପାଇଁ ମହାଘୋର ଆନ୍ଦୋଳନ ହେଲା
ହିନ୍ଦୁ ମୁସଲମାନ ବାଦ ସେଠାରେ ନ ଥିଲା ।୨୬
ସମଗ୍ର ଭାରତ ଏଥିପାଇଁ ହୁଲସ୍ଥୁଲ
ସମୁଦ୍ରେ ନିଆଁ ଲଗିବା ପରି ହେଲା ଗୋଳ ।୨୭
କୋଟିଏ ଲୋକ ଅଛନ୍ତି ନିଜାମ ରାଜ୍ୟରେ
ସେମାନଙ୍କ ଦଶା ଶୁଣା ନ ଗଲା କାନରେ ।୨୮
ତାଙ୍କପାଇଁ ପଦେ କଥା କେହି ନ କହିଲା
ହିନ୍ଦୁ ମହାସଭା ତାଙ୍କ ପକ୍ଷ ନେଇଥିଲା । ୨୯
ସ୍ପେନ୍, ଚେକ ଅବା ଆବିସିନିଆ ପାଇଁକି
ଦେଖାଇଲେ ନାହିଁ ଶ୍ରଦ୍ଧା ସହାନୁଭୂତିକି । ୩୦
ଆଫ୍ରିକା, ୟୁରୋପ ମହାଦେଶ ରାଜ୍ୟ ପାଇଁ
ଭାରତରୁ ଶ୍ରଦ୍ଧା ସ୍ରୋତ ଗଲା କେତେ ବହି ।୩୧
କଂଗ୍ରେସର ଆଗ ଅବା ପଛଦଳ ଲୋକ
ଅଥବା ଗାନ୍ଧିଜୀ ଆଦି କଂଗ୍ରେସ ନାୟକ । ୩୨
ନିଜାମ ସରକାରକୁ କେ ନିନ୍ଦା ନ କଲେ
ପ୍ରତିବାଦ କରି ପଦେ କଥା ନ କହିଲେ ।୩୩
ହିନ୍ଦୁମାନଙ୍କ ଉପରେ ଲାଠି ମାଡ଼ ହେଲା
ଅମାନୁଷିକ ଭାବରେ ଅତ୍ୟାଚାର କଲା । ୩୪
ରକ୍ତାରକ୍ତି ମାରପିଟ ହାଇଦ୍ରାବାଦରେ
ଆଉରଙ୍ଗାବାଦ କାରାଗାର ଭିତରରେ । ୩୫

ଏତେ ଏତେ ଅତ୍ୟାଚାର ସକଳେ ଶୁଣିଲେ
ପାଟି ଫିଟାଇଲେ ନାହିଁ ଜଣେ କେହି ହେଲେ ।
କଂଗ୍ରେସ ତ ନାଗରିକ ସ୍ୱାଧୀନତା ଚାହେଁ
ନିଜାମ ହିନ୍ଦୁ ପାଇଁକି ପଦେ ତ ନ କହେ ।୩୭
ଲକ୍ଷ ଲକ୍ଷ ହିନ୍ଦୁଙ୍କର ଜୀବନ ସମ୍ପତ୍ତି
ନିତି ନିତି ଭୋଗୁଅଛି ସହସ୍ର ବିପତ୍ତି । ୩୮
ସ୍ୱାଧୀନ ଭାବରେ କେହିଁ କଥା ନ କହିବ
ଆପଣା ଇଷ୍ଟ ଦେବତା ପୂଜି ନ ପାରିବ । ୩୯
ପାଞ୍ଚଜଣ ଏକତ୍ରିତ ହୋଇ ନ ପାରିବ
ହିନ୍ଦୁ ପ୍ରଜା ସେଠାରେ ଏ ବିପତ୍ତି ଭୋଗିବ । ୪୦
ହିନ୍ଦୁ ସଂଗଠିତ ହୋଇ ଆନ୍ଦୋଳନ କଲେ
କଂଗ୍ରେସ କମିଟି ତାଙ୍କୁ ସାହାଯ୍ୟ ନ କଲେ ।
ଜୀବନ ମରଣ ପ୍ରଶ୍ନ ଥିଲା ହିନ୍ଦୁଙ୍କର
ଏହି ସ୍ୱାଧୀନତା ପାଇଁ କଲେ ସେ ସମର ।୪୨
ଆଉ ଅଧିକ କହିବା ଥାଉ କଂଗ୍ରେସର
ସପକ୍ଷରେ ନିର୍ଦ୍ଧାରଣ ନ କଲେ ନିକର । ୪୩
ନ୍ୟାଯ୍ୟ ଅଟେ ଦାବି ହିନ୍ଦୁଙ୍କର ନ କହିଲେ
କହି ପାରିବେ କି କକାରଣେ ଏହା କଲେ ।୪୪
ଜନ୍ମଗତ ଗଣତନ୍ତ୍ର ମାତ୍ର ଗାନ୍ଧିଙ୍କର
ଦେଲେ ସେହୁ ତେତେବେଳେ ଅପୂର୍ବ ଉତ୍ତର ।
ଯେତେଦିନ ହାଇଦ୍ରାବାଦରେ ଗୋଳମାଳ
ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିଲେ ସେ ନିକର
ନିଜାମଙ୍କୁ ତେତେବେଳେ କଷ୍ଟ ଦେବା ପାଇଁ
ଅନ୍ୟ କାର୍ଯ୍ୟ ହେତୁ ଫୁରୁସତ ହେଲାନାହିଁ ।୪୬
ସେହି ଗାନ୍ଧି କାଶମିର ଗୋଳମାଳ ବେଳେ
ହିନ୍ଦୁ ରାଜାଙ୍କୁ ଦେଖନ୍ତୁ କପରି ଲେଖିଲେ । ୪୮
ଲେଖିଲେ ତୁମ୍ଭ ରାଜ୍ୟରେ ବେଶି ମୁସଲମାନ
ଶତକଡ଼ା ପଞ୍ଚାଅଶି ସଂଖ୍ୟା ଅଟେ ଜାଣ । ୪୯

ସେମାନଙ୍କ ଦାବି ଯେବେ ପୂରଣ ନ କର
ରାଜା ହେବାକୁ ତୁମ୍ଭର ନାହିଁ ଅଧିକାର । ୫୦
ସିଂହାସନ ଛାଡ଼ି ତୁମ୍ଭେ କାଶୀବାସ କର
ଧର୍ମତଃ କର୍ତ୍ତବ୍ୟ ଏହା ଅଟଇ ତୁମ୍ଭର । ୫୧
ସେଠାରେ ମୁସଲମାନ ଗୋଳମାଳ କଲେ
ହାତ ହତିଆର ଧରି ବିଦ୍ରୋହୀ ହୋଇଲେ । ୫୨
ଭାରତ ବାହାର ମୁସଲମାନ ସାହାଯ୍ୟରେ
ମୁସଲମାନ ଆପଣାପାଇଁ ଦାବି କଲେ । ୫୩
ହାଇଦ୍ରାବାଦରେ ହିନ୍ଦୁ ସଂଖ୍ୟା ଅଟେ ବେଶି
ଶହେ ଜଣ ମଧ୍ୟେ ହିନ୍ଦୁ ସଂଖ୍ୟା ପଞ୍ଚାଅଶି । ୫୪
ମହାରାଜା ମୁସଲମାନ ହାଇଦ୍ରାବାଦରେ
ମକ୍କା ବାସପାଇଁ କମ୍ପା ଗାନ୍ଧି ନ ଲେଖିଲେ ।
ନିରସ୍ତ୍ର ହିନ୍ଦୁ ପରଜା ପ୍ରତି ଅତ୍ୟାଚାର
ଏକଥା କି ଗାନ୍ଧିଜୀଙ୍କୁ ନଥିଲା ଗୋଚର । ୫୬
ହିନ୍ଦୁ ସଂଗଠନଦଳ ହିନ୍ଦୁ ନାମ ଧରି
ଲଢ଼ୁଥିଲେ ବୋଲି କି ସେ ହୋଇଲେ ବଇରୀ ।
ଭାରତୀୟ ବୋଲି ସେହୁ ପ୍ରଚାର ନ କଲେ
ଏଥିପାଇଁ ସେମାନେ କି ମହାପାପୀ ହେଲେ । ୫୮
ଚାହିଁଲେ ବହୁତ ଦୋଷ ଦେଖାଇ ପାରିବ
କଂଗ୍ରେସ ଲୋକଙ୍କ ଜାତିପ୍ରେମ ଦେଖାଇବ । ୫୯
ସେମାନେ ନାନା ପ୍ରକାର କାର୍ଯ୍ୟ କରିଥିଲେ
ବିଫଳ ହେବ ହିନ୍ଦୁଙ୍କ ଦାବି ସେ ପ୍ରକାରେ । ୬୦
ହିନ୍ଦୁ ମହାସଭା ଆପଣାର ଚେଷ୍ଟାବଳେ
ଇଂଲଣ୍ଡରୁ ଇଂରେଜର କରୁଣା ଲଭିଲେ । ୬୧
ପାର୍ଲିଆମେଣ୍ଟ ସଦସ୍ୟ ହିନ୍ଦୁ ପକ୍ଷ ନେଲେ
ତାଙ୍କ ଦୁର୍ଦ୍ଦଶା ଶୁଣିଣ ପ୍ରତିବାଦ କଲେ । ୬୨
କଂଗ୍ରେସ ମନ୍ତ୍ରୀମଣ୍ଡଳରୁ ଜଣେହେଲେ କେହି
ନିଜ ତୁଣ୍ଡେ ଏ ବିଷୟ ଧରିଲେକ ନାହିଁ । ୬୩

ନିଜାମ ସରକାରକୁ ପଦେ ନ କହିଲେ
ଲିଟ ସଭାମାନଙ୍କରେ ନିରବ ରହିଲେ । ୬୪
ରାଜକୋଟ ବିଷୟରେ ଏହି ମନ୍ତ୍ରୀ ଦଳ
ଧମକାଇ ପଦ ଛାଡ଼ିବାକୁ କଲେ ଛଳ । ୬୫
ଶ୍ରେଷ୍ଠ ନେଲାବେଳେ ହିନ୍ଦୁ ହିନ୍ଦୁପାଇଁ ଦେବ
ଆନବେଳେ ହିନ୍ଦୁ ନାମ ସୁଖ ନ ଲାଗିବ । ୬୬
ହିନ୍ଦୁ ଭଲ କାମ କଲେ ତାହା ହେଲା ମନ୍ଦ
ହିନ୍ଦୁଙ୍କର ସବୁକାମ କମ୍ପା ନାପସନ୍ଦ । ୬୭
ସତ କହିଲେ କଂଗ୍ରେସ ଧରିଛି ଯେ ନୀତି
ହିନ୍ଦୁ ସ୍ୱାର୍ଥ ନେଇ କରି ନ ପାରିବ ପ୍ରୀତି । ୬୮
କଂଗ୍ରେସର ଜାତିବାଦ ଆଦର୍ଶ ଯେମନ୍ତ
ହିନ୍ଦୁ ବିରୋଧୀ ସେ ନୀତି ଅଟଇ ନିଶ୍ଚିତ । ୬୯
ହିନ୍ଦୁମାନେ ହିନ୍ଦୁ ପ୍ରତିନିଧି ବାଛିଥିଲେ
ସେମାନେ କି ନିଦାବସ୍ଥାରେ ରହନ୍ତେ ଏକାଳେ ।
ହିନ୍ଦୁଙ୍କୁ ମୁସଲମାନ କଲେ ଅତ୍ୟାଚାର
କଂଗ୍ରେସ ନିରବ ହେବ ସେକାଳେ ନିକର । ୭୧
ତେଣୁ କହୁଅଛି ହିନ୍ଦୁ ହୁଅ ସାବଧାନ
ଆତ୍ମରକ୍ଷାପାଇଁ ନିଜେ କର ହେ ବିଧାନ । ୭୨
କଂଗ୍ରେସ ବିରୁଦ୍ଧେ ଅବା କଂଗ୍ରେସକୁ ଛାଡ଼ି
ଆପଣା ନିର୍ଦ୍ଦିଷ୍ଟ ପଥେ ଆପେ ଯାଅ ମାଡ଼ି । ୭୩
ଦିଲ୍ଲୀଠାରେ ଶିବ ମନ୍ଦିରରେ ସତ୍ୟାଗ୍ରହ
କଂଗ୍ରେସବାଲା ସେକାଳେ ନ ହେଲେ ସହାୟ ।
ଖାମଗ୍ରାମ, ମାହାଦ, ଭାଗଲପୁରଠାରେ
କୃତିତ୍ୱ ସହିତ ହିନ୍ଦୁ ଯେପରି ଲଢ଼ିଲେ । ୭୫
ହିନ୍ଦୁ ମହାସଭାବଳେ କୃତିତ୍ୱ ଲଭିଲେ
କଂଗ୍ରେସର ବଳ କିଛିମାତ୍ର ନ ପାଇଲେ । ୭୬
ଦେଖି ଏ ସବୁ ଦୃଷ୍ଟାନ୍ତ କହୁଛି ଏମନ୍ତ
କି କର୍ତ୍ତବ୍ୟ ହିନ୍ଦୁଙ୍କର କହୁଛି ନିପୂତ । ୭୭

ହିନ୍ଦୁ କଏ ପ୍ରଥମରୁ କର ହେ ଠିକଣା
ପରେ ଆଉ ହୋଇ ନ ପାରିବ ପଥବଣା ।୭୮
ଭାରତକୁ ପୁଣ୍ୟଜନ୍ମ ବୋଲି ଯେ ମାନିବ
ସେହି ଏକା ହିନ୍ଦୁସ୍ଥାନେ ହିନ୍ଦୁ ବୋଲାଇବ ।୭୯
ବଇଦିକ, ସନାତନୀ, ବୁଦ୍ଧ ବା ଜଇନ
ଲିଙ୍ଗାୟିତ, ଶିଖ, ଆର୍ଯ୍ୟ, ବ୍ରହ୍ମ ବୋଲି ପୁଣ ।
ପ୍ରାର୍ଥନା ସମାଜ, ଦେବ ସମାଜ ଆବର
ଭାରତର ସକଳ ଧର୍ମର ଭକ୍ତ ନର । ୮୧
ଏମାନେ ସକଳେ ହିନ୍ଦୁ ହିନ୍ଦୁଜାତି ପୁଣ
ସମଗ୍ର ହିନ୍ଦୁଲୋକରେ ଏମାନଙ୍କୁ ଗଣ । ୮୨
ଆଦିମ ପର୍ବତବାସୀ ଛନ୍ତି ଯେତେ ଜନ
ହିନ୍ଦୁଜାତି ମଧ୍ୟରେ ସେ ଲୋକମାନେ ଘେନ ।୮୩
ଯେତେ ପରକାର ଧର୍ମ ପୂଜା ପ୍ରଥା ଅଛି
ସକଳ ଶ୍ରେଣୀ ଲୋକଙ୍କୁ ହିନ୍ଦୁରେ ଲେଖିଛି ।୮୪
ଭାରତ ଅଟଇ ଏହାଙ୍କର ପିତୃଭୂମି
ଭାରତ ଆବର ଏହାଙ୍କର ପୁଣ୍ୟଭୂମି । ୮୫
ହିନ୍ଦୁ ଜାତି ବାହାର ବିଦେଶୁଁ ଆସିନାହାଁ
ମୁସଲମାନ ଆସିବାବେଳେ ଥିଲେ ସେହି । ୮୬
ହିନ୍ଦୁମାନେ ଅଟନ୍ତି ସ୍ୱତନ୍ତ୍ର ଏକ ଜାତି
ଅଛି ତାଙ୍କର ପ୍ରାଚୀନ ଇତିହାସ ସ୍ମୃତି । ୮୭
ହିନ୍ଦୁ ପ୍ରତି ସ୍ୱରାଜ୍ୟର ନାମ ଅଟେ କିସ
ଯେ ରାଜ୍ୟେ ହିନ୍ଦୁର ସ୍ୱାର୍ଥ ରହିବ ଅବଶ୍ୟ ।୮୮
ଅକ୍ଷୁଣ୍ଣ ହିନ୍ଦୁତ୍ୱ ତାର ବଜାଏ ରହିବ
ମୁସଲମାନଙ୍କଦ୍ୱାରା ବାଧା ନ ପାଇବ । ୮୯
ଅହିନ୍ଦୁ କେ ତାହାପରେ ମୁରବି ନ ହେବେ
ହିନ୍ଦୁର ସ୍ୱରାଜ୍ୟ ପ୍ରତିଷ୍ଠିତ ହେବ ତେବେ ।୯୦
ଇଂରେଜ ଯେବେ ଭାରତେ ଜନମ ହୋଇବେ
ଭାରତର ରାଜଗାଦି ଦଳେ ନେବେ ନେବେ ।

ହିନ୍ଦୁ ସ୍ୱରାଜ୍ୟ ବୋଲିକି ତାହାକୁ କହିବ
ଏକଥା କେବେ କଳ୍ପନା କରି ନ ପାରିବ ।୯୨
ଆଉରଙ୍ଗ ଟିପୁ ରାଜ୍ୟ ନୁହଇ ସ୍ୱରାଜ୍ୟ
ହିନ୍ଦୁର ବଇରୀ ଭାବେ ଚଳାଇଲେ କାର୍ଯ୍ୟ ।୯୩
ଶିବାଜୀ, ଗୋବିନ୍ଦସିଂହ, ପ୍ରତାପ, ପେଶବା
ମୁସଲମାନ ପ୍ରତାପେ ହେଲେ ଆବାକାବା ।୯୪
ମୁସଲମାନଙ୍କ ରାଜ୍ୟ ବିରୁଦ୍ଧେ ଲଢ଼ିଲେ
ହିନ୍ଦୁ ସ୍ୱରାଜ୍ୟ ଥାପିବାପାଇଁ ରଣ କଲେ । ୯୫
ଭାରତ ଜାତୀୟ ରାଜ୍ୟ ଅର୍ଥ କସ ଘେନ
ଯେଉଁ ରାଜ୍ୟେ ଅଳପ ସଂଖ୍ୟକ ମୁସଲମାନ ।୯୬
ସେମାନଙ୍କ ନାଯ୍ୟ ସତ୍ତ୍ୱ ସେମାନେ ପାଇବେ
ସମାନ ଭାବରେ ମେଳ୍ପ ନିର୍ଦ୍ୱନ୍ଦେ ରହିବେ । ୯୭
ସଂଖ୍ୟା ଅନୁପାତରୁ ଅଧିକ ନ ପାଇବେ
ଯେତେ ଇଚ୍ଛା ତେତେ ହିନ୍ଦୁ ତ୍ୟାଗ ନ କରିବେ ।
ସଂଖ୍ୟାନ୍ୟୁନ ଗୋଷ୍ଠି ଆଉ ଅଛନ୍ତି ଯେ ଯେତେ
ପାଇବେ ତାହାଙ୍କ ନାଯ୍ୟ ଦାବି ଅନୁପାତେ ।୯୯
ସଂଖ୍ୟାଧିକ ହିନ୍ଦୁ ତାର ଦାବି ନ ଛାଡ଼ିବ,
ଗଣତନ୍ତ୍ର ନୀତି ଅନୁସରି ସେ ପାଇବ । ୧୦୦
ଗଣତନ୍ତ୍ର ରାଜନୀତି ଅଟଇ ଏମନ୍ତ
ତହିଁରୁ ପୃଥକ କମା ହୋଇବ ଭାରତ । ୧୦୧
ମୁସଲମାନ ସଂଖ୍ୟାରେ ନ୍ୟୁନ ହୋଇଛନ୍ତି
ହିନ୍ଦୁ ତେଣୁ ତାଙ୍କଠାରେ ବାଧିତ ନୁହନ୍ତି ।୧୦୨
ମୁସଲମାନର ସତ୍ତ୍ୱ ଯା ଅଛି ରହିବ
ନିରାପଦେ ରହି ତାହା ସେ ଭୋଗ କରିବ ।୧୦୩
ନାଗରିକ ରାଜନୀତିଗତ ସତ୍ତ୍ୱ ଯାହା
ସଂଖ୍ୟା ଅନୁପାତେ ଭୋଗ କରିବ ସେ ତାହା ।
ହିନ୍ଦୁ ଇଚ୍ଛା କରୁନାହିଁ ଏତ୍ତେଓ୍ୟାଡ଼ ଯିବ
ତା ବଦଳେ ଆଉରଙ୍ଗଜେବ ରାଜା ହେବ ।୧୦୫

ଆଉରଙ୍ଗ ଜନମିଛୁ ଭାରତ ରାଜ୍ୟରେ
ସନ୍ତୁଷ୍ଟ ନ ହେବ ହିନ୍ଦୁ ସେ ରାଜା ହେବାରେ ।
ହିନ୍ଦୁ ଗୃହେଁ ନିଜଘରେ ନିଜେ ରାଜା ହେବ
ଏଥିପାଇଁ ସଂଗ୍ରାମ ଚଳାଇ ସେ ମରିବ । ୧୦୭
ହିନ୍ଦୁସ୍ଥାନ ବୋଲି ତାର ରାଜ୍ୟ ନାମ ହେବ
ଏହିନାମ ତାର ଯୁଗେ ଯୁଗେ ରହିଥିବ । ୧୦୮
କିରସ୍ତାନ, ପାରଶି ବାଁ ଫିରିଙ୍ଗି ଯେତେକ
ହିନ୍ଦୁ ସଙ୍ଗେ ସଂସ୍କୃତିରେ ହୋଇଛନ୍ତି ଏକ ।୧୦୯
କେତେକ ମୁସଲମାନ ମନେ ଭାବୁଛନ୍ତି
କିପରି ଏକତା ହେବ ବୁଝି ନ ପାରନ୍ତି ।୧୧୦
କହୁଛି ମୁଁ ଗୈରାଳୁରୁ କଥା ନୁହେଁ ଏହା
ଯାହା ସତ୍ୟ ଫିଟାଇ କହୁଅଛି ମୁଁ ତାହା ।୧୧୧
ମୁସଲମାନ କେବଳ ଭାରତେ ନାହାନ୍ତି
ଇସଲାମ ଧର୍ମ ଭକ୍ତ ଏତିକ ନୁହନ୍ତି । ୧୧୨
ଋଇନାରେ କୋଟି କୋଟି ସେମାନେ ଅଛନ୍ତି
ଗ୍ରୀସ, ହଙ୍ଗାରି, ପୋଲାଣ୍ଡେଛନ୍ତି ତାଙ୍କ ଜାତି ।
ସେ ସବୁ ଦେଶରେ ମୁସଲମାନ ସଂଖ୍ୟା ନ୍ୟୁନ
ତାଙ୍କ ନାମ ଅନୁସରି ନୁହେଁ ଦେଶ ନାମ ।୧୧୪
ସଂଖ୍ୟାଧିକ ଆଦିମ ଜାତିଙ୍କ ନାମେ ଜାଣ
କେଉଁକାଳୁ ହୋଇଅଛି ସେ ନାମକରଣ ।୧୧୫
ନିଜ ନାମ ସଙ୍ଗେ ଦେଶ ନାମ ଯୋଡ଼ିଦେଇ
ସେ ଦେଶେ ମୁସଲମାନ ହୁଅନ୍ତି ଶହ୍ଲାଇ ।୧୧୬
ସେହିପରି ଏ ଭାରତେ ସେମାନେ ଚଳନ୍ତୁ
ହିନ୍ଦୁସ୍ଥାନୀ ମୁସଲମାନ ବୋଲି ସେ କହନ୍ତୁ ।
ଆର୍ଯ୍ୟାବର୍ତ୍ତ ହିନ୍ଦୁସ୍ଥାନ ହିନ୍ଦୁଙ୍କର ଘର
ସେ ନାମ ବେଦପୁରାଣେ ଅଛଇ ନିକର ।୧୧୮
ସେ ନାମ ପରିବର୍ତ୍ତନ କିମ୍ପାଇ ହୋଇବ
କେଉଁ ହିନ୍ଦୁ ପ୍ରାଣଥାଇ ଏ କଥା ସହିବ ।୧୧୯

ଏହି ଗେରୁଆ ପତାକା ଅଟେ ହିନ୍ଦୁଙ୍କର
ଓଁ ସ୍ୱସ୍ତିକ ତରବାର ଲାଞ୍ଛନ ଶସ୍ତ୍ରର । ୧୨୦
ଯେତେ ଶାଖା ପ୍ରଶାଖା ଅଛଇ ହିନ୍ଦୁଙ୍କର
ହିନ୍ଦୁ ଧ୍ୱଜକୁ ସମ୍ମାନ କରିବେ ନକର । ୧୨୧
ମୁସଲମାନ କରନ୍ତୁ ତାଙ୍କ ଧ୍ୱଜ ବାଛି
ଏଥିରେ ଆପତ୍ତି କାରୁ ନ ରହିବ କିଛି ।୧୨୨
ସବୁ ପତାକାକୁ ଆମ୍ଭେ କରିବୁ ସମ୍ମାନ
ସେମାନେ ଆମ୍ଭ ଧ୍ୱଜକୁ ମଣିବେ ତେସନ ।୧୨୩
ଦେବଭାଷା ସଂସ୍କୃତ ସଂସ୍କୃତ ନିଷ୍ଠ ହିନ୍ଦି
ଆମ୍ଭ ରାଷ୍ଟ୍ରଭାଷା ହେବନାହିଁ ଅବସନ୍ଧି । ୧୨୪
ପ୍ରାଦେଶିକ ଭାଷା ଯାର ଯେମନ୍ତ ରହିବ
ରାଷ୍ଟ୍ରଭାଷା ସଙ୍ଗେ ତାର ନାହିଁ ଦ୍ୱନ୍ଦଭାବ ।୧୨୫
ଦେବନାଗରୀ ହିନ୍ଦୁର ରାଷ୍ଟ୍ରଲିପି ହେବ
ପ୍ରାଦେଶିକ ଲିପି ଯାର ଯେମନ୍ତ ରହିବ ।୧୨୬
ପ୍ରଧାନ କଂଗ୍ରେସ ରାଷ୍ଟ୍ରପତି ଦୁଇ ଜଣ
ଆଶ୍ଚର୍ଯ୍ୟଭାବେ ଏ ପ୍ରଶ୍ନ କଲେ ସମାଧାନ ।୧୨୭
ନେହୁରୁ ବୋଇଲେ ଉର୍ଦ୍ଦୁ ରାଷ୍ଟ୍ରଭାଷା ହେବ
ସୁଭାଷ ବୋଇଲେ ରୋମ ଅକ୍ଷର ଚଳିବ ।୧୨୮
ଜାତୀୟ ଆଦର୍ଶ ଅଟେ ଏହା କଂଗ୍ରେସର
ଶୁଣିଲେ ହସିବେ ଲୋକେ ଏ ଭାବ ନକର ।
ହିନ୍ଦୁ ମହାସଭା ହିନ୍ଦୁଜାତି ଅନୁଷ୍ଠାନ
ପୂର୍ଣ୍ଣ ସ୍ୱରାଜ୍ୟ ଲଭିବା ଉଦ୍ଦେଶ୍ୟ ପ୍ରଧାନ ।୧୩୦
ନ୍ୟାୟଯୁକ୍ତ ଉପାୟରେ ସ୍ୱରାଜ୍ୟ ଲଭିବ
ଏ ଉଦ୍ଦେଶ୍ୟେ ଯେତେ ସବୁ କରମ କରିବ ।୧୩୧
ସ୍ୱାଧୀନତା ଲଭ ପରେ ଏ ସଭା ରହିବ
ହିନ୍ଦୁ ଜାତୀୟତା ରକ୍ଷାପାଇଁ ଲଢୁଥିବ । ୧୩୨
କଂଗ୍ରେସ ବିରୁଦ୍ଧେ ଅଭିଯୋଗ ଅଛି ଯେତେ
ମନ ବଳୁନାହିଁ ସବୁ ବାଢ଼ିବ ମୁଁ ଏତେ । ୧୩୩

ଗାନ୍ଧି ସର୍ବେସର୍ବା ହୋଇ କଂଗ୍ରେସ ଚଳାନ୍ତି
ଆଜି ଯେ ନାୟକମାନେ ତାଙ୍କୁ ମାନୁଛନ୍ତି ।୧୩୪
ଖିଲାପତ ଆନ୍ଦୋଳନେ ହିନ୍ଦୁ ଯାହା କଲେ
ହିନ୍ଦୁ ନାୟକମାନଙ୍କ କଥା ନ ଶୁଣିଲେ ।୧୩୫
ସ୍ୱାମୀ ଶ୍ରଦ୍ଧାନନ୍ଦ ଲାଲ ଲଜପତ ରାୟ
ତିଳକ ପ୍ରଭୃତି ଯେତେ ଲଢ଼ିଲେ ନିଷ୍ଠାୟ ।୧୩୬
ସେମାନଙ୍କ ପ୍ରତିବାଦ କିଛି ନ ଶୁଣିଲେ
ହିନ୍ଦୁ ଦୁର୍ବଳ ହୋଇଣ ନିନ୍ଦିତ ହୋଇଲେ ।
ପ୍ରତିପଦେ ହିନ୍ଦୁଏ ପାଇଲେ ଅପମାନ
ସେ ସବୁ କହିବାପାଇଁ ହେଉନାହିଁ ମନ ।୧୩୮
ସେମାନେ ଅବଶ୍ୟ ଦେଶସେବକ ଅଟନ୍ତି
ଭଲ ଉଦ୍ଦେଶ୍ୟରେ କେତେ କାର୍ଯ୍ୟ କରୁଛନ୍ତି ।
ନିସ୍ୱାର୍ଥ ତ୍ୟାଗୀ କରମୀ ଅଛନ୍ତି କେତେକ
ତାଙ୍କୁ ନିନ୍ଦିବାକୁ ଚିତ୍ତ ନ ବଳେ ଅଧିକ ।୧୪୦
କଂଗ୍ରେସ ସମୂହଭାବେ ନ କରେ ଗ୍ରହଣ
ଯେଉଁ ତ୍ୟାଗ ସେବା ଦେଖାଇଛି ଅନୁଷ୍ଠାନ ।
କଂଗ୍ରେସଠାରୁ ଅଧିକ ଦୂର ଯାଇଅଛି
ସ୍ୱାଧୀନତା ଲାଭ ବେଗେ କରମ କରିଛି ।୧୪୨
କଂଗ୍ରେସ ଉଦ୍ଦେଶ୍ୟ ମନ୍ଦବୋଲି କହୁନାହିଁ
ବହୁକ୍ଷତି ଅରଜିଲେ ଭ୍ରମପଥେ ଯାଇ । ୧୪୩
କେବଳ ହିନ୍ଦୁ ଜାତିର କ୍ଷତି ହେଲାନାହିଁ
ଭାରତ ଜାତିର କ୍ଷତି ଅଳପ ନୁହଇ । ୧୪୪
ଏ ପ୍ରକାର ଗତି ଯେବେ ବନ୍ଦ ନ ହୋଇବ
ହିନ୍ଦୁମାନଙ୍କର ବହୁତର କ୍ଷତି ହେବ । ୧୪୫
ପୁରୁଣା ଦୋଷ ଘାଣ୍ଟିବା ଇଚ୍ଛା ନୁହେଁ ମୋର
କେତେକଥା ଚେତାଇ ମୁଁ ଦେଉଛି ମାତର ।
ପୂର୍ବପର ଦୁର୍ଗତି ଆସୁଛି ମାଡ଼ି ଏବେ
ସାବଧାନ ହେବାପାଇଁ କହୁଅଛି ତେବେ ।୧୪୬

ସେହି ସମ୍ପର୍କରେ କେତେକଥା ମୁଁ କହିବି
କି ନ କଲା ଖିଲାପତେ ଦେଖ ଏବେ ଭାବି ।
ତିଳକ ସତର୍କ କଲେ ଗାନ୍ଧି ନ ଶୁଣିଲେ
ଖିଲାପତ ପ୍ରଶ୍ନ କଂଗ୍ରେସରେ ପୁରାଇଲେ ।୧୪୯
ସାମ୍ପ୍ରଦାୟିକ ପ୍ରଶ୍ନ ସେ ଅଟଇ ନିକର
ଧର୍ମଗତ ପ୍ରଶ୍ନ ପୁଣି ନୁହେଁ ଭାରତର । ୧୫୦
ମୁସଲମାନଙ୍କୁ ତୋଷିବାକୁ ଏହା କଲେ
ସ୍ୱରାଜ୍ୟ ଅପେକ୍ଷା ବଡ଼ ପ୍ରଶ୍ନ ସେ ବୋଇଲେ ।
ଆବର ବୋଇଲେ ଧର୍ମ ଅଟଇ ହିନ୍ଦୁର
ଖିଲାପତକୁ ସାହାଯ୍ୟ କରିବ ନିକର । ୧୫୧
ସେହି କଂଗ୍ରେସ ନିଜାମ ଆନ୍ଦୋଳନବେଳେ
ଗୋଷ୍ଠିଗତ ପ୍ରଶ୍ନବୋଲି ତାକୁ ନିନ୍ଦା କଲେ ।
କଂଗ୍ରେସ ହିନ୍ଦୁନାୟକମାନେ କି ନ କଲେ
ମୁସଲମାନ ନେତାଙ୍କ ସଙ୍ଗେ ସଙ୍ଗୀ ହେଲେ ।
ସେହିମାନେ ଅମାନୁଲା ଖାଁଆଙ୍କୁ ଡେକଲେ
ଭାରତକୁ ଆକ୍ରମଣ କରି ହେ ବୋଇଲେ ।୧୫୫
ସ୍ୱାମୀ ଶ୍ରଦ୍ଧାନନ୍ଦ ଏହା ପ୍ରକାଶ୍ୟେ କହିଲେ
ଗାନ୍ଧିଙ୍କର ହାତଲେଖା ପତ୍ର ପାଇଥିଲେ ।୧୫୬
ମଉଲାନା ମହମ୍ମଦ ସେହି ଲେଖା ଆଣି
ସ୍ୱାମୀଜୀଙ୍କୁ ଦେଖାଇ ସେ ଦେଇଥିଲେ ପୁଣି ।
ଗାନ୍ଧିଜୀ ତାଙ୍କ ଖବର କାଗଜେ ଲେଖିଲେ
ଆଫଗାନମାନେ ଯଦି କୃତକାର୍ଯ୍ୟ ହେଲେ ।
ପଠାଣ ସାମ୍ରାଜ୍ୟ ସେହୁ କରିବେ ଭାରତେ
ତଥାପି ହିନ୍ଦୁ ନେତାଏ ନ ପାଞ୍ଚିଲେ ଚିତ୍ତେ ।
ମୁସଲମାନଙ୍କଠାରୁ ଅଲଗା ରହିବା
ବିଶ୍ୱାସଘାତକ ସଙ୍ଗେ ସଙ୍ଗ ନ ହୋଇବା ।୧୬୦
ମୁସଲମାନ ନେତାଏ ପ୍ରକାଶ୍ୟ ଭାବରେ
ଅଥବା ଗୁପ୍ତଭାବେ ଷଡ଼ଯନ୍ତ୍ର କଲେ । ୧୬୧

ହିନ୍ଦୁ ନେତାଏ ସାହାଯ୍ୟ କରିବେ ବୋଇଲେ
ଆଫଗାନ ଆକ୍ରମଣ ହେବ ଯେତେବେଳେ ।
ଗାନ୍ଧି ଲେଖିଲେ ଆହୁରି ଯେବେ ଆଫଗାନ
ବ୍ରିଟିଶ ବିପକ୍ଷେ ଯେବେ କରେ ଆକ୍ରମଣ ।୧୬୩
ଏକପ୍ରକାରେ ମୁଁ ତାଙ୍କୁ ସାହାଯ୍ୟ କରିବି
ଏହିକଥା ଗାନ୍ଧି ଲେଖିଥିଲେ ଭାବି ଭାବି ।୧୬୪
"ଯୁବକଭାରତ" ନାମେ ସମ୍ବାଦପତ୍ରର
ସେହି କାଗଜରେ ଗାନ୍ଧି ଲେଖିଲେ ନିକର ।
କଂଗ୍ରେସିଆ ହିନ୍ଦୁନେତା ଗାନ୍ଧି ଯା କହିଲେ
ଲେଖାମାନ ତାର ରହିଅଛି ସ୍ୱର୍ଣ୍ଣାକ୍ଷରେ ।୧୬୬
ଆହୁରି ଅଦ୍ଭୁତକଥା କହିବି ମୁଁ ଶୁଣ
କଂଗ୍ରେସର ହିନ୍ଦୁନେତା ଗାନ୍ଧିଜୀଙ୍କ ଗୁଣ ।୧୬୭
ଆଲିଭାଇ ଆଜାଦଙ୍କଠାରୁ ଏ ବଳଲେ
ଆହୁରି ପାହାଚେ ଉଠି ଏମାନେ କହିଲେ ।
ଅମୀର ଯେବେ ବା ନେବେ ଦିଲ୍ଲୀ ସିଂହାସନ
ଭାରତେ ସ୍ୱରାଜ୍ୟ ହେଲାବୋଲି ସର୍ବେ ଜାଣ ।
ସ୍ପଷ୍ଟ ଭାବରେ ସେମାନେ କହିଲେ ଏମନ୍ତ
ଆଫଗାନ ଶାସନଟି ସ୍ୱରାଜ୍ୟ ନିଶ୍ଚିତ ।  ୧୬୮
ଏକ ଜାତି ଅଟୁଁ ଆମ୍ଭେ ହିନ୍ଦୁ ମୁସଲମାନ
ଅଭେଦ୍ୟ ଜାତି ଏ ଦୁଇ ଗୋଷ୍ଠି ବୋଲି ଜାଣ ।
କାରାଗାରେ ବନ୍ଦୀ ହୋଇଥିଲି ଯେତେବେଳେ
ଏହିନେତାମାନେ ମୋତେ ସେଠାରେ ଭେଟିଲେ
ଯେଉଁ ସବୁ କଥାବାର୍ତ୍ତା ହେଲା ମୋ ସହିତ
ସ୍ପଷ୍ଟ ମନେ ଅଛି ମୋର କହୁଛି ମୁଁ ସତ ।୧୬୯
ବଡ଼ ଆଶା ଆକାଙ୍କ୍ଷାରେ ରହିଁ ବସିଥିଲେ
ଅମୀର ଆସି ଲାହୋର ନେବେ କେତେବେଳେ
ଯାହା ହେଉ ଖିଲାଫତ ପ୍ରଶ୍ନ ମୂଳ୍କ ମଲା
ଅମାନୁଲା ସିଂହାସନୁ ତଡ଼ା ଖାଇ ଗଲା । ୧୭୦

ଦିଲ୍ଲୀରେ ସମ୍ରାଟ ହେବା ନ ହୋଇଲା ତାର
କାବୁଲର ସିଂହାସନ ଛୁଡ଼ିଲା ନକର । ୧୭୬
ଖିଲାପତ ଆନ୍ଦୋଳନ ଯାହା ସବୁ ହେଲା
ଭାରତ ସେଥିରୁ ଦେଖ କି ଫଳ ପାଇଲା ।୧୭୭
ଭାରତ ମୁସଲମାନ ଉତ୍ତେଜିତ ହେଲେ
ଇସଲାମ ଧର୍ମ ନେଇ ବିଶେଷ ମାତିଲେ । ୧୭୮
ଏହି ହିନ୍ଦୁମାନେ ତାଙ୍କୁ ହୋଇଲେ ସହାୟ
ସେହି ଫଳ ଭୋଗ କରୁ ଅଛନ୍ତି ନିଶ୍ଚୟ ।୧୭୯
ମାଲାବାର, କୋହାଟ, ପଞ୍ଜାବ, ବଙ୍ଗଳାରେ
ହିନ୍ଦୁମାନେ ଅତ୍ୟାଚାରେ ପ୍ରପୀଡ଼ିତ ହେଲେ ।
ଆହୁରି ଅଧିକ ପୀଡ଼ା ଭୋଗିବେ ନକର
ଆତ୍ମ ରକ୍ଷା କରିବାକୁ ନ ହେଲେ ତତ୍ପର ।୧୮୧
ମନେ ପଡ଼େ ଗାନ୍ଧିଜୀ ଆବର ଲେଖିଥିଲେ
ଖିଲାପତ ଆନ୍ଦୋଳନ ହେଉଥିବା ବେଳେ ।
ଆଫଗାନ ଜାତି କି ଅରାଟ ଧରିଇବ
ସେମାନଙ୍କ ଆକ୍ରମଣ ନିବର୍ତ୍ତାଇ ଦେବ । ୧୮୩
ମୋ ବିଶ୍ବାସରେ ଏହି ଜାତି ନିଜ ପରକାରେ
ଈଶ୍ବରଙ୍କୁ ଭୟ କରି ଚଳନ୍ତି ନକରେ । ୧୮୪
ଗାନ୍ଧିଜୀ ଯାହା କହିଲେ ନିଜ ପରକାରେ
ଏ କଥା ସତ୍ୟ ଅଟଇ ଅକ୍ଷରେ ଅକ୍ଷରେ ।୧୮୫
ଈଶ୍ବରଙ୍କଠାରେ ଭୟ ଅଛି କି ପ୍ରକାର
ସିନ୍ଧୁଠାରୁ କାଶ୍ମିର ଯାକେ ଅତ୍ୟାଚାର ।୧୮୬
କେବଳ ହିନ୍ଦୁଙ୍କ ଧନ ଲୁଟି କରି ନିଅ
ବଳାତ୍କାରେ ବୋହୂ ଝିଅ ଆଦି ନେଇ ଯାଅ ।
ଅରାଟ କେବେ ଧରିବେ ଏସବୁ ଛୁଡ଼ିବେ
ଭାରତରେ ଆଉ ଅତ୍ୟାଚାର ନ କରିବେ ।୧୮୮
କେତେ ଶତ ବରଷରେ ଏହା ସମ୍ଭବିବ
ଇତି ଅବସରେ ହିନ୍ଦୁ କପର ଚଳିବ । ୧୮୯

ସୁନ୍ଦରୀ ରମଣୀମାନେ ଅରଣ୍ଟ ଧରିବେ
ପ୍ରାନ୍ତୀୟ ପ୍ରଦେଶେ ସୈନ୍ୟ ସାଜକ ରହିବେ ।
ଆହେ ସଜ୍ଜନେ ମୋର ନିବେଦନ ଶୁଣ
ଥଟ୍ଟାକରି କହୁ ନାହିଁ ଏସବୁ କରଣ । ୧୯୧
ଏ ହିନ୍ଦୁ ନେତାମାନଙ୍କ ମାନସିକ ଭାବ
ଆଦର୍ଶ ଯା ଧରିଛନ୍ତି ହିନ୍ଦୁର କି ହେବ । ୧୯୨
ଏହିମାନେ କଂଗ୍ରେସର ନାୟକ ଅଟନ୍ତି
କଂଗ୍ରେସ ନଉକା ଏହିମାନଙ୍କ ଚାଳୁଛନ୍ତି ।୧୯୩
ଗାନ୍ଧିଜୀ ଅଥବା ଗାନ୍ଧିବାଦୀ ଯେଉଁମାନେ
କି କହନ୍ତି ହିନ୍ଦୁମାନେ ଶୁଣ ସାବଧାନେ ।୧୯୪
ମୁସଲମାନ ମାଗୁଛି ଯେତେ ତାକୁ ଦିଅ
ଆଉ ଯେପରି ଅଧିକ ନ ମାଗିବ କହ । ୧୯୫
ବିଶ୍ୱାସ ମନରେ ଥାଇପାରେ ଏହାଙ୍କର
ଏପରି କଲେ ହୋଇବ ଜାତିର ଉଦ୍ଧାର ।୧୯୬
ଆପଣମାନେ ଏପରି ଇଚ୍ଛା କରନ୍ତି କି
ହିନ୍ଦୁ ଜାତି ଅପମାନ ପାଇବ କାହିଁକି । ୧୯୭
ପୁଣି ଦାସତ୍ୱ ଶୃଙ୍ଖଳ ଗଳାରେ ପିନ୍ଧିବ
ମୁସଲମାନଙ୍କ ସଙ୍ଗେ ଏ ସନ୍ଧି କରିବ । ୧୯୮
ଉପସ୍ଥିତ ହୋଇ ହିନ୍ଦୁ ନିବାସ କରିବ
ମୁସଲମାନ ତାହାର ପୁଣି ରାଜା ହେବ । ୧୯୯
ଏପରି ଇଚ୍ଛା ନ ଥାଏ ଯେବେ ହିନ୍ଦୁଙ୍କର
ଏ ଶ୍ରେଣୀସ୍ଥ ନେତାଙ୍କୁ କି ଦେବ ଅଧିକାର ।
ଏମାନେ ହିନ୍ଦୁର ପ୍ରତିନିଧି ହୋଇ ଯିବେ
ଗୋଲ ମେଜ ବଇଠକେ ଯାଇ ପ୍ରବେଶିବେ ।
ହିନ୍ଦୁ ତରଫରୁ ଯାଇ ମୁରବି ହୋଇବେ
ମୁସଲମାନଙ୍କ ସଙ୍ଗେ ସାଲିସ କରିବେ । ୨୦୨
ଉତ୍ତର ପଶ୍ଚିମ ସୀମାନ୍ତର ଭାଗ୍ୟ ନେଇ
ଖାଁଆ ଭାଇଙ୍କ ହାତରେ ଦେବେ ନେଇ ଥୋଇ ।

ଏମାନେ କଂଗ୍ରେସ ନେତା ସେହି ପ୍ରଦେଶର
ଗାନ୍ଧିଙ୍କ ଦକ୍ଷିଣହସ୍ତ ଅଟନ୍ତି ନିକର । ୧୦୪
ଥରେ ଆଲି ଭାଇମାନେ ଯେଉଁପରି ଥିଲେ
ଗାନ୍ଧିଙ୍କ ମୁଣି ଭିତରେ ପଶି ରହିଥିଲେ ।୧୦୫
ସହସ୍ର ସହସ୍ର ହିନ୍ଦୁ ଯେଉଁମାନେ ଅଛ
ହିନ୍ଦୁତ୍ୱ ହରାଇ ନାହିଁ ନିର୍ମଳ ରହିଛ । ୧୦୬
ଅଥଚ କଂଗ୍ରେସ ପଛେ ଯାଅ ଅନ୍ଧ ସମ
ନିବିଷ୍ଟ ଚିତ୍ତେ କର କି ବିଚାର ଏ ପ୍ରଶ୍ନ । ୧୦୭
ଆହେ ହିନ୍ଦୁ ଭାଇମାନେ କରେ ନିବେଦନ
ବିଷମ ସମସ୍ୟା ପ୍ରତି ଦିଅ ମନ ଧ୍ୟାନ । ୧୦୮
ଖିଲାପତ ପରେ ପୁଣି ଗାନ୍ଧି କହିଦେଲେ
ସାଧା କାଗଜ ତାହାଙ୍କୁ ଦେଇ ଦିଅ ଭଲେ ।
ତାହା ପରେ ଗୋଷ୍ଠିଗତ ଫଇସଲ ହେଲା
କଂଗ୍ରେସ ନେତାମାନଙ୍କ ତୁଣ୍ଡ ନ ଫିଟିଲା ।
କେତେବେଳେ ସପକ୍ଷରେ କେବେ ବିପକ୍ଷରେ
କି ମତ ତାଙ୍କର କେହି ବୁଝି ନ ପାରିଲେ ।
କିନ୍ତୁ ସ୍ପଷ୍ଟ ଭାବେ ନାମଞ୍ଜୁର କଲେ ନାହିଁ
କାର୍ଯ୍ୟରେ ସେ ମାତି ମାନି କାର୍ଯ୍ୟ କଲେ ଯାଇ
ସବୁ ମନ୍ତ୍ରୀମାନେ କଂଗ୍ରେସର ପ୍ରଦେଶରେ
ନାନା ପ୍ରକାର ଆଦେଶ ମାନ ଜାରିକଲେ ।
ମୁସଲମାନଙ୍କ ପାଇଁ ପ୍ରାଣ ଢାଳି ଦେଲେ
ପାନ୍ତ ମହାଶୟ ଦେଖି କି ଆଦେଶ କଲେ ।
ମୁସଲମାନଙ୍କୁ ସେ ଅଭୟ ଦାନ କଲେ
ହିନ୍ଦୁମାନଙ୍କର ନାନା କାର୍ଯ୍ୟ ନିଷେଧିଲେ ।
ଆରତି କରି ପାରିବ ନାହିଁ ଦେଉଳରେ
ଆପଣା ମନ୍ଦିରେ ଶଙ୍ଖ ବଜାଇ ନ ପାରେ ।୧୧୬
ମହରମ ପର୍ବ ଶେଷ ନ ହେବ ଯାବତ
ଆରତି ଘଣ୍ଟା ଶବଦ ନ ହେବ ତାବତ ।୧୧୭

ହୋଇ ବେଳେ ପିଚକାରି ମାରି ନ ପାରିବେ
ଆପଣା ମଧ୍ୟରେ ଏହା କରି ନ ପାରିବେ । ୨୧୮
କଂଗ୍ରେସ ସରକାରର ଏ ଆଦେଶ ହେଲା
ବଡ଼ବାଙ୍କି ଜିଲାରେ ଏ କଥା ଘଟିଥିଲା । ୨୧୯
ସୁଆନପୁରରେ ଯେହୁ ଜିଲା ମେଜେଷ୍ଟ୍ରର
ତାଙ୍କୁ ଆକ୍ରମଣ କଲେ ପଠାଣ ନିକର । ୨୨୦
ମୁସଲମାନ ସଙ୍ଘର ସମ୍ପାଦକ ବୋଲେ
ଅପରାଧୀମାନେ ସବୁ ମୁକତି ଲଭିଲେ । ୨୨୧
ଗୃରି ଜଣ କଲଟର ନିଯୁକ୍ତ ହୋଇଲେ
ତହିଁରୁ ମୁସଲମାନ ତିନି ଜଣ ହେଲେ । ୨୨୨
ତେର ଜଣ ଡ଼ିପୋଟିରୁ ଆଠ ମୁସଲମାନ
ଏହିପରି କେତେ କଥା କରିବ ବର୍ଣ୍ଣନ । ୨୨୩
ସବୁକଥା କହିବାକୁ ବେଳ ନାହିଁ ମୋର
ଏ ତ ଉପଯୁକ୍ତ ସ୍ଥାନ ନୁହଇ ନିକର । ୨୨୪
କଂଗ୍ରେସ ସରକାରର ମନ୍ତ୍ରୀ ଏହା କଲେ
ସବୁ ପ୍ରଦେଶରେ ଏହି ଯାହା ଲଗାଇଲେ ।
ମୁସଲମାନ ସଙ୍ଘର ହିଗ୍ଗରିକ ଆଗେ
ଆପଣା କୃତିତ୍ୱ ନେଇ ଥୋଇବେ ସରାଗେ ।
ବୋଲିବେ ଦେଖ ଆମ୍ଭର ନିରପେକ୍ଷ ଭାବ
ଏଥିରେ କି ତୁମ୍ଭେମାନେ ସନ୍ତୁଷ୍ଟ ନ ହେବ ।
ହିନ୍ଦୁ ଉପରେ ବହୁତ ଅତ୍ୟାଚାର କଲୁ
ହିନ୍ଦୁର ନ୍ୟାଯ୍ୟ ପାଉଣା ତୁମ୍ଭଙ୍କୁ ତ ଦେଲୁଁ ।
ମୁସଲମାନ ଯେଉଁଠି ଯାହା ଦାବି କଲେ
ବହୁ ପରିମାଣେ ସେହୁ ସକଳ ପାଇଲେ । ୨୨୯
ଏବେ ମୁସଲମାନ ସଙ୍ଘ ହୁଅ ପୁରା ତୁଷ୍ଟ
ଜାଣିପୁ ଭାବ ମନ୍ତ୍ରୀର ଦେଖ ହେ ନିରାଟ । ୨୩୦
କେଡ଼େ ନିରପେକ୍ଷ ଭାବେ ସେ କାମ କରନ୍ତି
ହଅ ପ୍ରଶଂସାପତ୍ରର ନ କରି ହେ ଭ୍ରାନ୍ତି । ୨୩୧

ମୁସଲମାନ ଏଥିକି ପୁରସ୍କାର ଦେଲେ
ମନ୍ତ୍ରୀପଦ ତ୍ୟାଗେ ମୁକ୍ତିଦିବସ ପାଳିଲେ ।୨୩୨
ବୋଇଲେ ମନ୍ତ୍ରୀଏ ଗଲେ ଦେଶରୁଁ କଣ୍ଟାଗଲା
ଅଢ଼ାଇ ବରଷ ପରେ ଏ ବିପଦ ମଲା । ୨୩୩
ଯେଉଁ ପ୍ରଦେଶରେ ମୁସଲମାନ ସଂଖ୍ୟା ନ୍ୟୂନ
ଶତକଡ଼ା ବାର ତେର ଅଟନ୍ତି ପ୍ରମାଣ । ୨୩୪
ଶତକଡ଼ା ଚାକିରିରୁ ପଞ୍ଚସ୍ତରି ଜଣ
ଚାକିରି ପାଇଲେ ସେହି ପ୍ରଦେଶେ ମୁସଲମାନ ।
ଏହିରୂପେ ମନ୍ତ୍ରୀମାନେ ଅତ୍ୟାଚାର କଲେ
ପୁରାସଂଖ୍ୟାରେ ତାହାଙ୍କୁ ଚାକିରି ନ ଦେଲେ ।
ମୋଗଲ ସମ୍ରାଟମାନଙ୍କର ବଂଶଧର
ଇତିହାସେ ତାଙ୍କ ଖ୍ୟାତି ରହିଛି ନିକର ।୨୩୭
ଏହି ହେତୁ ପୁରା ଦାବି ଅଟେ ତାହାଙ୍କର
ଭାରତ ମନ୍ତ୍ରୀ ଏ କଥା କଲେ ସ୍ୱୀକାର ।୨୩୮
ତେଣୁ ମୁସଲମାନ ହିନ୍ଦୁଠାରୁ ଶ୍ରେଷ୍ଠ ପ୍ରାଣୀ
ସାମରିକ ଜାତିବୋଲି ତାଙ୍କୁ ସିନା ଗଣି ।୨୩୯
ଭାଗ୍ୟକୁ ଭାରତ ମନ୍ତ୍ରୀ ତାଙ୍କ ବାଲ୍ୟକାଳେ
ପଢ଼ି ନ ଥିଲେ ପ୍ରଥମେ ମରହଟ୍ଟା ଦେଶରେ ।
ପଢ଼ିଥିଲେ ଏ ସୁବିଧା ନ ଥାନ୍ତା ତାଙ୍କର
ଏପରି ଭାଷଣ ଦେଇ ନ ଥାନ୍ତେ ନିକର ।୨୪୧
ମୁସଲମାନ ସାମ୍ରାଜ୍ୟ ଦଶା ଜାଣିଥାନ୍ତେ
ସାମରିକ ଜାତିବୋଲି କିପରି କହନ୍ତେ ।୨୪୨
ଏହି ହିନ୍ଦୁମାନେ ଶତ ସମର କ୍ଷେତ୍ରରେ
ମୁସଲମାନଙ୍କୁ ମାରି ବ୍ୟତିବ୍ୟସ୍ତ କଲେ ।୨୪୩
ମୁସଲମାନ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ କଲେ
ତା ପାଉଁଶପରେ ହିନ୍ଦୁ ସାମ୍ରାଜ୍ୟ ଗଢ଼ିଲେ ।
ମୋଗଲ ସମ୍ରାଟ କାରାଗାରେ ବନ୍ଦୀ ହେଲେ
ବୃତ୍ତିଦେଇ କେତେକଙ୍କୁ ହିନ୍ଦୁଏ ପୋଷିଲେ ।

ସେହି ମୁସଲମାନ ସଙ୍ଘ ଆଜ ଏହା କଲା
ଏ କଥା ଘଟିବବୋଲି ଆଗୁଁ ଜଣାଥିଲା ।୨୪୬
ଖିଲାପତ ଦିବାସ କଂଗ୍ରେସ ପାଳିଥିଲା
ତେଣୁ ମୁସଲମାନ ମୁକ୍ତିଦିବସ ପାଳିଲା ।୨୪୭
କଂଗ୍ରେସବାଲା ବିଶ୍ୱାସ ଜନମାଇଁ ଦେଲେ
ସେ ଯେତେମାଗିବେତେତେପାଇବେବୋଇଲେ
ଯେତେ ଯେତେ ଅକୃତଜ୍ଞ ସେହୁ ହେଉଥିବେ
କୃତଜ୍ଞତା ମିଳିବାକୁ ଶ୍ରଦ୍ଧା ସେ ପାଇବେ ।୨୪୯
ସାଧାକାଗଜ ଦେବାକୁ ପଣ କହିଥିଲ
ସେ ଯାହା ଲେଖିପାରିବେ ଦେଖି ଚମକିଲ ।
ମୁନଜ ପରମାନନ୍ଦ ଆନ ନେତାଗଣ
ହିନ୍ଦୁ ମହାସଭା ପ୍ରତିବାଦ କଲେ ପୁଣ । ୨୫୧
ସେତେବେଳେ ତାଙ୍କ କଥାମାନ ଗନ୍ଧାଇଲା
ସାମ୍ପ୍ରଦାୟିକ ବୋଲିଣ ନିନ୍ଦା ବରଷିଲା ।୨୫୨
ଶିବାଜୀ ପ୍ରତାପମାନେ ଘୃଣିତ ହୋଇଲେ
ଭ୍ରାନ୍ତ ସ୍ୱଦେଶ ପ୍ରେମିକ ବୋଲି ବୋଲାଇଲେ ।
ସେମାନେ ଜିଣିଲେ ସିନା ଅସ୍ତ୍ର ସାହାଯ୍ୟରେ
ଜିଣିବ କହୁଛ ତୁମ୍ଭେ କେବଳ ପ୍ରେମରେ ।୨୫୪
ନୂଆ ଅବତାର ହୋଇ ତୁମ୍ଭେ ଆସିଅଛ
ଅନ୍ତର ପ୍ରଦେଶୁ ଈଶବାଣୀ ଶୁଣୁଅଛ । ୨୫୫
ସଂସାରକୁ ପ୍ରେମ ମନ୍ତ୍ରେ ଦୀକ୍ଷିତ କରିବ
ପ୍ରେମ ଅସ୍ତ୍ରବଳେ ତୁମ୍ଭେ ସଂସାର ଜିଣିବ ।୨୫୬
ମୁସଲମାନ ସଙ୍ଘର ସଭାପତି ଜଣେ
ତାଙ୍କୁ ସେହି ଜିଣି ନ ପାରିଲ କେହି ଜଣେ ।
ତୁମ୍ଭ ଦଶା ଦେଖି ମନେ ଲାଗୁଅଛି ଦୁଃଖ
ନ ପାଇ ଉପାୟ ତୁମ୍ଭେ ହେଉଛ ବିମୁଖ ।୨୫୮
କିପରି ସେହି ଜଣକୁ ସନ୍ତୁଷ୍ଟ କରିବ
ଉପାୟ ନ ପାଇ ପାଉଅଛ ପରାଭବ । ୨୫୯

ଲାଟ ବଡ଼ଲାଟମାନଙ୍କର ଦ୍ୱାରେ ଯାଇ
ଖୁସାମଦ କରୁଛ ସହାୟ ହେବାପାଇଁ । ୨୬୦
ବ୍ରିଟିଶ କରତା ଅବା ନେତା କେ ଅଛନ୍ତି
ହିନ୍ଦୁ ମହାସଭା ମତ ବିଷୟ କହନ୍ତି । ୨୬୧
କଂଗ୍ରେସ ଜାତୀୟବାଦୀ ନେତାମାନେ ଜାଣ
ଘୃଣାରେ କରନ୍ତି ନାହିଁ ନାମ ଉଚ୍ଚାରଣ ।୨୬୨
କି କରୁଛ ନିଜେ ଏବେ ଭଲକରି ଦେଖ
ଦେଖିଲ ଯେ କାଳେ ତୁମ୍ଭେ ମନ୍ତ୍ରୀଙ୍କର ଦୁଃଖ ।
ମୁସଲମାନ ମନ୍ତ୍ରୀଙ୍କୁ ବହୁତ ନିନ୍ଦିଲେ
ଅତ୍ୟାଚାରୀ ବୋଲି ନାନାଦୋଷ ଦେଖାଇଲେ ।
ତେତେବେଳେ ତୁମ୍ଭେମାନେ ବୋଲୁଛ ଏମନ୍ତ
ଲାଟ ବଡ଼ଲାଟମାନେ କହ ତ ଉଚିତ । ୨୬୪
ତୁମ୍ଭମାନଙ୍କ ଅଧୀନେ ମନ୍ତ୍ରୀ କାମ କଲେ
ମନ୍ତ୍ରୀମାନଙ୍କର ଦୋଷ ଅଛି କି ହେ ଭଲେ ।
ମୁସଲମାନଙ୍କ ଅଭିଯୋଗ ତୁଚ୍ଛା ମିଛ
ତୁମ୍ଭେମାନେ ମନ୍ତ୍ରୀଙ୍କର କାମତ ଦେଖିଛ ।୨୬୬
ନିଜ ଭିତର କଳହ ତୁଟାଇବା ପାଇଁ
ତୃତୀୟ ପକ୍ଷ ଦୁଆରେ ଠିଆ ହୁଅ ଯାଇ ।୨୬୮
ଏହା କି ଜାତୀୟ ଭାବ ତୁମ୍ଭମାନଙ୍କର
ଏ କଥା ତୁମ୍ଭ ତୁଣ୍ଡରେ ଦିଶେ କି ସୁନ୍ଦର ।୨୬୯
ରାଜନଇତିକ କୁସଂସ୍କାର ଯାହାକୁ କହି
ଅତି ନିକୃଷ୍ଟତରର ବୋଲି ମୁଁ ବୋଲଇ ।୨୭୦
ସହସ୍ର ସହସ୍ର ହିନ୍ଦୁ ଏ ଭାବେ ଭୁଲିଲେ
ନ ଜାଣି ନ ଶୁଣି ମାୟାଜାଲରେ ପଡ଼ିଲେ ।
ମହମ୍ମଦ, କାଶିମ, ଗଜନୀ, ଘୋରୀ ପୁଣ
ଆଉରଙ୍ଗଜେବ ଅବା ସେ ଆଲାଉଦ୍ଦିନ ।୨୭୨
ଇଂରେଜ କି ଏମାନଙ୍କୁ ପ୍ରରୋଚନା ଦେଲେ
ଭାରତକୁ ଆକ୍ରମଣ କରଯା ବୋଇଲେ । ୨୭୩

ଭାରତକୁ ଯାଇ ମରୁଭୂମି କରିଦିଅ
ତୃଷ୍ଣାପ୍ତ ପକ୍ଷ କି ଏହା କରିଥିଲେ କହ । ୨୬୪
ଦଶ ଶତ ବର୍ଷ ହେଲା ବିବାଦ ଲାଗିଛି
ଇତିହାସେ ଏ କଥାକି ମିଛେ ଲେଖାଅଛି ।୨୬୫
ଆଲି ସିକନ୍ଦର ଜିନା ପିଲା ତ ନୁହନ୍ତି
ତାଙ୍କୁ କି ତୃଷ୍ଣାପ୍ତପକ୍ଷ ସଦା କହୁଛନ୍ତି । ୨୬୬
ହିନ୍ଦୁ ପ୍ରତିବାସୀ ଘରେ ପଥର ପକାଅ
ମାରି ପିଟି ସେମାନଙ୍କୁ ସାଁର କରିଦିଅ । ୨୬୭
ଇଂରେଜଙ୍କ ପୂର୍ବେ ହିନ୍ଦୁ ମୁସଲମାନବାଦ
ଶୁଣା ନଥିଲା କେବେହେଁ ଏପରି ସମ୍ବାଦ ।୨୬୮
ଜଣା ନ ଥିବାର କଥା କହୁଛି କାରଣ
ପରସ୍ପର ଯୁଦ୍ଧ ଲାଗିଥିଲା ଅନୁକ୍ଷଣ । ୨୬୯
ନ ହେଲେ ଏକଥା ଯେବେ ତୁମ୍ଭ କଥା ସତ
ଇଂରେଜ ମଧ୍ୟସ୍ଥ ହେବା ଅଟେ କି ଉଚିତ ।
ଗାନ୍ଧି ଗାନ୍ଧି ଭକ୍ତମାନେ ତାହାଙ୍କୁ କପଟି
ପୁଣି ଭଲଲୋକ ହେବେ କରନ୍ତି ଗୁହାରି ।୨୭୧
ସତର୍କ ହେବାପାଇଁକି ଏକଥା କହୁଛି
ଅନ୍ୟଥା ମନରେ ମୋର ଈର୍ଷା ନାହିଁ କିଛି ।
ମୁସଲମାନ ମୁକତି ଦିବସ ପାଳିଲେ
ସଂଶୋଧନ ଦିନ ଏକ ପାଳ ଏବେ ଭଲେ ।
ମାତ୍ର ସଂଶୋଧନ କରି ସ୍ପଷ୍ଟ କହିଦିଅ
ଏହା ଆମ୍ଭ ଦୃଢମତ ଜାଣି ହେ ନିଶ୍ଚୟ । ୨୭୪
ଗୋଷ୍ଠୀଗତ ଭେଦାଭେଦ କିଛି ନ ରହିବ
ଜଣେ ଲୋକ ଗୋଟିଏ ମାତର ଭୋଟ ଦେବ ।
ଗୁଣ ଅନୁସାରେ ଲୋକ ଚାକିରି ପାଇବ
ଗୋଷ୍ଠୀଗତ ପ୍ରତିନିଧି ଯେବେ ବା ରହିବ ।
ସଂଖ୍ୟା ଅନୁପାତେ ପ୍ରତିନିଧି ସ୍ଥିର ହେବ
ସେଥିରୁ ଊଣା ଅଧିକ କିଛି ନ ହେବ ।୨୭[illegible]

ଯାବତ ଏପରି ତନ୍ତ୍ର ଯୋଜନା ନ ହେବ
ଶ୍ରେଷ୍ଠ ସମରେ କଂଗ୍ରେସ କେବେ ନ ପଶିବ ।
ଉତ୍ତର ପଶ୍ଚିମ ସୀମାନ୍ତରେ ରାଜ୍ୟଅଛି
ମୁସଲମାନଙ୍କ ରାଜ୍ୟ ସେସବୁ ରହିଛି । ୨୮୯
ସେମାନେ ସଦା ବଇରୀ ହିନ୍ଦୁମାନଙ୍କର
ସତର୍କ ଭାବରେ ଜଗି ରହିବ ସେଠାର । ୨୯୦
ମୁସଲମାନ ସୈନ୍ୟଙ୍କୁ ବିଶ୍ୱାସ ନ କର
ସେମାନେ ନୋହିବେ କେବେ ହିନ୍ଦୁମାନଙ୍କର ।
ଆଉ କଥା ଏ କହିବ ଶୁଣ ମନଦେଇ
ନେପାଳ ରାଜ୍ୟକୁ ହିନ୍ଦୁ ଭୁଲିଯାଅ ନାହିଁ ।୨୯୨
ଭାରତର ଏହି ରାଜ୍ୟ ଅଟଇ ସ୍ୱାଧୀନ
ହିନ୍ଦୁ ରାଜା ଅଛି ତହିଁ ଆଜଯାକେ ଜାଣ ।୨୯୩
ତାର ମହତ୍ତ୍ୱ ପ୍ରତିଷ୍ଠା ଅକ୍ଷୁର୍ଣ୍ଣ ରହିବ
ଏଥିପ୍ରତି ହିନ୍ଦୁମାନେ ମନ ଧ୍ୟାନ ଦେବ । ୨୯୪
ଧର୍ମକ୍ଷେତ୍ର ନାମେ ଏହା ବିଖ୍ୟାତ ଅଟଇ
ଅହିନ୍ଦୁ ପତାକା ଅଦ୍ୟାବଧି ଉଡ଼ନାହିଁ । ୨୯୫
ନେପାଳ ଉପରେ ଦୃଷ୍ଟି ପଡ଼ିପାରେ ଦିନେ
ନେପାଳକୁ ସହାୟ ହୁଅ ହେ ହିନ୍ଦୁମାନେ ।
ଏହିପରି ନାନା କଥା କହି ଦାମୋଦର
ଶେଷକଲେ ଆପଣାର ଭାଷଣ ନିକର । ୨୯୭
ହେ ସୁଜନମାନେ ଏଥି କରନ୍ତୁ ବିଚାର
ଭାରତ ହିତପାଇଁ କି କେଉଁ କଥା ସାର ।୨୯୮
ଏକମନେ ଏକଚିତ୍ତେ ନକଲେ ବିଚାର
ସମସ୍ୟା କି ସମାଧାନ ହୋଇବ ନିକର ।୨୯୯
ଆହେ ମହାପ୍ରଭୁ ସୁଦର୍ଶନ ଚକ୍ରଧର
ଭାରତ ମନୁ ଏ ମତଭେଦ କର ଦୂର । ୩୦୦
ତବ ପ୍ରେରଣା ନ ପାଇ ଧନ୍ଧ ହେଉଛନ୍ତି
ଅନ୍ଧ ହସ୍ତୀଧରା ନ୍ୟାୟେ ଭ୍ରମି ହେଉଛନ୍ତି ।୩୦୧

ଭାରତବାସୀଙ୍କି ପ୍ରଭୁ ଦିଅ ଦିବ୍ୟଜ୍ଞାନ
ନିର୍ମଳ ମନରେ ଲୋକେ ଦେଇ ମନ ଧ୍ୟାନ ।
ପରସ୍ପର ଈର୍ଷାଦ୍ୱନ୍ଦ ମତି ଲୋପ ପାଉ
ଭାରତର ହିତ ଏକମାତ୍ର ଚିନ୍ତା ହେଉ । ୩୦୩
ଦୀନ ଜଗବନ୍ଧୁ ବୋଲେ ଆହେ ଦଇତ୍ୟାରି
ଦୂରିତ ବିନାଶ କର ଆହେ ଦାନବାରି ।୩୦୪

ଇତି ଶ୍ରୀ ଭାରତ-ଚରିତାମୃତେ ସମ୍ବାଦକାରଙ୍କ ଭାଷଣ ବର୍ଣ୍ଣନେ
ଏକଶତ ଦୁଇ ଅଧ୍ୟାୟ ।



## ଏକଶତ ତିନି ଅଧ୍ୟାୟ

ରାମଗଡ଼ କଂଗ୍ରେସ ଚରିତ

ଗଉର ଉବାଚ

ଏଥର କଂଗ୍ରେସ ହେଲା ରାମଗଡ଼ଠାରେ
କି କି ବିଚାର ପଡ଼ିଲା ଏଥର ସେଠାରେ । ୧
ସବୁଦଳ ଲୋକ କି ସେଠାକୁ ଯାଇଥିଲେ
ଭେଦାଭେଦ ଭୁଲି କି ସକଳେ ମିଳିଗଲେ । ୨
ମହାତ୍ମା ଗାନ୍ଧି ଏଥର କି ଭାଷଣ ଦେଲେ
କି ନୂତନ କଥା ସେହୁ ସେଠାରେ କହିଲେ ।୩
ଏସବୁ ବିଷୟ ଶୁଣିବାକୁ ମୋର ମନ
ବଳିଛି ଏ କଥାମାନ କହନ୍ତୁ ଆପଣ । ୪

ଜଗା ଉବାଚ

ମଜଫରପୁର ଜିଲ୍ଲା ବିହାର ମଧ୍ୟରେ
ରାମଗଡ଼ ନାମେ ଗ୍ରାମ ଅଛି ସେ ଜିଲ୍ଲାରେ । ୫
ସେହିଠାରେ କଂଗ୍ରେସର ହେଲା ବଇଠକ
ନାନା ଅଞ୍ଚଳରୁ ଆସିଥିଲେ ବହୁ ଲୋକ । ୬
ମୁଖିଆ ନେତା ସକଳେ ସେଠାରେ ମିଳିଲେ
ଭାରତର ହାଲଚାଲ ଆଲୋଚନା କଲେ । ୭

ବିଷୟ ବିଚାର ସଭା ପ୍ରଥମେ ବସିଲା
ସକଳ ବିଷୟ ସେହି ସଭାରେ ପଡ଼ିଲା । ୮
ବାଦବିବାଦ ହୋଇ ଶେଷେ ହୋଇଲାକ ସ୍ଥିର
ଗୋଟିଏମାତ୍ର ପ୍ରସ୍ତାବ ହୋଇବ ଏଥର । ୯
ଗାନ୍ଧି ସେହି ପ୍ରସ୍ତାବକୁ ରଚନା କରିଥିଲେ
ଆପଣାର ମତାମତ ବିସ୍ତାରି କହିଲେ । ୧୦
ଅବଶେଷେ ଏହି କଥା ହୋଇଲାକ ସ୍ଥିର
ଗାନ୍ଧିଙ୍କ ମତକୁ ସର୍ବେ ମାନିବେ ନିକର । ୧୧
ଭବିଷ୍ୟତ କାର୍ଯ୍ୟପନ୍ଥା ଯାହା ସେ କହିବେ
ସମସ୍ତ ନିରଖି ସର୍ବେ ସେକଥା ପାଳିବେ ।୧୨
ଏକମାତ୍ର କର୍ଣ୍ଣଧାର ମହାତ୍ମାଜୀ ହେବେ
ଭାରତର ରାଜନୀତି ନଉକା ଚାଳିବେ । ୧୩
ପୂର୍ଣ୍ଣ ସ୍ୱାଧୀନତାଲାଭ ଲକ୍ଷ୍ୟ ଭାରତର
ଏହି ଦାବି କରୁଅଛୁ କଂଗ୍ରେସ ନିକର । ୧୪
ଏଥିରୁ ଊଣା ଅଧିକ କିଛି ନ ହୋଇବ
ନିଜ ଶାସନ ପ୍ରଣାଳୀ ନିଜେ ସେ ଗଢ଼ିବ । ୧୫
ଏହିକଥା ସରକାର ନ କଲେ ମଞ୍ଜୁର
ସତ୍ୟାଗ୍ରହ ସଂଗ୍ରାମ ଯେ ହୋଇବ ନିକର । ୧୬
ସତ୍ୟ ଅହିଂସା ମାର୍ଗରେ ସଂଗ୍ରାମ ହୋଇବ
ଗାନ୍ଧିଙ୍କ ଆଦେଶମତେ ସକଳ ଚାଲିବ । ୧୭
ନିର୍ଦ୍ଦିଷ୍ଟ ସମୟ ସେହୁ ଠିକଣା କରିବେ
ଦେଶକାଳପାତ୍ର ଦେଖି ଆରମ୍ଭ କରିବେ । ୧୮
ଏ ପ୍ରସ୍ତାବ କଂଗ୍ରେସରେ ହୋଇଲା ସିଦ୍ଧାନ୍ତ
ଅଧିକ ସଂଖ୍ୟକ ପ୍ରତିନିଧି ଦେଲେ ମତ । ୧୯
ମହା ଘୋର ବୃଷ୍ଟି ହେଲା ବଇଠକବେଳେ
ତୋଫାନ ବଜ୍ର ନିନାଦ ବିଦ୍ୟୁତ ମିଳିଲେ ।୨୦
ଏସବୁ ପ୍ରକୃତି ଦାଉ ହେଲା ଅସମ୍ଭାଳ
ଅତପନ ଚନ୍ଦ୍ରାତପ ହେଲା ମାଳମାଳ । ୨୧

କଂଗ୍ରେସ ମଣ୍ଡପ ଛାଡ଼ି ଲୋକେ ପଳାଇଲେ
ଅନ୍ୟ ଏକ ସ୍ଥାନେଯାଇ ଆଶ୍ରୟ ଲଭିଲେ ।୨୨
ଯେନକେନ ପ୍ରକାରେ ସେଠାରେ କାର୍ଯ୍ୟହେଲା
ଅଧଘଣ୍ଟାକ ମଧ୍ୟରେ ସଭା ସାଙ୍ଗ ହେଲା । ୨୩
ସୁଭାଷଙ୍କ ଦଳ ଲୋକ ଅଲଗା ହୋଇଲେ
ପୃଥକ ମଣ୍ଡପ କରି ତାଙ୍କ ସଭା କଲେ । ୨୪
ଜନାବ ଜିନା ଅଲଗା ଏକ ସଭା କଲେ
ଭାରତକୁ ବାଣ୍ଟି ଦେବାପାଇଁ ଦାବି କଲେ ।୨୫
ଅଲଗା ରହିଲା ହିନ୍ଦୁ ମହାସଭା ମତ
ସକଳେ ଏକଜ ହୋଇ ନ କଲେ ସିଦ୍ଧାନ୍ତ ।୨୬
କଂଗ୍ରେସର ଦାବି ଯେବେ ନ ହେବ ପୂରଣ
ସତ୍ୟାଗ୍ରହ ସଂଗ୍ରାମ ଅବଶ୍ୟ ହେବ ଜାଣ । ୨୭
ତୁରନ୍ତ ସଂଗ୍ରାମପାଇଁ ସୁଭାଷଙ୍କ ମତ
ଗାନ୍ଧିଜୀ ବୋଲନ୍ତି ଦେଶ ନୁହଇ ପ୍ରସ୍ତୁତ । ୨୮
ସଂଗ୍ରାମର ସେନାପତି ଗାନ୍ଧି ହେବେ ଯେବେ
ସଂଗ୍ରାମ କେବେ ହୋଇବ ସେ ସ୍ଥିର କରିବେ ।
ଗାନ୍ଧି ତେଣୁ ଜାରି କରିଛନ୍ତି ଇସ୍ତାହାର
ତାଙ୍କ ନିର୍ଦ୍ଦିଷ୍ଟ ସରତ ନ କଲେ ନକର ।୩୦
ସତ୍ୟାଗ୍ରହ ସଂଗ୍ରାମ ସେ କରି ନ ପାରିବେ
କେ ଅଛୁ ସମର୍ଥ ଆଗେ ତାହାପର ଯିବେ ।୩୧
ପ୍ରତିଦିନ ସୂତା କାଟି ଯେ ଲୁଗା ପିନ୍ଧିବ
ଅସ୍ପୃଶ୍ୟ ବିକାର ଯାର ମନରେ ନ ଥିବ ।୩୨
ଜିଲେମାନ ହିଂସା ଗନ୍ଧ ମନରେ ନ ଥିବ
ଅସତ୍ୟ ପଥରେ ଯେହୁ କଦାଚ ନ ଯିବ । ୩୩
ନିଶାଖିଆ ଭାବ ଯେହୁ ମନୁ ତେଜିଥିବ
ଏ ସବୁ ସରତ ଯେହୁ ପୂରଣ କରିବ । ୩୪
ପ୍ରାଣପଣେ ଯାର ମନେ ଏ ବିଶ୍ୱାସ ଥିବ
ତନମୟ ହୋଇ ଯେହୁ ଏ କର୍ମ କରିବ । ୩୫

କେବଳ ଖଦଡ଼ ଯାର ଅଟେ ପରିଧାନ
ସେହି ଏକା ସଂଗ୍ରାମକୁ ଯୋଗ୍ୟବୋଲି ଜାଣ ।
କଂଗ୍ରେସର ଅନୁଷ୍ଠାନମାନ ଯହିଁ ଥିବ
ସତ୍ୟାଗ୍ରହ ସମିତି ସେ ସବୁ ବୋଲାଇବ । ୩୭
ଯେଉଁମାନେ ସତ୍ୟାଗ୍ରହୀ ସଇନ ହୋଇବେ
ସମିତି ନିକଟେ ତାଙ୍କ ନାମ ଲେଖାଇବେ ।୩୮
ଦୁଇ ଶ୍ରେଣୀରେ ଏ ସେନା ହୋଇବେ ବିଭକ୍ତ
ପ୍ରଥମ ଶ୍ରେଣୀରେ କଏ ହୋଇପାରେ ଭୁକ୍ତ ।
କାରାଗାର ଯିବାପାଇଁ ଭୟ ନାହିଁ ଯାର
ସୂତା କାଟି ଖଦିଲୁଗା ପିନ୍ଧେ ନିରନ୍ତର । ୪୦
ହିଂସା ଭାବ ତିଳେମାତ୍ର ଯା ହୃଦରେ ନାହିଁ
ସଦା ଚେଷ୍ଟା ସମ୍ପ୍ରଦାୟ ଭେଦ ଲୋପପାଇଁ ।
ବିକାର ଶୂନ୍ୟ ହୃଦୟ ଅଟଇ ଯାହାର
ଅସ୍ପୃଶ୍ୟମାନଙ୍କୁ ସ୍ନେହେ କରଇ ଆଦର । ୪୨
ସଦା ସତ୍ୟ ପଥେ ଥାଇ କରମ କରଇ
ପ୍ରଥମ ଶ୍ରେଣୀ ସଇନ ସେ ଏକା ଅଟଇ । ୪୩
ଏତେ ଗୁଣ ଅଛି ଯାର ସେ ସଚା ସଇନ
ଏ କଠୋର ପରୀକ୍ଷାରେ ହେବ ସେ ଉତ୍ତୀର୍ଣ୍ଣ ।
ଭିତର ବାହାର ତାର ଅଟଇ ସମାନ
ମୁହଁରେ ଯା କହେ କାର୍ଯ୍ୟେ କରଇ ସେମାନ ।
ମଳଧୂଳି ଲେଶମାତ୍ର ଯା ଅନ୍ତରେ ନାହିଁ
ସେହି ଏକା ଏ ଶ୍ରେଣୀକୁ ପାତର ଅଟଇ ।୪୬
ଦ୍ୱିତୀୟ ଶ୍ରେଣୀରେ କଏ ହୋଇପାରେ ଭୁକ୍ତ
ସେ କଥା କହିବା ଶୁଣ ହୋଇ ସ୍ଥିରଚିତ୍ତ ।୪୭
ସକଳ ଗୁଣ ଯେହୁ ଅରଜି ନ ପାରିଛି
କେତେକ ଗୁଣ ଯାହାର ଆୟତ୍ତ ହୋଇଛି ।୪୮
ମାତ୍ର କାରାଗାର ଯିବାପାଇଁ ନାହିଁ ଭୟ
ଦ୍ୱିତୀୟ ଶ୍ରେଣୀର ଯୋଗ୍ୟ ସେ ଅଟେ ନିଶ୍ଚୟ ।

କାରାଗାର ଭୋଗିବାକୁ ଇଚ୍ଛା ନାହିଁ ଯାର
ସତ୍ୟାଗ୍ରହରେ ବିଶ୍ୱାସ ଅଛଇ ନିକର । ୫୦
ଲୋକଙ୍କ ମଧ୍ୟରେ ଯାଇ ପ୍ରଚାର କରିବ
ଆବଶ୍ୟକମତେ ତାଙ୍କୁ ସାହାଯ୍ୟ କରିବ । ୫୧
ତୃତୀୟ ଶ୍ରେଣୀରେ ସେହୁ ନାମ ଲେଖାଇବ
ଚତୁର୍ଥ ଶ୍ରେଣୀକ କଏ ଉପଯୁକ୍ତ ହେବ । ୫୨
କେବଳ ସହାନୁଭୂତି ଥିବ ଯାହାଙ୍କର
ଚତୁର୍ଥ ଶ୍ରେଣୀରେ ଭୁକ୍ତ ହେବେ ସେ ନିକର ।
ଯେଉଁ ଶ୍ରେଣୀକ ଯେ ସଭ୍ୟ ଅଟେ ଉପଯୁକ୍ତ
ସାହସ ସହିତ ସେହୁ କହିବ ନିଶ୍ଚିତ । ୫୪
ପେଟେ ଭୋକ ମୁହେଁ ଲାଜ ମାତ୍ର ନ ଧରିବ
ମୁହଁ ଫିଟାଇ କରିବା କଥା କହିଦେବ । ୫୫
ଡାକ କହୁଛନ୍ତି ଗାନ୍ଧି ଆହେ ଦେଶବାସୀ
ତାହାଙ୍କ ସରତ ପାଳ ମନେ ହୋଇ ଖୁସି ।୫୬
ସତ୍ୟାଗ୍ରହ ସଇନ କେ ହେବ କହିଦଅ
ନିର୍ମଳ ଅନ୍ତଃକରଣେ ସ୍ୱ ନାମ ଲେଖାଅ । ୫୭
ସେନାପତି ନ ଜାଣିଲେ ସେନାଙ୍କର ବଳ
ଚଳାଇଁ ପାରିବ ନାହିଁ ଏ ସମର କଳ । ୫୮
ନ କଳିବା ଯାକେ ବଳ ସଂଗ୍ରାମ ନ ହେବ
ନ କଳି ସମର କଲେ ବିଫଳ ହୋଇବ । ୫୯
ଦେଖୁଛି ଅନ୍ତର୍ବିବାଦ ରହିଅଛି ପୂରି
ଅତି ବିଭତ୍ସ ଭାବରେ ଲାଗିଅଛି କଳି । ୬୦
ପରସ୍ପର ମଧ୍ୟରେ ଖେଳୁଛି ହିଂସା ଭାବ
ଦେଖୁନାହିଁ ଅହିଂସାର ଅଛି କାହିଁ ଠାବ ।୬୧
ଦେଶର ଅବସ୍ଥା ଦେଖି ଭାବୁଛି ଏମନ୍ତ
ସତ୍ୟାଗ୍ରହ ପାଇଁ ଦେଶ ନୁହଇ ପ୍ରସ୍ତୁତ । ୬୨
ଦେଖିବି ଯେକାଳେ ଲୋକେ ମୋ କଥାମାନିଲେ
ମୋ ଆଦେଶ ଅନୁସରି ସବୁ କାର୍ଯ୍ୟ କଲେ ।

ତେତେବେଳେ କହିପାରେ ଏ ଦେଶ ପ୍ରସ୍ତୁତ
ସତ୍ୟାଗ୍ରହ ସମରକୁ ହୋଇବ ସମର୍ଥ । ୬୪
ଏପରି ଆଦେଶ ଦେଇ ଗାନ୍ଧି ବସିଛନ୍ତି
ବାରବାର ସେହି କଥା ଚେତାଇ ଦିଅନ୍ତି ।୬୫
ହରିଜନ ନାମେ ଏକ ସମ୍ବାଦପତ୍ରର
ତହିଁରେ ଲେଖି ଜଣାଉଛନ୍ତି ବାରବାର । ୬୬
ନାନା ପ୍ରକାରେ ତାହାଙ୍କ ତତ୍ତ୍ୱ ବାଖାଣନ୍ତି
ସରଳ କଥାରେ ଲୋକେ ବୁଝିବେ ଯେମନ୍ତି ।
ଖିନ୍ନଭିନ୍ନ କରି ତତ୍ତ୍ୱ ବଖାଣନ୍ତି ଗାନ୍ଧି
ତଥାପି ବୁଝନ୍ତି ନାହିଁ ଲୋକେ କଥାସନ୍ଧି । ୬୮
କାମ କରିବାକୁ ଲୋକ ନ କରନ୍ତି ପଣ
ସଭା ସମିତିରେ ଖାଲି ଶୁଣନ୍ତି କୀର୍ତ୍ତନ । ୬୯
ବକ୍ତୃରନ୍ତି ଗାନ୍ଧି ନାମେ ଜୟ ଜୟ କଲେ
ବିନାକର୍ମେ ଭାରତ ସ୍ୱାଧୀନ ହେବ ହେଲେ ।୭୦
ମତାନ୍ତର ମନାନ୍ତର ତାଣ୍ଡବ ଲଗିଛି
ଏକତା ମନ୍ତ୍ରର ଗାନ୍ଧି କାନେ ଶୁଣାଉଛି । ୭୧
ଏ କାନେ ପଶି ସେ କାନେ ଯାଉଛି ମନ୍ତ୍ରର
ସାଧନା ପଥରେ କେହି ନୁହେଁ ତତପର । ୭୨
ସାଧନାରେ ସିଦ୍ଧି ଯେବେ ଲଭ ନ କରିବ
କେବଳ ବକ୍ତୃତା ଶୁଣି କି ଫଳ ମିଳବ । ୭୩
ଅଗ୍ନି ପରୀକ୍ଷାରେ ଗାନ୍ଧି ପକାଇଛି ଏବେ
କେ ଯମର୍ଥ ଅଛ ନାମ ଲେଖାଅ ସରବେ ।୭୪
ଯାହାର ସାମର୍ଥ୍ୟ ନାହିଁ ସଫା କହିଦିଅ
ଯେ ଯାହା କରିପାରିବ ମନଖୋଲି କହ ।୭୫
ଏହିଥର ଜଣାଯିବ ଦେଶର ଶକତ
କେତେ ଯଇନ ଦେଶରେ ପ୍ରସ୍ତୁତ ଅଛନ୍ତି ।୭୬
ଭାରତ ରକ୍ଷା ଆଇନ ହୋଇଅଛି ଜାରି
ଚୁରିଆଡ଼େ ଚେତାଛନ୍ତି ପୁଲିସ ପାହାରି । ୭୭

ଯେ ଯେଉଁଠି ଯା କହିବ ସବୁ ଟିପି ନେବେ
ଆଇନ ବିରୁଦ୍ଧ ହେଲେ କାରାଗାରେ ଦେବେ
ଏହି ଦୋଷେ କେତେ ଲୋକ ଧରା ହେଉଛନ୍ତି
କାରାଗାରେ ରହି ଦଣ୍ଡ ଭୋଗ କରୁଛନ୍ତି । ୭୯
ଗାନ୍ଧି କଥାର ମରମ ନ ବୁଝନ୍ତି କେହି
ଭୁଆଁ ବୁଲୁଛନ୍ତି ଲୋକେ ଅନ୍ଧାରରେ ରହି ।
ଖଦୀ ଲୁଗା ନୂଆ କଥା ନୁହେଁ ଏ ଦେଶରେ
ଚଉଦ ପୁରୁଷ ଚଳୁଥିଲେ ଏ ଲୁଗାରେ । ୮୧
ପ୍ରତି ଘରେ କପାଚାଷ ଲୋକେ କରୁଥିଲେ
କପା ତୋଳି ଆଣି ଘରେ ରଖି ଦେଉଥିଲେ ।
ଅବସର ବେଳେ ବସି ମାଇପେ ସକଳ
ଚଳାଉ ଥିଲେ ଅରଟ ଗାଇ ଭଣାକଳ । ୮୩
ଗ୍ରାମ ବଢ଼ାଇ ଏ କଳ ନିର୍ମାଣ କରଇ
ପରିଶ୍ରମ ପାଇଁ ଧାନ ଚାଉଳ ନିଅଇ ।      ୮୪
ଘରେ ଘରେ ସୂତା କଟା କାମ ହେଉଥିଲା
ଗ୍ରାମ ବୁଣା ବାଣ ନେଇ ଲୁଗା ବୁଣୁ ଥିଲା ।୮୫
ଅତି ଶସ୍ତାରେ ଲୋକେ ଲୁଗା ପିନ୍ଧୁଥିଲେ
ହାତ ପଇସାଏ ଜାଣ ମାତ୍ର ଦେଉଥିଲେ । ୮୬
ଧାନ ଚାଉଳରେ ହେଉଥିଲା କାରବାର
ନ ଥିଲା ବହୁତ ଟଙ୍କା ଦିଆ କାରବାର । ୮୭
ଘରେ ଘରେ ସବୁ କାମ କରୁଥିଲେ ଲୋକ
ଗଣୁ ନ ଥିଲେ କଉଡ଼ି ସଦା ଶୋକ ଠୋକ୍ ।୮୮
ଗୃହ ଶିଳ୍ପ ଗୃହେ ଗୃହେ ନ ଚଳାଇବ ଯେବେ
ଖଦୀ ଲୁଗା ଶିଳ୍ପ ତିଷ୍ଠି ନ ପାରିବ କେବେ ।୮୯
ଖଦୀ ଲୁଗା ଅତିଶୟ ମୂଲ୍ୟ ହେବ ଯେବେ
ଲୋକ ସାଧାରଣ କିଣି ନ ପାରିବେ କେବେ ।
ଏଣେ ଅର୍ଥାଭାବ ତେଣେ ଖଦୀ ମୂଲ୍ୟ ବେଶି
ବଜାର ଦର ଦେଖିଲେ ମନ ଯାଏ ଲଶି ।୯୧

ଆଠ ଦଶ ଅଣା ଦେଲେ କଳ ଲୁଗା ମିଳେ
ଖଦାଲୁଗା ତିନିପଟ ମୂଲ୍ୟ ହେଲେ ବଳେ । ୯୨
ତେଣୁ ଖଦା ଲୁଗା ଲୋକେ କିଣି ନ ପାରନ୍ତି
ପରିବାର ଲୋକଙ୍କୁ ପିନ୍ଧାଇ ନ ପାରନ୍ତି । ୯୩
କେତେ ଜଣ ପିନ୍ଧୁଛନ୍ତି କରି ଏହା ଭେକ
ବାଧ ହୋଇ ପିନ୍ଧୁଛନ୍ତି ଏପରି କେତେକ ।୯୪
ଏଥିର କାରଣ ଏବେ କହୁଅଛୁ ଶୁଣ
ବମ୍ବାଇ ଅଞ୍ଚଳୁ କପା ଆସୁଛି ପ୍ରମାଣ । ୯୫
କେତେ ଭଡ଼ା ଦିଆ ଯାଇ ସେଠାରୁ ଆସିଲା
ଦଶ ଅଣା ବାର ଅଣା ସେର ବିକା ହେଲା ।
ସୂଆଁ ରି ଭଣି ବରଣା କଲେ କେତେ ବ୍ୟୟ
ସୂତା କଟାଳିର ମୂଲ ଅଛି ତ ନିଶ୍ଚୟ । ୯୭
ତନ୍ତର ବୁଣା ମଜୁରି ସଫାଇ ସହିତ
କେତେ ଖରଚ ପଡ଼ିଲା ମନରେ ହେଜ ତ ।୯୮
ଲୁଗା ବୁଣା ହୋଇ ଆସି ଭଣ୍ଡାରେ ରହିଲା
ଭଣ୍ଡାର ରକ୍ଷଣ ମୋଟା ଦରମା ପାଇଲା ।
ଭଣ୍ଡାରରୁ ଯାଇ ପୁଣି ଦୋକାନେ ରହିଲା
ସେହିଠାରେ ଖଦାଲୁଗା ବିକ୍ରୟ ହୋଇଲା ।୧୦୦
ଯେ ବିକିଲା ତାର ପୁଣି ଦରମା ବହୁତ
ଖଦା ମୂଲ୍ୟ ପରେ ଲଦା ହେଲା ଏ ସମସ୍ତ ।୧୦୧
ତେଣୁ ଖଦା ମୂଲ୍ୟ ଅତି ଅଧିକ ହୋଇଲା
କଳଲୁଗା ମୂଲ୍ୟଠାରୁ ତିନିପଟ ହେଲା । ୧୦୨
ଏତେ ମଜୁରି ଲାଗିବ ଯେଉଁ ଲୁଗାପାଇଁ
ଶସ୍ତା କପରି ହେବ ବୁଝିପାରୁ ନାହିଁ । ୧୦୩
ବଙ୍କୁତା କଲେ କି ଖଦା ଶସ୍ତା ହୋଇବ
କପାଚାଷ କଲେ ସିନା ଏ ଶିଳ୍ପ ଚଳିବ ।୧୦୪
କାର୍ଯ୍ୟ କଲେ ସିନା ଆର୍ଯ୍ୟ ହୋଇବ ସଂସାରେ
ଲକ୍ଷ୍ମୀ ଦେବୀ ଆସି ପ୍ରବେଶିବେ ଘରେ ଘରେ ।

କର୍ମ କରିବାକୁ ଯେବେ ନ ହେବ ତତ୍ପର
ଲକ୍ଷ୍ମୀ ସାଆନ୍ତାଣୀ ଘରୁ ହୋଇଯିବେ ଦୂର ।
ଲକ୍ଷ୍ମୀ ପୂଜାର ମରମ ଅଟେ ଏହା ଜାଣ
ଅଳସୁଆ ଘରେ ଲକ୍ଷ୍ମୀଙ୍କର ନାହିଁ ସ୍ଥାନ ।୧୦୭
ଶ୍ରୀୟା ଚଣ୍ଡାଳୁଣୀ କାଲି ଅନ୍ଧାରରୁ ଉଠି
ପରିଷ୍କାର କଲା ଗୃହ ସାରିଲା ପାଇଟି । ୧୦୮
ଦୁଆରେ ମୁରୁଜ ଦେଇ ସ୍ନାହାନ ସାରିଲା
ଶୁଚିବନ୍ତ ହୋଇ ଗୃହ ଜଞ୍ଜାଳେ ଲାଗିଲା ।୧୦୯
ନଗର ଭ୍ରମଣ କରି ଲକ୍ଷ୍ମୀ ବାହାରିଲେ
କାହାରି କବାଟ ଫିଟି ନାହିଁ ସେ ଦେଖିଲେ ।
ବୁଲି ବୁଲି ଶ୍ରୀୟା ଘରେ ପ୍ରବେଶ ହୋଇଲେ
ତାର କର୍ମ କୁଶଳତା ଦେଖି ମୁଗ୍ଧ ହେଲେ ।
ଶ୍ରୀୟା ଚଣ୍ଡାଳୁଣୀ ପୂଜା କଲେକ ଗ୍ରହଣ
ଲକ୍ଷ୍ମୀଙ୍କ ଦୃଷ୍ଟିରେ କେହି ନାହିଁ ବଡ଼ ସାନ ।
ବ୍ରାହ୍ମଣ ଚଣ୍ଡାଳ ଭେଦ ନାହିଁ ତାହାଙ୍କର
ଯେ ତାଙ୍କୁ ପୂଜା କରିଲା ସେ ହେଲେ ତାହାର ।
ଲକ୍ଷ୍ମୀଙ୍କର ଆନ ନାମ ଅଟଇ ଚଞ୍ଚଳା
ଚପଳାପରି ଅଟଇ ତାଙ୍କ ଲୀଳା ଖେଳା ।୧୧୪
କର୍ମୀ ପୁରୁଷ ରମଣୀ ସତତ ଚଞ୍ଚଳ
ସେହିମାନେ ଚଞ୍ଚଳାଙ୍କୁ ବରନ୍ତି ନକର । ୧୧୫
ସୂର୍ଯ୍ୟୋଦୟୁ ପରେ ଯେହୁ ଶେଯରେ ଶୁଅଇ
ତା କନ୍ଧରୁ ଲକ୍ଷ୍ମୀ ବେଗେ ଚଳନ୍ତି ଓହ୍ଲାଇ ।
ଜାପାନ ଦେଶର ଲୋକ ଷୋଳ ଘଣ୍ଟାକାଳ
ପ୍ରତିଦିନ କାର୍ଯ୍ୟକରି ହୁଅନ୍ତି ଚଞ୍ଚଳ । ୧୧୭
କର୍ମସ୍ରୋତ ବହୁଅଛି ଜାପାନ ଦେଶରେ
ଅହରହ କର୍ମ ଲାଗିଅଛି ଘରେ ଘରେ । ୧୧୮
ଗୃହଶିଳ୍ପ କାମ କରୁଅଛି ପ୍ରତି ଲୋକ
କର୍ମକୁ ଦେବତାଠାରୁ ମଣନ୍ତି ଅଧିକ । ୧୧୯

ସ୍ତ୍ରୀ ପୁରୁଷ ବାଳକ ସମସ୍ତେ ଖଟନ୍ତି
ଶକ୍ତି ଅନୁରୂପ କାର୍ଯ୍ୟ ନିତି କରୁଛନ୍ତି । ୧୨୦
ତେଣୁ ଆଜ ଶ୍ରେଷ୍ଠ ଅଟେ ସେ କ୍ଷୁଦ୍ର ଜାପାନ
ଶସ୍ତାରେ ବିକୁଅଛି ସବୁ ଦ୍ରବ୍ୟମାନ । ୧୨୧
ହାଟ ବଜାରେ ଦୋକାନେ ଜାପାନୀ ଦରବ
ବିକା ହେଉଅଛି ଆଜ ଖରବ ଖରବ । ୧୨୨
କୋଟି କୋଟି ଟଙ୍କା ଏହି ଭାରତରୁ ଯାଏ
ଧନୀ ଦେଶ ବୋଲି ତେଣୁ ଜାପାନ ବୋଲାଏ ।
ନିଜ କର୍ମ ବଳେ ଗୁଣି ନେଉଅଛି ଧନ
ପୃଥିବୀ ମଧ୍ୟରେ ଲଭି କରୁଛି ସମ୍ମାନ । ୧୨୪
ଅଳସୁଆ ହୋଇଗଲା କ୍ରମେ ଏ ଭାରତ
ତେଣୁ ଭାରତ ବାସୀଙ୍କ ନ ମିଳଇ ଭାତ ।୧୨୫
ପହରେ ବେଳରେ ନିଦ ଭାଙ୍ଗଇ ତାହାର
କର୍ମ କରିବାକୁ କେବେ ନୁହେଁ ତତପର ।୧୨୬
ରମଣୀମାନେ ପହରେ ବେଳରେ ଉଠନ୍ତି
ସ୍ନେହୀ ପହିଁରୀ ପୂରୁବ ପରି ନ କରନ୍ତି । ୧୨୭
ଦୁଆରେ ମୁ ରୁଜ ଦେବା ସ୍ୱପନ ହେଲାଣି
କଳ ପୁତ୍ତଳିକା ପରି ଦାଣ୍ଡେ ବୁଲିଲେଣି ।୧୨୮
ଗୋଡ଼ଠାରୁ ମୁଣ୍ଡ ଯାଏ ବିଦେଶୀ ଭୂଷଣ
କାକ ମୁଣ୍ଡେ କେକୀ ପୁଚ୍ଛ ଯେପରି ଶୋଭନ ।
ଗୃହ ଶିଳ୍ପମାନ ସବୁ ଗଲାଣି ପାଶୋର
କଉଡ଼ିକର ଉପାର୍ଜନ ନ ଦେଖେ କାହାର ।
ଇଂରେଜି ଭାଷାରେ ଏବେ ହେଲେଣି ପଣ୍ଡିତା
ସେମିଜ ସାୟା ବଡ଼ରେ ହେଲେଣି ଶୋଭିତା ।
ସଭା ସମିତିକି ଏବେ ଯାଉଛନ୍ତି ଧାଇଁ
ଗୃହ ଶିଳ୍ପ କରିବାକୁ ଆଜ ବେଳ କାହିଁ ।୧୩୨
ପୁରୁଷର ଦଶା ନାରୀଠାରୁ ହେଲା ହୀନ
ପହରେ ବେଳରେ ନିତ୍ୟ କର୍ମ ସମାପନ ।୧୩୩

ମାଙ୍ଗ ମାଟି ପାନଖାଇ ବିଲକୁ ବାହାରେ
ଟିକଏ ଖରା ଲାଗିଲେ ପୁଣି ଘରେ ଫେରେ ।
କୃଷ ଖତ ମାଟି ଆଉ ପୂର୍ବପର ନାହିଁ
ବହନ ବାଛୁବା ସ୍ୱତ ଗଲଣି ଉଭାଇ । ୧୩୫
ଦେଖିଲ କୃଷ ପାଇଛି ଅଛୁ ବହାରରେ
ସେପରି କୃଷ ମୁଁ ଦେଖୁନାହିଁ ଓଡ଼ଶାରେ ।
ମାଣକୁ ପନ୍ଦର ଟଙ୍କା ଖଜଣା ବହାରେ
ତିନ ଟଙ୍କାରୁ ଅଧିକ ନୁହେଁ ଓଡ଼ଶାରେ ।୧୩୬
ତଥାପି ବହାର କୃଷୀ କୃଷି କର ଧନୀ
ଓଡ଼ଶା କୃଷୀକ ମିଳୁ ନାହିଁଟି ତୋରାଣି ।୧୩୮
କର୍ମ ଅନୁସରି ଫଳ ମିଳୁଛି ଜଗତେ
କର୍ମ ଦେବତାକୁ ପୂଜା କରଇ ଯେ ଯେତେ ।
ଭଗବାନ ଭାଗବତେ କହିଛନ୍ତି ପୁଣ
କର୍ମଠାରୁ ଆନ ଦେବ ନାହିଁ ଲୋକେ ଜାଣ ।
କର୍ମ ଅନୁସାରେ ଫଳ ଦେଇ ପାରେ ମୁହିଁ
ତହୁଁ ଅଧିକ ମୁଁ କେବେ ଦେଇ ନ ପାରଇ ।
କର୍ମକୁ ଆଦରି ସର୍ବେ ସହ ସୁଖ ଦୁଃଖ
କି ଫଳ ମିଳିବ ବୃଥା ହୋଇଲେ ବିମୁଖ ।
କର୍ମକର କର୍ମକର କହୁଛନ୍ତି ଗାନ୍ଧି
ବୁଝି ନ ପାରି ଏ ଲୋକେ ହେଉଛନ୍ତି ଧନ୍ଦି ।
କର୍ମବଳେ ଲଭିପାର ଅକ୍ଳେଶେ ସ୍ୱରାଜ୍ୟ
କିଛି ନ ମିଳିବ କଲେ ବଚନ ମଉଜ । ୧୪୪
କାନରେ ଶୁଣିଲେ ଅବା ଆଖିରେ ଦେଖିଲେ
କି ଫଳ ମିଳିବ ନିଜ ହାତ ନ ଚଳିଲେ ।୧୪୫
ଦେଖିଶୁଣି ଲୋକ ଯେବେ ନ ଚଳିବ ହାତ
ପାଠିକ ଗୁଣ୍ଡାଏମାନ ନ ଫିରିବଟି ଭାତ । ୧୪୬
ଶତ ଶତ ଶିଳ୍ପ ପ୍ରଦର୍ଶନୀ ନିତି ଦେଖି
କ୍ଷୁଧିତ ଲଭିପାରଇ କ୍ଷଣେ ଚର୍ମଆଖି । ୧୪୭

ହାତ ପାଇଟି ନ କଲେ କି ଫଳ ମିଳିବ
ଯାଇ ଆସି ରେଳ ମଟରକୁ ଭଡ଼ା ଦେବ ।
ବହୁ ଧର୍ମ କର୍ମ କଥା ଶୁଣିଲଣି କାନ
ବହୁତ ଚମତ୍କାର ଦେଖିଲା ନୟନ । ୧୪୯
ଦେଖି ଶୁଣି ମନ ଯେବେ ହାତ ନ ଚଳାଏ
ସେ ଦେଖାଶୁଣାରୁ ଲାଭ ନ ମିଳେ କଉଡ଼ାଏ ।
କରମ ଅଟଇ ଯିନା ଗାଛମାନଙ୍କ ମୂଳ
ସଭା ସମିତି ବକ୍ତୃତା ଡାଳଟି କେବଳ । ୧୫୧
ମୂଳେ ପାଣିଦେଲେ ଯିନା ବୃକ୍ଷ ପଲ୍ଲବିବ
ଡାଳରେ ପାଣି ଛିଞ୍ଚିଲେ ବୃକ୍ଷ କି ଜୀଇବ ।୧୫୨
ଦେଖ ଜାପାନୀ ଜର୍ମାନୀ ଆଦି କର୍ମବଳେ
ଧନୀ ମାନୀ ଜ୍ଞାନୀ ବୀର ଏ ମହୀମଣ୍ଡଳେ । ୧୫୩
ବିଲାତ କରମବଳେ ଭାରତର ରଜା
କର୍ମଦେବ ପଦେ ନିତି କରୁଛନ୍ତି ପୂଜା । ୧୫୪
ଜଗତରେ ଦେଖୁଅଛ ଯେତେକ ଦରବ
କର୍ମଦେବତା କରୁଛି ଏ ସବୁ ପ୍ରସବ । ୧୫୫
ହାତ ଗୋଡମାନ ଥାଇ ଯେବେ କୋଢ଼ି ହେବା
ଗାନ୍ଧି ଜୟ ଗାନ୍ଧି ଜୟ କହି କି ପାଇବା ।୧୫୬
ଗୁରୁ ଯିନା ଦୀକ୍ଷା ଦେବେ ମନ୍ତ୍ର କହିଦେବେ
ଶିଷ୍ୟମାନେ ନ ସାଧିଲେ ସେ କିସ କରିବେ ।
କାର୍ଯ୍ୟ ସାଧନ ଅଟଇ ଲୋକର କରମ
ନ ସାଧି ସିଦ୍ଧି ମିଳିବା ନୁହଇ ଧରମ । ୧୫୮
ଦେଖୁଛି ଲୋକ ପ୍ରକୃତି କରମ ବିମୁଖ
କରମ କରିବାପାଇଁ ନ ମଣଇ ସୁଖ । ୧୫୯
ଆନନ୍ଦେ ଉତ୍ସାହେ କର୍ମପଥେ ଯିବାପାଇଁ
ସାହସ ସହିତ କେହି ଆଗେ ନ ବଢ଼ଇ ।୧୬୦
ଗାନ୍ଧି ପରି ଲୋକ କହି କହି ଗଲେ ଥକି
ବଙ୍କା ହୋଇଲଣି ବୁଢ଼ାହାତ ଲେଖି ଲେଖି ।

ସହଜେ ଲୋକ ପ୍ରକୃତି ହୋଇଛି ପଥର
ତରଳାଇ ପାରିବ କି ଏ ଲେଖାପତର ।୧୬୨
କର୍ମବିମୁଖ ଅର୍ଜୁନ ପରି ସର୍ବେ ଜାଣ
ନିରୁଦ୍ୟମ ନିରୁଦ୍‌ବେଗ ନଇରାଶ ପୂର୍ଣ୍ଣ । ୧୬୩
କର୍ମ ପଥରେ ପଥିକ କେ କରାଇଦେବ
ଶ୍ରୀକୃଷ୍ଣଙ୍କପରି ଶକ୍ତିଧର ହେଲେ ହେବ ।୧୬୪
ନବ ଜଳଧର ତନୁ ଧନ୍ୟ ଉଭା ହୁଅ
କୃପାବାରି ବରଷି ଏ ଜଡ଼ତା ଧୁଆଅ । ୧୬୫
ନାଶ କରିଥିଲ ପରା ପ୍ରଭୁ କଂସ କେଶୀ
କି ଛାର ପଲକେ ହିଅ ଏ ଦୁଃଖ ବିନାଶୀ ।୧୬୬
ତବ ଭକ୍ତିବଳେ ଜାଗିଉଠୁ ଏ ଭାରତ
ନବ ତେଜପୁଞ୍ଜ ଧରି ହେଉ ଏ ଜାଗ୍ରତ ।୧୬୭
ପୁଣି ଶ୍ରେଷ୍ଠ ବଳିଷ୍ଠ ଏ ହେଉ ଜଗତରେ
ଆହେ ମହାପ୍ରଭୁ ପୁଣି କୃପା କର ବାରେ ।୧୬୮
ଘୋର ଧର୍ମଗ୍ଳାନି ପୁଣି ଘୋଟିଛି ଭାରତେ
ଧର୍ମ ସଂସ୍ଥାପନ କର ପ୍ରଭୁ ଦିବ୍ୟରତେ ।୧୬୯
ତବ କରୁଣା ବିହୁନେ ନ ହୋଇବ ଏହା
ବୋଲେ ଦୀନ ଜଗବନ୍ଧୁ ଆହେ ଚକ୍ରବାହା ।

ଇତିଶ୍ରୀ ଭାରତ-ଚରିତାମୃତେ ଭାରତର ବର୍ତ୍ତମାନ ପରିସ୍ଥିତି ବର୍ଣ୍ଣନେ ଏକଶତ ତିନ ଅଧ୍ୟାୟଃ ।



## ଏକଶତ ଚାରି ଅଧ୍ୟାୟ

ଶୁଣ ହେ ସୁଜନ ଜନେ ଅପୂର୍ବ ଚରିତ
ମହାଘୋର କଳିକାଳ ହେଲା ଉପଗତ । ୧
ସାରା ସୃଷ୍ଟିରେ ଏ କଳିକାଳ ଘୋଟିଗଲା
ସାଙ୍ଗୋପାଙ୍ଗୋ ନେଇ କଳିରାଜା ପ୍ରବେଶିଲା । ୨

କଳିର ପ୍ରଧାନ ସହଚର ମିଥ୍ୟା ଜାଣ
ଆଟେସ ମନୋହର ବପୁ ଧରି ସେ ପ୍ରମାଣ । ୩
କଥା କଥାକେ ବୋଲଇ ମିଛ କହୁନାହିଁ
ପକାଉଛି ପୁଣ ପୁଣ ଜଗନ୍ନାଥ ଦୋହି । ୪
ଅନର୍ଗଳ କହି ଯାଉଅଛି କଥାମାନ
ସତ ଫଳାଇ କହୁଛି ଦେଖାଇ ପ୍ରମାଣ । ୫
ଆଖି କାନ ଛୁଇଁ ତୁଣ୍ଡେ ବୋଲେ ରାମ ରାମ
ମିଥ୍ୟାଠାରୁ ମହାପାପ ନାହିଁବୋଲି ଜାଣ । ୬
ବାହାପିଆ କଥାମାନ କହିଯାଏ କେତେ
ନିଆଁ ଗିଳି ଦେଉଅଛି ସକଳ ପୁରତେ । ୭
ନ ଦେଖିଲା ନ ଶୁଣିଲା କଥାଯାଏ କହି
ହଳପ ଧରି ବୋଲଇ ସେ ସତ ଫଳାଇ । ୮
ଯେତେ ଲୁଚାଇଲେ କଥା ଫୁଟି ବାହାରଇ
ନିଜ ବାହାଦୁରି କଥା ଯାଉଥାଏ କହି । ୯
ତାଳିପରେ ତାଳିଦେଇ ପିନ୍ଧିଛି ବସନ
ତଥାପି ଫୁଟି ଦିଶଇ ତାର ଦେହ ଚିହ୍ନ । ୧୦
ଧଳା କଳା ଘୋଡ଼ା ଚଢ଼ି ଆସୁଛି ଦମ୍ଭରେ
ଛାତି ଫୁଲାଇ ଚାଲୁଛି ଅତି ଗରବରେ । ୧୧
ତା ପଛେ ଆସୁଛି ହିଂସା ଧରି କରବାଳ
ଫଅଁ ଫଅଁ ସ୍ୱନ ତୁଣ୍ଡୁ ବହଇ ଗରଳ । ୧୨
ଲହ ଲହ ଜିହ୍ୱା ଗୁପତରେ ରଖି ଛୁରି
ସୁବିଧା ସୁଯୋଗ ଜଣ୍ଡି ପଛୁଁ ଦେବ ମାରି ।୧୩
ଛଳ ବଳ କଉଶଳ କପଟ ଭୂଷଣ
ନାନା ଅସ୍ତ୍ର ଧରିଅଛି ସେହୁ ପଣ ପଣ । ୧୪
ଭାତୃବିବାଦ କଳହ ଦେବ ସେ ଲଗାଇ
ଘର କରିବାକୁ ଇଚ୍ଛା ପରଧନ ନେଇ । ୧୫
ଦୁର୍ବଳ ଉପରେ ତାର ସଦା ଅତ୍ୟାଚାର
ପରେ, ପୀଡ଼ନକୁ ସଦା କରିଛି ବେପାର । ୧୬

ସ୍ୱକାର୍ଯ୍ୟ ସାଧନପାଇଁ ସଦା ତତପର
ଧାଉଁଥାଏ ମର୍ତ୍ତ୍ୟ ସ୍ୱର୍ଗ ଅଥବା ପାତାଳ । ୧୭
ଜଳ ସ୍ଥଳ ଆକାଶରେ କରେ ବିଚରଣ
ଦଣ୍ଡକେ କରି ପାରଇ ଅସାଧ୍ୟ ସାଧନ । ୧୮
ହିଂସା ଅନଳ ଜଳାଇ ଦିଏ ଘରେ ଘରେ
କନ୍ଦଳ ଲଗାଇ ଦିଏ ସ୍ୱଜନ ଜନରେ । ୧୯
ଚର ଅନୁଚର ତାର ଅଛନ୍ତି ବହୁତ
ଯେ ଯାର ସେବାରେ ଖଟି ଅଛନ୍ତି ନିଯୁକ୍ତ ।୨୦
ପରଶ୍ରୀ କାତରତା ଆସୁଛି ପଛେ ତାର
ଅନ୍ତର୍ଦାହ ହୁଏ ଶିରି ଦେଖିଲେ ପରର । ୨୧
ଏହା କାନେ ତାହା କାନେ ଦେଉଥାଏ କହି
ଦେଖ କେତେ ଧନ ଜନ ପାଇଗଲା ସେହି ।୨୨
ପର ଉନ୍ନତି ଦେଖିଲେ ଦେହ ନ ସହଇ
ଉଲ୍ଲସି ପଡ଼େ ତା ଦେହ ନିଶ୍ୱାସ ପକାଇ ।୨୩
ଆପଣା ଉନ୍ନତି ପାଇଁ ନ କରଇ ଚିନ୍ତା
ଆନର ଶିରି ଦେଖିଲେ ଘୁରିଯାଏ ମଥା । ୨୪
ଏହି ମରଠରଙ୍କୁ କରି ସେ ଦିନ ନିଏ
ଉହଳ ବିକଳ ହୋଇ ମନେ ମରୁଥାଏ । ୨୫
ଉଇଁ ହୋଇ ମରୁଥାଏ ଆନ ସୁଖ ଦେଖି
ଆପଣାକୁ ମଣୁଥାଏ ସଦା ନିରିମାଖି । ୨୬
ପର ନିନ୍ଦା ପର କୁତ୍ସା କରି ଦିନ ନିଏ
ପର ନିନ୍ଦା କଲେ ତାର ମନେ ସୁଖପାଏ ।୨୭
ପର ନିନ୍ଦା ନ କଲେ ନ ରୁଚେ ତାକୁ ଅନ୍ନ
ଆପଣାର ଦୋଷାଦୋଷ ନ କରେ ସ୍ମରଣ ।୨୮
ମନେ ମନେ ବିଚାରେ ମୋ ପରେ କେହି ନାହିଁ
ସକଳ ଗୁଣରେ ଶ୍ରେଷ୍ଠ ଅଟଇଟି ମୁହିଁ । ୨୯
ମୁଁ ଯାହା କହୁଛି ତାହା ସବୁଠାରୁ ସାର
ଆଉ ଯେ ଯାହା କହିବ ସକଳ ଅସାର । ୩୦

ତା କଥାକୁ ଭଙ୍ଗିକରି ଯେବେ କେ କହିବ
ପ୍ରଚଣ୍ଡ କ୍ରୋଧ ଅନଳେ ପୋଡ଼ି ସେ ମରିବ ।୩୧
କ୍ରୋଧ ପରମ ଚଣ୍ଡାଳ ବିଷମ ମୂରତି
ହିତାହିତ ଜ୍ଞାନ ଲୋପକରେ ସେ ଝଟତି ।୩୨
କ୍ରୋଧୀ ଲୋକ ଅଟେ ମହା ଅଜ୍ଞାନୀ ମୂରୁଖ
ଆପଣା ହୃଦକୁ ଆପେ ଶର କରେ ଲକ୍ଷ । ୩୩
ମୁଣ୍ଡେ କର ତାଡ଼ି କେଶ ପକାଏ ଛିଣ୍ଡାଇ
ଆପଣା ଜିହ୍ୱାକୁ ଆପେ କାମୁଡ଼େ ଭୁହାଇ ।୩୪
ଯେଉଁ ମୂଢ଼ମତି ହୁଏ କ୍ରୋଧର ଅଧୀନ
କ୍ରୋଧ ତାର ଲହୁ ପାନକରେ ଅନୁକ୍ଷଣ । ୩୫
କ୍ରୋଧେ ଜରଜର ତନୁ କମ୍ପେ କଳେବର
କର୍କଶ ବଚନ ବାଣ ବରଷେ ନିକର । ୩୬
ଚତୁର୍ଦ୍ଦିଗ ଦିଶଇ ତାହାକୁ ଅନ୍ଧକାର
ଆପଣା ଓଷ୍ଠକୁ ଆପେ କାମୁଡ଼େ ନିକର । ୩୭
ଆପଣା ଗାଲରେ ଆପେ ଚଟକଣି ମାରେ
ଯେ ପଦେ କହିଲା ତା ମହତ୍ତ୍ୱ ଖରେ ସାରେ ।
ଭାଇ ବନ୍ଧୁ କୁଟୁମ୍ବ ସ୍ୱଜନ ନାହିଁ ଜ୍ଞାନ
ବଳପଡ଼ିଲେ କାହାର ନଅଇ ଜୀବନ । ୩୯
ଲୋଭସଙ୍ଗେ ସଙ୍ଗୀ ହୋଇପଡ଼େ ଯେତେବେଳେ
ପ୍ରାଣୀ ହତ୍ୟା କରିବାକୁ ଡ଼ରେନାହିଁ ଭଲେ ।୪୦
ସବୁରି ପଛରେ ଆସେ ଅଳସୁଆ ଦେଖ
ସକଳ ସୁନ୍ଦର ଭେଣ୍ଡା ନାହିଁ ଖଣ୍ଡେ ଭେକ ।୪୧
ହାଇ ମାରିମାରି ଆସେ ମନ୍ଦମନ୍ଦ ଗତି
ତିନ ଦିନ ଉପବାସ ପେଟ ଅଛି ଖାଲି । ୪୨
କି କରିବି କି କରିବି ବୁଦ୍ଧି ନ ଦିଶଇ
ବସିଲାଠାବରୁ ଉଠିବାକୁ ବଳ ନାହିଁ । ୪୩
ଗୋଡ଼ ଭଙ୍ଗି ଠିଆହୋଇ ରହେ ଠାବେ ଠାବେ
କିପରି ଦିନ ପାଇବି ମନେ ମନେ ଭାବେ ।୪୪

ପିତୃ ଅରଜିତ ଧନ ବସି ଭୁଞ୍ଜି ଖାଏ
ସେତକ ସରିଲେ ପରଦ୍ୱାରେ ମାଗିଯାଏ । ୪୫
ପିତୃପୁରୁଷର ଯେଉଁ ପ୍ରତିଷ୍ଠା ବିଶାଳ
ତାକୁ ବସି ଭୁଞ୍ଜି ଚଳିବ ବା କେତେକାଳ ।୪୬
ତଥାତ ସେ ପ୍ରତିଷ୍ଠାକୁ ସମ୍ବଳ କରିଣ
ଚଳିଯାଏ ଦୁଃଖେ ସୁଖେ କେତେ କେତେ ଦିନ
କେ ପୁଣି ତହିଁ ଉପରେ ଗୃର ନିଶା ଖାଏ
ମାଇପ ଅଙ୍ଗରୁ ଖଡ଼ୁ କଣ୍ଠି ବିକିଦିଏ । ୪୮
ଲକ୍ଷେକ ଆଣିଲେ ପକ୍ଷେ ନଅଣ୍ଟ ହୁଅଇ
କୁଣ୍ଠା ଖଣ୍ଡିକ ଦିଖଣ୍ଡ କରି ନ ପାରଇ । ୪୯
କାଣି କଉଡ଼ି କଣ୍ଠାଏ ନ ପାରେ ଅରଜି
ମନେ ମନେ ଥାଏ ବଡ଼ଲୋକର ମରଜି । ୫୦
ନାନାଜାତି ଅଳସୁଆ ଅଛନ୍ତି ସଂସାରେ
ଠାପୁଆ ଆପୁଆ ଗଣ୍ଡିଅଳସୁଆ ବାରେ । ୫୧
ମାଗିଖିଆ, ପିଣ୍ଡାବସା, ଗଣ୍ଡଅଳସୁଆ
ପହରେ ବେଳରେ ଶେଯ ଉଠି ଗୁହାପିଆ ।୫୨
କରମକୁ ନିନ୍ଦାକରି କହେ ନାନା କଥା
ପରିଶ୍ରମ କରିବାକୁ ନ ଚଳାଏ ମଥା । ୫୩
ଏହିପରି ନାନା ସହଚର ଘେନି କଳି
ପରବେଶ ହେଲା ଜଗତରେ ମହାବଳୀ । ୫୪
ସହଚରମାନେ ଜଗତରେ ଖେଦିଗଲେ
ଘରେ ଘରେ ପରବେଶି କାର୍ଯ୍ୟ ଆରମ୍ଭିଲେ ।
କଳିର ଆଦେଶ ମାନି ଘରେ ଘରେ ପଶି
ସେ ଯାହାର କାର୍ଯ୍ୟମାନ କଲେ ହୋଇ ଖୁସି ।
କଳିର ଶକତି ପ୍ରକଟିଲା ଘରେ ଘରେ
ମହାଘୋର କନ୍ଦଳ ସେ ଲାଗିଲା ସଂସାରେ ।୫୭
ଚାରି ପାଦ ଧରମରୁ ପାଦେକ ରହିଲା
ଆଉ ତିନି ପାଦ ବଳେ ଲୁପତ ହୋଇଲା ।୫

ଧର୍ମଗ୍ଳାନି ଘଟିଥିଲା ଏ ସାରା ସଂସାରେ
ରହିଲା ଧରମ ଖାଲି ଖୋଳ ପରକାରେ ।୫୯
ଧରମ ଧରମ ବୋଲି ମୁଖରେ ବୋଲନ୍ତି
ସବୁ ଅଧରମ କଥା କାର୍ଯ୍ୟରେ କରନ୍ତି । ୬୦
ସତ୍ୟ କହିବାପାଇଁକି ହେଳପ କରନ୍ତି
ଅନର୍ଗଳ ମିଥ୍ୟା କଥା ତୁଣ୍ଡେ କହିଯାନ୍ତି । ୬୧
କଳି ପ୍ରଭାବରେ ସର୍ବେ ହତବୀର୍ଯ୍ୟ ହେଲେ
ଔଷଧିମାନେ ନିଜ ରସ ହରାଇଲେ । ୬୨
ବିପ୍ରମାନେ କୁମାର୍ଗରେ କଲେକ ଗମନ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ସର୍ବେ ଶୂଦ୍ର ଜାଣ ।୬୩
ଭୂପାଳେ ଆପଣା ଧର୍ମ କରମ ଛାଡ଼ିଲେ
ଭାର୍ଯ୍ୟାମାନେ ସ୍ୱାମୀଙ୍କର ବିରୋଧିନୀ ହେଲେ ।
ଧର୍ମପତ୍ନୀ ପର ପୁରୁଷରେ ରତ ହେବ
କଳିର ପ୍ରଭାବ ଏହା କେ ରୋଧି ପାରିବ । ୬୫
ଯେ ମଲା ସେ ତରିଗଲା ଏ କଳିଯୁଗରେ
ଧନ୍ୟବୋଲି ବୋଲିବାକୁ ତାକୁ ଏ ସଂସାରେ ।
ଏହିପରି ପଞ୍ଜିକାର ଲେଖୁଛନ୍ତି ପାଞ୍ଜିରେ
ଏ ସବୁ ଉଲ୍ଲେଖ ଅଛି ନାନା ମାଳିକାରେ ।
ଯେତେ ଯେତେ ଭବିଷ୍ୟତ କଥା ଲେଖାଥିଲା
ଗୋଟି ଗୋଟି ହୋଇ ଆସି ସକଳ ଘଟିଲା ।୬୮
ମାନବର ଉନ୍ନତି ଯେ ତିନି ପରକାର
ଆଧ୍ୟାତ୍ମିକ, ଆଧିଭୌତିକ ଯେ ଆଉର । ୬୯
ଆଧିଦୈବିକ ଅଟେ ତୃତୀୟ ପ୍ରକାର
ଏଥିର ମରମ ଶୁଣ କହୁଛି ଏଥର । ୭୦
ଧର୍ମ କର୍ମ ଦିଗରେ ଯେ ଉନ୍ନତ ହୁଅଇ
ଆଧ୍ୟାତ୍ମିକ ଉନ୍ନତି ବୋଲିଣ ତାକୁ କହି । ୭୧
ଆତ୍ମା ପରମାତ୍ମା ନେଇ ଯାବତ ଉନ୍ନତି
ଆଧ୍ୟାତ୍ମିକ ଉନ୍ନତି ନାମରେ ତାର ଖ୍ୟାତି ।୭୨

ଜ୍ଞାନର ଚରମସୀମା ବୋଲିଏ ଉନ୍ନତି
କ୍ରମ ପ୍ରଣାଳୀରେ ଉଣା ଅଧିକ ବୋଲନ୍ତି । ୭୩
ଅଧ୍ୟାତ୍ମ ବିଷୟେ ଯେଉଁ ଜ୍ଞାନ ଲଭ ହୁଏ
ଆଧ୍ୟାତ୍ମିକ ଉନ୍ନତି ବୋଲିଣ ସେ ବୋଲିଏ ।
ଜଡ଼ବସ୍ତୁ ବିଷୟରେ ଯାବତୀୟ ଜ୍ଞାନ
ନାମ ଅଟଇ ତାହାର ପଦାର୍ଥ ବିଜ୍ଞାନ । ୭୫
ପଦାର୍ଥ ସଂଯୋଗ ବିୟୋଗରେ ଜନ୍ମେ ଶକ୍ତି
ସେ ଶକ୍ତି ଆବର ଧରେ ନାନାବିଧ ମୂରତି ।୭୬
ବିଚିତ୍ର ବିସ୍ମୟକର କାର୍ଯ୍ୟ ସେହୁ କରେ
ଶକତି ବଳରେ ଜଗତକୁ ମୁଗ୍ଧ କରେ । ୭୭
କ୍ରମ ନିୟମରେ ଏହି ଉନ୍ନତି ଉପୁଜେ
ମୋହିନୀ ମୂରତି ଧରି ଜଗତେ ବିରାଜେ । ୭୮
ନାନା ଅଦ୍ଭୁତ କରମ ଦେଖାଏ ସେ ନିତି
ଜଳ ସ୍ଥଳ ଆକାଶ ପାତାଳେ କରେ ଗତି ।୭୯
ଅଗ୍ନି ବରୁଣ ପବନ ତାହାର ଅଧୀନ
ସେମାନଙ୍କୁ ଧରି କରେ ଅଦ୍ଭୁତ କରମ । ୮୦
କ୍ଷଣିକ ମଧୁର ସୁଖ ଦିଏ ସେ ଚଖାଇ
ଜଗତ ଲୋକମାନଙ୍କୁ କରିଦିଏ ବାଇ । ୮୧
ଆଧିଭୌତିକ ସୁଖ ବଡ଼ ଚମତ୍କାର
ହରଣ କରଇ ମନ ନୟନ ନିକର । ୮୨
ଜଡ଼ବିଜ୍ଞାନ ବଳରେ କେତେ କେତେ ଜାତି
ଧନବଳେ ବଳୀୟାନ ହୋଇ ବିଚରନ୍ତି । ୮୩
ସକଳ ଦେଶରୁ ଅର୍ଥ କରନ୍ତି ଶୋଷଣ
ଖାଇପିଇ ମଜାମାରି କରନ୍ତି ଭ୍ରମଣ । ୮୪
ଚଳନ୍ତି ଗୁଡ଼ିକ ଠେଲି ଦମ୍ଭ ଦର୍ପ ଧରି
ଧରାକୁ ସରା ମଣନ୍ତି ଆକାଶେ ବିଚରି । ୮୫
ଭୌତିକ ବିଳାସେ ମନ ରସଇ ନିୟତ
ଖାଦ୍ୟ,ପେୟ, ଲେହ୍ୟ, ଚୋଷ୍ୟ ସଦା ଅନୁରକ୍ତ

ସାରା ଦୁନିଆରୁ ଧନ ଆସିବ କପଟ
ସମ୍ପ୍ରତି ଏହି ଚିନ୍ତାରେ ହେଉଛନ୍ତି ଘାରି । ୮୭
ଦୁର୍ବଳର ଧନ ରାଜ୍ୟ କପଟେ ଆସିବ
ବଳବାନର ସକଳ ସୁଖ ବଢ଼ାଇବ । ୮୮
ଏଥିରେ ଦୁର୍ବଳ ଯେବେ ଦେବ କିଛି ବାଧା
ସମର କରି ତା ରାଜ୍ୟ କରିଦିଅ ସିଧା । ୮୯
ଭୌତିକ ବିଦ୍ୟାର ଅଛି ଅଦ୍ଭୁତ ଶକତି
ଛଳ ବଳ କଳ କଉଶଳ ନାନାଜାତି । ୯୦
ଇନ୍ଦ୍ରଜାଲ କଉତୁକ ପରି ଦେଖାଯାଏ
ସାଧାରଣ ବୁଦ୍ଧିକି ସେ ଚମକାଇ ଦିଏ ।୯୧
ଏ ସବୁ ଧାରଣା ନୁହେଁ ବୁଦ୍ଧିରେ ଯାହାର
ସେ ବୋଲେ ଦେଖ ଏସବୁ କେଡ଼େ ଚମତ୍କାର ।
ହଟଚମଟ ପଡ଼ିଏ ତାକୁ ଦେଖାଯାଏ
ଆବାକାବା ହୋଇ ସେହୁ ଏଣେତେଣେ ଚାହେଁ
ଏପରି ଅଦ୍ଭୁତ ଶକ୍ତି ଭୌତିକ ବିଦ୍ୟାର
ମୋହିନୀ ଶକତିବଳେ ଜିଣଇ ସଂସାର । ୯୪
ଦିନେ ଭାରତ ଏଥିରେ ବିଶାରଦ ଥିଲା
କାଳବଶେ ସେ ଉନ୍ନତି ଲୋପ ପାଇଗଲା ।୯୫
ପାଶ୍ଚାତ୍ୟ ପ୍ରଦେଶ ଏବେ ସେହି ବିଦ୍ୟାବଳେ
ଚମକାଇ ଦେଉଅଛି ପୃଥିବୀକୁ ବଳେ । ୯୬
ଭୂତ ବିଦ୍ୟାବଳେ ସେ ଦେଶର ଲୋକଗଣ
ସାରା ପୃଥିବୀକୁ କରୁଛନ୍ତି ରଣଭଣ । ୯୭
ପାଶ୍ଚାତ୍ୟ ଦେଶରେ ଅଛି କେତେକେତେ ରାଜ୍ୟ
ସକଳେ ଊଣା ଅଧିକେ କରୁଛନ୍ତି କାର୍ଯ୍ୟ ।୯୮
ଧନ ଜନ ଗୋପ ଲକ୍ଷ୍ମୀ ସକଳ ଦେଶରେ
ସ୍ଥିର ରହିଅଛି ଦେଶ ଊଣା ଅଧିକରେ । ୯୯
ଭୌତିକ ଉନ୍ନତି ଶେଷ ସୀମାରେ ପ୍ରବେଶି
ଆଜି କି କରିବେ ବୋଲି ହେଉଛନ୍ତି ଘୋଷି ।

ଯେତେ ଯେତେ ଶକ୍ତି କରିଥିଲେକ ସଞ୍ଚୟ
ବଳ କଷାକଷି ହୋଇ କରୁଛନ୍ତି କ୍ଷୟ । ୧୦୧
କୋଟି କୋଟି ଟଙ୍କା ବ୍ୟୟ କରି ପ୍ରତିଦିନ
ଲାଗିଛି ପାଶ୍ଚାତ୍ୟ ଦେଶେ ଭୟଙ୍କର ରଣ ।୧୦୨
ଧନମଦେ ମତ୍ତ ହୋଇ କରନ୍ତି ସମର
କେ ନେଇପାରିବ ବଳେ ରାଇଜ କାହାର ।
କେତେ ମହାପ୍ରାଣୀମାନେ ହରାନ୍ତି ଜୀବନ
ମଣିଷ ମୁଣ୍ଡରେ ରଣାଙ୍ଗନ ହୁଏ ପୂର୍ଣ୍ଣ । ୧୦୪
ନରମୁଣ୍ଡ ଲକ୍ଷ ଲକ୍ଷ ଯାଉଅଛି ଗଡ଼ି
କମ୍ପୁଛି ଧରଣୀ ଶୁଣି ତୋପ ଗୁଳା ରଡ଼ି ।୧୦୫
ଧୂଳୁକ ଉଠେ ମେଦନୀ ସେନା ପାଦ ଘାରେ
କମ୍ପୁଛି ଆକାଶ ଉଡ଼ାଜାହାଜ ଶବ୍ଦରେ ।୧୦୬
ଜାହାଜ ଗମନେ ଉଚ୍ଛୁଳୁଛି ପାରାବାର
ଡୁବି ଯାଉଅଛି କେତେ ଗର୍ଭରେ ତାହାର ।
ଧନ ଜନ କ୍ଷୟ ହେଉଅଛି କୋଟି କୋଟି
କୋଟି କୋଟି ନରମୁଣ୍ଡ ତଳେ ଯାଏ ଲୋଟି ।
ଆକାଶ ପାତାଳ ଜଳ କରି ଏକାକାର
ପରୀକ୍ଷା ହୁଅଇ ଶକ୍ତି ଅଛି କେତେ କାର ।୧୦୯
ଦେଖିଲେ ଏ ଦୃଶ୍ୟ ମନେ ଏମନ୍ତ ଆସୁଛି
କଏ ଲୋକକ୍ଷୟ ଲୀଳା ଅଦୃଶ୍ୟେ କରୁଛି ।୧୧୦
ପୋକଯୋକ ପରି ଲୋକ ହେଉଛନ୍ତି କ୍ଷୟ
ବଳଥିବା ଲୋକଙ୍କର ରାଜ୍ୟ ଯେ ନଷ୍ଟୟ ।୧୧୧
ଯୁଗ ଯୁଗାନ୍ତର ବ୍ୟାପି ଧନ ଜମିଥିଲା
ସଭ୍ୟତା କେତନ କେତେ ରାଜ୍ୟେ ଉଡ଼ୁଥିଲା ।
ପଲକମାତ୍ରକେ ସବୁ ହୋଇଯାଏ ଧ୍ୱଂସ
କେତେ ମୂଲ୍ୟବାନ ଦ୍ରବ୍ୟ ହେଉଛି ପାଉଁଶ ।
ହୁଁକାର ନିନାଦ କରେ ହର ହିଟଲର
ପଶୁବଳେ ବଳୀୟାନ ହୋଇଛି ବର୍ବର ।୧୧୪

ଦମ୍ଭ ଦର୍ପ ଗର୍ବ ବନ୍ଧ ଧରା ମଣେ ସରା
ରଣମଦେ ମତ୍ତହୋଇ କମ୍ପାଉଛି ଧରା । ୧୧୫
କେତେ କେତେ ରାଜ୍ୟ ଯେହୁ କରିହଏ ଧ୍ୱଂସ
କେତେ ପ୍ରାଚୀନ ସାମ୍ରାଜ୍ୟ କରୁଛି ପାଉଁଶ ।
ପୋଲଣ୍ଡ, ହଲଣ୍ଡ ନରଉଏ ଯେ ଫ୍ରାନସ
ବେଲଜିଅମ ରାଜ୍ୟର କଲା ସର୍ବନାଶ । ୧୧୭
ଇଟାଲି ଏବେ ଜର୍ମାନୀ ସଙ୍ଗେ ଯୋଗଦେଲା
ତେଣୁ ସଂଗ୍ରାମ ଆହୁରି ଭୀଷଣ ହୋଇଲା ।୧୧୮
ଆମେରିକା ବୋଲେ ତେଣେ ଫୁଲାଇଣ ନଶ
ଦେବ ଯେତେ ଅସ୍ତ୍ରଶସ୍ତ୍ର ଲାଗିବ ଅବଶ୍ୟ ।୧୧୯
ଇଂରେଜ ଯେଉଁ ପକ୍ଷରେ କରନ୍ତି ସମର
ସେ ପକ୍ଷର ଜୟ ହେବ ସଂଶୟ ନ କର ।୧୨୦
ମିତ୍ର ପକ୍ଷକୁ ସକଳେ ହୁଅ ହେ ସହାୟ
ଜୟ ସୁନିଶ୍ଚିତ କେହ୍ବ ନ କର ସଂଶୟ ।୧୨୧
ମିତ୍ର ପକ୍ଷକୁ ସକଳେ ଦେବା ଯେବେ ବଳ
ହାରି ପଳାଇବ ତେବେ ହର ହିଟଲର ।୧୨୨
ଇଟାଲି ରୁଷିଆ ବାନ୍ଧିଛନ୍ତି ଏକ ମେଣ୍ଟ
ବୋଲୁଛନ୍ତି ଶୁଣ ଆରେ ଆମେରିକା ଖଣ୍ଡ ।
ଇଉରୋପ ସମରକୁ କେବେହେଁ ନ ଆସ
ଆସିଲେ ତୋହର ନିଶ୍ଚେ ହେବ ସର୍ବନାଶ ।
ଇଂରେଜମାନେ ଅଟନ୍ତି ବଡ଼ଇ ଚତୁର
ତାହାଙ୍କ ସମାନେ ପୃଥିବୀରେ ନାହିଁ ବୀର ।୧୨୫
ଧନ୍ୟ ତାହାଙ୍କ ସାହସ ଧନ୍ୟ ତାଙ୍କ ଯୁକ୍ତି
ତୋପ ଗୁଳିଗୁଳାକୁ ତାଙ୍କର ନାହିଁ ଭୀତି ।୧୨୬
ଟିଲା କବଲଙ୍କୁ ରଖି ନିରାପଦ ସ୍ଥାନେ
ବୀରମାନେ ସମର କରନ୍ତି ପ୍ରାଣପଣେ । ୧୨୭
ପଛଘୁଞ୍ଚା ନାହିଁ କେବେ ବୀରଙ୍କ ଜାତକେ
ମରନ୍ତି ନାହିଁ ସେମାନେ ଡରଣ ଆତଙ୍କେ ।୧୨୮

ଦୁର୍ବଳ ରାଜ୍ୟକୁ ସେହୁ ଦେବେ ବୋଲି ବଳ
ଏ ମହାଘୋର ଆହବେ ପଶିଲେ କେବଳ ।
ପର ଉପକାରପାଇଁ ଟୁଙ୍ଗାରିଲେ ମୁଣ୍ଡ
ଏବେ ନିଜରାଜ୍ୟପାଇଁ ହେଲେ ଲଣ୍ଡଭଣ୍ଡ ।୧୩୦
ତଥାପି ଟଳେନେହେଁ ନାହିଁ ତାଙ୍କର ଖାତିର
ପଣ କରିଛନ୍ତି ସେହୁ ପର ଉପକାର । ୧୩୧
ଭାରତର ବଡ଼ଲାଟ କଲେକ ଘୋଷଣା
ଜାଣ ହେ ସକଳ କଥା ଅଟଇ ଠିକଣା ।୧୩୨
ଇଟାଲି ସଙ୍ଗେ ସମର କଲାକ ଭାରତ
ଇଟାଲି ଲୋକ ଭାରତେ ବନ୍ଦୀ ସୁନିଶ୍ଚିତ ।୧୩୩
ଭାରତବାସୀଙ୍କି ଡାକୁଛନ୍ତି ବଡ଼ଲାଟ
ଭାରତ ରକ୍ଷାପାଇଁକ ସର୍ବେ ବାନ୍ଧ ମେଣ୍ଟ ।୧୩୪
ସମର ଖବର ଶୁଣି ନ ମଣ ଆତଙ୍କ
ଗୃହ ଭଦ୍ରରକ୍ଷିତ ସର୍ବେ ହୁଅ ହେ ନିଶଙ୍କ ।୧୩୫
ଭାରତ ସ୍ଵୟଂ ସେବକ ପଣେ କାମ କର
ରକ୍ଷାକର ନିଜ ନିଜ ଦେଶ ବା ନଗର ।୧୩୬
ଯୁଦ୍ଧକର୍ମେ ସହାୟତା କରିବେ ଏମାନେ
ପୁଲିସ ସହିତ ଜଗୁଆଳି ସ୍ଥାନେ ସ୍ଥାନେ ।୧୩୭
ଭାରତବାସୀଙ୍କି ଏବେ ମିଳିଲା ସୁଯୋଗ
ଯୁଦ୍ଧକର୍ମେ ସେମାନଙ୍କ ଶକ୍ତି ହେବ ଯୋଗ ।
ମହାଭାରତ ସମର ଶେଷ ହେବା ଦିନୁ
ସମର ବିଦ୍ୟା ପାଶୋରି ହୋଇଅଛୁ ମନୁ ।୧୩୯
ଇଂରେଜଙ୍କ ବାହୁଚ୍ଛାୟା ତଳେ ଶାନ୍ତି ଭୋଗି
ସମର ବିଦ୍ୟାରେ ଲୋକେ ହେଲେ ବଇରାଗି ।
ବାଡ଼ ଖଣ୍ଡେ ଧରିବାକୁ ଶକ୍ତି ନାହିଁ କାର
ଯୁଦ୍ଧ ବାରତା ଶୁଣିଲେ ଗୃହ ଥରହର ।୧୪୧
ଏବକାଳ ଯୁଦ୍ଧ ପୁଣି ଆନ ପରକାର
ନୁହେଁ ମଲ୍ଲଯୁଦ୍ଧ ନାହିଁ ଖଣ୍ଡା ତରବାରି । ୧୪୨

ଆକାଶ ପାତାଳ ଜଳ ସ୍ଥଳେ ହୁଏ ରଣ
ଗୁଳିଗୋଳା ତୋପ ବାଷ୍ପ ଆକାଶ ବିମାନ ।
ଏ ସକଳ ଅସ୍ତ୍ର ଶସ୍ତ୍ର ଯେ ଗୃଳପାରିବ
ସମର ବିଦ୍ୟାରେ ସେହୁ ବିଶାରଦ ହେବ ।୧୪୪
ଲୋକବଳ ଭାରତର ନାହିଁ କିଛି ଊଣା
ସମର ବିଦ୍ୟା ନ ଶିଖି ବୁଦ୍ଧି ହୁଏ ବଣା । ୧୪୫
ଯେବେ ଏମାନେ ସୁବିଧା ସୁଯୋଗ ପାଇବେ
ଆନ ଜାତି ସମକକ୍ଷ ହୋଇ ସେ ଲଢ଼ିବେ ।୧୪୬
ଭାରତ ପାରଗ ଥିଲେ ସମର ବିଦ୍ୟାରେ
କୋଟି କୋଟି ସୈନ୍ୟ ଆଜ ଯାଇ ସ୍ୱଚ୍ଛନ୍ଦରେ ।
ଫ୍ରାନସ ରଣ ପ୍ରାଙ୍ଗଣେ ହେଲାବେଳେ ରୁଣ୍ଡ
ଦେଖି ବଇରୀର ହୃଦ ହୁଅନ୍ତା ଦ'ଖଣ୍ଡ ।୧୪୮
ଇଂରେଜ ଏ ଭାରତକୁ ଶିକ୍ଷା ଦେଇନାହିଁ
ସାଜିଁଛିଲା କାଣ୍ଡ ଏବେ ଯୁଦ୍ଧକୁ ନ ପାଇ । ୧୪୯
ନିର୍ବୀର୍ଯ୍ୟ ଭାରତ ଏବେ ଅଟେ ନିଃସହାୟ
ଯୁଦ୍ଧ ଡାକ ଶୁଣି କର୍ଣ୍ଣେ ବୋଲେ ହାୟହାୟ ।
ପଞ୍ଚତିଶ କୋଟି ଲୋକ ଅଛନ୍ତି ଭାରତେ
ସମର ବିଦ୍ୟା ନିପୁଣ ଶୁଣିଲେ ଜଗତେ ।୧୫୧
କମ୍ପମାନ ହେଉଥାନ୍ତା ଏ ବାରତା ଶୁଣି
ଭାରତ ଉପରେ ଦୃଷ୍ଟି ପକାନ୍ତା କି ପୁଣି ।୧୫୨
ଭାରତକୁ ଅବିଶ୍ୱାସ କଲ ଏତେକାଳ
ତେଣୁ ଫଳନ୍ତି ଭାରତେ ଏମନ୍ତ କୁଫଳ । ୧୫୩
ଅଳଙ୍ଖଳ କଲଣି ଭାରତ ଏତେକାଳ
ତଥାପି ଅଛି ସମୟ ଯାଇନାହିଁ ବେଳ । ୧୫୪
ଦୋଦୋପାଞ୍ଚ କରି ମୁର ସାହେବ ବୋଲନ୍ତି
ସମାଧା ହେବ ଭାରତ ସମସ୍ୟା ଝଟତି । ୧୫୫
ସରକାର ମୁଖୁଁ ଯେବେ ନିର୍ଗତ ବଚନ
ଶୁଣନ୍ତେ ଭାରତବାସୀ ଯେବେ ଆଜଦିନ ।୧୫୬

କାଳକ ଅବସ୍ଥା ସବୁ ଯାଆନ୍ତା ବଦଳି
ଗୁଡ଼ ଫୁଲଇ ଉଠନ୍ତେ ମଣି ମହାବଳୀ । ୧୫୭
ଯାଳ ଆଣିଲ ଭାରତ ତୁମ୍ଭେ ଏତେ ଦିନ
ତୁମ୍ଭ ସାଥି ଛାଡ଼ିବାକୁ ନାହିଁ କାର ମନ । ୧୫୮
ତୁମ୍ଭପରି ବୀର ଯେବେ ଭାରତ ନ ହେବ
ସାଥିରେ ଥିଲେ ତୁମ୍ଭର କି କାମେ ଆସିବ ।
ତବ ସାଥିରେ ଭାରତ ସମକକ୍ଷ ହୋଇ
ଲଢ଼ିଲେ ତାର ବୀରତ୍ୱ ଦେବ ସେ ଦେଖାଇ ।
ନ ଥିଲା ଭାରତ କେବେ ଭୀରୁ କାପୁରୁଷ
ଭାରତ ବୀରତ୍ୱ ଘୋଷୁ ଅଛି ଇତିହାସ । ୧୬୧
ଭାରତ ବୀରତ୍ୱ ଯେବେ ଜାଗ୍ରତ ହୋଇବ
କି କରିପାରେ ଭାରତ ପୃଥିବୀ ଦେଖିବ । ୧୬୨
ଭାରତ ଇଂରେଜ ପକ୍ଷେ ପୂର୍ଣ୍ଣପ୍ରାଣ ଦେଇ
ସମର ପ୍ରାଙ୍ଗଣେ ଯେବେ କରିବ ଲଢ଼ାଇ । ୧୬୩
କାର ସାଧ ଅଛି ଇଂରେଜକୁ ହଟାଇବ
କେତେ ହିଟଲର କାହିଁ ପାଣି ଫାଟିଯିବ । ୧୬୪
ରଣ ଉନ୍ମାଦନା ସବୁ ଲୋପ ପାଇଯିବ
ସମଗ୍ର ଧରାରେ ଶାନ୍ତିଦେବୀ ବିରାଜିବ । ୧୬୫
ଆହେ ମହାପ୍ରଭୁ ତୁମ୍ଭେ ଜଗତ କରତା
ହରତାକରତା ତୁମ୍ଭେ ଦଇବ ବିଧାତା । ୧୬୬
ହିଅ ମହାପ୍ରଭୁ ଏ ଲୋକଙ୍କୁ ଦିବ୍ୟଜ୍ଞାନ
ସକଳେ ତ ମହାପ୍ରଭୁ ତୁମ୍ଭର ସନ୍ତାନ । ୧୬୭
ଧରିଛ କମ୍ପାଇ ପ୍ରଭୁ ସଂହାର ମୂରତି
କି ବୁଝିବ ପ୍ରଭୁ ମୋର ଅତି ମୂଢ଼ମତି । ୧୬୮
ଶ୍ରୀଚରଣେ ପ୍ରଭୁ ମୋର ଏହି ନିବେଦନ
ସଂହାର ମୂରତି ବେଗେ କର ସମ୍ବରଣ । ୧୬୯
ଶାନ୍ତିଧାରା ପ୍ରବାହିତ ହେଉ ଭୂମଣ୍ଡଳେ
ଭୂଷିତ ହୋନ୍ତୁ ଧରଣୀ ନର ଗୁଣମାନେ । ୧୭୦

ବୋଲେ ଦୀନ ଜଗବନ୍ଧୁ ଆହେ କୃପାସିନ୍ଧୁ
ଅନାଥର ନାଥ ଜଗନ୍ନାଥ ଦୀନବନ୍ଧୁ । ୧୭୧
ବିନା କଷଣେ ମରଣ ମହାପ୍ରଭୁ ଦେବ
ତବ ନାମ ସୁମରି ଏ ଜୀବ ଗ୍ଳ୍ଲପିବ । ୧୭୨

ଇତି ଶ୍ରୀ ଭାରତ-ଚରିତାମୃତେ କଳି ପ୍ରତାପ ବର୍ଣ୍ଣନେ ଏକଶତ ଚାରି ଅଧ୍ୟାୟଃ ।



# ଏକଶତ ପାଞ୍ଚ ଅଧ୍ୟାୟ

### ଗଜର ଉବାଚ

ଉରୁପା ଦେଶେ ଲାଗିଛି ରଣ ଭୟଙ୍କର
କେତେ କେତେ ରାଜ୍ୟ ଧ୍ୱଂସ ହେଲାଣି ନକର । ୧
କି ହେବ ଭାରତ ଦଶା ବୁଝିପାରୁ ନାହିଁ
ଆପଣଙ୍କୁ ଜଣାଥିବ କହନ୍ତୁ ବୁଝାଇ । ୨

### ଜଗା ଉବାଚ

ଜାଣନାହିଁ କି ଗଜର ଇଂରେଜଙ୍କ ବଳ
ଧର୍ମ ଯୁଦ୍ଧ କରୁଛନ୍ତି ସେ ପରା କେବଳ । ୩
ଲଢୁଛନ୍ତି ଦୁର୍ବଳକୁ ବଳ ଦେବାପାଇଁ
ବେଳେ ବେଳେ ଈଶ୍ୱରଙ୍କୁ ଡାକୁଛନ୍ତି ସେହି । ୪
ଯେଉଁ ପକ୍ଷରେ ରହିବେ ହରି ଯୋଗେଶ୍ୱର
ସେ ପକ୍ଷର ଜୟଲାଭ ହୋଇବ ନକର । ୫
ସେହି ଇଂରେଜଙ୍କ ବାହୁଚ୍ଛାୟା ତଳେ ରହି
ଭାରତର ଚିନ୍ତା ଦକ ଭୟ ଭ୍ରାନ୍ତି ନାହିଁ । ୬
ସମରର ଦାଉ ବୁଝି ନପାରେ ଭାରତ
ସକଳ ବୃତ୍ତାନ୍ତ ଶୁଣି ରହିଛି ନିର୍ଭ୍ରାନ୍ତ । ୭

ଏପରି ଜଣେ କେ ଅଛି ଏ ମହୀମଣ୍ଡଳେ
ଇଂରେଜମାନଙ୍କୁ ଜିଣିପାରେ ବାହୁବଳେ । ୮
ନଉବାହିନୀ ତାଙ୍କର ଅଟେ ମହାବଳୀ
ତାହାକୁ ସମରେ କେହି ନ ପାରିବେ ବଳି ।୯
ପାର୍ଲାମେଣ୍ଟ ସ୍ଥଳେ ଧରାତଳ ବିପତରେ ଥାଇ
ଜୟ ହେବ ଜୟ ହେବ ବୋଲନ୍ତି ଭୁଝାଇ ।୧୦
ଭାରତକୁ କହୁଛନ୍ତି ଦେଇ ସେ ଅଭୟ
କିଛି ଚିନ୍ତା ନାହିଁ ତଳେ କରନାହିଁ ଭୟ ।୧୧
ଅବଶ୍ୟ ଜୟୀ ହୋଇବ ଏ ଇଂରେଜ ଜାତି
ଧରାଧାମେ ଅବଶ୍ୟ ଟେକିବ ଜୟ ଛତି । ୧୨
ଯାବତ ଇଂରେଜ ଜାତି ପିଣ୍ଡେ ପ୍ରାଣ ଥିବ
ତାବତ ଜର୍ମାନୀ ସଙ୍ଗେ ସମର କରିବ । ୧୩
ବଡ଼ ନୃଶଂସ ପ୍ରତାପୀ ହର ହିଟଲର
ତାର ଦମ୍ଭ ଦର୍ପ ଗର୍ବ ହେବ ଚୁରମାର । ୧୪
ଭାରତମନ୍ତ୍ରୀ ଆମେରି ବୋଲୁଛନ୍ତି ଶୁଣ
ନହୁଅ ନିରାଶ ହେ ଭାରତ ପ୍ରଜାଗଣ । ୧୫
ଆମ୍ଭପରି ତୁମ୍ଭେମାନେ ହୋଇବ ସ୍ୱାଧୀନ
ଦେଖାଇ ପାରିବ ଯେବେ ତବ ଯୋଗ୍ୟପଣ ।
ସମ୍ପ୍ରଦାୟ ଭେଦ ଯେବେ ତୁଟାଇ ପାରିବ
ସ୍ୱାଧୀନତା ଲାଭ ବେଳ ନିକଟାଇଯିବ । ୧୭
ଘଟିଛି ସୁଯୋଗ ଏବେ ଇଚ୍ଛା କର ଯେବେ
ଦେଖାଅ ତବ ଶକତି ଏ ମହା ଆହବେ । ୧୮
ବଡ଼ ଲାଟ ଲିନଲିଥଗୋ କହୁଛନ୍ତି ଶୁଣ
ହେ ଭାରତବାସୀ କିଛି ଆତଙ୍କ ନ ମଣ । ୧୯
ପ୍ରତି ପ୍ରଦେଶରେ ଯୁଦ୍ଧ ସମିତି ବସାଅ
ଭେଦଭାବ ଭୁଲି ସର୍ବେ ଏକମୁଖ ହୁଅ । ୨୦
କାୟମନବାକ୍ୟେ ସାହା ହୁଅ ଏତେବେଳେ
ଯଥାଶକ୍ତି ଧନ ଜନ ଦିଅ ଏହି କାଳେ । ୨୧

ସ୍ୱାଧୀନ ହେବାକୁ ତୁମ୍ଭେ କରୁଅଛ ମନ
ଦେଖାଅ ଏ କାଳେ ତବ କାରଗର ପଣ ।୨୨
ନିଜ ଦେଶ ନିଜେ ରକ୍ଷା କରିବାକୁ ଶିଖ
ଏ ସନ୍ଧିବେଳରେ ସବୁ ହୋଇବ ପରଖ । ୨୩
ଇଂରେଜର ଏ ଯୁଦ୍ଧରେ ସ୍ୱାର୍ଥ କିଛି ନାହିଁ
ନ୍ୟାୟ ନୀତିପାଇଁ ଏକା କରୁଛି ଲଢ଼ାଇ । ୨୪
ଦେଖ ହିଟଲରଙ୍କର ନୃଶଂସ ବେଭାର
ବିଗୁଡ଼ୁଛି ଏ ଧରାରେ ହେବ ଏକେଶ୍ୱର । ୨୫
ଆପଣା ପଶୁବଳରେ ସକଳଙ୍କୁ ମାରି
ଜିଣିବ ନିଧୁର ବୋଲି ଅଛି ସେ ବିଗୁରି । ୨୬
ସ୍ୱାଧୀନତା ପୃଥିବୀରୁ ଲୋପ କରିଦେବ
ସବୁ ଜାତିଙ୍କ ତାହାର ଅଧୀନ କରିବ । ୨୭
ଏହା ଗରବ କରିଣ କରୁଛି ଲଢ଼ାଇ
କାଳ କି ସହିବ ତାର ଏ ବୃଥା ବଡ଼ାଇ ।୨୮
ଫ୍ରାନସକୁ ଜିଣି ମନେ ଗରବ ତାହାର
ବୋଲୁଅଛି ବେଗେ ଆତ୍ମସମର୍ପଣ କର । ୨୯
ଜାଣିନାହିଁ ହିଟଲର ବ୍ରିଟିଶ ପ୍ରତାପ
ବଢ଼ୁଅଛି ତାର ବଳ ଅଟଇ ଅମାପ । ୩୦
ବ୍ରିଟିଶ କେଶରୀ ସଙ୍ଗେ ଲଢ଼ୁ ଦେଖି ହାତେ
ଜଣାପିବ ତାହାର ବିକ୍ରମ ଅଛି କେତେ । ୩୧
ଗତ ଯୁଦ୍ଧେ ବଳ ତାର ହୋଇଥିଲା ଧ୍ୱଂସ
ସେହିଦିନୁ ମନେ ପୋଷିଥିଲା ମହାରୋଷ । ୩୨
ନିରସ୍ତ୍ର ହୋଇ ସେ କାଳୁ ଅଛି ଜଣାଗଲା
ଗୁପତରେ ନାନା ଅସ୍ତ୍ର ଶସ୍ତ୍ର ତିଆରିଲା । ୩୩
ଜର୍ମାନୀ ନିରସ୍ତ୍ର ବୋଲି ସକଳେ ନିଶ୍ଚିନ୍ତ
ଅଜଣା ଅଶୁଣା ଭାବେ କଲା ଅସ୍ତ୍ର ଶସ୍ତ୍ର । ୩୪
ଗୁପତରେ ନାନା ଅସ୍ତ୍ର ରଖିଲା ସାଇତି
ଆନ ଜାତି ଲୋକେ ଏ ବିଷୟ ନ ଜାଣନ୍ତି ।

ସବୁରି ବଳ କଳିଲା ଗୁପ୍ତଚର ରଖି
କେହି ସ୍ୱପନେ ଏ କଥା ନ ପାରିଲେ ଲକ୍ଷି ।
ନାନା ପ୍ରକାର ମାରଣ ଅସ୍ତ୍ର ସାଇତିଛି
କେତେବେଳେ କେଉଁ ଅସ୍ତ୍ର ପ୍ରୟୋଗ କରୁଛି ।
ଉଡ଼ାଜାହାଜ ସାଇତି ଅଛି ପଣପଣ
ଉପରୁ ରାଜ୍ୟମାନଙ୍କୁ କରେ ଆକ୍ରମଣ । ୩୮
ପୋଖରୀ ଅସ୍ତ୍ର ତାହାର ବଡ଼ ଚମତ୍କାର
ଆଗ୍ନେୟାସ୍ତ୍ର ପରି ଅଗ୍ନି କରଇ ଉଦ୍‌ଗାର ।
କୁହୁଡ଼ିବାଣ ତାହାର ବଡ଼ ଭୟଙ୍କର
ଦିବସରେ ଦେଶ ଗ୍ରାମ ହୁଅଇ ଅନ୍ଧାର । ୪୦
ଆକାଶ ଛତାବାହିନୀ ଉପରୁ ଖସାଇ
ଆଶ୍ଚର୍ଯ୍ୟ ପ୍ରକାରେ ସେହୁ ଆସନ୍ତି ଓହ୍ଲାଇ ।୪୧
ଏହିପରି କରି ନାନା କଳ କଉଶଳ
ଗୋଟି ଗୋଟି ରାଜ୍ୟ କେତେ କଲାଣି କବଳ ।
ଲକ୍ଷ ଲକ୍ଷ ଲୋକ ମାରି ନ ମେଣ୍ଟେ ପିପାସା
ଦିନୁଦିନ ବଢ଼ୁଅଛି ତାର କ୍ରୂର ଆଶା । ୪୩
ତିରିଶ ଲକ୍ଷ କୁକୁର ଏକା ଦିନକରେ
ମରାହେଲେ ହିଟଲର କ୍ରୂର ଆଦେଶରେ ।୪୪
ଏ କୁକୁରମାନେ ଯେଉଁ ଖାଦ୍ୟ ଖାଉଥିଲେ
ବଳିପଡ଼ିବ ଅବଶ୍ୟ ସଂଖ୍ୟା ଊଣାହେଲେ ।୪୫
ସେ ବଳକା ଖାଦ୍ୟମାନ ମଣିଷ ଖାଇବେ
କେତେମାସ ଖାଇପିଇ ସୁଖରେ ଚଳିବେ ।୪୬
ବହୁତ ସଂଖ୍ୟକ ସୈନ୍ୟ ରଖିଛି ସାଇତି
ଡ଼ରାଇ ଥରାଇ କରୁଅଛି ଅଗ୍ରଗତି । ୪୭
ଧନ୍ୟ ଏ ଫରାସୀ ଜାତି ଧନ୍ୟ ତାଙ୍କ ଧୃତି
ବହୁ ଅସୁବିଧା ଏଡ଼ି ଏମାନେ ଲଢ଼ନ୍ତି । ୪୮
ଧନ୍ୟ ତାହାଙ୍କ ସାହସ ଧନ୍ୟ କଉଶଳ
ଖସି ଆସୁଛନ୍ତି ଏଡ଼ି ଶତ୍ରୁର କବଳ । ୪୯

ପୁରୁଣାକାଳିଆ ମନ୍ତ ଧରି ଲଢ଼ୁଥିଲେ
ଜର୍ମାନର ନବ ମନ୍ତ ଜାଣି ନ ପାରିଲେ । ୫୦
ତେଣୁ ଜର୍ମାନ ସଇନ ହେଲେ ଆଗଭର
ଗୋଟାକ ପରେ ଗୋଟାଏ ଦୁର୍ଗ ଅଧିକାର ।୫୧
ଫରାସୀ ସଇନମାନେ ନ ଦେଖି ଉପାୟ
ସନ୍ଧି କରିବାପାଇଁକି କଲେକ ନିଶ୍ଚୟ । ୫୨
ବିନା ସର୍ତ୍ତରେ କର ଆତ୍ମସମର୍ପଣ
ଉତ୍ତରରେ ହିଟଲର ବୋଲେ ଏ ବଚନ ।୫୩
ପାରିସ ଅଟଇ ଫ୍ରାନସର ରାଜଧାନୀ
ଧନ ରତନରେ ପୂର୍ଣ୍ଣ ସୌନ୍ଦର୍ଯ୍ୟର ଖଣି । ୫୪
ଫରାସୀ ଲୋକେ ଅଟନ୍ତି ବଡ଼ ରୁଚିପ୍ରିୟ
ନିତି ନିତି ନବ ରୁଚି କରୁଥାନ୍ତି ଥୟ । ୫୫
ଅସନ ବସନ ବିଳାସରେ ପରିପୂର୍ଣ୍ଣ
ବଡ଼ ଆନନ୍ଦରେ ଲୋକେ କାଟୁଥିଲେ ଦିନ ।୫୬
ଏବେ ବିଷମ ବିପତ୍ତି ପଡ଼ିଲା ଦେଶରେ
ପ୍ରାଣ ପଣକରି ଲୋକେ ସମରେ ଲଢ଼ିଲେ ।୫୭
ଆଉ ନ ପାରିବେବୋଲି ଶାନ୍ତି ଲୋଡ଼ା କଲେ
ହିଟଲର କଠୋର ବଚନ ଶୁଣାଇଲେ । ୫୮
ନଗର ଛାଡ଼ି ଫରାସୀ ଲୋକେ ପଳାଇଲେ
ପାରିସ ନଗରୁ ରାଜଧାନୀ ଉଠାଇଲେ । ୫୯
ଘରଦ୍ୱାର ଛାଡ଼ି ଲୋକେ ହେଲେ ଅସ୍ତବ୍ୟସ୍ତ
ନଗର ଛାଡ଼ି ଗ୍ରାମକୁ ଗଲେକ ସମସ୍ତ । ୬୦
ଯେ ଦୁଃଖ ଦୁର୍ଦ୍ଦଶା ଘୋଟିଅଛି ସେ ଦେଶରେ
ସହଜରେ ଆସୁନାହିଁ ଆନ କଳ୍ପନାରେ । ୬୧
ଲାଗିଅଛି ଘୋର ରଣ ଫ୍ରାନସ ଦେଶରେ
ମେଦିନୀ କମ୍ପୁଛି ଗୁଳିଗୁଳା ଶବଦରେ । ୬୨
ଘୋର ଘର୍ଘର ନିନାଦ କରୁଛି କମାଣ
ଢୁ ଢା ଗୁଡ଼ୁମ ଶବଦେ ଦେଶ କମ୍ପମାନ ।୬୩

ଆକାଶ ବିମାନ ଦେଉଅଛି ଘୋର ରଡ଼ି
ଗୁଳି ଗୁଳା ପଡ଼ି ଘର ଗ୍ରାମ ଦିଏ ପୋଡ଼ି । ୬୪
କେତେ ପୁରୁଷର ଘରକରଣା ଜିନିଷ
ପଲକ ମାତ୍ରକେ ସବୁ ହେଉଛି ପାଉଁଶ । ୬୫
ସମୃଦ୍ଧିଶାଳୀ ନଗର ଅଟଇ ପାରିସ
ଧନବନ୍ତ ଜନଙ୍କର ଫ୍ରାନସରେ ବାସ । ୬୬
ଯିହୁଦୀମାନେ ଧନବନ୍ତ ଅଟନ୍ତି ଏ ଦେଶେ
ଛାରଖାର ହୋଇଗଲା ଏ ସମର ଶେଷେ । ୬୭
ବାଧ୍ୟହୋଇ ସନ୍ଧିପତ୍ରେ କଲକ ସ୍ୱାକ୍ଷର
ରାଜି ହେଲା ଯା କହିଲା ହର ହିଟଲର । ୬୮
ଗତଥର ଯୁଦ୍ଧବେଳେ ଯାହା ଘଟିଥିଲା
ଯେପରି ଜର୍ମାନୀ ବାଧ୍ୟହୋଇ ସନ୍ଧିକଲା । ୬୯
ସେ ନାଟକ ଅଭିନୀତ ହୋଇଲା ନିକର
ପ୍ରତିହିଂସା ପୂର୍ଣ୍ଣଭାବେ ସାଧିଲା ଏଥର । ୭୦
ଯେଉଁ ଅପମାନ ଜରମାନୀ ପାଇଥିଲା
ଏଥର ତାଠାରୁ ବଳି ଅପମାନ ଦେଲା । ୭୧
ଯେଉଁଠାରେ ହୋଇଥିଲା ସେ ସନ୍ଧି ସ୍ୱାକ୍ଷର
ସେହିଠାରେ ସନ୍ଧିକଲା ଫ୍ରାନସ ନିକର । ୭୨
କେତେବେଳେ ଗାଡ଼ିପରେ ନାହା ନଦାହୁଏ
ନାହାପରେ କେତେବେଳେ ଗାଡ଼ି ବୁହାଯାଏ ।
ଏ ତ ସଂସାରର ନୀତି କେ ଆନ କରିବ
ତଥାପି ତ ଶେଷ ହୋଇନାହିଁ ଏ ଆହବ ।୭୪
ଫରାସୀ ଦୂତ ଇଟାଲି ଦେଶେ ଯାଇଅଛି
ଉଡ଼ା ବିମାନରେ ଯାଇ ସେଠାରେ ପହଞ୍ଚି ।୭୫
ଇଟାଲିଠାରୁ ସମ୍ମତି ଯେବେ ସେ ଆଣିବ
ତେବେ ସନ୍ଧି ପ୍ରସ୍ତାବଟି ସାରା ହୋଇଯିବ ।୭୬
ତହିଁପରେ ଛଅ ଘଣ୍ଟାକାଳ ଗତ ହେବ
ସମର ଅନଳ ତେବେ ସେ ଦେଶୁଁ ଲିଭିବ ।୭୭

ଏହି ସରତରେ ସନ୍ଧି ହେବ ସ୍ଥିରହେଲା
ସ୍ମୃତିସ୍ତମ୍ଭ ଫ୍ରାନସରୁ ଜର୍ମାନୀକି ଗଲା । ୭୮
ଜର୍ମାନୀ ଯେ ହାରିଥିଲା ବିଗତ ସମରେ
ତାର ସ୍ମୃତି ନ ରହିବ ଫ୍ରାନସ ଦେଶରେ ।୭୯
ବେଲଜିଅମ ରାଜନ ଛାଡ଼ି ସିଂହାସନ
ହିଟଲର ପାଶେ କଲା ଆତ୍ମସମର୍ପଣ । ୮୦
ହଲାଣ୍ଡ ଦେଶ ତ ଆତ୍ମସମର୍ପଣ କଲା
ଗୋଟିକ ପରେ ଗୋଟିଏ କେତେ ରାଜ୍ୟ ଗଲା ।
ଗାନ୍ଧି ବୋଲୁଛନ୍ତି ହିଟଲର ଯାହା କଲା
ନିର୍ମମ ଉଲଗ୍ନ ଶକ୍ତି ମାତ୍ର ଦେଖାଗଲା । ୮୨
ଜଡ଼ବିଜ୍ଞାନ ବଳରେ ଏ ଶକ୍ତି ଗୃହୀତ
ଦେଖାଗଲା ନାହିଁ ଏଥି କିଛିହିଁ ବୀରତ୍ୱ । ୮୩
ଫ୍ରାନସ ମାନ ମର୍ଯ୍ୟାଦା ଜଗି ସନ୍ଧି କଲା
ତାହାର ବୀରତ୍ୱ ଏ ସନ୍ଧିରେ ପ୍ରକଟିଲା । ୮୪
ଏତେ ରାଜ୍ୟ ନେଇ ହିଟଲର କି କରିବ
ବୃହତ ଆକାରେ ସିନା ସାମ୍ରାଜ୍ୟ ଗଢ଼ିବ ।୮୫
ହଜମ କରିପାରେ କି ଏତେ ଶକ୍ତି ଗିଳି
ଅଳପ ଦିନରେ ପକାଇବ ସେ ଉଦ୍‌ଗାରି ।୮୬
ଅତି ବଡ଼ ସାମ୍ରାଜ୍ୟ ଗଠନ କରିଦେବ
ଜର୍ମାନୀ ଲୋକଙ୍କ ମୁଣ୍ଡେ ବୋଝ ଲଦା ହେବ ।
ଉତ୍ତମ ଶାସନ ଯେବେ କରି ନ ପାରିବେ
ଏଡ଼େବଡ଼ ସାମ୍ରାଜ୍ୟ ସେ ହରାଇ ବସିବେ ।୮୮
ଯେଉଁମାନେ ଜର୍ମାନୀ ସହିତ ଯୁଦ୍ଧ କଲେ
ଅହିଂସା ନୀତିରେ କାମ କରି ନ ପାରିଲେ ।୮୯
ହରାଇ ବସିଲେ ରାଜନୈତିକ ଚରିତ୍ର
କ୍ଷତି ବିନା ଲାଭବାନ ନ ହେଲେ କିଞ୍ଚିତ ।୯୦
ହିଂସାଯୁଦ୍ଧର ଏ ଫଳ ଦେଖାଗଲା ଏବେ
ଅହିଂସା ଫଳ ଏପରି ନ ହୁଅନ୍ତା କେବେ ।୯୧

ନୈତିକ ଉନ୍ନତି ବହୁ ଉଚ୍ଚେ ଉଠିଥାନ୍ତା
ଆତ୍ମେ ଷତ ପ୍ରାଣେ ପୀଡ଼ା ଏତେ ନ ଘଟନ୍ତା ।
ଏଣେ ଭାରତରେ ଦେଖ କଂଗ୍ରେସ ବର୍ଗର
ଆଉ ଏକ ନୂଆ ମତ କଲେକ ପ୍ରଚାର । ୯୩
କାର୍ଯ୍ୟକାରୀ ସମିତିରେ ହୋଇଲା ସିଦ୍ଧାନ୍ତ
ଗାନ୍ଧିଙ୍କ ଅହିଂସା ମତ ହେଲେହେଁ ଉଚିତ ।୯୪
ଗାନ୍ଧି ଏ ମାର୍ଗରେ ଯେତେଦୂର ଯାଇଛନ୍ତି
ତେତେଦୂର ଯିବାପାଇଁ ନାହିଁ କାର ଶକ୍ତି ।୯୫
ଜନସାଧାରଣ ଏହା କରି ନ ପାରିବେ
ଅବଶ୍ୟ ତହିଁରେ ଭୁଲଭଟ୍ଟକା କରିବେ । ୯୬
ଏହି ଲୋକଙ୍କ ସହିତ କଂଗ୍ରେସ ଚଳିବ
ଅହିଂସା ନୀକତି ପୂରା ଧରିଲେ ନ ହେବ ।୯୭
ତେଣୁ କଂଗ୍ରେସ ଏ ମତ ମାନିବ ସତ୍ୟତ
ଦେଶକାଳପାତ୍ର ଭେଦେ ଚଳିବ ନିଶ୍ଚିତ । ୯୮
ଗାନ୍ଧି ସ୍ୱାଧୀନ ଭାବରେ ପାଳନ୍ତୁ ସେ ମତ
ଏଥିରେ କାହାରି କିଛି ନାହିଁକ ଆପତ୍ତି । ୯୯
ଆତ୍ମରକ୍ଷା ପାଇଁ ଯାହା ଆବଶ୍ୟକ ହେବ
କଂଗ୍ରେସ ତାହା ଅବଶ୍ୟ କାର୍ଯ୍ୟରେ କରିବ ।
ତେଣୁ କଂଗ୍ରେସ କହୁଛି ଦେଶବାସୀ ଶୁଣ
ଆତ୍ମରକ୍ଷା ପାଇଁ ତୁମ୍ଭେ କର ସଂଗଠନ । ୧୦୧
ଭାରତ ଦାବି ଇଂରେଜ ନ କଲେ ପୂରଣ
ଏ ଯୁଦ୍ଧରେ ସହଯୋଗ ନାହିଁ କଦାଚନ ।୧୦୨
ଯୁଦ୍ଧଋଣ ଯୁଦ୍ଧଚାନ୍ଦା ନ ଦେବ କହିତ
ନ ହୋଇବେ ନାଗରିକ ରକ୍ଷୀ ସେନାଭୁକ୍ତ ।
କଂଗ୍ରେସ ବିନା ଏ ମତ ଧରି ଚାଲିଛନ୍ତି
କଂଗ୍ରେସରୁ ଭିନ୍ନ ମତ ଅନେକ ଅଛନ୍ତି ।୧୦୪
ଧନ ଜନ ଦେଇ ସେ ସାହାଯ୍ୟ କରୁଛନ୍ତି
ଭାରତ ସେନା ସମରେ ଯାଇ ଲଢ଼ୁଛନ୍ତି ।୧୦୫

ଇଂରେଜଙ୍କ ବିଜୟ ମନାସି ଭାରତରେ
ଉପାସନା କରାଗଲା ଦେଉଳ ଭିତରେ ।୧୦୬

ଗଜର ଉବାଚ

ଫ୍ରାନସ ଯେ ସନ୍ଧି କଲା କହିଲେ ଆପଣ
ଜଣା ନ ଗଲା ତହିଁର କିଛି ବିବରଣ । ୧୦୭
ବୀର ପାଶେ ବୀର କଲେ ଆତ୍ମ ସମର୍ପଣ
ବୀର ଅବଶ୍ୟ ରଖଇ ବୀରର ସମ୍ମାନ । ୧୦୮
କି କି ସରତରେ ସନ୍ଧିପତ୍ର ଲେଖାଗଲା
କହନ୍ତୁ ତହିଁର ତଥ୍ୟ ଜଣା ତ ନ ଗଲା ।୧୦୯

ଜଗା ଉବାଚ

ତହିଁର ବିଷୟ ଶୁଣ କହୁଛି ଗଜର
ଯାହା ସବୁ ଲେଖିଅଛି ସମ୍ବାଦ ପତ୍ରର । ୧୧୦
ସନ୍ଧି ସରତ ଅଟଇ ବଡ଼ଇ କଠୋର
ଆତ୍ମରକ୍ଷା ପାଇଁ କରି ଦେଲାକ ସ୍ୱାକ୍ଷର । ୧୧୧
ଫ୍ରାନ୍ସର ସମଗ୍ର ପଶ୍ଚିମ ଉପକୂଳ
ତିନି ଭାଗ ଫ୍ରାନ୍ସର ସମସ୍ତ ଅଞ୍ଚଳ । ୧୧୨
ଜର୍ମାନୀର ଦଖଲରେ ଏ ସବୁ ରହିବ
ଦଖଲରେ ନେବାପାଇଁ ଯାହା ବ୍ୟୟ ହେବ ।
ଫ୍ରାନ୍ସ ସେ ବ୍ୟୟ ସବୁ କରିବ ବହନ
ନିରସ୍ତ୍ର ହେବେ ଫ୍ରାନ୍ସ ଦେଶ ସୈନ୍ୟଗଣ ।
ସୈନ୍ୟବାହିନୀ ସମସ୍ତ ଭାଙ୍ଗି ଦିଆଯିବ
ଖଣ୍ଡେ ଛୋଟିଆ ଅଞ୍ଚଳ ଫ୍ରାନ୍ସ ରଖିବ । ୧୧୫
ସେହିଠାରେ ରହିବ ଫ୍ରାନ୍ସ ସରକାର
ସାମାନ୍ୟ କେତେକ ସୈନ୍ୟ ରହିବ ତାହାର ।
କେତେ ସୈନ୍ୟ ରହିବେ ଠିକଣା ହେବ ପରେ
ଜର୍ମାନୀ ଇଟାଲି ସ୍ଥିର କରିବେ ବିଗ୍ରହରେ ।୧୧୭
ଫ୍ରାନସର ଅଛି ଯେତେ ତୋପ ଗୋଳା ଗୁଳି
ଉଡ଼ା ଜାହାଜ ପ୍ରଭୃତି ଅସ୍ତ୍ର ଶସ୍ତ୍ର ନଳି । ୧୧୮

ସମରପି ଦେବେ ସବୁ ଜର୍ମାନୀ ହାତରେ।
କିଛି ହେଲେ ନ ରଖିବେ ନିଜ ଅଧୀନରେ
ଫରାସୀ ସେନା ଫ୍ରାନସ ଦେଶର ବାହାରେ
ଯାଇ ନ ପାରିବେ କେହି ଜାଣ ନିଶ୍ଚୟରେ ।
ଫ୍ରାନସ ଇଙ୍ଗଲଣ୍ଡକୁ ସାହାଯ୍ୟ ନ ଦେବ
ବାଣିଜ୍ୟ ଜାହାଜ କାହିଁ ଯାଇ ନ ପାରିବ ।
ଫ୍ରାନସ ବାହାରେ ଯେ ଜାହାଜମାନ ଥିବ
ସେ ସବୁ ନିଜ ଦେଶକୁ ଫେରାଇ ଆଣିବ ।୧୨୨
ଫ୍ରାନସର ଅଛି ଯେତେ ସାମଗ୍ରୀ ଭଣ୍ଡାର
ଦୁର୍ଗ ବାଷ୍ପୀୟ ଶକଟ ଅଥବା ବନ୍ଦର । ୧୨୩
ପଥ ଘାଟ ବାଟ ଯାନ ବାହାନ ସମସ୍ତ
ଜର୍ମାନୀ ହାତରେ ଛାଡ଼ି ଦେବଟି ନିଶ୍ଚିତ । ୧୨୪
ଯେଉଁ ଅଞ୍ଚଳେ ଫ୍ରାନସ ସରକାର ହେବ
ସେଠାରେ ବେତାର ଯନ୍ତ୍ର କିଛି ନ ରହିବ ।
ଜର୍ମାନୀ ବନ୍ଦୀ ଅଛନ୍ତି ଯେତେ ଫ୍ରାନସରେ
ତୁରନ୍ତ ଖଲାସ ହେବେ ସନ୍ଧି ଅନୁସାରେ ।୧୨୬
ଇଟାଲି ଏ ସର୍ତ୍ତରେ ଦେଲାକ ମଞ୍ଜୁର
ଶେଷ ହୋଇଲା ଫ୍ରାନସ ସହିତ ସମର । ୧୨୭
ଫ୍ରାନସର ପ୍ରଧାନମନ୍ତ୍ରୀ ପେତେ ହୋଇଥିଲେ
ଏ ସନ୍ଧି ସର୍ତ୍ତ ହେଲା ତାହାଙ୍କ ଅମଳେ ।୧୨୮
କେ ତାଙ୍କୁ ପ୍ରଶଂସା କରେ କେ ଅବା ନିନ୍ଦୁଛି
କେତେ ପରକାର ଆଲୋଚନା ଲାଗିଅଛି ।
ପେତେ ବୋଲନ୍ତି ଏ ସନ୍ଧି ଯେଉଁପରି ହେଲା
ଫ୍ରାନସର ମାନ ସବୁ ଅକ୍ଷୁର୍ଣ୍ଣ ରହିଲା । ୧୩୦
ବିଲାତ ଲୋକ ବୋଲନ୍ତି ଏ ସନ୍ଧି କଠୋର
ଉଚିତ ନ ଥିଲା ଏ ପ୍ରକାର କରିବାର । ୧୩୧
କେତେକ ଫରାସୀ ଛନ୍ତି ବିଲାତ ଦେଶରେ
ସେମାନେ ରାଜି ନୁହନ୍ତି ଏହି ସର୍ତ୍ତରେ ।୧୩୨

ସେମାନେ ବୋଲନ୍ତି ଯୁଦ୍ଧ ଶେଷ ହେଲା ନାହିଁ
ଇଂରେଜଙ୍କ ସଙ୍ଗେ ମିଶି କରିବେ ଲଢ଼ାଇ ।
ଏହିପରି ଜଳ୍ପନା କଳ୍ପନା ଚାଲିଅଛି
ଦେଖାଯାଉ ଶେଷଫଳ କପରି ହେଉଛି । ୧୩୪
ଇଂରେଜ ସଙ୍ଗେ ଲଢ଼ିବା ନୁହଇ ସହଜ
କହିବା କରିବା ଅଟେ ଭିନ୍ନ ଭିନ୍ନ କାର୍ଯ୍ୟ ।
ଅଗାଧ ସମୁଦ୍ର ବକ୍ଷ ପାରି ଲୀଳାସ୍ଥଳ
ନଉବାହିନୀ ଯାହାର ଅଟେ ମାଳ ମାଳ । ୧୩୮
ଫେନିଳ ତରଙ୍ଗ ପରେ ଯାହାର ଶାସନ
ସେ ଇଂରେଜ କାର ଦାସ ନ ହୋଇବ ଜାଣ ।
ଯାବତ ଶାସନ ଥିବ ତରଙ୍ଗ ଉପରେ
କାର ସାଧ୍ୟ ଇଂରେଜଙ୍କୁ କେହି ଜିଣିପାରେ ।
ବହୁକାଳ ଏ ପ୍ରବାଦ ଚଳି ଆସୁଅଛି
ଆଜି କାଲର ଗୀତକା ନୁହେଁ ଏହା କଚ୍ଛି ।୧୩୯
ବିଲାତର ପାଟମନ୍ତ୍ରୀ ବୋଲନ୍ତି ଏମନ୍ତ
ଇଂରେଜମାନଙ୍କ ଜୟ ଅଟେ ସୁନିଶ୍ଚିତ ।୧୪୦
ଯାହାଙ୍କ ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଏ ନାହିଁ
ତାଙ୍କ ସଙ୍ଗେ ଲଢ଼ିବାକୁ କାର ଶକ୍ତି ନାହିଁ ।
ଏହିପରି ଏ ଅଧ୍ୟାୟ ହୋଇଲା ସମାପ୍ତ
କ ବରୁର ମନେଅଛି ପ୍ରଭୁ ଜଗନ୍ନାଥ । ୧୪୧
ବୋଲେ ଦୀନ ଜଗବନ୍ଧୁ ଏହି ବର ଦେବ
ଭାରତ ଗୋଡ଼ ଅଗରେ କଣ୍ଟା ନ ବହିବ ।

ଇତି ଶ୍ରୀ ଭାରତ-ଚରିତାମୃତେ ଫ୍ରାନ୍ସ ସମର ଚରିତ ବର୍ଣ୍ଣନେ ଏକଶତ ପଞ୍ଚମ ଅଧ୍ୟାୟଃ ।



# ଏକଶତ ଷଷ୍ଠ ଅଧ୍ୟାୟ

ଗଉର ଉବାଚ

କହିଲେ ଆପଣ ଯେତେ ଯେତେ କଥାମାନ
ଶୁଣିକରି ସନ୍ତୋଷ ହୋଇଲା ମୋର ମନ । ୧
ଦୁଇ ଗୋଟି ବିଷୟରେ ହେଉଛି ସଂଶୟ
ସାମ୍ରାଜ୍ୟକୁ ପଡ଼ିଅଛି ବିପତ୍ତି ନିଶ୍ଚୟ । ୨
ସରକାର ଏ ବିଷମ ସଂକଟ ବେଳରେ
ଲୋଡ଼ୁଛନ୍ତି ଭାରତ ସାହାଯ୍ୟ ଏ କାଳରେ ।୩
କଂଗ୍ରେସ ବୋଲେ ସାହାଯ୍ୟ କରିବ ନିଶ୍ଚୟ
ସରକାର ପ୍ରକାଶନ୍ତୁ ତାଙ୍କ ନୀତି ଅୟ । ୪
ଏପରି ଘଟଣା ଓଟରା ଲାଗିଛି ଭାରତେ
ପରାମର୍ଶ ଲାଗିଅଛି ଗାନ୍ଧିଙ୍କ ସହିତେ । ୫
ବଡ଼ ଲାଟ ସାହେବ ଗାନ୍ଧିଙ୍କି ଡାକିଛନ୍ତି
ଜିନାଙ୍କୁ ଡକାଇ ଆଲୋଚନା କରୁଛନ୍ତି । ୬
କି କର୍ତ୍ତବ୍ୟ ଭାରତର ଏ ସନ୍ଧି ବେଳରେ
କହନ୍ତୁ ଆପଣ ନିଜମତ ଏକ ବାରେ । ୭
କଂଗ୍ରେସ ଯେ ମନ୍ତ୍ରୀ କାର୍ଯ୍ୟ ଛାଡ଼ି ଚାଲିଗଲା
ଏ କାର୍ଯ୍ୟ କି କଂଗ୍ରେସର ଉଚିତ ହୋଇଲା ।୮
ଏ ଦୁଇ ବିଷୟେ ମନେ ଲାଗଇ ସଂଶୟ
ଆପଣ କହନ୍ତୁ ସାରସାର କରି ଅୟ । ୯

ଜଗା ଉବାଚ

ବଡ଼ ବଡ଼ କଥା ଏହା ଶୁଣ ହେ ଗଉର
ବାଡ଼ ବଡ଼ ଲୋକମାନେ କରନ୍ତୁ ବିଚାର । ୧୦
କ୍ଷୁଦ୍ର ମତି ମାନବ ମୁଁ କି କହିବି ଏହା
ମୋ ବୁଦ୍ଧିର ଅଗମ୍ୟ ବିଷୟ ଅଟେ ତାହା ।
ଗାନ୍ଧି, ଜବାହରଲାଲ, ଜିନା, ଗଭର୍ଣ୍ଣର
ରାଜଗୋପାଳଆଚାରି ଜଣେ ଧୁରନ୍ଧର । ୧୨

ଏକମତ ହୋଇପାରୁ ନାହାନ୍ତି ଏମାନେ
ଯୁକ୍ତି ତରକ ମୂଳରୁ ସୁନ୍ଦର ବଚନେ । ୧୩
ଏ ବିଚାର କରିବାକୁ ମୁଁ ନୁହେଁ ପାତର
କଏ ବା ମୋର ମତକୁ କରିବ ଖାତର । ୧୪
ସାନ ତୁଣ୍ଡେ ବଡ଼କଥା ଶୋଭା ନ ପାଇବ
ମୋ କଥା କାହାକୁ କେବେ ପସନ୍ଦ ନ ହେବ ।
ଖାଲି କାପୁରୁଷ ଅବା ବାତୁଳ ବୋଲିବେ
କେହି ବା କଥାକୁ ମୋର ହସେ ଉଡ଼ାଇବେ ।
ମୋଠାରୁ ବୁଦ୍ଧିଆ ଲୋକ ଅଛନ୍ତି ବହୁତ
ତାଙ୍କୁ ପଚାରିଲେ କହି ପାରନ୍ତି ସିଦ୍ଧାନ୍ତ । ୧୭
ଇଂରେଜ ଶାସନ କର୍ତ୍ତା ଅଟେ ଭାରତର
ବିପତ୍ତି ପଡ଼ୁଛି ଏବେ ସାମ୍ରାଜ୍ୟ ଉପର । ୧୮
ରାଜାର ବିପତ୍ତିବେଳେ ପରଜା ସହାୟ
ହୋଇବା ଭାରତ ଧର୍ମ ଅଟଇ ନିଶ୍ଚୟ । ୧୯
ହିନ୍ଦୁ ଶାସ୍ତ୍ରର ମରମ ଅଟଇ ଏମନ୍ତ
ବିପତ୍ତି ବେଳେ ସହାୟ ହୋଇବ ତୁରନ୍ତ ।୨୦
ଏ ଯେଉଁ ଯୁଦ୍ଧ ଜଞ୍ଜାଳ ଲାଗିଛି ସଂସାରେ
ଭାରତକୁ ଏ ପବନ ବହି ଆସିପାରେ ।" ୨୧
ତେତେବେଳେ ନ କରିବ ଭାରତ ବିଚାର
ଆତ୍ମରକ୍ଷା ବିଦ୍ୟା ତାକୁ ଅଜଣା ନିକର । ୨୨
ଯାବତ ଭାରତ ହୋଇ ନାହିଁଟି ସ୍ୱାଧୀନ
ତାବତ ଅଛି ଭାରତ ଇଂରେଜ ଅଧୀନ । ୨୩
ଭାରତର ରକ୍ଷା ଭାର ଇଂରେଜ ଉପରେ
ତେଣୁ ତାଙ୍କୁ ସାହାଯ୍ୟ କରିବ ଅବହେଳେ ।
ଆତ୍ମରକ୍ଷା ମାନବର ପ୍ରଧାନ ଧରମ
ଦାରଧର୍ମ ବିନମସ୍ତେ କରିବ ଏ କର୍ମ । ୨୫
ଧର୍ମଶାସ୍ତ୍ର କହୁଅଛି ଏହା ବାରବାର
ଆତ୍ମରକ୍ଷା ପ୍ରଥମ କର୍ତ୍ତବ୍ୟ ମାନବର । ୨୬

ଭାରତର ରକ୍ଷକ ଅଟନ୍ତି ଇଙ୍ଗରେଜ
ନିରସ୍ତ୍ର ଏ ଦେଶ ଲୋକେ କି କରିବେ କାର୍ଯ୍ୟ ।
ବିଦେଶୀ ଯେବେ ବା କେହି ଭାରତେ ଆସିବ
ଇଂରେଜ ବିନୁ ଭାରତ କି କରିପାରିବ । ୨୮
ତେଣୁ ଉଚିତ ଅଟଇ ସାହାଯ୍ୟ ଦେବାର
ଥାଉ ପଛେ ମତାନ୍ତର ନାନାବିଧ ପ୍ରକାର । ୨୯
ସାଧାରଣ ବୁଦ୍ଧି କି ଏମନ୍ତ ଦିଶୁଅଛି
ଏଥିରେ ସଂଶୟ ଲେଶମାତ୍ର ନାହିଁ କିଛି । ୩୦
କଂଗ୍ରେସର ଭାବ ଅଟେ ଆନ ପରକାର
ଯାବତ ଇଂରେଜ ନ କରିବେ ସ୍ୱୀକାର ।୩୧
ଭାରତ ସ୍ୱାଧୀନ ହେବବୋଲି ନ ମାନିବେ
ଭାରତ କାହିଁକି ସାହା ହେବ ଏ ଆହବେ ।୩୨
ସ୍ୱାଧୀନତାର ମର୍ଯ୍ୟାଦା ରକ୍ଷାପାଇଁ ଯେବେ
ପଶିଛି ଇଂରେଜ ଜାତି ଏ ମହାଆହବେ ।୩୩
ଯୁଦ୍ଧ କରିବା ଉଦ୍ଦେଶ୍ୟ ଅଟେ ଯେବେ ଏହା
ଭାରତରେ ଖଟିବ ନାହିଁକି ବଳେ ତାହା ।୩୪
ଏ ଉଦ୍ଦେଶ୍ୟ ସରକାର କଲେକି ପ୍ରକାଶ
ଭାରତ ଯୁଦ୍ଧେ ସାହାଯ୍ୟ କରିବ ଅବଶ୍ୟ । ୩୫
ନଚେତ ଭାରତ ଯୁଦ୍ଧୁ ଅଲଗା ରହିବ
କିଛିମାତ୍ର ସାହାଯ୍ୟ ସେ କରି ନ ପାରିବ ।୩୬
ସପକ୍ଷ ବିପକ୍ଷ ଯୁକ୍ତି ଅଛି ଏ ମତର
ବିସ୍ତାରି କହୁଛି ଶୁଣ କର ହେ ଚତୁର । ୩୭
ଯେତେ ପ୍ରକାର ଶାସନ ଅଛି ଭୂମଣ୍ଡଳେ
ଇଂରେଜ ଶାସନ ନ୍ୟାୟ ନିକଷରେ ଚଳେ ।
ମାଛି ଗୋଡ଼କୁ ଶାଙ୍କୋଳି କରିଛି ଇଂରେଜ
ଆଇନ କାନୁନ ନେଇ ଚଳେ ମନେ ହେଜ ।
ସରକାର ଅଟେ ସେହି ଆଇନ ଅଧୀନ
ବିଚଳିତ ହେଲେ ଦୋଷୀ ହେବେ ପୁଣ ଜାଣ ।

ଜଣକର ଆଜ୍ଞାବଳେ ନ ଚଳେ ଶାସନ
ଲୋକମତକୁ ଅପେକ୍ଷା ଥାଏ କିଛି ପୁଣ । ୪୧
ଯେବେ ସ୍ୱଦେଶୀ ଶାସନ ଏ ଦେଶେ ଚଳିବ
ଇଂରେଜ ଶାସନୁ ବଳି କେ ଶ୍ରେଷ୍ଠ ନ ହେବ ।
ଯାବତ ଭାରତ ହୋଇ ନ ପାରେ ସ୍ୱାଧୀନ
ରହିବା ଉଚିତ ଅଟେ ଇଂରେଜ ଶାସନ । ୪୩
ସେହି ଇଂରେଜଙ୍କ ପାଶେ ଦାବି କରୁଥାଇଁ
ଭାରତକୁ ସ୍ୱାଧୀନ ଶାସନ ଦେବାପାଇଁ । ୪୪
ସେମାନେ ରହିଲେ ସିନା ଏ ଦାବି କରିବ
ଦିନେହେଲେ ଅବଶ୍ୟ ଏ ବାଞ୍ଛା ପୂର୍ଣ୍ଣହେବ ।
ଦାଶ ଜିଲ୍ଲାଶ ନେଇ ସେ ବୋଲନ୍ତି ବଚନ
କିଛି କିଛି ଅଂଶ ଦାବି କରନ୍ତି ପୂରଣ । ୪୬
ଆଶା ଅଛି ଦିନେ ଦାବି ହୋଇବ ପୂରଣ
ଅଳି କଳି କରୁଛନ୍ତି ଭାରତୀୟ ଜନ । ୪୭
ଗାନ୍ଧି ବୋଲନ୍ତି ଏ କାଳେ ପଡ଼ିଛି ବିପତ୍ତି
ବିପଦେ ବେକ ମୋଡ଼ିବା ନୁହେଁ ନ୍ୟାୟନୀତି ।
ଏ କଥା ନ୍ୟାୟ ନୀତିରୁ ଅଟଇ ଉତ୍ତମ
ଏ ନୀତି ଧରି ଚଳିବା ଅଟଇ ଧରମ ।" ୪୯
ବଇରୀ ହେଲେହେଁ ତାର ବିପତ୍ତି କାଳରେ
ସାହାଯ୍ୟ କରିବା ଧର୍ମ ଅଛଇ ଶାସ୍ତ୍ରରେ । ୫୦
ଇଂରେଜଙ୍କୁ ଏଡ଼ି ହୋଇପାରିଲେ ସ୍ୱାଧୀନ
ଆନ ପନ୍ଥା ଧରିବାକୁ କରିପାର ମନ । ୫୧
ବର୍ତ୍ତମାନ ପରିସ୍ଥିତି ଯାହା ଭାରତର
ଏପରି ପନ୍ଥାକୁ ବଳ ନାହିଁଟି ନକର । ୫୨
ବର୍ତ୍ତମାନ ଗତି ବିଧି ଅଟଇ ଯେମନ୍ତ
ଜଣାଯାଉନାହିଁ ଅଛି ଏପରି ତାକତ । ୫୩
ଭୁଣ୍ଡ ଗାଲୁରେ ଭାରତ ନ ହେବ ସ୍ୱାଧୀନ
ତହିଁପାଇଁ ବହୁଗୁଣ ଆବଶ୍ୟକ ଜାଣ । ୫୪

ଅରଜି ନ ପାର ଯାବତ ଏ ଗୁଣମାନ
ରଖି ନ ପାରିବ କେବେ ସ୍ୱାଧୀନତା ଧନ ।୫୫
ଦିଆ ନିଆ ଧନ ଏହା ନୁହଇ ନିଶ୍ଚିତ
ନିଜ ଗୁଣେ ନିଜେ ଲଭି ପାରିବ ତୁରନ୍ତ । ୫୬
ଏ ଧନର ଏକମାତ୍ର ଦାତା ଭଗବାନ
ତାଙ୍କ କଳା ଯେନ ସିନା ମିଳଇ ଶାସନ ।୫୭
ଯାବତ ତାହାଙ୍କ କୃପାବିନ୍ଦୁ ନ ମିଳିବ
ତାବତ ଭାରତ କେବେ ସ୍ୱାଧୀନ ନ ହେବ ।୫୮
ଦିଅନ୍ତି ନିଅନ୍ତି ସେହୁ ସାମ୍ରାଜ୍ୟ ଶାସନ
ଯୁକ୍ତ ଗୁଣପୁଞ୍ଜ ଦେଖି କରନ୍ତି ପ୍ରଦାନ । ୫୯
ଆଗେ ଉପଯୁକ୍ତ ହୋଇ ସେ ବାଞ୍ଛା କରିବା
ଅବଶ୍ୟ ଦିନେ ସେ ଫଳ ଆନନ୍ଦେ ଭୋଗିବା ।
ଦିନେ ଏ ଭାରତ ଥିଲା ଏ ବିଶ୍ୱେ ସ୍ୱାଧୀନ
ଆପଣା ପାପରୁ ଆପେ ହରାଇଲା ଧନ । ୬୧
ଯାବତ କରି ନ ପାର ପାପ ପ୍ରକ୍ଷାଳନ
ତାବତ ମିଳିବ ନାହିଁ ସ୍ୱାଧୀନତା ଧନ । ୬୨
ଏ ପାପ ମୋଚନ ପାଇଁ କର୍ମଯଜ୍ଞ କର
ଅବିଳମ୍ବେ ଲଭି କରିପାର ବିଭୁବର । ୬୩
ନିଜ ପାପ ନିଜେ ଯେବେ ଧୋଇ ନ ପାରିବା
କଳି ଅଭିମାନେ କି ହେ ଏ ବର ପାଇବା ।୬୪
ତେଣୁ ଏ ବିପତ୍ତିବେଳେ ସାହାଯ୍ୟ କରିବା
ଭାରତର ଦାବି ତୀବ୍ରଭାବେ କରୁଥିବା । ୬୫
ଆପଣାର ଦୋଷ ତ୍ରୁଟି କର ପରିହାର
ଗୁଣ ଅରଜନେ ସାହା ହୁଅ ତତପର । ୬୬
ଘର ପଛେ ପୋଡ଼ିଯାଉ ଓଡ଼ିଶ ମରିବ
ଏ ମାଣ୍ଡ ଧରିଲେ କେବେ ସଙ୍କଟ ନ ହେବ ।୬୭
କଂଗ୍ରେସ ଏ ସବୁକଥା କଲେକ ବିଚାର
ହୋଇପାରଇ ସିଦ୍ଧାନ୍ତ ଆନ ପରକାର । ୬୮

ଜଣେ ଜଣେ ଏପରି କହିଲେ କିସ ହେବ
କଂଗ୍ରେସରେ ଯେବେ ଏହା ସିଦ୍ଧାନ୍ତ ନ ହେବ ।
କଂଗ୍ରେସ ପତାକା ତଳେ ଯେ ଥିବ ଯାବତ
ଅବଶ୍ୟ ମାନିବ ସେହୁ କଂଗ୍ରେସ ସିଦ୍ଧାନ୍ତ । ୭୦
କଂଗ୍ରେସ ମାତ୍ର ନିୟମ ଅବଶ୍ୟ ମାନିବ
ନ ମାନିଲେ ବିଶୃଙ୍ଖଳା ଉପସ୍ଥିତ ହେବ ।୭୧
ଯେ ଯାହାର ମତଧରି ଯେବେ ବା ଚଳିବ
କଂଗ୍ରେସମଣ୍ଡଳୁ ସେହୁ ପୃଥକ ହୋଇବ । ୭୨
ଏହାହିଁ ଉଚିତ ପନ୍ଥା ଦିଶୁଅଛି ମୋତେ
ଯେ ଯାହାର ମତ ବ୍ୟକ୍ତ କରୁଥାଉ ଯେତେ ।
ଓଡ଼ିଶାରେ ଦେଖ ଏବେ ପଡ଼ିଛି ଚହଳ
ଗଢ଼ା ହୋଇବ ମିଳିତ ମନ୍ତ୍ରୀଙ୍କ ମଣ୍ଡଳ । ୭୪
ପଣ୍ଡିତ ଗୋଦାବରୀଶ ବାଣପୁରେ ଘର
ସେ ଜଣେ ଅଟନ୍ତି ପୁଣି କଂଗ୍ରେସ ମେମ୍ବର ।୭୫
ବ୍ୟବସ୍ଥାସଭାର ଜଣେ ଅଟନ୍ତି ସଦସ୍ୟ
କଂଗ୍ରେସ ଦଳର ଜଣେ ସଭ୍ୟ ସେ ଅବଶ୍ୟ ।
କଂଗ୍ରେସ ଦଳର ଯେହୁ ମନ୍ତ୍ରୀ ହୋଇଥିଲେ
କଂଗ୍ରେସ ଆଦେଶ ମାନି ପଦତ୍ୟାଗ କଲେ ।୭୭
ଆଠ ଦଶ ମାସ ହେବ ମନ୍ତ୍ରୀ କେହି ନାହିଁ
ତେଣୁ ଲାଟସଭା ଆଉ କାମ କରୁନାହିଁ । ୭୮
ଇତିମଧ୍ୟରେ ଶାସକ ଆଇନେକ କଲେ
ସଭ୍ୟମାନଙ୍କ ବର୍ତ୍ତନ ଏବେ କାଟିଦେଲେ । ୭୯
ଆଇନ ଚକ୍ଷୁରେ ସଭା କେବଳ ବଞ୍ଚିଛି
କଉଣସି କାର୍ଯ୍ୟ ତାର ହେଉନାହିଁ କିଛି । ୮୦
ପଣ୍ଡିତ ଗୋଦାବରୀଶ ଆଗୁଆ ହୋଇଲେ
ବିରୁଦ୍ଧଦଳ ସହିତ ଯାଇ ସେ ମିଳିଲେ । ୮୧
ଖଲିକୋଟ ରାଜା ଯେ ବିପକ୍ଷ ଦଳପତି
ତାଙ୍କ ସଙ୍ଗେ ଯୋଗ ଦେଇ ବିଚାର କରନ୍ତି ॥ ୮୨

କଂଗ୍ରେସ ଦଳରୁ ଆଜ୍ଞ ନଅ ଜଣ ଯିବେ
ଗୋଦାବରୀଶଙ୍କ ସଙ୍ଗେ ସେଠୁ ଯୋଗଦେବେ ।
ଏହାପରେ ଦଶଜଣ କଂଗ୍ରେସରୁ ଯିବେ
ବିରୁଦ୍ଧଦଳ ସହିତ ମିଳିତ ହୋଇବେ । ୮୪
ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିବେ ଏମାନେ
ଛଅ ଜଣ ମନ୍ତ୍ରୀ ହେବେ ଓଡ଼ିଶା ଶାସନେ ।୮୫
ଗୋଦାବରୀଶ ହୋଇବେ ପ୍ରଧାନମନ୍ତ୍ରୀ ପୁଣ
ଜଗନ୍ନାଥ, ଯଦୁମଣି ଅନ୍ୟ ଦୁଇଜଣ । ୮୬
ଖଲିକୋଟ, ମନଧାତା, ସୋନ୍ପୁର ଏ ତିନି
ବିରୁଦ୍ଧଦଳର ମନ୍ତ୍ରୀ ହୋଇବେକ ପୁଣି । ୮୭
ଏହାପରେ ଛଅ ଜଣ ମନ୍ତ୍ରୀ ସେ ହୋଇବେ
ଓଡ଼ିଶା ଶାସନ ଭାର ନେଇ ଚଳାଇବେ । ୮୮
କେତେଦିନରୁ ଜଳ୍ପନା କଳ୍ପନା ଚାଲିଥିଲା
ଗୁଞ୍ଜୁଁ ଗୁଞ୍ଜୁଁ କଥା ଆସି ଦାଣ୍ଡରେ ପଡ଼ିଲା ।୮୯
ଖବରକାଗଜମାନେ କଲେ କୋଳାହଳ
ଚାରିଆଡ଼େ ଦେଖାଦେଲା ନିନ୍ଦାବାଦ ରୋଳ ।୯୦
ଖଲିକୋଟଙ୍କ ସହିତ ଗୋଦାବରୀ ଗଲେ
ଲାଟସାହେବଙ୍କ ସଙ୍ଗେ ପରାମର୍ଶ କଲେ । ୯୧
ଲାଟ ବୋଇଲେ ପଣ୍ଡିତେ ଆଜ୍ଞ କେ ଆସିବ
ସେମାନଙ୍କ ହାତଲେଖା ଯେବେ ମୋତେ ଦେବ
ବିଶ୍ୱାସ ହୋଇବ ମୋର ଏ କଥା ନିଶ୍ଚିତ
ତେବେ ସିନା ମନ୍ତ୍ରୀମାନେ ହୋଇବେ ନିଯୁକ୍ତ ।
ଏହି ମରମରେ ଜାରି ହେଲା ଇସ୍ତାହାର
ମନ୍ତ୍ରୀ ପରିଷଦ ହେବ ହେଉଛି ବିଚାର । ୯୪
ଏଣେ କଂଗ୍ରେସ ଦଳରେ ପଡ଼ିଲା ଚହଳ
କେଉଁମାନେ ଛାଡ଼ି ଚାଲି ଯାଉଛନ୍ତି ଦଳ । ୯୫
ବିଶ୍ୱନାଥ ଦଳନେତା କଟକ ଆସିଲେ
ଦଳଛାଡ଼ି କିଏ ଯିବ ସେ ଖବର ନେଲେ ।୯୬

ଦଳର ସଂଖ୍ୟା ଅଟଇ ସାତ ଯେ ତିରିଶ
ଜଣ ଜଣ ହୋଇ କେତେ ପେଶିଲେ ସନ୍ଦେଶ ।
ତେତିଶ ଜଣ ଏପରି ସନ୍ଦେଶ ପେଶିଲେ
ଗୋଦାବରୀଶଙ୍କ କଥା ପସନ୍ଦ ନ କଲେ । ୯୮
ଜଗନ୍ନାଥଙ୍କର ନାମ ଥିଲା ମନ୍ତ୍ରୀଦଳେ
ସେହୁ ପୁଣି ଅସ୍ୱୀକାର କଲେ ଅବହେଳେ ।୯୯
ସେ ବୋଇଲେ ତାଙ୍କୁ କଥା କିଛି ଜଣାନାହିଁ
ରାଜିନାହିଁ ତାହାଙ୍କର ମନ୍ତ୍ରୀ ହେବାପାଇଁ ।୧୦୦
କଂଗ୍ରେସ ଦଳର ଦଳପତି ବିଶ୍ୱନାଥ
ସ୍ୱଗୃହ ଚରିତ ଭାବ ହେଲେ ଦାରୁଭୂତ ।୧୦୧
ଗୋଦାବରୀଶ ତାହାଙ୍କ କଇଫତ ଦେଲେ
କେଉଁ ଉଦ୍ଦେଶ୍ୟରେ ସେ ଉଦ୍ୟମ କରୁଥିଲେ ।
ଦଳପତି ବିଶ୍ୱନାଥ ତାଙ୍କୁ ଦଣ୍ଡ ଦେଲେ
କଂଗ୍ରେସ ଦଳରୁ ତାଙ୍କୁ ବିତାଡ଼ିତ କଲେ ।୧୦୩
ଯଦୁମଣି ଅବଶେଷେ ଦେଲେକ ଭାଷଣ
ଗୋଦାବରୀଶଙ୍କୁ ସେହୁ କଲେ ସମର୍ଥନ ।୧୦୪
ଯେଉଁ ମନ୍ତ୍ରୀଙ୍କ ଅଧୀନେ ଥିଲେ ସମ୍ପାଦକ
ସେମାନଙ୍କ ଦୋଷ ବାଛି କହିଲେ ଅନେକ ।
ଏହାପରେ ଲୀଳା ଖେଳା ଅନେକ ହୋଇଲା
ଫଳରେ ମନ୍ତ୍ରୀମଣ୍ଡଳ ହେବାର ନ ହେଲା ।୧୦୬
ଜାତିଗଲା ପେଟ ନ ପୂରିଲା ହେଲା ଫଳ
ପଦାରେ ପଡ଼ିଲା କଥା ଉହାଳ ବିକଳ । ୧୦୭
ନିଜ ନିଜ ଦୋଷ ପରିହାର କଲେ ହେବ
ପରଦୋଷ ବାଛିକରି କି ଲାଭ ମିଳିବ । ୧୦୮
ପରଦୋଷ ଗାଇ କେହି ବଡ଼ ହୋଇନାହିଁ
ନ ହେବ କେବେହେଁ ନୀତିଶାସ୍ତ୍ର ଅଛି କହି ।୧୦୯
ଜଗନ୍ନାଥ ଆଉ ଥରେ ବୋଲନ୍ତି ଏମନ୍ତ
ତାଙ୍କ ନାମ ପଡ଼ୁଅଛି ଅଟେ ଆଚମ୍ବିତ ।୧୧୦

ସେ ବୋଲନ୍ତି ଯାହାର ଯେପରି ହେଲା ମନ
ଦେଶସେବା ପାଇଁ ସେହୁ ଅଟଇ ଭାଜନ ।୧୧୧
ଯେଉଁ ପନ୍ଥାରେ ଯିବାକୁ ଯାର ରୁଚି ହେବ
ସ୍ୱଚ୍ଛନ୍ଦରେ ସେ ପଥରେ ସେ ଯାଇପାରିବ ।୧୧୨
ଧରପଗଡ଼ କମାଇ ଲଗିଅଛି ଏତେ
ସ୍ୱାଧୀନ ଭାବରେ କାର୍ଯ୍ୟ କରନ୍ତୁ ସମସ୍ତେ ।୧୧୩
ଗୋଦାବରୀଶ କମାଇ ଦଣ୍ଡ ଭାଗୀ ହେବେ
ମନଇଚ୍ଛା ସେହୁ ଦେଶସେବକ ହୋଇବେ ।
ପ୍ରେମ ପ୍ରୀତି ଦେଶପାଇଁ ଅଛଇ ତାଙ୍କର
କରନ୍ତୁ ଯେମନ୍ତ ଇଚ୍ଛା ଅଟଇ ତାଙ୍କର ।୧୧୫
କେ କାହିଁକି ବାଧାଦେବ ତାହାଙ୍କ ଗତିରେ
ବାଧା ଦେଲେ ମନ୍ଦଫଳ ତହୁଁ ଜନ୍ମିପାରେ ।
ଏ ଯୁକ୍ତି ଶୁଣି ମନକୁ ଏମନ୍ତ ଆସୁଛି
କଂଗ୍ରେସ ବାହାରେ ଥିଲପରି ଏ ଲାଗୁଛି ।୧୧୭
କଂଗ୍ରେସ ଦଳର ଯେବେ ସିଦ୍ଧକାର ହେବ
ମିଶ୍ରିତ ମନ୍ତ୍ରୀମଣ୍ଡଳ ତେବେ ବୋଲାଇବ ।୧୧୮
ଅନ୍ୟଥା ଏପରି କାମ କପରି ହୋଇବ
କଂଗ୍ରେସ ଦଳର ଯେବେ ଅରାଜ ହୋଇବ ।
କଂଗ୍ରେସ ମାତକ ଠେଲା ଯେଉଁମାନେ ଯିବେ
କଂଗ୍ରେସର ସଭ୍ୟ ବୋଲି ଦାବି ନ କରିବେ ।
ବେକଂଗ୍ରେସ ସଭ୍ୟ ସଙ୍ଗେ ହୋଇଲେ ଜଡ଼ିତ
ବେକଂଗ୍ରେସ ଲୋକବୋଲି ହେବେ ପରିଚିତ ।
କଂଗ୍ରେସକୁ ଏଡ଼ି ସେହୁ ବେକଂଗ୍ରେସୀ ହେବ
କଂଗ୍ରେସର ଦାବି ତାହାଠାରେ ନ ରହିବ ।
କଂଗ୍ରେସର ଭୋଟ ନେଇ ଯେ ସଭ୍ୟ ହୋଇଲା
କଂଗ୍ରେସ ଯାହା କହିବ ମାନିବ ବୋଇଲା ।୧୨୩
ପ୍ରତିଜ୍ଞା ପତ୍ରର ଲେଖି କଲା ସିଦ୍ଧକାର
କଂଗ୍ରେସ ମତି ବିରୁଦ୍ଧ କାର୍ଯ୍ୟ ଅସୁନ୍ଦର ।୧୨୪

ଗଣତନ୍ତ୍ର ମାତ୍ରର ଏ ଅଟଇ ନିୟମ
ଅଧିକ ଯାହା କହିବେ ଅବଶ୍ୟ ମାନିମ । ୧୨୫
ନିଜ ମତ ବଜାଏ ରଖିବ ଯେବେ ମନ
ଦୂରୁରୁ ସେ ଅନୁଷ୍ଠାନ କର ବରଜନ । ୧୨୬
ତେଣିକି ନିଜ ଇଚ୍ଛାରେ କରମ କରିବ
ସେଥିପାଇଁ କେହି କିଛି ଦୋଷ ନ ଧରିବ ।୧୨୭
କଂଗ୍ରେସ ନୁହଇ ଏକ ଆକାଶ କୁସୁମ
ତୁମ୍ଭଙ୍କୁ ମୋତେ ନେଇ ଯେ ହୋଇଛି ଗଠନ ।
ସବୁରି ପ୍ରକୃତି କେବେ ନ ହେବ ସମାନ
ଭଲ ମନ୍ଦ ସବୁଠାରେ ଅଛି ବିଦ୍ୟମାନ ।୧୨୯
ତୁମ୍ଭେ ଆମ୍ଭେ ଭଲହେଲେ କଂଗ୍ରେସ ଯେ ଭଲ
ମନ୍ଦ ହେଲେ ସେହି କଂଗ୍ରେସର ହେବା ସଲ ।
କଂଗ୍ରେସକୁ ଦୋଷ ଦେଇ କିଛି ଲାଭ ନାହିଁ
ଆମ୍ଭେମାନେ ଦୋଷୀ ହେଲେ ଅକୀର୍ତ୍ତି ହୁଅଇ ।
କଂଗ୍ରେସର ଦୁର୍ନାମର ହେତୁ ଆମ୍ଭେମାନେ
ଏ କଥାକୁ ହେତୁକର ସର୍ବେ ସାବଧାନେ ।୧୩୨
ବୁଝି ବିଚାରି ସର୍ବଦା କାର୍ଯ୍ୟ କରୁଥିବ
ଏପରି କଲେ ପ୍ରମାଦ କେବେ ନ ପଡ଼ିବ ।୧୩୩
ଆପଣା ମତରେ କର ସଭିଙ୍କି ଧାଷିତ
ବଳବନ୍ତର ହୋଇବ ତେବେ ନିଜ ମତ ।୧୩୪
ମନେ କରୁଅଛ ଯେବେ ତୁମ୍ଭ ମତ ସାର
ଆନମାନଙ୍କୁ ବୁଝାଉଥାଅ ବାରବାର । ୧୩୫
ସକଳେ ତୁମ୍ଭ ମତରେ ଏକମତ ହେଲେ
ତବ ମନବାଞ୍ଛା ପୂର୍ଣ୍ଣ ହୋଇପାରେ ଭଲେ ।
ଏଥିରୁ ଆନ ଉପାୟ ଦେଖୁନାହିଁ ମୁହିଁ
ଥିଲେ ଆନ ପଥ ମତେ କହିଦିଅ ଭାଇ ।୧୩୭
ଲୁଚି ଚୋରି ଗୁପତରେ ଏ କଥା ନ ହେବ
ଏ ମାତ୍ର ଲାଗୁଛି ମୋତେ ଅତି ଅସମ୍ଭବ ।୧୩

ପୁଣି ଦେଖ ବଡ଼ଲାଟ ବଜାଇ ବାଜଣା
ଶୁଣାଇଲେ ରାଜସରକାରଙ୍କ ଘୋଷଣା । ୧୩୯
"ହେ ଭାରତବାସୀମାନେ ସଂଶୟ ନ କର
ତୁମ୍ଭ ଦାବି ସରକାର କରିବ ବିଚାର । ୧୪୦
ଯୁଦ୍ଧ ଶେଷ ହୋଇଗଲେ ଏ କଥା ପଡ଼ିବ
ତୁରନ୍ତ ଏ କଥାମାନ ବିଚାର ହୋଇବ ।୧୪୧
ଭାରତର ଜନମତ କହୁଅଛି ଯାହା
ଶାସନତନ୍ତ୍ରର ହେବ ତାହା ମୂଳଦୁଆ । ୧୪୨
ଶାସନତନ୍ତ୍ରର ହେବ ଯେ ବିଧିବିଧାନ
ଯେହ୍ନ ମୂଳଦୁଆ ପରେ ଗଢ଼ାହେବ ଜାଣ ।୧୪୩
ସକଳ ସୁବିଧା ଦିଆଯିବ ଏଥିପାଇଁ
ଏଥିରେ ସଂଶୟ ଲେଶମାତ୍ର କିଛି ନାହିଁ ।୧୪୪
ଭାରତ ଜାତୀୟ ଜୀବନର ଯେତେ ଅଙ୍ଗ
ତାର ପ୍ରତିନିଧିମାନେ ହୋଇ ଏକସଙ୍ଗ । ୧୪୫
ଭାରତ ଶାସନତନ୍ତ୍ର ଖସଡ଼ା ଗଢ଼ିବେ
ବିଲାତର ସରକାର ଏହି ଭାର ଦେବେ ।୧୪୬
ଭାରତର ଶକ୍ତିଶାଳୀ ଅନୁଷ୍ଠାନ ଯେତେ
ଯେଉଁ ମତ ଦେବେ ତାହା ଘେନିବୁ ସୁଚିତ୍ତେ ।
ତାଙ୍କ ଅମତରେ କିଛି କରାଯିବ ନାହିଁ
ଏଥିରେ ସଂଶୟ କେହି କିଛି କରନାହିଁ ।୧୪୮
କେତେକାଳୁଁ ତୁମ୍ଭ ଆମ୍ଭ ସମ୍ପର୍କ ରହିଛି
ସମ୍ପର୍କରୁ ମହାଗୁରୁ ଦାୟିତ୍ୱ ଜନ୍ମିଛି । ୧୪୯
ସେ ଗୁରୁ ଦାୟିତ୍ୱ ସରକାର ନ ଛାଡ଼ିବେ
ସେ ସୀମା ଭିତରେ ରହି ସକଳ କରିବେ ।
ଛୋଟିଆ ଛୋଟିଆ ସମ୍ପ୍ରଦାୟ ଯେତେ ଥିବ
ତାଙ୍କ ସ୍ୱାର୍ଥ ଯେଉଁପରି ନିରାପଦ ହେବ । ୧୫୧
ବଜାୟ ରହିବ ସେମାନଙ୍କ ଅଧିକାର
ଛାଡ଼ି ନ ପାରିବେ ଏ କର୍ତ୍ତବ୍ୟ ସରକାର ।୧୫୨

ଭାରତର ଶକ୍ତିଶାଳୀ ଯେତେ ଅନୁଷ୍ଠାନ
ସିଉକାର ନ କରିବେ ଯେ କର୍ତ୍ତୃଭିମାନ ।୧୫୩
ସେ ଭଳି ସରକାରଙ୍କ ହାତରେ ଶାସନ
ସମର୍ପିଦେବାକୁ ରାଜି ହେବୁନାହିଁ ପୁଣ । ୧୫୪
ଏହି ନି ସୀମା ମଧ୍ୟରେ ସକଳ ହୋଇବ
ଭାରତର ଜନମତ ମୂଳଭିତ୍ତି ହେବ । ୧୫୫
ଏଥିପୂର୍ବେ କହିଅଛୁ ଯେତେ ଯେତେ କଥା
ତହିଁରୁ କିଛିହିଁ କେବେ ନୋହିବ ଅନ୍ୟଥା ।
ଅଛି ଆମ୍ଭର ଯେଉଁଠି ଯେ ଉପନବେଶ
ଭାରତର ସମକକ୍ଷ ହୋଇବ ଅବଶ୍ୟ । ୧୫୭
ଯେପରି ଶାସନତନ୍ତ୍ର ଚଳୁଛି ସେ ଦେଶେ
ସେପରି ତନ୍ତ୍ର ଭାରତେ ହେବ ଅବଶେଷେ ।
ସେହି ଲକ୍ଷ ରଖି ଆମ୍ଭେ ସକଳ କରିବୁ
ଏ ଲକ୍ଷରୁ ପଛଘୁଞ୍ଚା କେବେହେଁ ନ ଦେବୁ ।
ବଡ଼ଲାଟଙ୍କର କାର୍ଯ୍ୟକାରୀ ସଭା ଅଛି
ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟ ତହିଁରେ ରହିଛି ।୧୬୦
ସେହି ସଭ୍ୟ ସଂଖ୍ୟା ପୁଣି ବୃଦ୍ଧି କରାଯିବ
ଭାରତୀୟ ନେତା କେତେଜଣ ନିଆଯିବ ।୧୬୧
ତେବେ ଏ ଭାରତ ଲୋକ ସୁବିଧା ପାଇବେ
ସମର କାର୍ଯ୍ୟରେ ସେହୁ ସହଯୋଗୀ ହେବେ ।
ସଭା ଏକ ଗଠିତ ହୋଇବ ଭାରତରେ
ପରାମର୍ଶ ଦେବେ ସେହୁ ଯୁଦ୍ଧ ବିଷୟରେ ।୧୬୩
ସେ ସଭାରେ ଭାରତ ନେତାଙ୍କୁ ନିଆଯିବ
ତେବେ ଭାରତ ମନରୁ ସଂଶୟ ତୁଟିବ । ୧୬୪
ବହୁତ ସାହାଯ୍ୟ ଦେଉଅଛି ଏ ଭାରତ
ଆହୁରି ଅଧିକ ଦେବ ଏ ଆଶା ନିୟତ ।୧୬୫
ସବୁ ଦଳ ସବୁ ସମ୍ପ୍ରଦାୟ ଲୋକମାନେ
ଏକମେଳେ ଲାଗିଯାଅ ଏ କାର୍ଯ୍ୟ ସାଧନେ ।

ବଡ଼ଲାଟର ସରକାର କରୁଛନ୍ତି ଆଶା
ସକଳ ଭାରତବାସୀ ହୋଇବେ ଭରସା ।୧୬୭
ଏହିପରି କାର୍ଯ୍ୟ କଲେ ସୁଫଳ ଫଳିବ
ଆହୁରି ବେଶି ସମ୍ପର୍କ ସୁଭାବ ଜନ୍ମିବ । ୧୬୮
ଇଂରେଜ ରାଜ୍ୟ ଗୋଷ୍ଠିରେ ସମାନ ଆସନ
ଲଭିବ ଭାରତ କେବେ ନ ହୋଇବ ଆନ ।
ସେ ପଥରେ ଯିବାପାଇଁ ବାଟ ଫିଟିଯିବ
ଅବଶ୍ୟ ଦିନେ ଭାରତ ମୁକତି ଲଭିବ । ୧୭୦
ଇଂରେଜ ପାର୍ଲିଆମେଣ୍ଟ ସମ୍ରାଟ ଆଦର
ଏହି ଲକ୍ଷ ରଖିଛନ୍ତି ସଂଶୟ ନ କର ।"୧୭୧
ଭାରତେ ଏହି ଘୋଷଣା ହୋଇଲା ପ୍ରଚୁର
ଲାଗିଅଛି ଭାରତଆଡ଼େ ଏଥିର ବିଚାର । ୧୭୨
କେ କହୁଛି ଭଲ କେହୁ କହୁଅଛି ମନ୍ଦ
ନାନା ମୁନିଙ୍କର ଦେଖାଯାଏ ମତ ଭେଦ ।୧୭୩
କଂଗ୍ରେସର କାର୍ଯ୍ୟକାରୀ ସମିତି ବସିବ
ବୁଝି ବିଚାରି କଂଗ୍ରେସ ମତାମତ ଦେବ ।୧୭୪
ମୁସଲମାନ ତାହାଙ୍କ ସମିତିକି ଡ଼ାକି
ବୁଝି ବିଚାରି କହିବେ କି ମତ ଏଥିକି । ୧୭୫
ଗୃହୁଁ ଗୃହୁଁ କଂଗ୍ରେସର ବଇଠକ ହେଲା
ମହାତ୍ମା ଗାନ୍ଧିଙ୍କୁ ପୁଣି ଡ଼ କରା ହୋଇଲା ।୧୭୬
ୱାର୍ଦ୍ଧାଠାରେ ହେଲା ବହୁତ ବିଚାର
ଦୁଇ ତିନଦିନ ପରେ କଲେ କଥା ସ୍ଥିର ।୧୭୭
ବଡ଼ଲାଟ ଯେ ଘୋଷଣାମାନ ଶୁଣାଇଲେ
କଂଗ୍ରେସ ସେ କଥା ସବୁ ପସନ୍ଦ ନ କଲେ ।
ଗ୍ରହଣ କରିବା ଯୋଗ୍ୟ ନୁହେଁ ଏ ଘୋଷଣା
କିଛି କ୍ଷମତା ନ ଦେବେ ଗଲା ଏଥୁଁ ଜଣା ।
ଗୁରୁ ଲଘୁ ସଂଖ୍ୟା କଥା କହ ସବୁବେଳେ
ଏ ବାଧା ଘୁଞ୍ଚିବନାହିଁ କେବେ କାଳେକାଳେ ।

ଭାରତ ଯା ଦାବି କଲା ତାହା ଦେବନାହିଁ
ଦେବାର କୁଳକ୍ଷଣ କିଛି ଦିଶୁନାହିଁ । ୧୮୧
ଭାରତ ମନ୍ତ୍ରୀ ଆମେରି ଯାହା ଟୀକା କଲେ
ଘୋଷଣାର ମର୍ମକୁ ବେଶି ବୁଝାଇଲେ ।୧୮୨
ଅତି ସୁନ୍ଦର ଭାଷାରେ କହିଲେ ସକଳ
କଂଗ୍ରେସ ସକଳ ଦିଗୁଁ କଲାକ ବିଗୁର । ୧୮୩
କଯ ପାଇବ ଭାରତ ବୁଝି ନ ପାରିଲେ
ଦୁଃଖର ସହିତ ତେଣୁ ନାମଞ୍ଜୁର କଲେ ।୧୮୪
କଂଗ୍ରେସ ବନ୍ଧୁ ଭାବରେ ଯେ କଥା କହିଲା
ଏକମେଳେ ସହଯୋଗ କରିବ ବୋଇଲା ।
କଂଗ୍ରେସର କଥା କିଛି ଶୁଣାଗଲା ନାହିଁ
ବାଧାବିଘ୍ନ ସୃଷ୍ଟି କରାଯାଉଛି ତା ପାଇଁ । ୧୮୬
ଭାରତ ଏକତାବଦ୍ଧ ଯେପରି ନ ହେବ
ତହିଁପାଇଁ ସଜଡ଼ା ହେଉଛି ଦୃଢ଼ ଗୋଟି ।୧୮୭
ଗଣତନ୍ତ୍ରର ମର୍ଯ୍ୟାଦା ରହିବ ଅକ୍ଷୁର୍ଣ୍ଣ
ଏଥିଲାଗି ସରକାର କରେ ପରି ରଣ । ୧୮୮
ଭାରତ ବେଳକୁ ସେ ନୀତିର ସ୍ଥାନ ନାହିଁ
କଂଗ୍ରେସର ଦାବି ସବୁ ଯାଉଛି ଉଭାଇ ।୧୮୯
ଏ ନୀତି ଦେଖି ଭାରତ ହେଉଛି ବିସ୍ମିତ
ଭାରତ ନେତାମାନଙ୍କ ମନ ବିଚଳିତ । ୧୯୦
ନରମ ଗରମ ମାହାଦଳ ନେତାଗଣ
କେହି ଏ ଘୋଷଣା କରୁନାହାନ୍ତି ଗ୍ରହଣ ।୧୯୧
କାହାରି ମନକୁ ଏହା ନ ଦିଶେ ପସନ୍ଦ
ଶୁଣୁ ଶୁଣୁ ଘୋଟିଗଲା ଘୋର ନିରାନନ୍ଦ ।୧୯୨
ଅଳି ଝଳି ଜଳ ମାନ ଅଭିମାନ କରି
ସବୁ ପ୍ରକାରେ ଭାରତ କଲାକ ଗୁହାରି । ୧୯୩
ପାଦରେ ମରଦି ଦେଲେ ସବୁ ଦାବି ତାର
ଅହୋରୂପ ମହୋଧିନ ଅଟେ ଏ ବିଗ୍ଭର ।୧୯୪

କଂଗ୍ରେସର ସବୁ ଦାବି ହେଲା ଉପେକ୍ଷିତ
ସେହି ପୁରୁଣା କଥାରେ ଭର୍ତ୍ତିଲେ ନିଯୁକ୍ତ ।
ଯେପରି ଅଛି ଭାରତ ଚିରକାଳ ଥିବ
କେବେହେଲେ ତାର ଆଶା ପୂରଣ ନ ହେବ ।
ବଡଲାଟ ଭାରତ ମନ୍ତ୍ରୀଙ୍କ କଥା ମାନ
ଏ ମରମ କହି ଦେଉଅଛି ଘନଘନ । ୧୯୭
କଂଗ୍ରେସ ଏ କଥା ଦେଖି ହୋଇଲା ନିରାଶ
ମନରେ ଲାଗିଲା ତାର ଅଦ୍ଭୁତ ତରାଶ । ୧୯୮
କଂଗ୍ରେସର ଦାବି ମିଳିବାର କାହିଁଗଲା
ଭାରତ ରକ୍ଷା ଆଇନ ପ୍ରବଳ ହୋଇଲା । ୧୯୯
ଧରପଗଡ଼ ଲାଗିଛି ଏ ଆଇନ ବଳେ
କେତେ ଲୋକ ଧରାହୋଇ କାରାଗାରେ ଗଲେ ।
ଏସବୁ କଥା ବିଚାରି କଂଗ୍ରେସ ବୋଇଲା
ବଡଲାଟ ଘୋଷଣାରେ ମନ ନ ମାନିଲା । ୨୦୧
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
କି ବିଚାର କରୁଅଛ ପ୍ରଭୁ ଜଗନ୍ନାଥ । ୨୦୨
କି ବୁଝିବ ସ୍ଥୁଳ ନର ତବ ମାୟା କଥା
ତବ ଲୀଳା ଦେଖି ଦେଖି ଘୁରିଯାଏ ମଥା ।୨୦୩
ଲୋମହରଷଣ ଲୀଳା ଲାଗିଛି ଜଗତେ
ହାଣକାଟ ମାରଧର ଲାଗିଛି ସତତେ । ୨୦୪
ଆପଣା ଆପଣା ଦମ୍ଭ ଦେଖାଇ ଦାମ୍ଭିକ
ରଣଭେରୀ ବଜାଇ ଦେଖାନ୍ତି ନିଜ ଠେକ ।
ବଳ ବେଶି ହେବ ଯାର ତାର ହେବ ଜୟ
ଯେ ଯାହାର ପରାକ୍ରମ ଦେଖାନ୍ତି ନିଶ୍ଚୟ । ୨୦୫
କୋଟି କୋଟି ଟଙ୍କା ବ୍ୟୟକରି ପ୍ରତିଦିନ
ଲୋକ କ୍ଷୟ ରାଜ୍ୟ ଧ୍ୱଂସ ହୁଏ ଅଗଣନ ।୨୦୬
ତବ ପ୍ରେରଣାରେ ପ୍ରଭୁ ଘଟୁଛି ଏମାନ
କି ଅଛି ତୁମ୍ଭ ମନରେ ତୁମ୍ଭେ ଏକା ଜାଣ ।

ନିକ୍ଷତ୍ରିୟ କରିବ କି ଏ ସାରା ସଂସାର
କି ବିଗ୍ରହ ଲଗାଇଛ ଏ ଲୀଳା ବେଭାର । ୨୦୯
ଏ ଭୀଷଣ ଲୀଳା ପ୍ରଭୁ ହେଉ ଅବସାନ
ପ୍ରଶାନ୍ତ ମୂରତି ଧରି ବିରାଜ ଆପଣ । ୨୧୦
ଶାନ୍ତିବାରି ସିଞ୍ଚିଦିଅ ଏ ଧରା ଧାମରେ
ଧର୍ମ ସଂସ୍ଥାପନ ପ୍ରଭୁ କର ଜଗତରେ । ୨୧୧
ଯଦୁବଂଶ ଧ୍ୱଂସଲୀଳା ହେଉ ଅବସାନ
ଜଗତରେ ଶାନ୍ତିଧର୍ମ କରହେ ସ୍ଥାପନ । ୨୧୨
ଯାହାର ଯା ନାଯ୍ୟ ଦାବି ତାକୁ ଦେଇଦିଅ
ସକଳେ ତ ଅଟନ୍ତି ହେ ପ୍ରଭୁ ତବ ପୁଅ ।୨୧୩
ବୋଲେ ଦୀନ ଜଗବନ୍ଧୁ ଆହେ ତ୍ରିପୁରାରି
ତ୍ରିପୁରେ ଶାନ୍ତିସ୍ଥାପନ କର ଦଇତ୍ୟାରି ।୨୧୪

ଇତି ଶ୍ରୀ ଭାରତ-ଚରିତାମୃତେ କଂଗ୍ରେସ ବଡ଼ଲାଟ ଉକ୍ତି ପ୍ରତ୍ୟୁକ୍ତି ବର୍ଣ୍ଣନେ
ଏକଶତ ଷଷ୍ଠ ଅଧ୍ୟାୟଃ ।



# ଏକଶତ ସପ୍ତମ ଅଧ୍ୟାୟ

ଗଉର ଉବାଚ

ମହାଘୋର ସମର ଲଗିଛି ପଶ୍ଚିମରେ
ଶୁଣୁଥାଇଁ ନାନା କଥା ସମ୍ବାଦ ପତ୍ରରେ । ୧
ଲୋମହରଷଣ କାଣ୍ଡ ଶୁଣା ଯାଉଅଛି
କେ ଜାଣଇ ସେ ଦେଶରେ କିସ ହେଉଅଛି ।୨
ଶୁଣିବା ଦେଖିବା କଥା ନୁହଇ ସମାନ
ଚକ୍ଷୁ ଦେଖି ନ ପାରିଲି ଏ ଘଟଣାମାନ । ୩
ପୂର୍ବ ଅଧ୍ୟାୟରେ ଯାହା କହିଲେ ଆପଣ
ଫରାସି ରାଇଜ ଶେଷେ ପଶିଲା ଶରଣ । ୪

ଫାରସି ସମର ଶେଷେ ପୁଣ କମ୍ପ ହେଲ
ଏତିକରେ କି ସମର ଶେଷ ହୋଇଗଲ । ୫
କେତେକାଳ ଲଗିବ ଏ ପ୍ରଳୟ ସମର
ଦିନୁଦିନ ହେଉଛି ଏ ଘୋର ଭୟଙ୍କର । ୬
କେତେ ମହାପ୍ରାଣୀ ଏ ସମରେ ହେଲେ ନାଶ
କେତେ ଧନ ରତ୍ନ ପୋଡ଼ି ହେଉଛି ପାଉଁଶ ।୭

ଜଗା ଉବାଚ

ଯାହା ପଚାରିଲ ଏବେ ଶୁଣ ଦେଇ ମନ
ଶେଷ ହୋଇନାହିଁ ଏବେ ସେହି ଘୋରରଣ ।୮
ଦେଡ଼ ବରଷରୁ କାଳ ହେଲଣି ଅତୀତ
ମହାଘୋର ରଣ ଲଗିଅଛଇ ନିୟତ । ୯
ବେଳୁବେଳ ବୃଦ୍ଧି ହେଉଅଛି ଏ ସମର
କ୍ରମେ କ୍ରମେ ହେଉଅଛି ଘୋର ଭୟଙ୍କର । ୧୦
ଅଷ୍ଟ୍ରିୟା, ଯୁଗୋସ୍ଲୋଭିଆ, ପୋଲାଣ୍ଡ ଆବର
ନରଓ୍ୱେ, ହଲାଣ୍ଡ ହୋଇଲା ଛାରଖାର । ୧୧
ବେଲ୍‌ଜିଅମ, ଫ୍ରାନସ, ରୋମାନିଆ ଗଲା
ଯେକୋବୁଲୁଗିରିଆ ସେ ଶରଣ ପଶିଲା । ୧୨
ଗ୍ରୀନଲାଣ୍ଡ, ଗ୍ରୀସ୍ ଦେଶ ହେଲା ପରାଜିତ
ଗ୍ରୀସ ରାଜଧାନୀ କ୍ରୀଟ ହେଲା ଭସ୍ମସାତ । ୧୩
ତେଣେ ଆଫ୍ରିକା ଦେଶର ଲିବିଆ ବେଙ୍ଗାଜି
ସୋଲମ ପ୍ରଭୃତି ଦେଶ ନେଇଗଲା ନାଜି । ୧୪
ରୁଷିଆ, ତୁର୍କି, ଜାପାନ ସଙ୍ଗେ ବାନ୍ଧ ମେଣ୍ଟ
ଏସବୁ ଉପାୟ ବଳେ ହୋଇଣ ବଳିଷ୍ଠ । ୧୫
କ୍ରୀଟ ଯୁଦ୍ଧ ସବୁଠାରୁ ଅତି ଭୟଙ୍କର
ସ୍ୱର୍ଣ୍ଣାକ୍ଷରେ ଇତିହାସେ ରହିବ ନିକର । ୧୬
ଯୁଦ୍ଧପରେ ଯୁଦ୍ଧଟାଏ ହେଲା ଏହିଠାରେ
ଅତି ଘୋର ଭୟଙ୍କର ଅଟେ ଏ ସଂସାରେ ।୧୭

ଗ୍ରୀସଦେଶ ଲୋକମାନେ ହୋଇଲେ ପରାସ୍ତ
ସେମାନଙ୍କ ଭାଗ୍ୟରବି ହୋଇଗଲା ଅସ୍ତ । ୧୮
ଫରାସୀ ଦେଶ ଇଂରେଜ ପକ୍ଷ ଧରିଥିଲା
ଜର୍ମାନୀ ବିଜୟୀ ବାନା ସେ ଦେଶେ ପୋତିଲା ।୧୯
ଜର୍ମାନୀ ଅଧୀନେ ତେଣୁ ଫରାସୀ ରହିଲା
ଜର୍ମାନୀ ନିର୍ଦ୍ଦେଶ ମାନି ତେଣୁ ସେ ଚଳିଲା ।୨୦
ମିଶି ଆ ଇଂରେଜମାନେ କଲେ ଆକ୍ରମଣ
ଫରାସୀ ସହିତେ ତେଣୁ ହେଲା ଘୋର ରଣ ।୨୧
ଫରାସୀ ଏବେ ଇଂରେଜ ସଙ୍ଗେ ରଣ କଲା
ଜର୍ମାନୀ ଫରାସୀ ପକ୍ଷଧରି ଯୋଗଦେଲା । ୨୨
ତୁର୍କୀ ସଙ୍ଗେ ଜରମାନୀ ବନ୍ଧୁତା ବାନ୍ଧିଲା
ଦୁହିଁଙ୍କ ମଧ୍ୟରେ ତେଣୁ ସନ୍ଧି ହୋଇଗଲା । ୨୩
ଏହାପରେ ଦେଖ ଏବେ ବିଷମ ଚରିତ
ଜରମାନୀ ରୁଷିଆର ଥିଲା ସିନା ମିତ । ୨୪
ମିତ ଭାବେ ଦୁଇ ଦେଶ ଚଳି ଏତେଦିନ
କି କାରଣୁ ଫାଟିଗଲା ଦୁହିଙ୍କର ମନ । ୨୫
ଜର୍ମାନୀ ବୋଲେ ରୁଷିଆ ତାର ମିତ ଥାଇ
ଭିତରେ ଭିତରେ ତାର ମନ୍ଦ ପାଞ୍ଚୁ ଥାଇ ।୨୬
ବେଳକାଳ ଜାଣି ଶେଷେ ବିପକ୍ଷ ହୋଇବ
ଜର୍ମାନୀ ଉପରେ ପୂର୍ବ ଶତ୍ରୁତା ସାଧିବ । ୨୭
ଜର୍ମାନୀ ସମରେ ଏହି ସଂଶୟ ହୋଇଲା
କାଳ ବିଳମ୍ବ ନ କରି ଆକ୍ରମଣ କଲା । ୨୮
ରୁଷିଆରେ ଷୋଳ କୋଟି ପରଜା ଅଛନ୍ତି
ସେମାନଙ୍କୁ ଆକ୍ରମଣ କଲାକ ଝଟତି । ୨୯
ସାତଶ ପଞ୍ଚାଶ କୋଶ ବିସ୍ତାରେ ସଇନ
ମାଡ଼ି ଚାଲିଛନ୍ତି ରୁଷିଆକୁ ଘନ ଘନ । ୩୦
ଲକ୍ଷ ଲକ୍ଷ ସୈନ୍ୟ ଚାଲିଛନ୍ତି ସୂଅ ପରି
ମାରିପିଟି ଧ୍ୱଂସକରି ଚାଲେ ଆଗଭରି । ୩୧

ରୁଷ ଦେଶ ସୈନ୍ୟ କରୁଛନ୍ତି ପ୍ରତିରୋଧ
ଶୁଭୁଅଛି କଳକଳା ମହାଘୋର ନାଦ । ୩୨
ଲଢ଼ୁ ଲଢ଼ୁ ନ ପାରିଲେ ପଛକୁ ହଟନ୍ତି
ଜରମାନୀ ସେନା ଆଗେ ମାଡ଼ି ଚାଲିଛନ୍ତି । ୩୩
ଆକାଶଚ୍ଛତାରେ ସେନା ପଡ଼ନ୍ତି ଓହ୍ଲାଇ
ପଛରୁ ମାରନ୍ତି ବଇରୀଙ୍କ ଭାହି ଭାହି । ୩୪
ପୋଖରୀ ଆଗ୍ନେୟ ଅସ୍ତ୍ର ଗୁଳିଗୁଳା ମାରି
ଗ୍ରାମ ଜନପଦ ଦେଉଛନ୍ତି ପୋଡ଼ିଜାଳି । ୩୫
ହିଟଲର ହୁଙ୍କାର କନାଦେ ବୋଲେ ଶୁଣ
ଦଶ ସପ୍ତାହରେ କରିଦେବ ରଣଭଣ । ୩୬
ଗୁହୁଁ ଗୁହୁଁ ହିଟଲର ଯାଉଅଛି ମାଡ଼ି
ଅସ୍ତ୍ର ଶସ୍ତ୍ର ଗୁଳି ଗୁଳା ଦେଉଛି ଅଜାଡ଼ି । ୩୭
ମାରୁଛି କୁହୁଡ଼ି ବାଣ ହେଉଛି ଅନ୍ଧାର
ସେହି ଅନ୍ଧକାରେ ହେଉଅଛି ନଦୀ ପାର । ୩୮
ରୁଷିଆ ସଇନମାନେ ପଛକୁ ହଟିଲେ
ଜରମାନୀ ସଇନ ଗୋଡ଼ାଇ ତଡ଼ିନେଲେ । ୩୯
କେତେକ ଅଞ୍ଚଳ ଜରମାନୀ ନେଇଗଲା
ଲକ୍ଷ ଲକ୍ଷ ରୁଷ ସେନା ବନ୍ଦୀକରି ନେଲା । ୪୦
ରୁଷିଆର ରାଜଧାନୀ ଯେ ମସକୋନୀର
ତାକୁ ନେବାପାଇଁ ଯାଉଅଛି ହିଟଲର । ୪୧
ନିଜେ ହିଟଲର ରଣକ୍ଷେତ୍ରରେ ହାଜର
ନାନା କଉଶଳେ ଯେହ୍ନେ ଚଳାଏ ସମର । ୪୨
ରାଜଧାନୀ ଉପରକୁ ଦେଉଅଛି ଧାଡ଼ି
ମହା ଦମ୍ଭ ଦର୍ପଭରେ ଯାଉଅଛି ମାଡ଼ି । ୪୩
ଏଡ଼େବଡ଼ ରାଜ୍ୟ ସଙ୍ଗେ କରୁଛି ସମର
ତେଣେ ଧଲାତ ଉପରେ ରଖିଛି ନଜର । ୪୪
ଉଡ଼ାଜାନ ଆକ୍ରମଣ କରୁଛି ଯେଠାରେ
ବେଳେବେଳେ ଆକ୍ରମଣ ରାତିରେ ଦିନରେ ।

ଭେଳକ ଲଗାଇଦେଇ କରୁଅଛି ରଣ
ସବୁ ଶତ୍ରୁ ରାଇଜକୁ ଦୃଷ୍ଟି ଅଛି ପୁଣ । ୪୬
କାହାକୁ ନିଶ୍ଚିନ୍ତ କରି ଛାଡ଼ି ଦେଉନାହିଁ
ସକଳେ ଦିନ ନଅନ୍ତ ଆକାଶକୁ ଚାହିଁ । ୪୭
କେତେବେଳେ ଉଡ଼ାଯାନ କେଉଁଦେଶେ ଯାଇ
ଆଗ୍ନେୟଗୁଳା ଉପରୁ ଦେବନ୍ତି ପକାଇ । ୪୮
ସବୁବେଳେ ଲୋକଙ୍କର ଛାତି ଦକ ଦକ
ଉଜାଗର ରହି ଚାହିଁଛନ୍ତି ରାତିଯାକ । ୪୯
ଆଗ୍ନେୟଗୁଳା ବହୁତ ଉପରୁ ପକାଏ
ଘରଦ୍ୱାର ଗ୍ରାମଗଡ଼ ଧ୍ୱଂସ ହୋଇଯାଏ । ୫୦
ଜାହାଜ ଉପରେ ଯେବେ ପକାଇବ ଗୁଳା
ଯେତେ ବଡ଼ ହେଉ ବୁଡ଼ିଯିବ ସେହି ଭେଳା ।
ପୋଖରିଆ ଆଗ୍ନେୟାସ୍ତ୍ର ଅତୀବ ଓଜନ
ଆକାଶ ପଥରେ ବହିଆଣେ ଉଡ଼ାଯାନ । ୫୨
ରୁଷିଆ ରାଜ୍ୟରେ ଆସି ପହଞ୍ଚି ଯାଉଛି
ଅତି ଅଦଭୁତ କଥା ହୃଦୟୁ ଥରୁଛି । ୫୩
ଚଉଦରେ ଖେଦି ରଣ କରେ ଭାହି ଭାହି
ମନେ ଦମ୍ଭ ତାହାଠାରୁ ବଳି କେହି ନାହିଁ ।୫୪
ସାରା ପୃଥିବୀକୁ କରୁଅଛି ଟଳମଳ
କି ଶକତି ଦେଇଛନ୍ତି ତାକୁ ଆଦିମୂଳ । ୫୫
ପ୍ରାଣପଣେ ଲଢ଼ୁଛନ୍ତି ରୁଷିଆ ସଇନ
ପଛଦୁଆ ଦେଉଛନ୍ତି ବେଳେ ବେଳେ ପୁଣ ।
ନ ପାରିଲାବେଳେ ଗ୍ରାମ ଦେଉଛନ୍ତି ଛାଡ଼ି
ସେ ଗ୍ରାମକୁ ଜରମାନି ଯାଉଅଛି ମାଡ଼ି । ୫୭
ଗୋଟି ଗୋଟି କରି ନେଲ୍ କେତେକ ନଗର
ସେ ନଗରୁ ରୁଷସେନା ହେଉଛନ୍ତି ଦୂର । ୫୮
କେତେ ସେନା ବନ୍ଦୀକରି ନେଲ୍ ଜରମାନି
ପଚାଶ ତିରିଶ ଲକ୍ଷ ହେବ ଦେଲେ ଗଣି । ୫୯

ଏହିପରି କ୍ରମେ କ୍ରମେ ଯାଉଅଛି ମାଡ଼ି
ସମଗ୍ର ରୁଷିଆ ଦେଶେ ଦେଉଅଛି ଧାଡ଼ି । ୬୦
ସମର ହେବାର ଦୁଇ ବରଷ ପୂରିଲା
ସେପ୍‌ଟେମ୍ବର ମାସ ତିନତାରିଖ ହୋଇଲା ।୬୧
ସାଲ ଊନବିଂଶ ଏକଚାଳିଶ ଚଳୁଛି
ଭାରତରେ ବିଜୟ ଉତ୍ସବ ଲାଗିଅଛି । ୬୨
ସୁନିଆଁ ବାସି ଲାଗିଲା ବିଜୟ ସମ୍ଭାର
ମହା ସମାରୋହେ ହେଲା ଉତ୍ସବ ବେଭାର ।୬୩
ପାଠପଢ଼ା ଛାତ୍ରମାନେ ହୋଇ ଧାଡ଼ି ଧାଡ଼ି
ହାତରେ ପତାକାଧରି ଆସୁଛନ୍ତି ମାଡ଼ି । ୬୪
ହାତପରେ ରାଜା ରାଣୀ ପ୍ରତିକୃତି ଧରି
ଆଗରେ ମାହୁନ୍ତ ପଛେ ବସିଛି ପ୍ରହରୀ । ୬୫
ତୁରୀ ଭେରୀ ବାଜା ବାଜୁଅଛି ଘନ ଘନ
ବହୁତ ଲୋକ କରନ୍ତି ପଛରେ ଗମନ । ୬୬
ବିଜୟର ଭି' ଅକ୍ଷର ମାଳମାଳ ହୋଇ
ଦାଣ୍ଡେ ହାଟେ କାନ୍ଥେ ବାଡ଼େ ସବୁଠି ଲାଗଇ ।
ଗାଡ଼ି ଶକଟରେ ଲାଗିଅଛି ଏ ଅକ୍ଷର
ମଣିଷଙ୍କ ଦେହ ମୁଣ୍ଡେ ଅକ୍ଷର ନକର । ୬୮
ପୁରୀ ନଗରର ଗୃହପଟେ ବୁଲି ବୁଲି
ଏ ଜନଗହଳି ବେଗେ ଯାଇଅଛି ଚଳି । ୬୯
ବୁଲି ବୁଲି କଲା ବିଦ୍ୟାଳୟରେ ପ୍ରବେଶ
ସେ ଥାନରେ ଆୟୋଜନ ହୋଇଛି ବିଶେଷ ।
ସଭା ମଣ୍ଡପ ଗୋଟିଏ ହୋଇଛି ସେଠାରେ
ନଗରର ଗଣ୍ୟମାନ୍ୟ ଲୋକ ରୁଣ୍ଡହେଲେ ।୭୧
ମେଜେଷ୍ଟର ସାହେବ ସେଠାକୁ ଆସିଥିଲେ
ଲାଟସାହେବ ଆବର ବାଣୀ ଶୁଣାଇଲେ । ୭୨
ବଡ଼ ବଡ଼ ବ୍ୟକ୍ତିମାନେ ଆକାଶ ଫଟାଇ
ବକ୍ତୃତା କଲେକ ନିଜ ବାଗ୍ମିତା ଦେଖାଇ ।୭୩

କେ ବୋଇଲା ରାକ୍ଷସ ନୃଶଂସ ହିଟଲର
ଅତି ଦୁଷ୍ଟପଣତାର ରାଜ ସରଦାର । ୭୪
ସାରା ପୃଥିବୀଟାଯାକ କଲା ଛାରଖାର
ଦିନେ ଖର୍ବ ହେବ ତାର ଏ ଗର୍ବ ନାକର ।୭୫
ରାଜଟାର ତିଳେମାତ୍ର ଦୟା ମାୟା ନାହିଁ
କେତେ ଧନ ଜନ ନାଶ କରୁଅଛି ସେହି ।୭୬
କେତେ କେତେ ଦେଶ ପଡ଼ି ତାର କବଳରେ
ଜାହି ଶ୍ରୀ ମଧୁସୂଦନ ଡାକେ ଉଚ୍ଚସ୍ୱରେ । ୭୭
ଏପରି ବର୍ବର ଜଣେ ଦେଖା ତ ନ ଥିଲା
କାହୁଁ ଆସି ତିନପୁରେ ଏବେ ଧାଡ଼ିଦେଲା ।୭୮
ଅଧାର୍ମିକ ଜଣେ ସେହୁ ରାଜ ସଇତାନ
ଅସୁର ପ୍ରକୃତି ତାର ନାହିଁ ଧର୍ମଜ୍ଞାନ । ୭୯
ମହାଘୋର ଅଶାନ୍ତି ସଂସାରେ ଘଟାଇଛି
ରଣଚଣ୍ଡୀ ପୂଜାକରି କି ବର ପାଇଛି । ୮୦
ଆମ ସରକାର ପରି ନୁହେଁ ଧର୍ମବନ୍ତ
ନର ପିଶାଚ ପାଷାଣ୍ଡ ଅତ୍ୟନ୍ତ ଦୁର୍ଦ୍ଦାନ୍ତ । ୮୧
ଆମ ସରକାର ସଙ୍ଗେ କରୁଛି ଲଢ଼ାଇ
ଅବିଳମ୍ବେ ଭାଙ୍ଗିଦେବେ ତାହାର ବଢ଼ାଇ ।୮୨
ଭାଙ୍ଗିଦେବେ ତୁରନ୍ତ ତାହାର ବିଷଦାନ୍ତ
ରହି ପାରିବ ଅଶରେ ନିଷ୍ଠୁର ଦୁର୍ଦ୍ଦାନ୍ତ ।୮୩
ବିଜୟବାନା ଉଡ଼ିବ ନଗରେ ନଗରେ
ଯହିଁ ଧର୍ମ ତହିଁ ଜୟ ଅଛଇ ଶାସ୍ତ୍ରରେ । ୮୪
ଆମ ସରକାର ଯୁଦ୍ଧେ ଅବଶ୍ୟ ଜିଣିବ
ସତ୍ୟ ସତ୍ୟ ତିନବାର ସତ୍ୟ ଏ ହୋଇବ । ୮୫
ଏହିପରି ବକ୍ତାମାନେ କହିଲେ ବହୁତ
ଶେଷରେ ଡାକିଲେ ରକ୍ଷାକର ଜଗନ୍ନାଥ ।୮୬
ଜଗନ୍ନାଥ ମନ୍ଦିରକୁ ଯାଇ କେତେ ଜଣ
ସନ୍ଥ ମହନ୍ତ କେତେକ କଲେକ ଜଣାଣ । ୮୭

ଆହେ ପ୍ରଭୁ ଜଗନ୍ନାଥ ଦିଅ ଏହି ବର
ବିଜୟଶ୍ରୀ ମଣ୍ଡିତ ହୁଅନ୍ତୁ ସରକାର । ୮୮
ଶଙ୍ଖରେ ପୂରାଇ ଚକ୍ରେ କର ଆଡୁଆଳ
ଇଂରେଜ ଭାରତେ ରହିଥାନ୍ତୁ କାଳକାଳ ।୮୯
ତାଙ୍କ ବାହୁ ଛାୟାତଳେ ଥିବୁ ସଦାଦିନ
ହିଟଲର ଧ୍ୱଂସ ହେଉ ଆହେ ଜନାର୍ଦ୍ଦନ ।୯୦
ଖେଳ ପଡ଼ିଆରେ ଜମିଗଲେ ବାବୁଦଳ
ନାନାରଙ୍ଗେ ସୁଆଙ୍ଗ ସାଜିଣ କଲେ ଖେଳ ।୯୧
ଓକିଲ ମୁକ୍ତାର କେତେ ହାକିମ ଜମିଲେ
ବେଶଭୂଷା ବଦଳାନ୍ତି ଜଣା ନ ପଡ଼ିଲେ । ୯୨
କେ ମାତା କେହୁ ବାବାଜି କେହୁ ଓଡ଼ିଆଣୀ
ଚୂଡ଼ି ଖଡ଼ୁ ନାକଚଣା ଦଣ୍ଡି ଖଡ଼ୁ ପୁଣି । ୯୩
କେହୁ ବଙ୍ଗାଳୁଣୀ କେହୁ ହେଲ ପଠଉଣୀ
କେ ପଠାଣ ସାଜିଅଛି ଛାଡ଼ି ହିନ୍ଦୁ ଠାଣି । ୯୪
କେ କେଳା କେଳୁଣୀ ସାଜି ଗଧ ପୃଷ୍ଠେ ବସି
ପଡ଼ିଯାଏ ଭୂତଳରେ ହୋଇ ମହାଖୁସି । ୯୫
କେଗଡ଼େ କେପଡ଼େ କେହୁ ଲୋଟେ ଧରଣୀରେ
ସଉକନ ଖେଳମାନ ଦେଖାଇ ରଙ୍ଗରେ । ୯୬
ତୋଷିଦେଲେ ଏହିପରି ସରକାର ମନ
ତାଳ ବାଜି ବାରବାର କହେ ଧନ୍ୟ ଧନ୍ୟ ।୯୭
ଏପରି ରାଜ ଭକତ ପ୍ରଜା ଯାହାଙ୍କର
ଛାର ହିଟ୍ଲର କିସ କରିବ ତାଙ୍କର । ୯୮
ତେତିଶ କୋଟି ପରଜା ଭାରତେ ଅଛନ୍ତି
ଇଂରେଜ ରାଜ୍ୟର ଅଟେ ଏମନ୍ତ ବିଭୂତି ।୯
ଡାକୁଛନ୍ତି ସକଳେ ହୋଇଣ ଏକମୁଖ
ଆହେ ପ୍ରଭୁ ନାରାୟଣ ଇଂରେଜଙ୍କୁ ରଖ ।୧୦୦
ଶୁଣିବେ ଏ ଆର୍ତ୍ତି ଡାକ ପ୍ରଭୁ ଆଦିମୂଳ
ହିଟଲର ଆସନ ହୋଇବ ଟଳମଳ । ୧୦

ମୂର୍ଖ ହିଟଲର ଏହା ବୁଝି ନ ପାରୁଛି
ଇଂରେଜ ରାଜ୍ୟରେ ସୂର୍ଯ୍ୟ ଅସ୍ତ ନ ହେଉଛି ।
ସ୍ୱୟଂ ଜଗନ୍ନାଥଚନ୍ଦ୍ର ଯାହାଙ୍କ ରାଜ୍ୟରେ
ଯେ ସାରଥି ହୋଇଥିଲେ ଭାରତ ସମରେ ।
ରାମ ଅବତାରେ ରାବଣକୁ କଲେ ଧ୍ୱଂସ
କୃଷ୍ଣ ରୂପେ ଅବତରି ମାରିଥିଲେ କଂସ ।୧୦୪
ସେହି ଏବେ କଳିଯୁଗେ ବଡ଼ଦେଉଳରେ
ସାମାନ୍ୟ ନ ମଣି ତାଙ୍କୁ ହେ ଜନେ ବେଭାରେ ।
ବକ୍ତାମାନେ ଗାଇଗଲେ ବହୁତ ବଚନ
ଉତ୍ସାହ ଉନମାଦରେ ପୂରିଥିଲା ମନ । ୧୦୬
ଆନନ୍ଦରେ ଭୋଳହୋଇ ଦେଲେକ ବକ୍ତୃତା
ଭୁଲଭାଲ କରି କହିଗଲେ ନାନାକଥା । ୧୦୭
ସରକାରଙ୍କର ଜୟଟି ଅବଶ୍ୟମ୍ଭାବ
କହିଦେଲେ ଅସମ୍ଭବ କିଛିହିଁ ନ ଭାବ । ୧୦୮
କି କହିଲେ ବୋଲି ଭାବ କଲେ ସଂଶୋଧନ
ଭୁଲିଯାଇ କହିଲେ ସେ ଅକଥ କଥନ । ୧୦୯
ଆଉ ଜଣେ ବଡ଼ ବାବୁ ପାଞ୍ଚିଲେ ଏମନ୍ତ
କି ବେଶ ସାଜିବେ ବୋଲି ଭାବିଲେ ବହୁତ ।
ଜଗନ୍ନାଥଙ୍କର ପ୍ରତିକୃତି ପଟକରି
ମୁଖରେ ପିନ୍ଧିଲେ ବାବୁ ବହୁତ ଚାତୁରି ।୧୧୧
କୃତ୍ରିମରେ ସଜାଡ଼ିଣ କଲେ ଭୁଜ ଦୁଇ
ସେହି ବେଶେ ବାବୁ ଖେଳପଡ଼ିଆରେ ଯାଇ ।
ଜଗନ୍ନାଥ ମହାପ୍ରଭୁ ସାଜିଲେ ମଣିଷ
ସାକ୍ଷାତ ଭଜେ କଲେ କି ପ୍ରଭୁ ଜଗଦୀଶ ।୧୧୩
ଇଷ୍ଟଦେବତାଙ୍କୁ ଆଣି ଖେଳପଡ଼ିଆରେ
ବହୁ ରଙ୍ଗବ୍ୟଙ୍ଗ କଲେ ରାଜ ଉକ୍ତିରେ ।୧୧୪
ଆଉ ଜଣେ ବୋଇଲେ ସେ ବାଘ ହିଟଲର
ଛେଳିପରି ସକଳଙ୍କୁ କରିବ ଆହାର । ୧୧୫

ସକଳେ ଏକତ୍ର ହୋଇ ବାଘକୁ ବେଷ୍ଟିଲେ
ଅବଶ୍ୟ ମରିବ ହିଟଲର କଲବଲେ । ୧୧୬
ଯେତେ ମନ୍ଦ ବିଶେଷଣ ଭାଷାକୋଷେ ଥିଲା
ହିଟଲର ମୁଣ୍ଡେ ସବୁ ଅଜାଡ଼ା ହୋଇଲା ।୧୧୭
ଦୁଇ ବରଷରେ ଦୁଇଥର ଏହିପରି
ଆନନ୍ଦ ଉତ୍ସବେ ପୂରିଗଲା ଏ ନଗରୀ । ୧୧୮
ସକଳଙ୍କୁ ନିବେଦନ ହୁଏ ବାରବାର
ଧନ ଜନ ଦେଇ ସାହାହୁଅ ହେ ନକର ।୧୧୯
ଇଂରେଜ ପତାକା ତଳେ ସର୍ବେ ମିଳିମିଶି
ହିଟଲର ମାତିକୁ କରିବା ବଳେ ଧ୍ୱଂସ । ୧୨୦
ଯେବେ ହିଟଲର ମାତି ଜଣାପଠ ହେବ
ଅବିଳମ୍ବେ ଏ ପୃଥିବୀ ରସାତଳେ ଯିବ ।୧୨୧
କାୟ ମନ ବଚନରେ ହୁଅ ହେ ସହାୟ
ଆମ୍ଭ ସରକାର ରଣ ଜିଣିବେ ନିଶ୍ଚୟ । ୧୨୨
ଭାରତବାସୀଙ୍କଠାରୁ ସୁଖୀ ଅଛି କିଏ
ଶୋଇଛି ଶାନ୍ତରେ ବର ପାଇଛି ଅଭୟେ ।
ଦେଖ କେତେ କେତେ ଦେଶ ହୁଏ ଛାରଖାର
ଗାଡ଼ଶୁଆ ହୋଇ ଦିନ କାଟନ୍ତି ନକର ।୧୨୪
ଦିନ ରାତି ସବୁବେଳେ ମନେ ଧକ ଧକ
ଉଡ଼ାଯାନ ଶବ୍ଦ ଶୁଣି ଜନମେ ଚମକ । ୧୨୫
ବାଆ ବତାସରେ ବାଇଆର କସ ଯାଏ
ଆପଣା ବସାରେ ରହି ସେ ଦୋହଲୁଥାଏ ।
ସେହିପରି ଦଶା ଅଟେ ଭାରତବାସୀର
ସୁଖରେ ଅଛି ସେ ଚିନ୍ତା ନାହିଁକ ତାହାର ।
ସ୍ୱାଧୀନ ଦେଶର ଦଶା ଆଖିରେ ଦେଖୁଛି
କି ଫଳ ସେଥିରୁ ସ୍ୱାଧୀନତା ଖୋଜୁଅଛି ।୧୨୮
ପଙ୍ଗପାଳ ପରି ମରୁଛନ୍ତି କେତେ ଜନ
ଅଗ୍ନିରେ ଆହୁତି ହେଉଅଛି କେତେ ଧନ ।

କେତେ ସ୍ତ୍ରୀ ବିଧବା ହୁଅନ୍ତି ଅକାଳରେ
ବାପ ଆଗେ ପୁଅମାନେ ମରନ୍ତି ସମରେ ।୧୩୦
ମାନବ ମାରଣ ଅସ୍ତ୍ର କରନ୍ତି ଭିଆଣ
ରାତି ଦିନ ସେହି ଚିନ୍ତା ଦେଖନ୍ତି ସ୍ୱପନ ।୧୩୧
ଏ ଚିନ୍ତା ଭାରତବାସୀ ମୁଣ୍ଡେ ନାହିଁ କିଛି
ପେଟେ ଓଦାକନା ଦେଇ ଆନନ୍ଦେ ଶୋଇଛି ।
ହସେ କାନ୍ଦେ ଉଠେ ବସେ ଇଂରେଜ ଆଜ୍ଞାରେ
କାହିଁକି ଜାଣିବ କିସ ଅଛି ଏ ସମରେ । ୧୩୩
ସମର ବିଦ୍ୟା ତାହାର ଗଲାଣି ପାଶୋରି
କଳଙ୍କି ଲାଗି ଗଲାଣି ତାର ଅସ୍ତ୍ରାଗାର । ୧୩୪
ଏ ଯୁଗରେ ସେ ଅସ୍ତ୍ର କି କାମରେ ଲାଗିବ
ସମର ଚିନ୍ତାରେ କମ୍ପା ମୁଣ୍ଡ ବଥା ହେବ ।
ଏହିପରି ନାନା କଥା କହିଲେ ସକଳ
ସଭାଭଙ୍ଗ ହେଲା ଭାଙ୍ଗିଗଲା ଗଣ୍ଡଗୋଳ । ୧୩୬
ସବୁ ପୁର ନଗରରେ ହେଲା ଏ ଉତ୍ସବ
ବିଜୟ ଡିଣ୍ଡିମ ବାଜିଲାକ ଠାବ ଠାବ । ୧୩୭
ସରକାର କହୁଛନ୍ତି ହେ ଭାରତ ଜନ
ଯଥାଶକ୍ତି ଦିଅ ଏ ଯୁଦ୍ଧକୁ ଧନଜନ । ୧୩୮
ଚଳିତ ମାସର ସାତ ତାରିଖ ଦିନରେ
ବଡ଼ ଦେଉଳକୁ ବହୁ ଲୋକ ଚାଲିଗଲେ ।୧୩୯
ପୁରୀ ରାଜା ରାମଚନ୍ଦ୍ର ଦେବ ଯାଇଥିଲେ
ଏମାର ମଠ ମହନ୍ତ ଥିଲେକ ସେଠାରେ ।
ସରକାର କର୍ମଚାରୀ ଥିଲେକ ବହୁତ
ସନ୍ଥ ମହନ୍ତ ଅନେକ ଥିଲେ ଉପସ୍ଥିତ । ୧୪୧
ଭଦ୍ର ଦର୍ଶକ ବହୁତ ଥିଲେକ ସେଠାରେ
ସକଳେ ମିଳି ଜମିଲେ ବହୁତ ସେଠାରେ ।
ଦୀର୍ଘ ଆର୍ତ୍ତନାଦେ ଜଣାଇଲେ ଏକସ୍ୱରେ
ଆହେ ଜଗନ୍ନାଥ ଏ ଗୁହାରି ଶୁଣିବାରେ ।୧୪୩

ଘଣ୍ଟ ଘୋଡ଼ାଇ ଏବେକେ ଇଂରେଜଙ୍କୁ ରଖ
ଜୟୀ ହୁଅନ୍ତୁ ସମରେ ଆହେ ପଦ୍ମମୁଖ । ୧୪୪
ଜଗତର ନାଥ ମହାପ୍ରଭୁ ଆଦିମୂଳ
ବିନାଶ କର ସଂସାରୁ ନାଜି ମାତ୍ର ମୂଳ । ୧୪୫
ଇଂରେଜ ବିଜୟ ବାନା ଉଡ଼ାଅ ସଂସାରେ
ଇଂରେଜଙ୍କ ପରି ରାଜା ନାହିଁ ଦୁନିଆରେ ।
ଆରତ ନାଶନ ବାନା ଅଛଇ ତୁମ୍ଭର
ଆରତେ ଡ଼ାକୁଛୁ ପ୍ରଭୁଁ ବାରେ ରକ୍ଷାକର ।
ଆହେ ଦାରୁବ୍ରହ୍ମ ଦ୍ରବ କରିପାର ଦାରୁ
ଦାରୁ ପୁଣି ଦ୍ରବ ହୁଏ ତବ ମହିମାରୁ । ୧୯
ପଡ଼ୁଛି ଘୋର ବିପତ୍ତି ଏବେ ଏ ଦେଶରେ
ତବ ବିନୁ ଆଉ କିଏ ରକ୍ଷା କରିପାରେ ।
ସବୁ ଯୁଗେ ଧର୍ମ ଯୁଦ୍ଧେ ସହାୟ ଆପଣ
ଜାଣ ତ ପ୍ରଭୁ ଇଂରେଜ ଧର୍ମ ପରାୟଣ ।୧୫୦
ଧର୍ମ ରକ୍ଷା ପାଇଁ କରୁଛନ୍ତି ସେ ସମର
ଚରଚିଲ ବୋଲନ୍ତି ଏ କଥା ବାରବାର ।୧୫୧
ଅନ୍ତର୍ଯାମି ସବୁରି ଅନ୍ତର କଥା ଜାଣ
ଏତେ ଲୋକଙ୍କ ପ୍ରାର୍ଥନା ପ୍ରଭୁ ବାରେ ଶୁଣ ।
ସାରା ଭାରତରେ ପ୍ରତି ପୁର ବା ନଗରେ
ପ୍ରାର୍ଥନା ଉତ୍ସବ କରାଗଲା ସବୁଠାରେ । ୧୫୩
ପୁରୀଜିଲା କଲଟର ଆଜ୍ଞା ସର୍ବେ ଗଲେ
ପ୍ରାର୍ଥନା ଉତ୍ସବେ ଆନନ୍ଦରେ ଯୋଗ ଦେଲେ ।
ଆହେ ପ୍ରଭୁ ଜଗନ୍ନାଥ ଅନାଥର ନାଥ
ଧର୍ମସାଥି ଅଟ ପ୍ରଭୁ କାଳେ କାଳେ ସତ୍ୟ ।
ଯହିଁ ଧର୍ମ ତହିଁ ଜୟ କହିଛ ଆପଣ
ଦୁଷ୍ଟ ଦଳ ଶିଷ୍ଟ ପାଳିବାର ତବ ଧର୍ମ । ୧୫୬
ଧର୍ମ ଯୁଦ୍ଧ କରୁଛନ୍ତି ଆମ ସରକାର
ତିନି ପୁରେ ଧାଡ଼ଦଏ ଦୁଷ୍ଟ ହିଟଲର । ୧୫୭

ପ୍ରାର୍ଥନା କରୁଛୁ ପ୍ରଭୁ ଦିଅ ତାକୁ ବଳ
ବିରାଜୁ ସଂସାରେ ଶାନ୍ତି ଛୁଣ୍ଡି ଯାଉ କଳ ।
ଏହିପରି ନାନା ମତେ କଲେକ ଜଣାଣ
ଆହେ ମହାପ୍ରଭୁ ବାରେ ଏ ଗୁହାରି ଶୁଣ ।
ପୁଣି ଆଠ ତାରିଖରେ ସଭା ଏକ ହେଲା
ଜିଲା ବିଦ୍ୟାଳୟ ଗୃହେ ସଭା ବସିଥିଲା । ୧୬୦
ଲାଟ ଦମ୍ପତି ସେଠାରେ ହେଲେ ଉପସ୍ଥିତ
ଥିଲେ ରାଜ କର୍ମଚାରୀ ସନ୍ଥ ଯେ ମହନ୍ତ ।୧୬୧
କଟକରୁ କେତେ ଭଦ୍ରଲୋକ ଆସିଥିଲେ
ରୁଣ୍ଡ ହେଲେ କେତେ ଲୋକ ସଭା ମଣ୍ଡପରେ ।
ଲାଟ ସାହେବ ଭାଷିଲେ ଦେଶ ବାସୀ ଶୁଣ
ଶୁଣୁଛ ତ ଇଉରୋପେ ଲାଗିଅଛି ରଣ । ୧୬୩
ମହା ଘୋର ସମର ଲାଗିଛି ସେ ଦେଶରେ
ବଳଆର ଶତ୍ରୁ ଜରମାନୀ ସହିତରେ । ୧୬୪
ଭାରତକୁ ନ ଆସିବ ବୋଲି କେ କହିବ
ଆଗରୁ ଆମ୍ଭେ ସତର୍କ ହେଲେ ଭଲ ହେବ ।
ଭାରତବାସୀଏ ଏତେବେଳେ ଭିଡ଼ି ଅଣ୍ଟା
ନେବେ ଉପାଡ଼ି ପାରିବା ବଳଆର କଣ୍ଟା ।
ଇଂରେଜ ଜାତି ତହିଁକି ଅଛି ହୁସିଆର
ଆଗରୁ ପାଞ୍ଚି କରୁଛି ନାନା ପ୍ରତିକାର । ୧୬୭
ଇରାନ ପାଖରେ ତାଙ୍କୁ ଅଟକାଇ ଅଛୁଁ
ଭାରତକୁ ନ ଆସୁ ସେ ସନ୍ତତ ପାଞ୍ଚୁଛୁ ।୧୬୮
ପ୍ରାଣ ପଣେ ଭାରତକୁ ରକ୍ଷା କରାଯିବ
ତଥାପି ପାଞ୍ଚୁଛୁ କେତେବେଳେ ଧାଡ଼ି ଦେବ ।
ତେଣୁ ହେ ଭାରତବାସୀ ଏକମନ ହୋଇ
ଆମ୍ଭ ସହିତରେ ଯୋଗ ଦିଅ ଏକହୋଇ ।
ତୁମ୍ଭେମାନେ ଆମ୍ଭ ସଙ୍ଗେ ଯୋଗ ଦେବ ଯେବେ
ଶତେ ଗୁଣ ଆମ୍ଭବଳ ବଢ଼ିଯିବ ତେବେ ।୧୭୧

ଓଡ଼ିଶା ବାସୀଏ ସବେ ଏକମେଳ ହୋଇ
ଆମ୍ଭ ସଙ୍ଗେ ଯୋଗଦିଅ ପଛକୁ ନ ଚାହିଁ ।୧୭୨
ଯାହାର ଯାହା ଶକତି ଅଛି ତାକୁ ଚାହିଁ
ଧନ ଜନ ମନତନ ଦିଅ ଦେହ ଲଗାଇ । ୧୭୩
ଏ ରାଜ୍ୟ ରକ୍ଷା କାର୍ଯ୍ୟରେ ହୁଅ ଏକ ଯୋଗ
ମହା ସୁଖ ଶାନ୍ତ ତେବେ କରିପାର ଭୋଗ ।
ଓଡ଼ିଶାରୁ ପାଞ୍ଚ ସାତ ଲକ୍ଷ ମୁଦ୍ରା ଦେଲ
ଏତିକରେ କାମ ଶେଷ ନ ମଣ ହେ ଗେଲ ।
ଦିଅ ଧନ ଜନ ମନ ଅକାତରେ ଢ଼ାଳି
ପ୍ରବଳ ବଇରୀ ମୁଖେ ଲଗାଇବା କାଳି । ୧୭୬
ଯେ ଯେତେ ପାରେ ସାହାଯ୍ୟ ଦିଅ ଘନ ଘନ:
ରାତିରେ ସୁଖେ ଶୋଇବ ନୋହି ଛନ ଛନ ।
ଇଟାଲିକ ଡ଼ର ଭୟ ନାହିଁକି ଆମ୍ଭର
ଜଣା ପଡ଼ିଗଲା ତା ସମର କଉଶଳ । ୧୭୮
ଗୁଳିରେ ଗୁଳି ଲଗାଇ ଏ ମହା ଆହବେ
ଇଂରେଜଙ୍କୁ ସାହା ହୁଅ ଜୟ ହେବ ତେବେ ।
ଗୁଣ୍ଡୁଚି ମୂଷା କି କଲା ସେତୁବନ୍ଧ ବେଳେ
ଧୂଳିଝାଡ଼ି ଆପଣା କରମ କଲା ବଳେ । ୧୮୦
ସେହିପରି ଯେ ଯାହାର ଶକତି କି ଚାହିଁ
ଏ ଆହବେ ସାହାହୁଅ କହୁଅଛି ମୁହିଁ । ୧୮୧
କାୟମନ ବଚନରେ ହେଲେକ ସହାୟ
ଏ ଭୀଷମ ଯୁଦ୍ଧେ ଜୟ ହେଇବ ନିଶ୍ଚୟ ।୧୮୨
ଏପରି ଏକ ଭାଷଣ ଲାଟ ଦେଇଦେଲେ
ଆନ ଲୋକେ ଲୋକଙ୍କୁ ସେ କଥା ବୁଝାଇଲେ ।
ଏହିପରି ଶେଷ ହେଲା ଏ ଦିନର କାମ
ଆହେ ପ୍ରଭୁ ଜଗନ୍ନାଥ ହୁଅନାହିଁ ବାମ । ୧୮୪
ସବୁରି ଅନ୍ତର କଥା ଆପଣଙ୍କୁ ଜଣା
ଅନ୍ତରଯାମୀ ବୋଲଣ ବାଜୁଛି ବାଜଣା ।୧୮୫

ଜଗତ ନିୟନ୍ତା ପ୍ରଭୁ ଜଗତ କରତା
ଆପଣଙ୍କ ସୃଷ୍ଟିର ଯେ ଆପଣ କରତା ।୧୮୬
ହେ ବିଶ୍ୱ ନିୟନ୍ତା ପ୍ରଭୁ ଜଗତର ନାଥ
ତବ କରୁଣା ବିହୁନେ ସକଳେ ଅନାଥ । ୧୮୭
ପଙ୍ଗୁ ଲଙ୍ଘିଯାଏ ଗିରି ତବ କୃପାବଳେ
ପଥର ଭାସଇ ପୁଣି ସୋଲପରି ଜଳେ ।୧୮୮
ଭାରତକୁ ରକ୍ଷାକର ନାଇଶି କବଳୁଁ
ବଇଶି ଗରବ ନାଶ କର ହେ ଦୟାଳୁ ।୧୮୯
ଭାରତର ପାପ ତାପ ସବୁ ପୋଛିଦିଅ
ରଖ ଘଣ୍ଟ ଯୋଡ଼ାଇଣ ହୁଅ ହେ ସଦୟ ।୧୯୦
ପତିତପାବନ ବ୍ରତ କରିଛ ଆପଣ
ଆରତ ଜନର ତୁମ୍ଭେ ଏକଇ ଶରଣ । ୧୯୧
ଭାରତ ଯେବେ ବଇଶି ହାତରେ ପଡ଼ିବ
ତବ ନାମେ ଏ ସଂସାରେ କଳଙ୍କ ରହିବ ।୧୯୨
ତବ ଇଚ୍ଛାବଳେ ଚଳୁଅଛଇ ସଂସାର
ତବ ଇଚ୍ଛା ପୂରଣ ହୋଇବ ରକ୍ଷାକର । ୧୯୩
କେତେ କେତେ ପ୍ରାଣୀ ଯୁଦ୍ଧେ ହୁଅନ୍ତି ବିନାଶ
ଅନଳେ ପତଙ୍ଗକୁଳ ବିନାଶ ସଦୃଶ । ୧୯୪
ମହାପ୍ରଳୟ ମୂରତି ଧରିଛ କାହିଁକି
ଦେଖି ଶୁଣି ଲୋକମାନେ ଯାଉଛନ୍ତି ଶଙ୍କି ।୧୯୫
କାହିଁ ଲୁଚୁଇ ରଖିଛ ମଧୁର ମୂରତି
ବିକଟାଳ ରୂପଧରି ଜନମାଅ ଭୀତି । ୧୯୬
କେତେ ଧନ ପୋଡ଼ି ବୁଡ଼ି ଯାଉଅଛି ନିତି
ରୋଧି ପାରିବାକୁ କେଳେ ନାହିଁକି ଶକତି ।୧୯୭
ଏ ମହାଘୋର ଆହବ ଭୀମ ଭୟଙ୍କର
ଶୁଣିଲେ ଚରିତ ଭୀତ ହେଉଛନ୍ତି ନର । ୧୯୮
ସୁଜନ ଡ଼ାକନ୍ତି ପ୍ରଭୁ ବାରେ ରକ୍ଷାକର
ଦୁଷ୍ଟଜନ ଡ଼ାକ ଦେଉଅଛି ନିରନ୍ତର । ୧୯୯

ତବ ଇନ୍ଦ୍ରଜାଲ ମାୟା ବୁଝିବା ଶକତ
ସବୁରି ହୃଦୟ ଜାଣୁଅଛ ଜଗନ୍ନାଥ । ୨୦୦
ଭାବେ ଦୀନ ଜଗବନ୍ଧୁ ଆହେ ଚକ୍ରଧର
ଚକ୍ର ଫେରୁଅଛୁ ରଣକ୍ଷେତ୍ରରେ ନିକର ।୨୦୧
ତବ ଇଚ୍ଛାବଳେ ଚକ୍ର ଫେରୁଛୁ ମହୀରେ
ସନ୍ଥପାଳ ଦୁଷ୍ଟ ନାଶ କର ନିରନ୍ତରେ । ୨୦୨

ଇତି ଶ୍ରୀ ଭାରତ-ଚରିତାମୃତେ ରୁଷିଆ ସମର ବର୍ଣ୍ଣନେ ଏକଶତ ସପ୍ତମ ଅଧ୍ୟାୟଃ ।.



# ଏକଶତ ଅଷ୍ଟମ ଅଧ୍ୟାୟ

ଗଜର ଉବାଚ

ଜର୍ମାନୀ ରୁଷିଆ ସଙ୍ଗେ ରଣ କରୁଥିଲା
ଶେଷଫଳ କିସ ହେଲା ଜଣାତ ନ ଗଲା । ୧
କେତେକାଳଯାକେ ଏ ସମର ଲାଗିଥିବ
କେତେକାଳଯାକେ ଲୋକକ୍ଷୟ ହେଉଥିବ । ୨
କେତେ ମହାପ୍ରାଣୀ ଏ ଆହବେ ହେଲେ ନାଶ
କେତେ ଧନ ପୋଡ଼ି ଜଳି ହେଉଛୁ ପାଉଁଶ ।୩
କେତେକାଳର ପ୍ରାଚୀନ ଘର କୋଠା ବାଡ଼ି
ଧୂଳିହୋଇ ଆକାଶରେ ଯାଉଅଛୁ ଉଡ଼ି । ୪

ଜଗା ଉବାଚ

ଯାହା ପଚାରିଲ ଏବେ କହୁଅଛୁ ଶୁଣ
କ୍ରମେ କ୍ରମେ ବଢ଼ୁଅଛୁ ସେହି ଘୋର ରଣ । ୫
ବଳ କଷାକଷି ହେଉଛନ୍ତି ଦୁଇ ପକ୍ଷ
ପୃଥିବୀରେ ଉପୁଜୁଛୁ ଗଭୀର ଆତଙ୍କ । ୬

ହଜାର ହଜାର କ୍ରୋଶ ଦୂରେ ହୁଏ ଶୁଣ
ବାଜୁଛି ଆମ୍ଭର କର୍ଣ୍ଣେ ଦୁନ୍ଦୁଭି ନିସ୍ୱନ । ୭
ଚର୍ମଚକ୍ଷୁ ଦେଖି ନ ପାରିଲା ଏ ବେଗର
ସନ୍ଦେଶ ବହି ଆଣୁଛି ସମ୍ବାଦ ପତ୍ରର । ୮
ଦୂର ସମ୍ବାଦ ବାହକ ଯନ୍ତ୍ର ଠାବେ ଠାବେ
ଶୁଣାଇ ଦେଉଛି ସବୁ କ ହୁଏ ଆହବେ । ୯
ସାରା ପୃଥିବୀରେ ଯାହା ଯେଉଁଠି ଘଟୁଛି
ଘରେ ବସି ସବୁକଥା ଶୁଣା ଯାଉଅଛି । ୧୦
ଜର୍ମାନୀ ଦେଶର କଥା ସେଠି ଯେ କହିବ
ଭାରତର ଘରେ ଘରେ ସବୁ ଶୁଣାଯିବ । ୧୧
ବିନା ତାର ସଂଯୋଗରେ ଘଟୁଛି ଏମନ୍ତ
ବିଜ୍ଞାନର କଉଶଳ ଅତି ଅଦ୍ଭୁତ । ୧୨
ପ୍ରାଚୀନକାଳେ ଏ ବିଦ୍ୟା ଆମ୍ଭ ଦେଶେ ଥିଲା
କାଳକ୍ରମେ ସିନା ଏହା ଅଜଣା ହୋଇଲା ।୧୩
ଦ୍ୱାରକାପୁରରେ ଥାଇ କୃଷ୍ଣ ଚିନ୍ତା କଲେ
ରମ୍ୟକ ଦ୍ୱୀପରେ ତାହା ଗରୁଡ଼ ଜାଣିଲେ ।୧୪
ତକ୍ଷଣ ଆସି ମିଳିଲେ ଶ୍ରୀକୃଷ୍ଣ ଛାମୁରେ
ବାୟୁ ବେଗେ ଗରୁଡ଼ ଆସିଲେ ଧାଡିକାରେ ।
ଆମ୍ଭ ଦେଶ ପୁରାଣରେ ଲେଖାଅଛି ଯାହା
ଏଥିରୁ ପ୍ରମାଣ ହୁଏ କହିଲି ମୁଁ ଯାହା । ୧୬
ଜର୍ମାନୀ ଆମ୍ଭଦେଶରୁ ସବୁ ପୋଥି ନେଲା
ବହୁମୂଲ୍ୟରେ ତାହାକୁ ଏ ଦେଶୁଁ କିଣିଲା ।୧୭
ତହିଁରୁ ବୀଜ ସଂଗ୍ରହ କଲାକ ବହୁତ
ମନମୂନ ଦେଇ ସବୁ କଲାକ ତଦନ୍ତ । ୧୮
କିପରି ସମ୍ଭବ ହେବ ଘୋର ଚିନ୍ତାକଲା
ଅସମ୍ଭବକୁ ସମ୍ଭବ କରି ପକାଇଲା । ୧୯
ଆମ୍ଭେ ଓଲୁ ହୋଇ ବସିଥାଉଁ ଆମ୍ଭ ଘରେ
ଆମ୍ଭ ପୋଥି କାମକରେ ଜର୍ମାନୀ ଦେଶରେ ।୨୦

କେତେ ଅଦ୍ଭୁତ କଥା କରୁଛୁ ଭିଆଣ
ଦେଖି ଚକିତ ହେଉଛୁ ଭାରତ ସନ୍ତାନ । ୨୧
ଅଦ୍ଭୁତ ଯନ୍ତ୍ରମାନ କରି ନିରମାଣ
ଏବେ ଭିଆଇଅଛୁ ସେ ବିଶ୍ୱ ବ୍ୟାପୀ ରଣ ।୨୨
ବିଚାରୁଛୁ ସବୁ ଶକ୍ତି ଖର୍ବ କରିଦେବ
ସଂସାରେ ଏକାଙ୍ଗ ଚକ୍ରବର୍ତ୍ତୀ ସେ ହୋଇବ ।୨୩
ବିଚାରେ ସବୁଦେଶକୁ ରଖି ପାଦତଳେ
ବିଜୟ ପତାକା ଉଡ଼ାଇବ ଭୂମଣ୍ଡଳେ । ୨୪
ଏଡ଼େବଡ଼ ଦମ୍ଭ ଦର୍ପ ଦେଖାଉଛୁ ସେହି
ସତେ ମହାପ୍ରଭୁ ଏହା ସାରିବେ କି ସହି ।୨୫
ଗାଳ ସହନ୍ତି ସେ ଗର୍ବ ନ ସହନ୍ତି ତିଳେ
କେତେ ରାଜା ଗର୍ବ କରି ଗଲେ ରସାତଳେ ।୨୬
ଦେଖାଯାଉ ପ୍ରଭୁଙ୍କର କି ଅଛି ମରଜି
କାହା ଦର୍ପ କେତେବେଳେ ସେହୁ ଦେବେ ଗଞ୍ଜି
ହିଟଲର ରୁଷିଆରେ ପ୍ରବେଶ ହୋଇଲା
ବହୁତ ସଂଖ୍ୟକ ସେନା ସେଠାକୁ ନେଲା ।୨୮
ଉଡ଼ାଯାନ ବୁଡ଼ାଯାନ ଦଉଡ଼ିବା ଯାନ
ଗତି ସଞ୍ଚାଳକଯାନ କଲାକ ଭିଆଣ । ୨୯
ରୁଷିଆର ଯେତେଗୋଟି ପ୍ରଧାନ ନଗର
ଆକ୍ରମଣ କଲା ସବୁ ସାହସେ ନିକର । ୩୦
ଗୋଟି ଗୋଟି କରି ସବୁ କଲାକ କବଳ
ରାଜଧାନୀ ଉପରେ ଲାଗିଛି ମାଡ଼ଗୋଳ । ୩୧
ମସକାଉ ଅଟଇ ରୁଷିଆ ରାଜଧାନୀ
ସେହିଠାରେ ଶୁଭୁଅଛି ଘୋର ରଣ ଧ୍ୱନି । ୩୨
ଓଡେସା ବାନ୍ଦର କରିନେଲା ଅଧିକାର
ରୁଷସେନା ଘୁଞ୍ଚି ପଳାଇଲେ ବହୁଦୂର । ୩୩
ପଛଘୁଞ୍ଚା ଦେଉଛନ୍ତି ରୁଷ ସେନାଗଣ
ଗୃହପଟ୍ଟି ଘେରୁଛନ୍ତି ଜର୍ମାନୀ ସଇନ । ୩୪

ଭୁମୁଳ ରଣ ଲଗିଛି ମସକାଉଠାରେ
ପହଞ୍ଚିଲାଣି ଜର୍ମାନ ଅତି ନିକଟରେ । ୩୫
ବହୁତ ସଂଖ୍ୟାରେ ସୈନ୍ୟ ଦେଉଛି ପଠାଇ
ନାନା ପରକାର ଯନ୍ତ୍ର ଆଣୁଛି ବୁହାଇ । ୩୬
ସଗର୍ବରେ ହିଟଲର କରୁଛି ଘୋଷଣା
ଆଉ ଅଳପ ଦିନରେ କରିବ ଠିକଣା । ୩୭
ରୁଷିଆ ଲଢ଼ୁଛି କରିଅଛି ପ୍ରାଣପଣ
ଦୁଇମାସ ହେଲା କରୁଅଛି ଘୋର ରଣ । ୩୮
ଜୀବନ ମରଣ ପ୍ରଶ୍ନ ପଡ଼ିଛି ଏଠାରେ
ସବୁ ଶକତି ଲଗାଇ ଲଢ଼ୁଛି ସମରେ । ୩୯
ତେଣେ ଜାପାନ ବାହିନୀ ହୁଏ ସଜବାଜ
ଲଗିଛି ମନ୍ତ୍ରୀମଣ୍ଡଳେ ଦାଖଲ କାଗଜ । ୪୦
ଯୁଦ୍ଧମନ୍ତ୍ରୀ ପରିଷଦ ଗଢ଼ିବା ପାଇଁକି
ଉତ୍କଣ୍ଠିତ ହେଲାଣି ବୁଝି କାରଣ କାହିଁକି । ୪୧
ସେନାବାହିନୀମାନଙ୍କୁ ଡ଼କରା ପଡ଼ିଛି
ଠିକଣା ହୋଇ ରହନ୍ତୁ କୁହା ଯାଉଅଛି । ୪୨
ଆମେରିକା ତେଣେ ଥାଇ ଢୁଙ୍ଗାରୁଛି ମୁଣ୍ଡ
ରୁଷିଆ ଅବସ୍ଥା ଦେଖି ହୁଏ ଲଣ୍ଡଭଣ୍ଡ । ୪୩
ଏଣେ ଜାପାନ ତାହାକୁ ଦେଉଛି ଧମକ
ସାବଧାନ ହୁଅ ଆହେ ଆମେରିକା ଲୋକ । ୪୪
ଜାପାନ ସେନାବାହିନୀ ଅଛନ୍ତି ପ୍ରସ୍ତୁତ
ଦରକାର ହେଲେ ଯୁଦ୍ଧ କରିବେ ନିଶ୍ଚିତ । ୪୫
ଇଂଲଣ୍ଡ ଆଇସିଲଣ୍ଡ ସମୁଦ୍ର ଭାଗରେ
ଆମେରିକା ଯେବେ ଜଗୁଆଳି କାମ କରେ । ୪୬
ତେବେ ଜାପାନ ଏ କଥା କରାଇ ନ ଦେବ
ଆମେରିକା ଜାପାନର ସମ୍ପର୍କ ତୁଟିବ । ୪୭
ଆମେରିକା ସଭାପତି ରୁଜଭେଲଟ ତେଣେ
ଜରୁରି ମନ୍ତ୍ରଣା ସଭା ଡ଼କାଇ ତକ୍ଷଣେ । ୪୮

ସାମରିକ ପରାମର୍ଶଦାତା ଯେତେ ଥିଲେ
ସମସ୍ତଙ୍କୁ ଡ଼କାଇ ବିଚାର ଆରମ୍ଭିଲେ । ୪୯
ଅତି ଗୁପତଭାବରେ ହେଉଛି ବିଚାର
ବର୍ତ୍ତମାନ କି କର୍ତ୍ତବ୍ୟ ଅଟଇ ତାଙ୍କର । ୫୦
ଏ ବିଚାର ବିବେଚନା ପ୍ରକାଶ ନ ହେବ
ଏଥିକି ସକଳେ ବଡ଼ ସାବଧାନ ଥିବ । ୫୧
ପୃଥିବୀ ପୂର୍ବ ପଟରେ ଯେମନ୍ତ ବ୍ୟବସ୍ଥା
ରୁଷିଆ ଅବସ୍ଥା ଆଣି ହଏ ମୁଣ୍ଡବ୍ୟଥା । ୫୨
ଉଧାରପଟ୍ଟା ସମସ୍ୟା କିସ କରାଯିବ
ଏ ସବୁ ବିଷୟ ଯେନ ଆଲୋଚନା ହେବ ।୫୩
ମସକାଉର ଅବସ୍ଥା ଅତି ଭୟଙ୍କର
ଲାଗିଛି ସେଠାରେ ଅତି ଭୀଷଣ ସମର । ୫୪
ଅନ୍ୟ ଅନ୍ୟ ଦେଶ ଦୂତମାନେ ଯେତେ ଥିଲେ
ରାଜଧାନୀ ଛାଡ଼ି ଦୂର ଦୂରାନ୍ତରେ ଗଲେ । ୫୫
ସମ୍ବାଦପତ୍ରେ ବୋଲେ ମସକାଉ ଗଲା
ପତନ ହୋଇ ଜର୍ମାନୀ ହାତରେ ପଡ଼ିଲା । ୫୬
ଡ଼ାଭୋଷ୍ଟାଲିନ ସହର ପୁଣି ନେଇଅଛି
ଜରମାନୀ ଏପରି ତ ସମ୍ବାଦ ଦେଉଛି । ୫୭
ବଲଟିକ ଦ୍ୱୀପ ପୁରାପୁରି ଏବେ ଗଲା
ଜରମାନୀ ଅଧିକାରେ ସମ୍ପୂର୍ଣ୍ଣ ରହିଲା । ୫୮
ଟାଗାନରଗ ଅଞ୍ଚଳ ରୁଷିଆ ଛାଡ଼ିଲା
ସଇନ ସାମନ୍ତ ସବୁ ଛାଡ଼ି ପଳାଇଲା । ୫୯
ଆମେରିକାର ଜାହାଜ ଦେଉଛି ବୁଡ଼ାଇ
କେତେ ପରକାରେ ସେହୁ କରୁଛି ଲଢ଼ାଇ ।
ଜାପାନ ପୁଣି କହୁଛି ଦେଶବାସୀ ଶୁଣ
ଜୀବନ ମରଣ ପ୍ରଶ୍ନ ହୋଇଲା ଘଟଣ । ୬୧
ଏତେବେଳେ ଇସ୍ପାତ ଏକତା ଲୋଡ଼ାଅଛି
ଅଷ୍ଟ୍ରାଭଡ଼ ଉଠ ଜନେ ଚେତାଇ ଦେଉଛି ।୬୨

ଏ ଘୋର ସମର ହେଲାନାହିଁ ଅବସାନ
କ୍ରମେ କ୍ରମେ ଜଳୁଅଛି ଯଥା ହୁତାଶନ । ୬୩
ଲହ ଲହ ଜିହ୍ୱାକର ଜଳୁଛି ଅନଳ
ଗ୍ରାସ କରୁଛି ଦୁର୍ବଳ ପ୍ରବଳ ସକଳ । ୬୪
ବଡ଼ ବିପଦ ପଡ଼ିଲା ପୁଣି ରୁଷିଆରେ
ଡ୍ରୋନେଜ ଅବବାହିକା ହରାଇ ବସିଲେ । ୬୫
ଶିଳ୍ପ ଅଞ୍ଚଳଗୁଡ଼ିକ ନାଜି ନେଇଗଲା
ମସକାଉ ଅପେକ୍ଷା ଏ ବିଶେଷ କାଟିଲା । ୬୬
କ୍ରିମିଆ ପଟେ ଲାଗିଛି ସମର ଭୀଷଣ
ଟାଗାନ ଉପରୁ ଘୁଡ଼ିଗଲେ ସୈନ୍ୟଗଣ । ୬୭
ମୋଜେସ୍କଠାରେ ଜର୍ମାନୀ ବ୍ୟୁହ ଭେଦ କଲେ
ରୁଷିଆର ସେନାମାନେ ପଛକୁ ହଟିଲେ । ୬୮
ମସକାଉ ରାଜଧାନୀଯାକେ ନାଜି ଗଲେ
ସେଠାରେ ମହାପ୍ରଳୟ ଯୁଦ୍ଧ ଆରମ୍ଭିଲେ । ୬୯
ଚଉପଟୁ ସେ ନଗର କଲେ ଆକ୍ରମଣ
ତୁରୀ ଭେରୀ ବଜାଇ କଲେକ ଘୋର ରଣ । ୭୦
ଦୁଇ ତିନ ମାସକାଳ ଲାଗିଲା ସମର
ଘୋର ପ୍ରତିରୋଧ କଲା ରୁଷିଆ ନିକର । ୭୧
ତୁମୁଳ ସମର ହେଲା ରୁଷିଆ ଦେଶରେ
ଉଭୟପକ୍ଷ ସେଠାରେ ବହୁତ ଲଢ଼ିଲେ । ୭୨
ବଳ କଷାକଷି ତହିଁ ହୋଇଲା ବହୁତ
ସହସ୍ର ସହସ୍ର ସେନା ହେଲେ ହତାହତ । ୭୩
କେତେ କେତେ ଅଞ୍ଚଳ କଲାକ କରଗତ
ଜରମାନୀ ଜୟଦାବି କଲାକ ବହୁତ । ୭୪
ହୁହୁଁ ହୁହୁଁ ଶୀତକାଳ ଆସି ପ୍ରବେଶିଲା
ରୁଷିଆ ଦେଶରେ ଥଣ୍ଡା ବରଫ ପଡ଼ିଲା । ୭୫
ବାଟଘାଟ ବରଫରେ ହେଲା ଆଚ୍ଛାଦିତ
ଦୁର୍ଗମ ହେଲାକ ଯିବା ଆସିବାର ପଥ । ୭୬

ଯେ ଯେତେ ଦମ୍ଭ ଦରପ ବାହାରେ ଦେଖାଉ
ପ୍ରକୃତିକ ଜିଣିବା ଉପାୟ ନାହିଁ ଆଉ । ୭୭
ଯଥା କାଳେ ଋତୁ ଆସି ହୁଏ ଉପଗତ
ତାହାକୁ ଅପେକ୍ଷା ତାର ନ ଥାଏ ନିଶ୍ଚିତ ।୭୮
କାହାର ଶକତି ନାହିଁ ବଦଳାଇ ଦେବ
ଶୀତ କାଳରେ ବସନ୍ତ ଋତୁ ପ୍ରବେଶିବ । ୭୯
ଯେତେ ଉନ୍ନତି ବିଜ୍ଞାନଂ କଲେ କରୁଥାଉ
ପ୍ରକୃତି ଜିଣା ଶକତି ପାଇବ ସେ କାହୁଁ ।୮୦
ଯେଉଁ ଦେଶେ ଯେଉଁ ଲୋକେ ବସତି କରନ୍ତି
ପ୍ରକୃତି ସହିତ ମିଳିମିଶି ଚଳୁଥାନ୍ତି । ୮୧
ଜଳ ପବନ ଦୁଇଟି ଅଟଇ ପ୍ରଧାନ
ପ୍ରାଣୀ ଶରୀର ଗଠନର ମୂଳ ବୋଲି ଜାଣ ।୮୨
ରୁଷିଆ ଦେଶରେ ଘୋର ବରଫ ପଡ଼ଇ
ମହା ଘୋର ଥଣ୍ଡା ଅଟେ ସେ ଦେଶର ମହୀ ।
ବାଟ ଘାଟ ବରଫରେ ଯାଏ ସବୁ ବୁଡ଼ି
ଯିବା ଆସିବା କରନ୍ତି ଲୋକେ ପଥ ଛାଡ଼ି ।୮୪
ଜରମାନ ଲୋକେ ସେ ଦେଶରେ ଲଢ଼ୁଥିଲେ
ବରଫ ପଡ଼ିଲା ଦେଶେ ସନ୍ଧ୍ୟା ଶୀତ କାଳେ ।
ଏ କାଳ ସମର ପାଇଁ ନୁହଇ ସହଜ
ଏକାଳ ସମର ପାଇଁ କଷ୍ଟ ମନେ ହେଜ । ୮୬
ଏହିପରି କେତେ କଥା ଭାଳିକରି ମନେ
ହିଟଲର ଯୁଦ୍ଧ ବନ୍ଦ କଲେକ ସଘନେ । ୮୭
ଯେତେକ ଅଞ୍ଚଳ ଜିଣିଥିଲା ଏ ସମରେ
ମନ ଦେଲା ସେ ଅଞ୍ଚଳ ରକ୍ଷା କରିବାରେ ।୮୮
ଆଗକୁ ମାଡ଼ି ନ ଯାଇ ଗତି ବନ୍ଦ କଲା
ଜିଣିଥିବା ଅଞ୍ଚଳକୁ ଦୃଢ଼େ ରକ୍ଷାକଲା । ୮୯
ଆସନ୍ତା ବସନ୍ତ କାଳେ କରିବ ସମର
ଶୀତ କାଳ ପାଇଁ ଏବେ ଗତିକଲା ସ୍ଥିର ।୯୦

ରୁଷିଆ ଏ କଥା ଦେଖି ସାହସ ବାନ୍ଧିଲା
ହରାଇଥିବା ଅଞ୍ଚଳ ନେବାକୁ ପାଞ୍ଚିଲା । ୯୧
କେତେ ଗ୍ରାମ ନେଲା ବୋଲି ମିଳୁଛି ସମ୍ବାଦ
ଲାଗିଅଛି ସେ ଦେଶରେ ବାଦ ପ୍ରତିବାଦ । ୯୨
ହିଟଲର ରୁଷିଆରୁ ଲେଉଟି ଆସିଲା
ଆପଣା ଦେଶକୁ ଆସି ନୂଆପାଞ୍ଚ କଲା । ୯୩
ଆପେ ସେନାପତି ହୋଇ ଏବେ ବସିଲାଣି
ବସନ୍ତ ସମର ପାଇଁ ସେନା ସାଜିଲାଣି । ୯୪
ଚିନା ଜାପାନ ସମର ଲାଗି ରହିଥିଲା
ଦୁଇ ବରଷରୁ କାଳ ଅଧିକ ହୋଇଲା । ୯୫
ଜାପାନ ଚୀଇନା ସଙ୍ଗେ କରୁଛି ସମର
କେତେ କାଳ ହେଲା ଲାଗିଅଛି ଏ ବେପାର ।
ଏକାଳେ ଜାପାନ ପୁଣି ଦୃଷ୍ଟି ଫେରାଇଲା
ଭାରତ ବର୍ମା ଉପରେ ପୁଣି ଧାଡ଼ି ଦେଲା । ୯୭
ଜରମାନୀ ସଙ୍ଗେ ଜାପାନର ମିତ୍ର ଭାବ
ବିଚାରିଲା ଏବେଳେ କରିବ କିଛି ଲାଭ । ୯୮
ପାଞ୍ଚିଲା ସେ ଏ ସୁଯୋଗ ଛାଡ଼ି ଦେବ ନାହିଁ
ବର୍ମା ଭାରତ ଉପରେ ପଶିବ ଝସାଇ । ୯୯
ତୁରନ୍ତ ଏ କଥା ପାଞ୍ଚି କଲା ଅଭିଯାନ
ଇଂରେଜ ବିରୁଦ୍ଧେ ଯୁଦ୍ଧ କଲା ତତକ୍ଷଣ ।୧୦୦
ଇଙ୍ଗରେଜ ଆମେରିକା ଏକ ମେଣ୍ଟ ଥିଲେ
ଜାପାନର ଦୁଇ ରାଜ୍ୟ ବଇରୀ ହୋଇଲେ ।
ଜାପାନ ଦୁଇ ରାଜ୍ୟକୁ ବେଗେ ଧାଡ଼ିଦେଲା
ଆମେରିକା ଇଙ୍ଗଲଣ୍ଡ ସଙ୍ଗେ ଯୁଦ୍ଧକଲା ।୧୦୨
ଫିଲିପାଇନ ଦ୍ୱୀପକୁ କଲା ଅଭିଯାନ
ଏଣେ ବରମା ଦେଶକୁ ପେଶିଲା ସଇନ ।୧୦୩
ଶାମ ନାମେ ଏକ ଗୋଟି ରାଜ୍ୟ ପଥେ ଥିଲା
ଜାପାନ ସହିତ ସେହୁ ଲଢ଼ି ନ ପାରିଲା ।୧୦୪

ଜାପାନ ସହିତ ଦିନେ ଦି’ ଦିନ ଲଢ଼ିଲା
ନ ପାରି ପଛକୁ ବଳେ ମୁଣ୍ଡ ନୁଆଁଇଲା ।୧୦୫
ଜାପାନକୁ ବାଟ ଛାଡ଼ି ଦେଲା ତା ରାଜ୍ୟରେ
ଜାପାନ ସହିତ ସନ୍ଧି କରିଗଲା ଖରେ । ୧୦୬
ଜାପାନ ପଥରୁ କଣ୍ଟା ଦୂର ହୋଇଗଲା
ଅକ୍ଳେଶରେ ବର୍ମା ଅଞ୍ଚଳକୁ ଗତି କଲା । ୧୦୭
ପୂର୍ବ ଦ୍ୱୀପପୁଞ୍ଜପରେ କଲା ଆକ୍ରମଣ
କେତେ ସ୍ଥାନ ଅଧୀନରୁ ନେଲାକ ପ୍ରମାଣ ।
ଇଂରେଜ ସଇନମାନେ ପଛକୁ ହଟିଲେ
ମାଲୟ ପ୍ରଭୃତି ସ୍ଥାନ ରଖି ନ ପାରିଲେ ।୧୦୯
ଅଶି ହଜାର ସଇନ ଏକାବେଳେ ନେଲା
ଫିଲିପାଇନରେ ନେଇ ପହଞ୍ଚାଇ ଦେଲା ।
ରେଙ୍ଗୁନ ଉପରେ ଏଣେ ଅଗ୍ନି ଗୁଳାମାନ
ରାବ ଦିବା ବରଷା କଲାକ ଘନ ଘନ । ୧୧୧
ସିଙ୍ଗାପୁର ନେବ ବୋଲି କରିଛି ବିଚାର
ହଙ୍ଗକଙ୍ଗଠାରେ ଲାଗିଛି ତୁମୁଳ ସମର ।
ଭାରତକୁ ଧାଡ଼ଦେଇ ପାରେ କେତେବେଳେ
ରକ୍ଷା-ଆୟୋଜନ ଲାଗି ଅଛି ଭାରତରେ ।
କଲକତାରେ ଆଲୁଅ ନ ଜଳେ ନିଶାରେ
ଲୋକମାନେ ଚଳୁଛନ୍ତି ଘୋର ଅନ୍ଧକାରେ ।
ସବୁ ସହରରେ ହେଉଅଛି ଏ ବିଧାନ
ଆଶଙ୍କା ହେଉଛି ସର୍ବେ ହେବ ଆକ୍ରମଣ । ୧୧୫
ଆତଙ୍କରେ ଲୋକମାନେ ଆସନ୍ତି ପଳାଇ
ବାଷ୍ପୀୟ ଶକଟ ସବୁ ଆଣୁଅଛି ବୋହି । ୧୧୬
ଲୋକେ କାମଦାମ ଛାଡ଼ି ପରାଣ ଭୟରେ
ନିଜ ନିଜ କାର୍ଯ୍ୟଛାଡ଼ି ଆସୁଛନ୍ତି ଘରେ ।୧୧୭
ଜାପାନୀ ସଇନମାନେ ଆଗଭର ହେଲେ
ହଂକଂ ଅଞ୍ଚଳେ ଯାଇ ଧସାଇ ପଶିଲେ ।୧୧

ବ୍ରିଟିଶ ବର୍ମାଇଲ ତୀର ଆୟତନ
ଘାଟି ଜାଗାମାନଙ୍କରେ ଅଟଇ ପ୍ରଧାନ ।୧୧୯
ଆଗେ ଏ ଅଞ୍ଚଳ ଖଣ୍ଡି ଥିଲା ଚୀନାର
ଅଫିମ ସମର ପରେ ହେଲା ଇଂରେଜର ।୧୨୦
ଚୀନାଠାରୁ ଇଂରେଜ ଏ ଖଣ୍ଡ ପାଇଲେ
ପ୍ରଧାନ ବନ୍ଦରଟିଏ ତାକୁ ବନାଇଲେ । ୧୨୧
ଜାପାନର ରାଜଧାନୀ ଟୋକିଓ ସହର
ଇଂରେଜଙ୍କ ନଉଘାଟି ଅଟେ ସିଙ୍ଗାପୁର ।
ହଂକଂ ଟୋକିଓ ସିଙ୍ଗାପୁର ମଧ୍ୟସ୍ଥଳ
ଜାପାନ ପକ୍ଷରେ କଣ୍ଟାଥିଲା ଏ ନଗର । ୧୨୩
ଏ ଘାଟି ଖଣ୍ଡିକ ଯେବେ ହାତରେ ପଡ଼ିବ
ସିଙ୍ଗାପୁର ଯିବାପାଇଁ ବାଟ ଫିଟିଯିବ । ୧୨୪
ତେଣୁ ଏ ଘାଟି ଉପରେ ଦୃଷ୍ଟି ପକାଇଲା
ହଂକଂ ଘାଟିକୁ ବହୁ ସୈନ୍ୟ ପଠାଇଲା । ୧୨୫
ମହା ଘୋର ରଣକଲା ଯାଇଣ ସେଠାରେ
ଇଂରେଜ ସଇନ କେତେ ଦିନ ରଣ କଲେ ।
ଶେଷରେ ହଂକଂ କଲା ଆତ୍ମସମର୍ପଣ
ଲଢ଼ି ନ ପାରି ତାହାର ହେଲାକ ପତନ ।୧୨୬
ଇଂରେଜ ସରକାରର ବହୁ କ୍ଷତି ହେଲା
ଜାପାନର ବହୁତ ସୁବିଧା ହୋଇଗଲା । ୧୨୭
ଅବାଧରେ ଦକ୍ଷିଣକୁ ପେଶିବ ସଇନ
ମାଲୟ ସିଙ୍ଗାପୁରକୁ ଧାଡ଼ି ଦେବ ପୁଣ । ୧୨୯
ଫିଲିପାଇନକୁ ଯିବା ସୁବିଧା ହୋଇବ
ଅବାଧରେ ସେନା ସ୍ରୋତ ସେଠାକୁ ପେଶିବ ।
ସିଂହାପୁର ଉପରେ ସେ କଲା ଆକ୍ରମଣ
ରେଙ୍ଗୁନ ଉପରେ ଗୁଳା ବୃଷ୍ଟି ହୁଏ ପୁଣ ।
ଅଶୀ ହଜାର ସଇନ ଦେଲାକ ପଠାଇ
ଫିଲିପାଇନ ଦ୍ୱୀପରେ ଜମାକଲା ନେଇ ।୧୩୨

ସର୍ବାବକ ନାମେ ଅଛି ଆଉ ଏକ ସ୍ଥାନ
ପଛକୁ ହଟିଲେ ସେଠୁ ଇଂରେଜ ସଇନ ।
ମାନିଲା ମାଲୟା ଜାଭା ବୋର୍ଣ୍ଣିଓ ସୁମାତ୍ରା
ସବୁଠାରେ ଲାଗିଅଛି ଘୋର ଯୁଦ୍ଧଯାତ୍ରା ।
ଇଂରେଜ ଜାହାଜ ନାମ ଅଟେ କାନ୍ଧାହାର
ଆରେକ ଜାହାଜ ସହ ଗଲା ରସାତଳ ।୧୩୫
ଜାପାନ ଜାହାଜ ତାହା ପଛରେ ଗୋଡ଼ାଇ
ଗୋଟି ଗୋଟି କରି ସବୁ ଦେଉଛି ବୁଡ଼ାଇ ।
ଇଂରେଜଙ୍କ ପାଟମନ୍ତ୍ରୀ ଚରଚିଲ ଗଲେ
ଆମେରିକା ଦେଶେ ଯାଇ ପ୍ରବେଶ ହୋଇଲେ ।
ସେ ଦେଶ ସଭାପତିଙ୍କ ଗୃହେ ପ୍ରବେଶିଲେ
ସେହିଠାରେ ତାଙ୍କ ଘରେ କୁଣିଆ ହୋଇଲେ
ଘମାଘୋଟ ବିଚାର ଲାଗିଛି ଦୁହିଙ୍କର
କ ଉପାୟ କଲେ ଜିଣି ପାରିବେ ସମର ।୧୩୯
ଆମେରିକା ଚୀନା ରୁଷିଆ ଇଙ୍ଗଲଣ୍ଡ
ଚାରିହେଁ ଏକାଠି ଯେବେ ପକାଇବା ମୁଣ୍ଡ ।
ଅକ୍ଳେଶରେ ଶତ୍ରୁକୁ କରିବା ଲଣ୍ଡଭଣ୍ଡ
ସବୁ ପରିଶ୍ରମ ତାର ହୋଇଯିବ ପଣ୍ଡ । ୧୪୧
ପ୍ରଥମେ ପ୍ରଥମେ କିଛି କ୍ଷତି ହୋଇପାରେ
ଶେଷ ବିଜୟ ଆମ୍ଭର ହେବ ଜୁକର ବାରେ ।
ଆମେରିକା ଅସ୍ତ୍ର ଶସ୍ତ୍ର ସବୁ ଯୋଗାଇବ
ଚୀନା ଭାରତରୁ ସୈନ୍ୟ ସଂଗ୍ରହ ହୋଇବ ।
ଏତେକ ହେଲେ ବଇରୀ ପରାସ୍ତ ହୋଇବ
ଜାପାନର ନାମ ପୃଥିବୀରୁ ଲୋପ ହେବ ।୧୪୪
ଉଚିତ ଶିକ୍ଷା ପାଇବ ଜାପାନ ଏଥର
କେଡ଼େ ଦମ୍ଭ ଦର୍ପ ତାର କେଡ଼େ ଦଗାଦାର ।
ବଡ଼ ବିଶ୍ୱାସଘାତକ କ ସାହସ କଲା
ଅତର୍କେ ଆସି ଆମ୍ଭ ସହିତେ ଲଢ଼ିଲା ।୧୪୭

ଅଷ୍ଟ୍ରେଲିଆ ସୈନ୍ୟମାନେ ଆସି ଯୋଗଦେବେ
କଏ ଜିଣିବ ଆମ୍ଭଙ୍କୁ ଏ ମହା ଆହବେ ।୧୪୭
ଜରମାନି ଜାପାନ ଯେ ଆବର ଇଟାଲି
କେତେଖଣ୍ଡ ଗଡ଼ ଜିଣି ଯାଉଛନ୍ତି ଫୁଲି ।୧୪୮
ହିଟଲର ଏବେ ନିଜେ ସେନାପତି ହେଲା
ପୁଣି ରୁଷିଆକୁ ଯାଇ କମର କଷିଲା । ୧୪୯
ଜର୍ମାନି ଜାପାନ ଗର୍ବ ଖର୍ବ କରିଦେବା
ଅବଶ୍ୟ ପଛନ୍ତେ ଆମ୍ଭେ ବିଜୟୀ ହୋଇବା ।
ଅସ୍ତ୍ର ଶସ୍ତ୍ର କିଛି ଊଣା ଅଛଇ ଆମ୍ଭର
ବରଷକେ ପୂରଣ କରିବା ହେ ଏଥର । ୧୫୧
ଏହିପରି ଲାଗିଅଛି ନାନାବିଧ ବିଗ୍ରହ
ସୁଯୋଗ ଜାଣି ଜାପାନ ହୁଏ ଅଗ୍ରସର । ୧୫୨
ରେଙ୍ଗୁନ ଉପରେ ଅଗ୍ନିଗୁଳା ବରଷୁଛି
କେତେ କେତେ ଲୋକଙ୍କର ଜୀବନ ନେଉଛି ।
କେତେ କେତେ ଘର ଦ୍ୱାର ଧନ ଯାଏ ନାଶ
ଆଖିପିଛୁଳା ନ ପଡ଼ୁଁ ହୁଅଇ ପାଉଁଶ । ୧୫୪
ଅଗ୍ନିଗୁଳା ଯେଉଁକାଳେ ପଡ଼ଇ ସେଠାରେ
ପଡି ଛନଛତ୍ରଜଳ ହୁଅଇ ଧାଡିକାରେ । ୧୫୫
ତହିଁରୁ ନାନା ଜିନିଷ ଛିଡ଼ିକି ପଡ଼ଇ
ତଡ଼ିବେଗେ ବହ୍ନି ହୋଇ ତୁରନ୍ତ ପଡ଼ଇ ।୧୫୬
ଯାହାର ଯେଉଁ ଅଙ୍ଗରେ ସେ ଦ୍ରବ୍ୟ ବାଜିବ
ହତାହତ କରି ତାକୁ ଜୀବନେମାରିବ । ୧୫୭
ଅଗ୍ନିଗୁଳା ଯେ କାଳରେ ପଡ଼ି ଫାଟିଯିବ
ବଜ୍ରତୁଲ୍ୟ ନିନାଦ ତହିଁରୁ ବାହାରିବ । ୧୫୮
କର୍ଣ୍ଣଗିରି ଫାଟିଯିବ ଶୁଣି ସେ ଶବଦ
କାହା ବାହାରିପଡ଼ିବ ହେବ ମହାଖେଦ । ୧୫୯
ଏ ଶବଦ ଧକ୍କା ବାଜି ତୁରନ୍ତ ମରିବ
କାର ହାତ ଗୋଡ଼ ଅବା ଛିଣ୍ଡି ଉଡ଼ିଯିବ ।

ଏହି ଭୟାବହ କାଣ୍ଡ ଲାଗିଛି ସେ ଦେଶେ
ଶୁଣୁ ଶୁଣୁ କର୍ମଜ୍ୱର ଦେହେ ମାଡ଼ିବସେ ।୧୬୧
ମାଳୟ ରେଙ୍ଗୁନ ସିଙ୍ଗାପୁର ରଣକ୍ଷେତ୍ର
ଲୋମ-ହରଷଣ କାଣ୍ଡ ହେଉଛି ବିଚିତ୍ର । ୧୬୨
ଗୁଳିଗୁଳା ବରଷୁଛି ତହିଁ ରାତ୍ର ଦିନ
ଉଭୟ ପକ୍ଷରୁ ଲାଗିଅଛି ଘୋର ରଣ । ୧୬୩
କେ ହାରିବ କେ ଜିଣିବ କହିବା କଠିଣ
ଦେଖାଯାଉ କି କରିବେ ପ୍ରଭୁ ଭଗବାନ ।୧୬୪
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
ତବ ଇଚ୍ଛା ପୂର୍ଣ୍ଣ ହେଉ ପ୍ରଭୁ ଜଗନ୍ନାଥ ।୧୬୫
ବୋଲେ ଦୀନ ଜଗବନ୍ଧୁ ଆହେ ରମାନାଥ
ତବ ଶ୍ରୀଚରଣେ ସଦା ଥାଉ ମୋର ମାଥ ।୧୬୬

ଇତି ଶ୍ରୀ ଭାରତ-ଚରିତାମୃତେ ଜାପାନ ଯୁଦ୍ଧ ବର୍ଣ୍ଣନେ ଏକଶତ ଅଷ୍ଟମ ଅଧ୍ୟାୟଃ ।



## ଏକଶତ ନବମ ଅଧ୍ୟାୟ

### ଗଉର ଉବାଚ

କି ହେଲା ଜାପାନ ଯୁଦ୍ଧ ଜଣା ତ ନ ଗଲା
ଶୁଣିବାକୁ ମନ ମୋର ବ୍ୟାକୁଳ ହୋଇଲା । ୧
ତେଣୁ ପଚାରୁଛି ଏବେ କହନ୍ତୁ ଆପଣ
ଜାପାନ କେଉଁ ପ୍ରକାରେ କରୁଅଛି ରଣ । ୨
ବ୍ରିଟିଶ ସାମ୍ରାଜ୍ୟ ସଙ୍ଗେ ଲୁହେଁ ସେହୁ ସରି
କି କଲେ ସେ ରଣେ ଆନ୍ତ ବ୍ରିଟିଶ କେଶରୀ ।
ଅତି କ୍ଷୁଦ୍ର ରାଜ୍ୟ ଜନ୍ତେ ତାର ବଳ କେତେ
କି ସାହସେ ଲଢ଼ୁଅଛି ଇଂରେଜ ସହିତେ । ୪

ବହୁକାଳ ଚିନା ସଙ୍ଗେ କରୁଛି ସମର
ସେ ଯୁଦ୍ଧ ତ ସରିନାହିଁ ଶୁଣୁଛୁ ନିକର । ୫
ପୁଣି କି ସାହସେ ଏଣେ ରଣ ଉଆଇଲା
କେତେ ବଳ ଅଛି ତାର ଜଣା ତ ନ ଗଲା ।୬
ରୁଷିଆ ସମର ତେଣେ କେଉଁଯାକେ ଗଲା
ସେ ଯୁଦ୍ଧରେ କିଏ ପୁଣି ହାରିଲା ଜିଣିଲା । ୭
ଆଫ୍ରିକା ଦେଶ ଯୁଦ୍ଧର କିବା ପରିଣାମ
ବିସ୍ତାରି କହନ୍ତୁ ସବୁ ଚରିତ ଆପଣ । ୮
କଂଗ୍ରେସ କି କରୁଅଛି ଏ ସନ୍ଧି ବେଳରେ
ମୁସଲମାନ କି ଚିନ୍ତା କରନ୍ତି ଏ କାଳେ । ୯
ଓଡ଼ିଶା ମନ୍ତ୍ରୀମଣ୍ଡଳ କି ସୂକ୍ଷରେ ହେଲା
ଏ ସବୁ ଚରିତ କିଛି ଜଣା ତ ନ ଗଲା । ୧୦

## ଜଗା ଉବାଚ

ମହାଘୋର ଗଣ୍ଡଗୋଳ ଲାଗିଛି ମହୀରେ
କମ୍ପୁଛି ଧରଣୀ ଗୁଳିଗୁଳା ଶବଦରେ । ୧୧
ଉଡ଼ିଯାଏ କୋଠାବାଡ଼ି ବୁଡ଼ିଯାଏ ପୋତ,
ଉଡ଼ାଯାନ ଉଡ଼ୁଅଛି ଆକାଶେ ବହୁତ । ୧୨
ବଳ କଷାକଷି ହେଉଛନ୍ତି ଦୁଇ ପକ୍ଷ
କିଏ କାହାକୁ ଜିଣିବ ରହିଅଛି ଲକ୍ଷ୍ୟ । ୧୩
ଯେ କାଳେ ଯେଉଁ ଅଞ୍ଚଳେ ହେଉଛି ସମର
ସେ ଅଞ୍ଚଳ ଲୋକ ହେଉଛନ୍ତି ହରବର । ୧୪
ପ୍ରାଣ ଆତଙ୍କରେ ସଦା ରହିଛନ୍ତି ଲୋକେ
ପ୍ରାଣ ଭୟରେ ଅଞ୍ଚଳ ଛାଡ଼ିଯାନ୍ତି ଥୋକେ ।୧୫
ଯେଉଁ ଅଞ୍ଚଳକୁ ଶତ୍ରୁ ଦେଉଛି ନଜର
ବିପଦସଙ୍କୁଳ ବୋଲି ହେଉଛି ପ୍ରଚାର । ୧୬
ସେ ଅଞ୍ଚଳ ହୋଇପାରେ ଗୁଳିଗୁଳା ମାଡ଼
ଶତ୍ରୁ ଆକ୍ରମଣ କରି ପାରଇ ନିଗାଡ଼ । ୧୭

ତେଣୁ ସରକାରଙ୍କର ହୁଅଇ ଆଦେଶ
ଛାଡ଼ ଏ ଅଞ୍ଚଳ ଯାର ନାହିଁକ ସାହସ । ୧୮
ସ୍ତ୍ରୀ ବାଳକ ଯାହାର କାମ କରୁ ନାହିଁ
ସେ ଅଞ୍ଚଳ ଛାଡ଼ିଯିବା ବିହିତ ଅଟଇ । ୧୯
ଏ ଆଦେଶ ଶୁଣି ଲୋକେ ଭୟେ ଥରହର
ସହର ଛାଡ଼ିଯିବାକୁ ହୋନ୍ତି ତରତର । ୨୦
ଘରପୋଡ଼ ଗୈରି ଲଗିଅଛି ନାନାଠାରେ
ଗାତଖୋଳା ଲାଗିଅଛି ପ୍ରତ୍ୟେକ ସହରେ ।୨୧
ଆଲୁଅର କଟକଣା ହୁଏ ଠାବେ ଠାବେ
ଉଡ଼ାଜହାଜ ଆସିଲେ ଲୋକେ କି କରିବେ ।
ଆତ୍ମରକ୍ଷା ପାଇଁ ନାନା ଉପାୟ ହେଉଛି
ସିଧା ସଳଖ ଗୁଳାକୁ ରକ୍ଷା ନାହିଁ କରୁଛି । ୨୩
ଲୋକ ରକ୍ଷାପାଇଁ ତତପର ସରକାର
ତେଣୁ ଲଗିଅଛି ନାନା ପ୍ରକାର ବିଗୁର । ୨୪
ଏ ଦେଶ ଲୋକଙ୍କୁ ଏତେ କଥା ଜଣା ନାହିଁ
ଛଟପଟ ହେଉଛନ୍ତି ଲୋକେ ଧନ୍ଦହୋଇ । ୨୫
ଯୁଦ୍ଧ ନାମ ଶୁଣି ତେଣୁ ମନେ ସଦା ଡ଼ର
ପରାଣ ଆତଙ୍କେ ସଦା ଉହଳ ବିକଳ । ୨୬
କି କରିବା କି କରିବା ସବୁଠି ବିଗୁର
କେ ପାଞ୍ଚେ ପଳାଇଗଲେ ପାଇବେ ନିସ୍ତାର ।
ଯେଉଁମାନେ କି କରିବେ ବୋଲି ପାଞ୍ଚୁଛନ୍ତି
ବ୍ୟବସାୟ ସୂତ୍ରରେ ଯେ ସହରେ ଅଛନ୍ତି ।୨୮
କେ ପାଞ୍ଚେ ପରାଣ ଘେନି ପଳାଇଣ ଯିବା
କଏ ପଚ୍ଚୁରେ ଧନକୁ ପରାଣ ରଖିବା । ୨୯
କେ ପୁଣି ପାଞ୍ଚଇ ଆଜ୍ଞା ପଳାଇତ ଯିବା
କପାଳକୁ ନେଇ ଯିବା ଅବା ଛାଡ଼ିଯିବା । ୩୦
ଦମ୍ଭ ସାହସ କାହାରି ବର୍ତ୍ତମାନ ନାହିଁ
ସଂଶୟ ମନରେ ସଦା ରହିଛନ୍ତି ରହି । ୩୧

କି କରିବା କି କରିବା ଅଷ୍ଟାକ୍ଷର ଜପ
ଗୀତ ଦେବା ଲୋକ ଭୟେ କରନ୍ତି ଅମାପ ।୩୨
କେହି ପାଞ୍ଚୁଅଛି ଆଜ୍ଞା ଦେନେତ ମରିବା
ମହାପୁଣ୍ୟ ପୁରୀଧାମ କମ୍ପା ଛାଡ଼ିଯିବା । ୩୩
ଆସୁଛନ୍ତି ଲୋକେ ଏଠି ମରିବା ଆଶାରେ
ଏ ଥାନ ଛାଡ଼ିବା କମ୍ପା ପରାଣ ଭୟରେ । ୩୪
ଗୁଳଗୁଳା ମାଡ଼େ ମରିବାର ଯୋଗ ଥିଲେ
ଅବଶ୍ୟ ତହିଁରେ ମୃତ୍ୟୁ ହେବ ଯହିଁ ଗଲେ ।୩୫
ଜଗନ୍ନାଥ ଧାମ ଛାଡ଼ି କେଉଁଠାକୁ ଯିବା
ତାଙ୍କ ଚକ୍ରରୁ କି କେବେ ନିସ୍ତାର ପାଇବା ।୩୬
ପୁଣି ଏ ଦୁର୍ବଳ ମନ ବିଗୃରେ ଏମନ୍ତ
ବିପଦ ସଙ୍କୁଳ ସ୍ଥଳେ ରହିବା କେମନ୍ତ । ୩୭
କିଏ କେତେ କଥା ମନେ ଭାବୁଛନ୍ତି ବସି
କିଏ ଲୁଗାପଟା ବାନ୍ଧି ପଳାଉଛି ଖସି । ୩୮
କିଏ ପିଲାକବିଲାଙ୍କୁ ଦେଉଛି ପଠାଇ
ଆପେ ଅଛି ରହି କାଳବେଳକୁ ଅନାଇ । ୩୯
କି ହେଉଛି ଦେଖାଯାଉ ଅପେକ୍ଷା କରିବା,
ବେଳକାଳ ଗଣିକରି ଯାହାବା କରିବା । ୪୦
ଏହିପରି ଲୋକମାନେ ହୋଇ ନିସ୍ତ ଖିତ
ନାନା କଥା ମନେ ପାଞ୍ଚି ହୁଅନ୍ତି ବ୍ୟଥିତ ।୪୧
ଜାପାନ ଇଂରେଜ ସଙ୍ଗେ କରୁଛି ଲଢ଼ାଇ
ସିଙ୍ଗାପୁର ମାଲୟକୁ ନେଲାକ ଛଡ଼ାଇ । ୪୨
ସିଙ୍ଗାପୁର ମାଲୟର ହେଲାକ ପତନ
ବ୍ରହ୍ମଦେଶଠାରେ ଲାଗିଅଛି ଘୋର ରଣ । ୪୩
ସିଙ୍ଗାପୁର ଥିଲା ଏକ ସୁଦୃଢ଼ ସହର
ପ୍ରଧାନ ଘାଟିସ୍ଥାନ ସେ ଥିଲାକ ନକର । ୪୪
ଅଶୀ କୋଟି ଟଙ୍କା ବ୍ୟୟକରି ସରକାର
ଗଢ଼ିଥିଲେ ସେ ଘାଟିକି ନାନାବିଧ ପ୍ରକାର ।୪୫

ବିଶ୍ୱାସ ନ ଥିଲା ସେ ଘାଟିକି ଶତ୍ରୁ ନେବ
ରକ୍ଷା କରିବାକୁ ପ୍ରାଣପଣେ ଲଢ଼ାଯିବ । ୪୬
ଭୀଷଣ ସମର ହେଲା ସେହି ଘାଟିଠାରେ
ଆତ୍ମସମର୍ପଣ କରିଦେଲକ ଶେଷରେ । ୪୭
ସିଙ୍ଗାପୁର ଯିବାପରେ ଏମନ୍ତ ଘଟିଲା
ଭାରତ ମହାସାଗର ମୁକୁଳା ହୋଇଲା । ୪୮
ବଙ୍ଗୋପସାଗର ଦଶା ସେହିପରି ହେଲା
ଜାପାନ ଜାହାଜ ଅବାଧରେ ଖେଳାକଲା ।୪୯
ଭାରତକୁ ତେଣୁ ମାଡ଼ି ଆସିଲା ବିପଦ
ଭାରତବାସୀଙ୍କି ତେଣୁ ନ ମାଡ଼ଇ ନିଦ । ୫୦
ଭାରତର ଉପକୂଳ ବହୁତ ବିସ୍ତୃତ
କୂଳ ଲାଗି ରହିଅଛି ସହର ବହୁତ । ୫୧
କେତେବେଳେ କେଉଁସ୍ଥାନେ ଆକ୍ରମଣ ହେବ
ସେ କଥା ନିଶ୍ଚିତକରି କିଏବା କହିବ । ୫୨
ଶତ୍ରୁ ତା ନିଜ ସୁବିଧା ସୁଯୋଗ ଉଣ୍ଡିବ
ଯେଉଁଠି ସୁବିଧା ହେବ ସେଠି ପହଞ୍ଚିବ । ୫୩
ତେଣୁ ଆମ ସରକାର ହୋଇ ସାବଧାନ
ବୋଲନ୍ତି ହେ ପ୍ରଜାଗଣ ମନଦେଇ ଶୁଣ । ୫୪
ବିପଦ ଆସିବାବେଳେ କି କି ପ୍ରତିକାର
କଲେ ଏ ବିପଦୁଁ ରକ୍ଷା ପାଇଯାଇପାର । ୫୫
ସତର୍କବାଣୀ ଶୁଣାଇ ଦିଅନ୍ତି ଆଗରୁ
ତାଙ୍କ ଇଚ୍ଛା ନୁହେଁ ଜଣେ ପ୍ରଜା କେହି ମରୁ ।୫୬
ପ୍ରଜା ରକ୍ଷାପାଇଁ କରୁଛନ୍ତି ସାବଧାନ
କି ଉପାୟ କଲେ ରକ୍ଷାହେବେ ପ୍ରଜାଗଣ ।୫୭
ଭାରତର ପୂର୍ବ ଉପକୂଳେ ଯେତେ ସ୍ଥାନ
ଜରୁରି ବିପଦ ସ୍ଥାନ ବୋଲି ତାକୁ ଜାଣ । ୫୮
ସେ ଅଞ୍ଚଳ ଲୋକମାନେ ଥାଅ ସାବଧାନ
ଜାଣିରଖ କି କରିବ ହେଲେ ଆକ୍ରମଣ । ୫୯

ଯେତେବେଳେ ଉଡ଼ାଯାନ ଶତ୍ରୁର ଆସିବ
ତେତେବେଳେ ସତରକ ଘଣ୍ଟା ଦିଆଯିବ ।୬°
ସେ ଘଣ୍ଟି ଶବଦ ଯାର କାନକୁ ଶୁଭିବ
ଘରଭିତରୁ ଦାଣ୍ଡକୁ କେବେ ନ ଆସିବ । ୬୧
ଦନ୍ତଗାତ ଭିତରେ ପଶିବ ସେ କାଳରେ
ମୁହଁମାଡ଼ି ଶୋଇପଡ଼ି ସେ ଗାତ ଭିତରେ ।୬୨
ଉଡ଼ାଜାହାଜ ଯେ କାଳେ ଫେରି ଚାଲିଯିବ
ପୁଣି ଆଉଥରେ ସତରକ ଘଣ୍ଟା ହେବ । ୬୩
ତେତେବେଳେ ବାହାରକୁ ଲୋକ ଆସିପାରେ
ପୁଣି ନିତ୍ୟ କରମରେ ଲଗ ନିର୍ଭୟରେ । ୬୪
ଆଲୋକର କଟକଣା କରିବାକୁ ହେବ
ବାହାରେ ଆଲୁଅ ଧରି କେବେ ନ ବୁଲିବ ।୬୫
ଶତ୍ରୁ ଆକ୍ରମଣବେଳେ ଶତ୍ରୁକୁ ଦିଶିବ
ଆଲୁଅକୁ ଲକ୍ଷକରି ଗୁଳା ପକାଇବ । ୬୬
ଅଗ୍ନିଗୁଳା ପଡ଼ିକରି ଯେ କାଳେ ଫୁଟିବ
ତହିଁରୁ ନାନା ବିଷାକ୍ତ ଦ୍ରବ୍ୟ ଛୁଡ଼ିକିବ । ୬୭
ବିଲାତିଆଳୁ ସମାନ ଦ୍ରବ୍ୟ ଛୁଡ଼ିକିବ
ସେ ଦ୍ରବ୍ୟକୁ କେବେ କେହି ହାତେ ନ ଛୁଇଁବ ।
ହାତରେ ଲଗିଲେ ଘାଆ ଫୋଟକା କରିବ
ଲୁହାଚିଙ୍କିରେ ତାହାକୁ ସତର୍କେ ଧରିବ ।୬୯
ଜଳପୂର୍ଣ୍ଣ ହାଣ୍ଡିରେ ତାହାକୁ ପକାଇବ
ସେ ପାଣିକୁ ନେଇ ଠାଏ ଫୋପଡ଼ାଇ ଦେବ ।
ସେଠାରେ ସେ ଗୁଳା ପୁଣି ଜଳପୋଡ଼ି ଯିବ
ତେବେ ଯାଇ ତାର ଗୁଣ ଲୋପ ପାଇଯିବ ।୭୧
ଯେତେ ସତର୍କ ଉପାୟ ହେଉଛି ପ୍ରଚାର
ଲୋକମାନେ ବୁଝି ଶୁଣି ସେ ଉପାୟ କର ।୭୨
ଆପଣା ଜୀବନ ରକ୍ଷାପାଇଁ ଏବେ ଘର
ସାବଧାନ କରି ଦେଉଛନ୍ତି ସରକାର । ୭୩

ଯେଉଁଠାରେ ସମର ହେଉଛୁ ଯେତେବେଳେ
ସେ ସ୍ଥାନ ଛାଡ଼ିଣ ଲୋକେ ଯିବେ ତେତେବେଳେ
ବିଶେଷେ ବାଳକ ସ୍ତ୍ରୀ ବୃଦ୍ଧ ଲୋକମାନେ
ସେ ଥାନୁ ଅନ୍ତରହୋଇ ଯିବେ ଆନ ଥାନେ ।
କେବଳ ସଇନମାନେ ରହିବେ ସେଠାରେ
ସାମରିକ ଶାସନ ଚଳିବ ସେ କାଳରେ । ୭୬
ସାମରିକ ଶାସନଟି କଠିନ ଶାସନ
ଦୟାମାୟା ନାହିଁ ତହିଁ ଥିବ ସାବଧାନ ।୭୭
ଚେହ୍ନ ଉଡ଼ାଇବା ପାଇଁ ହେବ ପ୍ରାଣ ଦଣ୍ଡ
ନିୟମ ମାନି ଚଳିଲେ ନାହିଁ ଦଣ୍ଡମଣ୍ଡ । ୭୮
ସଇନମାନେ ସେଠାରେ ରହିବେ କେବଳ
ହେବ ସେଠାରେ କେବଳ ସାମରିକ ଖେଳ ।
ଶତ୍ରୁ ଯେଉଁଠାରେ ଗୁଳିଗୁଳା ପକାଇବ
ସେ ଥାନର ଗଛଗୋଟି କିଛି ନ ରହିବ ।୮୦
ଘରଦ୍ୱାର ଭାଙ୍ଗିରୁଜି ହେବ ଛାରଖାର
ପୋଡ଼ି ଭସ୍ମହେବ ଘରକରଣା ସକଳ । ୮୧
ନିରୀହ ପ୍ରାଣୀ ଅନେକ ପ୍ରାଣ ହରାଇବେ
କେହୁ ଜୀବନରେ ଥାଇ କଲବଲ ହେବେ ।୮୨
କେହୁବା ଜଖମ ହୋଇ ହେବ ଛଟପଟ
କାହା ହାତ ଗୋଡ଼ ଛିଡ଼ି ମଡ଼ିବ ନିପଟ । ୮୩
କେ ଗୁଳିଗୁଳା ଶବଦ ଶୁଣି କାଲ ହେବ
କାହାର ବା କର୍ଣ୍ଣପଟ ଶୁଣି ଫାଟିଯିବ । ୮୪
କା ଜଭ ବାହାରିପଡ଼ି ଦାନ୍ତ ପଡ଼ିଯିବ
କିଏବା ଆଘାତପାଇ ଆଖି ଅନ୍ଧ ହେବ । ୮୫
ତେଣୁ ସାବଧାନ କରୁଛନ୍ତି ସରକାର
ତେତେବେଳେ କାନେ ତୁଳା ଦେବଟି ନିକର
ଲୁଗାବଣ୍ଡା ପାଟିରେ ଭରିବ ତେତେବେଳେ
ଗୋଳା ଶବଦ ବିପତ୍ତି ଊଣା ହୋଇପାରେ ।

ନଗର ରକ୍ଷକଦଳ କର ସଂଗଠନ
ବିପତ୍ତିବେଳେ ସହାୟ ହେବେ ସେହୁ ଜନ ।୮୮
ବିପଦଗ୍ରସ୍ତ ଲୋକର ସେବା ସେ କରିବେ
କେବଳ ସେବା କାମରେ ନିଯୁକ୍ତ ରହିବେ ।୮୯
ସବୁ ସହରରେ ଲାଗିଅଛୁ ସଂଗଠନ
ନଗରରକ୍ଷୀ ବୋଲଣ ଏହାଙ୍କର ନାମ । ୯୦
ସରକାରୀ ରକ୍ଷୀଦଳ ସଙ୍ଗେ ଯୋଗ ଦେବେ
ସରକାର ଆଦେଶରେ କାର୍ଯ୍ୟ ଚଳାଇବେ ।
ଜାପାନ ଗୋଟିଏ ଅତି କ୍ଷୁଦ୍ର ରାଜ୍ୟ ଜାଣ
କେତେଦିନୁ ସଜବାଜ ହୋଇଥିଲା ପୁଣ । ୯୨
ବ୍ରିଟିଶ କେଶରୀ ସଙ୍ଗେ ମୁଣ୍ଡ ପକାଇଲା
ପୂର୍ବ ଦ୍ୱୀପମାନଙ୍କରେ ଆସି ଧାଡ଼ ଦେଲା ।୯୩
ମାଲୟ ସିଙ୍ଗାପୁରକୁ ହାତ ପକାଇଲା
ଦେଖୁଁ ଦେଖୁଁ ତାର ମୁହଁ ଦ୍ୱିଗୁଣ ବଢ଼ିଲା ।୯୪
ବ୍ରହ୍ମଦେଶ ରେଙ୍ଗୁନ ସହରେ ଧାଡ଼ ଦେଲା
ସେଠାରେ ଏବେ ଭୀଷଣ ସମର ଲାଗିଲା । ୯୫
ଲାଗିଛି ସମର ସେଠି ଅତି ଭୟଙ୍କର
ରେଙ୍ଗୁନ ଅବସ୍ଥା ହେଲା ଅତି ଗୁରୁତର ।୯୬
କେତେ ସାମରିକ ବଳ ରଖିଛି କେଜାଣି
ଶକ୍ତିରେ ସମଗ୍ର ଧରା ପାରିବ ସେ ଜାଣି । ୯୭
ଜର୍ମାନୀ ସହିତ ସାଥି ହୋଇଛି ନକର
ଶକ୍ତିରେ ତା ସଙ୍ଗେ କିଏ ଅଛି ପାରିବାର ।୯୮
ଯେଉଁ ବ୍ରିଟିଶ ସାମ୍ରାଜ୍ୟେ ସୂର୍ଯ୍ୟ ନୁହେଁ ଅସ୍ତ
ତାଙ୍କ ସଙ୍ଗେ ଲଢ଼ି ତାଙ୍କୁ କରୁଛି ପରାସ୍ତ । ୯୯
ତାଙ୍କ ରାଜ୍ୟରେ ପ୍ରବେଶି କରୁଛି ଲଢ଼ାଇ
ଅତି ଦମ୍ଭ ଦର୍ପଭରେ କରୁଛି ବଡ଼ାଇ । ୧୦୦
ଅତି ଦର୍ପେ ଲଙ୍କାପୁରୀ ହୋଇଥିଲା ହତ
ଅତି ଦର୍ପେ କୁରୁବଂଶ ହୋଇଲେ ପରାସ୍ତ ।୧୦୧

କି ହେବ ଜାପାନ ଦଶା ଜଣା ଯାଉନାହିଁ
ମାଡ଼ିଯାଉଛି ଆଗକୁ ଖାଲ ଢିପ ନାହିଁ । ୧୦୨
ମାଲୟ ପ୍ରଭୃତି କେତେ ଖଣ୍ଡ ଦ୍ୱୀପ ନେଲା
ରେଙ୍ଗୁନଠାରେ ବିଷମ ସମର ଲାଗିଲା । ୧୦୩
ଚିନାଠାରୁ ବର୍ମାଯାକେ ସ୍ଥଳପଥ ଥିଲା
ଜାପାନ ସେ ପଥ ଅବରୋଧ କରିଦେଲା ।୧୦୪
ଅନ୍ୟପଥ ଅଛି ମାତ୍ର ଏ ପଥ ପ୍ରଧାନ
ବ୍ରହ୍ମଦେଶେ ଲଗାଇ ଦେଇଛି ଘୋର ରଣ ।
ଆନ୍ଦାମାନ ଦ୍ୱୀପଠାରେ ଗୁଳା ପକାଉଛି
ସୁଏଜ ପ୍ରଣାଳୀ ପରେ ଗୁଳା ବରଷୁଛି । ୧୦୬
ଜାଭା ସୁମାତ୍ରା ବୋର୍ଣ୍ଣିଓ ହେଲା କରଗତ
ପଠାଆଇ ଦେଉଅଛି ସେ ସେନା ବହୁତ ।୧୦୭
କଞ୍ଚାଗୁଉଳ ଗୈବାଇ କରୁଛନ୍ତି ରଣ
ନ ମଣ ଜାପାନ ସେନା ନିହାତି ନଉନ ।୧୦୮
ଇଂରେଜ ଲୋକେ କରନ୍ତି ଏହା ସିଉକାର
ଲାଗିଅଛି ସେ ଅଞ୍ଚଳେ ଘୋର ମାରଧର ।୧୦୯
କେତେ ପୁରପଲ୍ଲୀ ହେଉଅଛି ଛାରଖାର
ପୋଡ଼ି ଜଳି ଭସ୍ମ ହୋଇଯାଉଛି ନଗର ।୧୧୦
ଲୋକମାନଙ୍କର ଦଶା କହିଲେ ନ ସରେ
ଭିକାରୀ ହୋଇ ବୁଲନ୍ତି ଦଣ୍ଡକେ ଦାଣ୍ଡରେ ।
ଗୃହ ଶୂନ୍ୟ ହୋଇ ବୁଲୁଛନ୍ତି ଏଣେ ତେଣେ
ପଳାଇଯିବାକୁ ରାହା ନ ମିଳୁଛି କେଣେ ।୧୧୨
ଭାରତ ଲୋକ ଯେତେକ ବ୍ରହ୍ମଦେଶେ ଥିଲେ
ଭାରତକୁ ଆସିବାକୁ ପଥ ନ ପାଇଲେ । ୧୧୩
ଭାରତରୁ ବ୍ରହ୍ମଦେଶ ଅଟେ ବହୁଦୂର
ଚାଲିଆସିବା ଅଟଇ ଦୁରୂହ ବ୍ୟାପାର । ୧୧୪
ପ୍ରାଣ ବିକଳରେ ଲୋକ ଶୋଷ [illegible] ସହି
ଆପଣା ଦେଶକୁ ଆସୁଅଛନ୍ତି ପଳାଇ । ୧୧୫

ତେଣେ ଜଣି ଜାପାନର ବଢ଼ିଲା ସାହସ
ଭାରତ ଉପରେ ଧାଡ଼ଦେବ ତାର ଆଶ ।୧୧୬
ଭାରତର ସରକାର ତେଣୁ ସାବଧାନ
କରାଇ ଦେଉଅଛନ୍ତି ପ୍ରଜାମାନେ ଶୁଣ । ୧୧୭
ଆଗଠାରୁ ସାବଧାନ ହୋଇଥିବ ଯେବେ
ବିପତ୍ତି ମାଡ଼ିଆସିଲେ ସତର୍କେ ରହିବେ ।୧୧୮
ଭାରତର ପୁରପଲ୍ଲୀ ଥାଅ ହୁସିଆର
ବିପତ୍ତି ଆସିଲେ କରିବାର ପ୍ରତିକାର । ୧୧୯
ତୁରନ୍ତ ଯେଉଁ ଅଞ୍ଚଳେ ଶତ୍ରୁ ଆସିପାରେ
ଜାଣି ପାରୁଛନ୍ତି ସରକାର ସମ୍ଭବରେ । ୧୨୦
ସେ ଅଞ୍ଚଳେ ପ୍ରତିକାର କରନ୍ତି ବିଧାନ
ଦୂରେ ଚାଲିଯାଅ ଆହେ ପୁରବାସୀ ଜନ ।୧୨୧
ବିଶେଷେ ସ୍ତ୍ରୀ ଶିଶୁ ବାଳକ ବୃଦ୍ଧେ ଚାଲିଯାଅ
ଯାର କାର୍ଯ୍ୟ କାମ ନାହିଁ ଆନସ୍ଥାନେ ଯାଅ ।
ଯେବେ ସେ ଅଞ୍ଚଳ ରଣକ୍ଷେତ୍ର କରାଯିବ
ବାଧ୍ୟକରି ସେ ଅଞ୍ଚଳ ଲୋକେ ତଡ଼ା ହେବ ।
ଚିଟାଗଙ୍ଗରେ ହୋଇଛି ସେ ଆଦେଶ ଜାରି
ପଞ୍ଚବିଂଶ ସସ୍ରଲୋକ ଯିବେକ ବାହାରି ।:୧୨୪
ଘରଦ୍ୱାର ଛାଡ଼ି ଲୋକେ କେଉଁଠାକୁ ଯିବେ
କେଉଁଠାରେ ଯାଇ ନୂଆ କୁଟୀର ବାନ୍ଧିବେ ।
ତୁରନ୍ତ ଆଦେଶ ଏହା କରିବ ପାଳନ
ଦୟା ମାୟା ଏଥିରେ ନାହିଁକ କିଛି ଜାଣ ।
ଯୁଦ୍ଧ ଆବଶ୍ୟକ ପାଇଁ ଯାହା ଦରକାର
ଦେବା ନେବା ପାଇଁ ତହୁଁ ନାହିଁକ ନିସ୍ତାର ।
ସ୍ୱାଧୀନ ଦେଶ ଇଂଲଣ୍ଡ ପ୍ରଭୃତି ଯେତେକ
ବାଧ୍ୟ ହୋଇ ସେନାଭୁକ୍ତ ହୋଇବେକ ଲୋକ ।
ନାହିଁ କରିବାର କାର ନାହିଁ ଅଧିକାର
ଦେଶ ରକ୍ଷା ପାଇଁ ସର୍ବେ ହେବେ ତତପର ।

ନିର୍ଦ୍ଦିଷ୍ଟ ବୟସ ପାର ସେ ଅବଶ୍ୟ ମିବ
ଯୁଦ୍ଧ ଶିକ୍ଷା ଲଭ କରି ଶ୍ରେଣୀଭୁକ୍ତ ହେବ ।
ସେ ଦେଶର ଧନ ଜନ ଅଛଇ ଯେତେକ
ରାଜ୍ୟ ରକ୍ଷା କରମରେ ହୋଇବ ଯୋଜକ ।
ରାଜ୍ୟ ଉପରେ ବଇରୀ କଲେ ଆକ୍ରମଣ
ସକଳ ପରଜାମାନେ ଦେବେ ଧନ ଜନ ।୧୩୧
କେତେକାଳୁ ରଣ ଗୋଳ ଭାରତରେ ନାହିଁ
ତେଣୁ ରଣ ନାମ ଶୁଣି ଭାରତ ଡରଇ ।୧୩୨
ଗୁଳି ଗୁଳା ଶବଦ ଶୁଣି ଯେ ଚମକଇ
ଡରେ ଥରହର ହୋଇ ଯାଉଛି ପଳାଇ ।୧୩୩
ପ୍ରାଣେ ଉନ୍ମାଦନା ତାର ନାହିଁ ତିଳେ ମାତ୍ର
ଉଡ଼ାଯାନ ଦେଖି ତେଣୁ ମଣଇ ବିଚିତ୍ର ।୧୩୪
ଭାରତକୁ କ୍ରମେ ମାଡ଼ି ଆସୁଛି ବିପତ୍ତି
ଏ କଥା ଶ୍ରବଣ କରି କମ୍ପୁଅଛି ଗୁପ୍ତି । ୧୩୫
ମଣିଷ ମାରିବା ଯନ୍ତ୍ର ନାନା ପରକାର
ବର୍ତ୍ତମାନ ସମରରେ ହୁଏ କାରବାର । ୧୩୬
ସାରା ବ୍ରହ୍ମାଣ୍ଡରେ ଜଳେ ସମର ଅନଳ
ସବୁ ଜାତିମାନେ ଡେଇଁ ପଡ଼ନ୍ତି ନିକର ।୧୩୭
ଭାରତ ଲୋକେ ନିରସ୍ତ୍ର ଭୟେ ଥରହର
ବଇରୀ ଆସିଲେ କିସ କରିବେ ଆବର ।୧୩୮
ଇଂରେଜଙ୍କ ବାହୁଚ୍ଛାୟା ତଳେ ଯେ ଅଛନ୍ତି
ବଇରୀର ଦାଉ କେବେ ବୁଝି ନ ପାରନ୍ତି ।
ଭାରତ ଉପରେ ଲକ୍ଷ୍ୟ ଅଛି ବଇରୀର
କେ ଜାଣେ କେଉଁ ମୁହୂର୍ତ୍ତେ ଆସିବ ନିକର ।
ନିଦା ବସ୍ତୁ ଅଚେନ୍ତ ଭାରତ ଲୋକ ଗଣ
ବୁଝିବା ସୁଝିବା ଲୋକ ଅଛନ୍ତି କେତେଜଣ ।
କଂଗ୍ରେସ ବୋଲେ ଭାରତ ହୋଇଲେ ସ୍ୱାଧୀନ
ପ୍ରାଣ ପଣେ ଭାରତ ରକ୍ଷାରେ ଦେବେ ମନ ।

ଏହି ଆଲୋଚନା ଲାଗିଅଛି ବିଲାତରେ
ନାନା ମୁନିଙ୍କର ନାନା ମତ ଏ କଥାରେ ।୧୪୩
କେ ବୋଲେ ଭାରତ ଅସ୍ତ୍ର ଶସ୍ତ୍ର ନ ଧରିଲେ
କିପରି ଇଂରେଜପରି ଲଢ଼ିବ ସେ ଭଲେ ।
ବିଲାତ ମନ୍ତ୍ରୀ ମଣ୍ଡଳେ ଲାଗିଛି ବିଚାର
କିପରି ଭାରତ ଦାବି ପୂରିବ ନିକର । ୧୪୫
କେ ବୋଲେ ତୁରନ୍ତ ସ୍ୱାଧୀନତା ଦେଇ ଦିଅ
କେ ବୋଲେ ସମର ଶେଷେ ଏ ଜବାବ କହ ।
କେ ବୋଲେ ଉପନିବେଶ ରାଜ୍ୟ ସମ ସତ୍ତ୍ୱ
ଭାରତକୁ ଦିଆଯିବ କହ ହେ ନିଶ୍ଚିତ । ୧୪୭
ବିଲାତ ମନ୍ତ୍ରୀମଣ୍ଡଳେ ଅଦଳ ବଦଳ
ହୋଇଅଛି ଅଳ୍ପ ଦିନେ ଜାଣ ହେ ନିକର ।
ଗ୍ରୀଗସ ସାହେବ ନୂଆ ଯୁଦ୍ଧ ମନ୍ତ୍ରୀ ହେଲେ
ଆଉ କେତେ ଜଣ ତାଙ୍କ ସାଥିରେ ରହିଲେ ।
ଘମାଘୋଟ ବିଚାର ଲାଗିଛି ଏଥିପାଇଁ
ଚର୍ଚିଲ ସାହେବ ଚିନ୍ତା କରୁଛନ୍ତି ଥାଇ ।୧୫୦
ଚିନା ଦେଶ ସେନାପତି ଚିଆଙ୍ଗକୈଶୋକ·
ଏତିକ ବେଳେ ଭାରତେ ସେହୁ ଆସିଲେକ ।
ସେ ମହାଭାଗ ଦିଲ୍ଲୀରେ ଆସି ପ୍ରବେଶିଲେ
ତାଙ୍କ ଗୃହଲକ୍ଷ୍ମୀ ତାଙ୍କ ସହିତରେ ଥିଲେ ।
ବଡ଼ଲାଟଙ୍କର ଦୁହେଁ କୁଣିଆଁ ହୋଇଲେ
ଅଳପ ଦିନ ସେ ରହି ପୁଣି ଫେରି ଗଲେ ।
ଭାରତର ବଡ଼ ବଡ଼ ନେତାଙ୍କ ସହିତ
ହୋଇଥିଲା ଅଳ୍ପକାଳ ତାହାଙ୍କ ସାକ୍ଷାତ ।୧୫୪
ଗାନ୍ଧି ନେହେରୁ ପ୍ରଭୃତି ସାକ୍ଷାତ ହୋଇଲେ
ଭାଉତରୁ ମତିଗତି ସବୁ ବୁଝି ଗଲେ । ୧୫୫
ଯିବାବେଳେ ଭାରତ ବିଷୟ କହିଗଲେ
ଭାରତ ସ୍ୱାଧୀନ ହେବା ଉଚିତ ଏବେଳେ ।

ତିନୀ ଭାରତ ସ୍ୱାଧୀନ ନ ହୋଇବ ଯେବେ
ଏ ଧରାରେ ଶାନ୍ତି ବିରାଜିବ ନାହିଁ କେବେ ।
ଏ ବାରତା' ଶୁଣିଣ ବିଳାତ ସରକାର
ଭାରତ କଥା ଅଧିକ ଲଗିଲା ବିଗୃର । ୧୫୮
ତଆଙ୍ଗକୈଶାକ ଭାରତକୁ ଆସିଥିଲେ
କ ହୋଇବ ତାଙ୍କ ପାଇଁ ବିଗୃର ବାନ୍ଧିଲେ ।
ଭାରତେ ଦିନେ ଉତ୍ସବ ହେବ ତାଙ୍କ ପାଇଁ
ଏ କଥା କାଳ କାଳକୁ ଥିବସିନା ରହି ।୧୬୦
ଭାରତର ବଡ଼ ଲାଟ ପେଶିଲେ ଆଦେଶ
ପ୍ରତି ଜନପଦେ ଏହା ହୋଇବ ଅବଶ୍ୟ ।
ସେ ଆଦେଶ ପାଳି ଲୋକେ ଯାକ ଭାରତରେ
ଉତ୍ସବ ଆରମ୍ଭ ହେଲା ନଗର ପଲ୍ଲୀରେ ।୧୬୨
ତିନୀ ଦିବସ ହେଲା ସେ ଉତ୍ସବର ନାମ
ପଟୁ ଆର ଶୋଭାଯାତ୍ରା ଆଦି ନାନାକର୍ମ ।
ଊନବିଂଶ ବୟାଳିଶ ସାଲ ମାର୍ଚ୍ଚ ମାସ
ସାତ ତାରଖ ହୋଇଲା ଚୀଇନା ଦିବସ ।୧୬୪
ଭାରତ ଚୀଇନା ପ୍ରୀତି ଅତୁଟ ରହିବ
ଭାରତର ଚିନା ପ୍ରତି ଅଟୁ ବନ୍ଧୁଭାବ । ୧୬୫
ସ୍ନେହ ସୌହାର୍ଦ୍ଦ୍ୟ ସହାନୁଭୂତି ଭାବମାନ
ସଭାରେ ପ୍ରକାଶ କଲେ କେତେକେତେ ଜନ ।
ଏ ଭାବ ସମୁଦ୍ର ମନ୍ଥା ଲହୁଣୀ ସମାନ
ପ୍ରସ୍ତାବ ଆକାର ତାହା କଲକ ଧାରଣ ।୧୬୭
ସେ ପ୍ରସ୍ତାବମାନ ଯିବ ବଡ଼ଲାଟ ପାଶେ
ସେ ସବୁ ସେ ପଠାଇବେ ଚିନ ଦେଶ ପାଶେ ।
ସେ ଦିନ ଯା କିଛି ଅର୍ଥ ସଂଗ୍ରହ ହୋଇବ
ତାହା ମଧ୍ୟ ସେ ଦେଶକୁ ଅବିଳମ୍ବେ ଯିବ ।
ସେ ଦେଶ ବିପଦଗ୍ରସ୍ତ ଲୋକଙ୍କର ହିତେ
ଏ ଧନ ବ୍ୟୟ ହୋଇବ ଜାଣ ହେ ପଣ୍ଡିତେ ।

ଜାପାନ ଚିନା ସହିତ କରୁଛି ସମର
ଚାରି ବରଷ ହେଲାଣି ଶାନ୍ତି ନାହିଁ ତାର ।୧୭୧
ଅତି ବୃହତ୍ତର ଦେଶ ଅଟେ ଚିନା ଦେଶ
ଚାଳିଶ ପାଞ୍ଚ କୋଟି ଏ ଲୋକଙ୍କର ବାସ ।୧୭୨
ପଞ୍ଚତିଶ କୋଟି ଲୋକ ଛନ୍ତି ଭାରତରେ
ଗଲା ଜନ ଗଣନାରେ ବଢ଼ି ଥାଇ ପାରେ ।୧୭୩
ପୃଥିବୀରେ ଯେତେ ଦେଶେ ଯେତେ ଲୋକଛନ୍ତି
ସଂଖ୍ୟାରେ ଏ ଦୁଇ ଦେଶୁଁ ବଳି ନ ପାରନ୍ତି ।
ଏ ଦୁଇ ଦେଶର ଲୋକ ହେଲେ ଏକମେଳ
ସମଗ୍ର ଧରାକୁ କରି ପାରେ ଟଳମଳ । ୧୭୫
ଚିନ ଦେଶ ବିଲାତ ସଙ୍ଗରେ ମେଳ ହୋଇ
ଜାପାନ ସହିତ ଏବେ କରୁଛି ଲଢ଼ାଇ । ୧୭୬
ଘୋର ସମର ଲାଗିଛି ଚିନା ଜାପାନର
ଏଣେ ବିଲାତ ସହିତ କରୁଛି ସମର । ୧୭୭
ବିଲାତର ଅଧିକାରେ ଅଛି ରାଜ୍ୟ ଯେତେ
ଛଡ଼ାଇ ନେବାକୁ ପାଞ୍ଚ କରୁଅଛି କେତେ ।
ଭାରତ ଉପରେ ଆଖି ରଖିଅଛି ସେହି
କେତେବେଳେ ବେଳଜଣ୍ଡି ଅସିବ ଧସାଇ ।
ବ୍ରହ୍ମଦେଶ ଯୁଦ୍ଧ ଶେଷେ ଭାରତେ ଆସିବ
ଏ ଆଶଙ୍କା ଅଛି କେହି ଏଡ଼ି ନ ପାରିବ ।
ସାବଧାନ ହୋଇଛନ୍ତି ତେଣୁ ସରକାର
ଭାରତ ରକ୍ଷା ପାଇଁ କି ଲାଗିଛି ବିଚାର । ୧୮୧
ତେଣେ ରୁଷିଆରେ ଜଗିଅଛି ହିଟଲର
ବସନ୍ତ ଆଗମନକୁ ଛକିଛି ନିକର । ୧୮୨
ବସିବସି ବଳ ସାଜୁଅଛି ଏତେକାଳ
ଖଣ୍ଡଣ ଭାବେ ଲଢ଼ିବ ଏଥର ନିକର । ୧୮୩
ତାର ପାଞ୍ଚ ରୁଷିଆକୁ କରିଣ ପରାସ୍ତ
ଜାପାନ ସହିତ ଯୋଗ ଦେବ ସେ ନିଶ୍ଚିତ ।

ଦୁହେଁ ମିଶି ଦୁଇଦିଗୁ ଭାରତକୁ ଆସି
ଚଡ଼ାଉ କରିବେ ଦେଶେ ଯଥା ଷଣ୍ଢ ଆସି ।
ଏବେ ଭାରତ ନିରସ୍ତ୍ର ଯୁଦ୍ଧ ଶିକ୍ଷା ନାହିଁ
ଯୁଦ୍ଧ ନାମ ଶୁଣୁ ଶୁଣୁ ଭୟରେ ଥରଇ । ୧୮୬
ଅନ୍ୟସ୍ଥାନ ଯୁଦ୍ଧ ସମାଚାର ପଡ଼େ କାନେ
ସନ୍ତ୍ରସ୍ତ ଭୀତ ହେଉଅଛୁ ସଦା ମନେମନେ ।୧୮୭
ଆରତେ ଡାକୁଛୁ ରକ୍ଷାକର ଆର୍ତ୍ତତ୍ରାଣ
ବିପତ୍ତି ନାଶନ ବାନା ଉଡ଼ୁଅଛି ଆପଣ । ୧୮୮
କେତେ କେତେ ବିପଦରୁ କରିଛ ଉଦ୍ଧାର
ଯୁଗେ ଯୁଗେ ଲଭିଅଛ ପ୍ରଭୁ ଅବତାର ।୧୮୯
ଆଜ ଦେଶେ ଶତ୍ରୁ ଯେଉଁ ବିପତ୍ତି ଘଟାଏ
ଧନ ପ୍ରାଣେ ନାମ ଭଜ ହୁଅନ୍ତୁ ଅଥୟେ । ୧୯୦
ବ୍ରହ୍ମ ସିଙ୍ଗାପୁର ମାଲୟର ଦଶା ଦେଖି
ନିଶ୍ଚିହ୍ନ ଭାରତବାସୀ ଯାଉଅଛୁ ଶଙ୍କି । ୧୯୧
ସତେ ଏ ମହାମାରୀରୁ ଉଦ୍ଧାର ପାଇବ
ସୁଖ ଶାନ୍ତି ଭୋଗକରି ଆନନ୍ଦେ ରହିବ ।୧୯୨
ତଉବାହା ଛାଇତଳେ ଥାଇ ଏ ଭାରତ
ଶତ୍ରୁ ରଂଶ୍ରୁର ବେଗରେ ହୋଇବ ଦଳିତ ।
ତଳାଡ଼ୋଳାରେ ଦେଖୁଛ ଆହେ ତଉବାହା
ଭାରତର ତବ ବିନୁ କିଏ ଅଛି ସାହା । ୧୯୪
ଏ କଥା କହୁଛି ସିନା ପୁଣି ପାଞ୍ଚେ ମନେ
ତବ ବିଚିତ୍ର ମାୟାକୁ ବୁଝିବ କେ ଜଣେ ।୧୯୫
ଦୁରିତ ନାଶନବାନା ପୁଣି ଅଛି ବହି
କେ ଦୁଷ୍ଟ କେ ସନ୍ଥ କିଛି ବୁଝି ନପାରଇ ।୧୯୬
ପର ଆପଣା ବିଚାର ନାହିଁ ତୁମ୍ଭଠାରେ
ନାଶିଲ ଆପଣା ବଂଶ କୋଳିଆ ଭୟରେ ।
ଆନ ଭେଦ ତୁମ୍ଭଠାରେ ନାହିଁ ତଳେ କିଛି
ଆପଣା ଘର ବୁଡ଼ାଇଥିଲ ଶୁଣାଅଛି । ୧୯୮

କୁରୁକ୍ଷେତ୍ର ସମରରେ ଯାହା ଯାହା କଲ
ସେ କଥା ଶୁଣିଲେ ଲୋକେ ହୋନ୍ତି କଲବଲ ।
କି ନକତି ଧରିବ ତୁମ୍ଭଙ୍କୁ ଯାହା ଜଣା
ମୁଁ ଦୁଷ୍ଟ କି ସନ୍ଥ ମୋତେ ପଡ଼ୁ ନାହିଁ ଜଣା ।
କାହାକୁ ଡରିବ ଅବା କେଉଁଠି ଲୁଚିବ
କେଉଁଠାକୁ ଡରିକରି ପଳାଇ ମୁଁ ଯିବ । ୨୦୧
ଶଶୀ ସୂର୍ଯ୍ୟ ନେତ୍ର ଯାର ସକଳ ଦେଖିବ
ସେ ଦୃଷ୍ଟି ଉହାଡ଼ୁ କେଉଁଠାକୁ ପଳାଇବ ।
କାହାକୁ ଡରିବା କେହି କେଉଁଆଡ଼େ ନାହିଁ
ଯାହାକୁ ଡରିବା ସେ ତ ଅଛନ୍ତି ସେହି ।୨୦୩
ମାରିଲେ ମାରିବେ ସେହୁ ରଖିଲେ ରଖିବେ
ନରଖିଲେ ଆନ କେହି ରଖି ନପାରିବେ ।୨୦୪
ଏ ଦୃଢ଼ତା ମନେ ଥିଲେ ନାହିଁ କିଛି ଭୟ
ତାହାଙ୍କୁ ବିଶ୍ୱାସ କଲେ ଦେବେ ସେ ଅଭୟ ।
ମନଥୟ କରି ତାଙ୍କୁ ଯେ ବିଶ୍ୱାସ କରେ
ତାକୁ ରକ୍ଷାକରନ୍ତି ସେ ସକଳ ପ୍ରକାରେ ।୨୦୬
ଚିନ୍ତା ଚଞ୍ଚଳ ନ କରି ଥୟକର ମନ
ଅବଶ୍ୟ ରକ୍ଷା କରିବେ ପ୍ରଭୁ ଭଗବାନ ।୨୦୭
ତାଙ୍କ ଇଚ୍ଛାବଳେ ଚଳୁଅଛି ଏ ଜଗତ
ତାଙ୍କ ଆଦେଶରେ ଚନ୍ଦ୍ରସୂର୍ଯ୍ୟ ଆତଜାତ ।୨୦୮
ବ୍ୟାପିଅଛି ତାଙ୍କ ଶକ୍ତି ସକଳ ଦେଶରେ
ସେ ଅଛନ୍ତି ବ୍ରହ୍ମଦେଶେ ରେଙ୍ଗୁନ ସହରେ ।
ଜାପାନରେ ଜର୍ମାନୀରେ ସବୁଠି ଅଛନ୍ତି
ବିଲାତେ ଘରତେ ସେହୁ ବ୍ୟାପି ରହିଛନ୍ତି ।
ଜଗତର ନାଥ ସେହୁ ଜଗତ କରତା
ହରତା ସେହି ଜଣକ ଏ ବିଶ୍ୱବିଧାତା । ୨୧୧
ଲୋକ କ୍ଷୟକାରୀ କାଳ ଅଟନ୍ତି ତ ସେହି
ଲୋକ ବିନାଶ ଯଜ୍ଞ ସେ ଅଛନ୍ତି ଭିଆଇ ।୨୧୨

ପ୍ରଳୟ ମୂରତିଧାରୀ ଦେଶେ ଦେଶେ ଫେରି
କେତେକେତେ ପ୍ରାଣୀ ସେହୁ ଦେଉଛନ୍ତି ମାରି ।
କେତେକାଳ ଅରଜନ ଧନ ରତ୍ନ ଆଦି
କେତେ କେତେ ଶ୍ରମକରି କେ ଥିଲି ସମ୍ପାଦି ।
କେତେ ଧନ ବ୍ୟୟକରି ତୋଳଥିଲି ଘର
ଘରକରଣା ଦରବ ସାଇତି ଅପାର । ୨୧୫
କେତେ ଯତନରେ ସାଜିଥିଲି ଘରଦ୍ୱାର
ହସି ଉଠୁଥିଲି ପୁର ନଗର ବଜାର । ୨୧୬
କେତେ କେତେ ମନୋହାରୀ ଦରବ ଭିଆଇ
ହାଟ ବଜାର ଦୋକାନ ଥିଲୁକ ସଜାଇ ।୨୧୭
କେତେ ଧରମ ମନ୍ଦିର ଦେଉଳ ଅଟ୍ଟାଳି
ଅତୁଳ ଧନ ସମ୍ପତ୍ତି ଖଟ ଶେଜ ଦୋଳି ।୨୧୮
ଇନ୍ଦ୍ରଭୁବନ ସମାନ ସହର ବଜାର
ଖଞ୍ଜାଥିଲି ବିଜୁଳି ଆଲୋକ ମାଳମାଳ । ୨୧୯
କଳେ ବଳେ ଭିଆଇଛି ନାନାଦି ଦରବ
ଏସବୁ ମୋହରି ବୋଲି ମନେ କେତେ ଗର୍ବ ।
କେହୁ ରାଜ ଚକ୍ରବର୍ତ୍ତୀ କେହୁ ସେନାପତି
ଶକତିବଳେ ଧରିଣ ନାନାଦି ମୂରତି । ୨୨୧
ଆକାଶ ପାତାଳ ଭୂମି ଦେଉଥିଲି ଦଳି
ଭ୍ରମୁଥିଲି ଏ ଜଗତେ ହୋଇ ମହାବଳୀ ।୨୨୨
ପଲକ ମାତ୍ରକେ ଭସ୍ମ ଏସବୁ ହେଉଛି
ଇନ୍ଦ୍ରଭୁବନ ଯେ ଥିଲି ଶ୍ମଶାନ ଦିଶୁଛି । ୨୨୩
କାହାକୁ ଦେଉଛ ପ୍ରଭୁ କେମନ୍ତ ପ୍ରେରଣା
ଏକାଳେ ସବୁରି ବୁଦ୍ଧି ହୋଇଗଲି ବଣା ।୨୨୪
ମୁଁ ବଡ଼ ମୁଁ ବଡ଼ ବୋଲି ସକଳେ ଗରବେ
ଡେଇଁପଡ଼ୁଛନ୍ତି ସବେ ଏ ମହାଆହବେ ।୨୨୫
ଯାହାକୁ ଯେଉଁ ପ୍ରେରଣା ଦେଉଛ ଆପଣ
ସେହି ପ୍ରେରଣା ଧରିଣ ମାତୁଛନ୍ତି ଜାଣ ।୨୨୬

ସୁକୃତ ଦୁଷ୍କୃତ କର୍ମଫଳ ଅନୁସରି
କାହାକୁ ଦେଉଛ ମାରି କାକୁ ଦଅ ତାରି । ୨୨୭
ଦେଖିଲେ ଲାଗୁଛି ଭୟ ଏ ପ୍ରଳୟଲୀଳା
ପ୍ରଳୟ ମୂରତି ଧରି କରୁଅଛ ଖେଳା । ୨୨୮
କେତେକାଳ ଖେଳିବ ଏ ଖେଳ ଜଣା ନାହିଁ
କେବେ ପାଳିବ ଏ ଧରା ପୁଣି ଶାନ୍ତ ହୋଇ ।
ହେ ବିଶ୍ୱ ମୂରତି ଆହେ ପ୍ରଭୁ ଚକ୍ରଧର
କେତେକାଳ ତବ ଚକ୍ର ଫେରିବ ନକର ।
ତୁମ୍ଭରି ସନ୍ତାନମାନେ ହେଉଛନ୍ତି ନଷ୍ଟ
ହେଉନାହିଁ କହେ ପ୍ରଭୁ ମନେ ତିଳେ କଷ୍ଟ ।
ଦୟାର-ସାଗର ଦୟାନିଧି ନାମ ବହି
କଣିକାଏ ଦୟା ଚିହ୍ନ ଦେଖାଯାଉନାହିଁ । ୨୩୨
ପ୍ରଳୟ ମୂରତି ଦେଖି ଡରନ୍ତି ସରବେ
ଦମ୍ଭ ସାହସ କାହାରି ରହୁନାହିଁ ଲବେ । ୨୩୩
ତୁମ୍ଭେ ତ ସବୁରି ବଳ ସବୁର ସହାୟ
ହଅ ମହାପ୍ରଭୁ ବାରେ ଧରାକୁ ଆଶ୍ରୟ । ୨୩୪
ଧରାକୁ ଯେ ସବୁ ମଣୁଥିଲା ଏକହାନ
ହାହି ହାହି ଡାକେ ସେହି ପ୍ରଭୁ ଭଗବାନ ।
ବୋଲେ ଦୀନ ଜଗବନ୍ଧୁ ଆହେ ଚକ୍ରଧର
ଚକ୍ର ତେଜ ମୋହନ ବେଶରେ ବଂଶୀ ଧର ।

ଇତି ଶ୍ରୀ ଭାରତ-ଚରିତାମୃତେ ଜାପାନ ସମର ବର୍ଣ୍ଣନେ ଏକଶତ ନବମ ଅଧ୍ୟାୟଃ ।



# ଏକଶତ ଦଶମ ଅଧ୍ୟାୟ

ଗଉର ଉବାଚ

ଜାପାନ ଯେ ଇଂରେଜ ସହିତ ଲଢୁଥିଲା
ସେ ସମର ଫଳାଫଳ ଜଣା ତ ନ ଗଲା । ୧
ଆଜ କେତେ କଥା ପୂର୍ବେ ମୁଁ ପଚାରିଥିଲି
ତହିଁର କିଛୁ ଜବାବ ଶୁଣି ନ ପାରିଲି । ୨
ଶୁଣିଛୁ କ୍ରିପସ ନାମେ ସାହିବ ଆସିଲେ
ଯେଉଁପାଇଁ ଆସିଥିଲେ କିସ କରିଗଲେ । ୩
ରୁଷିଆ ସଙ୍ଗେ ଜର୍ମାନୀ ଯୁଦ୍ଧ କରୁଥିଲା
ସେ ଯୁଦ୍ଧର ଫଳାଫଳ କେଉଁଆଡେ ଗଲା । ୪
ଆମେରିକା ମତିଗତି କିଅବା ହୋଇଲା
ଏସବୁ ସମାଚାର ତ ଜଣା ନ ପଡ଼ିଲା । ୫
ଏସବୁର ଚରିତମାନ କହନ୍ତୁ ଆପଣ
ଶୁଣିବାକୁ ଉଚ୍ଛନ୍ନ ହେଉଛି ମୋର ମନ । ୬

ଜଗା ଉବାଚ

ବେଳୁବେଳ ଜାପାନ ସମର ବୃଦ୍ଧି ହେଲା
ବ୍ରହ୍ମଦେଶରେ ଭୀଷଣ ସମର ସେ କଲା । ୭
ଇଂରେଜଙ୍କ ସଙ୍ଗେ ସେହୁ କରୁଛି ଲଢ଼ାଇ
ଖଣ୍ଡିଏ ଖଣ୍ଡିଏ ସ୍ଥାନ ନେଉଛି ଛଡ଼ାଇ । ୮
ମାଣ୍ଡାଲେ ସହର ହୋଇଗଲା ଛାରଖାର
ଧ୍ୱଂସ କରିଦେଲା ବ୍ରହ୍ମଦେଶ ସେ ନିଷ୍ଠୁର । ୯
ତେଣେ ଅଷ୍ଟ୍ରେଲିଆ ସଙ୍ଗେ କରୁଛି ସମର
ଅଗ୍ନିଗୁଳା ପକାଇ କରୁଛି ନାରଖାର । ୧୦
ତେଣେ ଆମେରିକା ସଙ୍ଗେ କରୁଛି ଲଢ଼ାଇ
ତା ରାଜ୍ୟରୁ ଖଣ୍ଡେଖଣ୍ଡେ ନେଉଛି ଛଡ଼ାଇ । ୧୧
ବେଳୁଁବେଳ ସମର ହେଉଛି ଭୟଙ୍କର
ଭାରତ ଉପରେ ପୁଣି ହେଲାକ ନଜର । ୧୨

ଏହିକାଳେ ବିଲାତରେ ପଡ଼ିଲା ଚହଳ
କମ୍ପାଇ ନ ତୁଟେ ଭାରତର ଗଣ୍ଡଗୋଳ ।୧୩
ଭାରତ ଯେ ଦାବି କରେ ହୋଇବ ସ୍ୱାଧୀନ
ଇଂରେଜ ସାମ୍ରାଜ୍ୟ ସଙ୍ଗେ ହୋଇବ ସମାନ ।
ବହୁକାଳୁ ଭାରତ କରୁଛି ଏହି ଅଳି
ଅଳନ୍ତୁ ଉପୁଜିଅଛି ନାନାମତେ କଳି । ୧୫
ଭାରତକୁ ଯେବେ କିଛି କ୍ଷମତା ନ ଦେବ
ମନ ପ୍ରାଣ ଦେଇ କିମ୍ପା ସମରେ ଲଢ଼ିବ ।୧୬
ବ୍ରହ୍ମଦେଶ ଲୋକମାନେ ଯାହା ଯାହା କଲେ
ତାହା ତ ବିଲାତବାସୀ ଅଖିରେ ଦେଖିଲେ ।୧୭
ବ୍ରହ୍ମ ଦେଶବାସୀ କେତେଦିନ ଯୁଦ୍ଧ କଲେ
ଶେଷେ ବଇରୀଙ୍କ ଆଣି ଫୁଲମାଳଦେଲେ ।୧୮
ବିଶ୍ୱାସଘାତକ କାର୍ଯ୍ୟ ନ ଅଟେ କି ଏହା
ବାଛି ବାଛି ନେଲେ ସେହୁ ଅଧରମ ରାହା ।୧୯
ଭାରତର ଦାବି ତେଣୁ କର ସମାଧାନ
ନ କଲେ ଭାରତ ଯୁଦ୍ଧେ ନ ଦେବଟି ମନ ।୨୦
ବିଲାତ ସଭାରେ ହେଲା ଏମନ୍ତ ବିଚାର
ସପକ୍ଷ ବିପକ୍ଷ ଯୁକ୍ତି ନାନା ପରକାର । ୨୧
ଭାରତ ମନ୍ତ୍ରୀ ବିଲାତ ପାଟମନ୍ତ୍ରୀ ଦୁଇ
ପ୍ରକାଶ୍ୟରେ କିଛି ମତ ନ ଦେଲେ ତ ସେହି ।
ମୁଖ୍ୟ ମନ୍ତ୍ରୀ ପରିଷଦ ଆଲୋଚନାକଲେ
କ୍ରିପସଙ୍କୁ ବିଗ୍ରହରେ ଭାରତେ ପେଶିଲେ ।
ସ୍ୱାଧୀନତା ଦାନଦେବ ଆସିଲେ କ୍ରିପସ
ଉଡ଼ା ଯାନେ ଆସିଲେ ସେ କମ୍ପାଇ ଆକାଶ ।
କେତେଦିନ ପରେ ଭାରତରେ ପହଞ୍ଚିଲେ
ଦିଲ୍ଲୀ ନଗରୀରେ ସେ ଆସ୍ଥାନ ଜମାଇଲେ ।
ମୁଖିଆ ମୁଖିଆ ଲୋକ ଯେତେ ଭାରତର
ଡକାଇଲେ ସମସ୍ତଙ୍କୁ ପଠାଇ ଖବର । ୨୬

ବିଲାତରୁ ସେ ଯେଉଁ ପ୍ରସ୍ତାବ ଆଣିଥିଲେ
ଭାରତବାସୀଙ୍କୁ ତାହା ସେହ୍ନ ଜଣାଇଲେ ।୨୭
ଶୁଣ ହେ ଭାରତବାସୀ ମନଦେଇ ଶୁଣ
ଏ ସମର ଶେଷହେଲେ ହୋଇବ ସ୍ୱାଧୀନ ।୨୮
ଅନ୍ୟ ଉପନିବେଶରେ ଅଛି ଯେ ବିଧାନ
ସେହି ପରକାରେ ତୁମ୍ଭେ ହୋଇବ ସ୍ୱାଧୀନ ।
ଯୁଦ୍ଧ ଶେଷେ ଅନନ୍ତ ବିଳମ୍ବେ ଏହା ହେବ
ବିଲାତ ସମ୍ପର୍କ କାଳେ ତୁଟାଇ ପାରିବ । ୩୦
ଯେତେବେଳେ ଇଚ୍ଛା ତେତେବେଳେ କରିପାର
ଏ ବିଷୟେ ରହିବ ସମ୍ପୂର୍ଣ୍ଣ ଅଧିକାର । ୩୧
ଶାସନତନ୍ତ୍ର ଗଢ଼ିବେ ପ୍ରତିନିଧି ଦଳ
ସେହିମାନେ ଚଳାଇବେ ଏ ଶାସନକଳ । ୩୨
ସଂଖ୍ୟାନ୍ୟୂନ ଜାତି ସ୍ୱାର୍ଥ କରିବେ ରକ୍ଷଣ
ପ୍ରତି ପ୍ରଦେଶର ସ୍ୱାର୍ଥ ହୋଇବ ସ୍ୱାଧୀନ । ୩୩
ଭାରତଯୁକ୍ତ ଶାସନ ନାମ ତାର ହେବ
ପ୍ରତି ପ୍ରଦେଶ ଇଚ୍ଛିଲେ ଏଥିରେ ପଶିବ । ୩୪
ଶତକରା ଅଶୀ ଲୋକ ହେଲେ ଏକମତ
ସେ ପ୍ରଦେଶ ଏହି ଯୋଜନାରୁ ହେବ ମୁକ୍ତ ।୩୫
ଇଚ୍ଛାକଲେ ଏହି ଯୋଜନାରେ ହେବ ଯୁକ୍ତ
ଥରେ ଯୁକ୍ତହେଲେ ପୁଣି ନ ହେବ ବିଯୁକ୍ତ ।୩୬
ଶତକରା ଷାଠିଏ କହିବେ ଯୁକ୍ତ ହେବେ
ଅବଶିଷ୍ଟ ଲୋକ ଯେବେ ଅମଙ୍ଗ ହୋଇବେ ।
ତେବେ ସେମାନେ ବୋଲିବେ ଭୋଟ ନିଆଯାଉ
ଅଧିକ ସଂଖ୍ୟକ ଯାହା ବୋଲିବେ ତା ହେଉ ।
ରାଜାମାନେ ଇଚ୍ଛାକଲେ ଏଥିରେ ପଶିବେ
ନୋହିଲେ ଅଲଗାହୋଇ ସେମାନେ ରହିବେ ।
ବର୍ତ୍ତମାନ ଯେତେକାଳ ଯୁଦ୍ଧ ଲାଗିଥିବ
ଭବିଷ୍ୟତ ଦୃଷ୍ଟିରେ ଶାସନ ଚଳୁଥିବ । ୪୦

ଭାରତରେ ପ୍ରତିନିଧି ସବୁ ଚଳାଇବେ
ରାଜ୍ୟରକ୍ଷା ବିଭାଗକୁ ଛୁଇଁ ନ ପାରିବେ । ୪୧
ବର୍ତ୍ତମାନ ସେନାପତି ସବୁ ଚଳାଇବେ
ଭାରତୀୟ ସଭ୍ୟ ଜଣେ ସାଥିରେ ରହିବେ ।୪୨
ସେନାପତିର ରହିବ ପୂର୍ଣ୍ଣ ଅଧିକାର
ସେହି ମୁଣ୍ଡାଇବେ ଏକା ରାଜ୍ୟରକ୍ଷା ଭାର ।୪୩
ଓ୍ୱାଭେଲ ସାହେବ ସେହି ସେନାପତି ନାମ
ଯୁଦ୍ଧବିଭାଗ ମାଲିକ ସେ ରହିବେ ଜାଣ । ୪୪
ଏହି ସରତରେ ଦିଆମିବ ମହାଦାନ
ନେବ କି ନ ନେବ କହିଦିଅ ତତକ୍ଷଣ । ୪୫
ଏ ମହାସୁଯୋଗ ଆସିଅଛି ଏତେବେଳେ
ହରାଇଲେ ନ ପାଇବ ପୁନଶ୍ଚ ଖୋଜିଲେ ।୪୬
ଏ ଘୋଷଣା ଭାରତରେ କଲେକ ପ୍ରଚାର
ସବୁ ଦଳପତିମାନେ କଲେକ ବିଚାର । ୪୭
ଗାନ୍ଧିଜିଙ୍କି କ୍ରିପସ ସାହେବ ଡକାଇଲେ
ଅହିଂସା ମତି ନ ଯିବ ବୋଲି ସେ ବୋଇଲେ ।୪୮
ଯୁଦ୍ଧର ବିରୋଧୀ ମୁଁ ତ ଡାକୁଛ କମ୍ପାଇ
ଅହିଂସା ମତିକି ଯୁଦ୍ଧ କଥା ନ ଯୋଗାଇ ।୪୯
ତଥାପି କ୍ରିପସ ବହୁ ଅନୁରୋଧ କଲେ
ଆସ ଆନ କଥାମାନ ପକାଇବା ଭଲେ । ୫୦
ଅନୁରୋଧ ରକ୍ଷାକରି ବୁଢ଼ା ଚଳିଗଲେ
ଯାଇ ଦିଲ୍ଲୀ ନଗରୀରେ ପ୍ରବେଶ ହୋଇଲେ ।୫୧
କ୍ରିପସ ବହୁ ଆଦରେ ତାହାଙ୍କୁ ଭେଟିଲେ
ବୁଢା ଯାଇ ତାଙ୍କଠାରୁ ସକଳ ଶୁଣିଲେ । ୫୨
ଫେରିଲବେଳେ କ୍ରିପସ ପଚାରିଲେ ଗାନ୍ଧି
ତୁମ୍ଭ ମତାମତର ମୁଁ ନ ପାଇଲି ସନ୍ଧି । ୫୩
ବୁଢ଼ା ବୋଲେ ଏ କଥାରେ କି ଦେବି ଉତ୍ତର
କଂଗ୍ରେସର ମୁଁ ତ ସଭ୍ୟ ନୁହଇ ନିକର । ୫୪

ମୋ ମତରୁ କ ମିଳିବ ଆନଙ୍କୁ ପଚ୍ଛର
ସେମାନଙ୍କ ମତନେଇ ତୁମ୍ଭେ କାର୍ଯ୍ୟ କର ।୫୫
ବାରବାର କ୍ରିପସ ସାହେବ ପଚ୍ଛରିଲେ
ହସିହସି ବୁଢ଼ା ପଦେ କଥା ଜଣାଇଲେ । ୫୬
ଆଗତ ତଡ଼େଇପାଇଁ ଏ ବେଶର ବନ୍ଧା
ଏତିକ ବୁଝିଲି ମୁହିଁ କରୁନାହିଁ ଅନ୍ଧା । ୫୭
ଇଚ୍ଛାକଲେ ଲୋକେ ଏହି ବେଶର ବାନ୍ଧିବେ
ଅଥବା ଇଚ୍ଛା ନ କଲେ ଏ ବନ୍ଧା ତେଜିବେ ।
ଏହା କହିଦେଇ ବୁଢ଼ା ସେଠାରୁ ଚଳିଲେ
ନିଜ ଆସ୍ଥାନକୁ ଯାଇ ମଉନେ ବସିଲେ । ୫୯
ବୋଇଲେ ଏକାଳେ ମୁଁ ଯେ ମଉନ ହୋଇବ
କାହା ସଙ୍ଗେ କିଛୁ କଥାବାରତା ନ ହେବ ।୬୦
ଦେଖୁଛି କାହାର ସଙ୍ଗେ କାର ମେଳନାହିଁ
ମତାନ୍ତର ମନାନ୍ତର ସବୁଠି ଦିଶଇ । ୬୧
ଦଳପତିମାନଙ୍କ ମଧ୍ୟରେ ମତ ଭେଦ
ନାନା ପରକାରେ ଉପୁଜୁଛି ବାଦଛେଦ । ୬୨
କାହା ପଛେ ଲୋକେ ଯିବେ କହି ପାରୁନାହିଁ
ଯାହା ବିଶ୍ୱାସ ଯାହାଠି ତାକୁ ମାନୁ ସେହି ।୬୩
ବର୍ତ୍ତମାନ ବିଷୟରେ କିଛି ନ କହିବି
ଭୁନହେଲେ ଦେଶ ସେବା ବେଶି ମୁଁ କରିବ ।
ଏତିକ କହି ଗାନ୍ଧିଜୀ ହୋଇଲେ ମଉନ
ଅନ୍ୟ ଦଳପତିମାନେ କଲେ ବିଚରଣ । ୬୫
ମୌଲାନା ଆଜାଦ କଂଗ୍ରେସର ଦଳପତି
କ୍ରିପସଙ୍କ ସଙ୍ଗେ ସେହୁ କଲେ ନାନା ଯୁକ୍ତି ।୬୬
ସବରକାର ହିନ୍ଦୁଙ୍କ ଦଳପତି ଗଲେ
କ୍ରିପସଙ୍କ ସଙ୍ଗେ ନାନା ଯୁକ୍ତିତର୍କ କଲେ ।୬୭
ଜିନା ଗଲେ ପଠାଣଙ୍କ ଦଳପତି ହୋଇ
କ୍ରିପସଙ୍କ ସଙ୍ଗେ ସେହୁ ଦେଖାକଲେ ଯାଇ ।୬୮

ଭାରତର ଯେତେକ ମୁଖିଆ ନେତା ଥିଲେ
ଜଣ ଜଣ ହୋଇ ଯାଇ ସାକ୍ଷାତ ଲଭିଲେ । ୬୯
ଆଠ ଦଶ ଦିନଯାକେ ଲାଗିଲା ବିଚାର
ସପକ୍ଷ ବିପକ୍ଷ ଯୁକ୍ତି ନାନା ପରକାର । ୭୦
ଅବଶେଷେ ସେ ଯାହାର ଦେଲେକ ଉତ୍ତର
ଭାରତ ଏ ମହାଦାନ ନ ନେବ ନିକର । ୭୧
ରାଜ୍ୟରକ୍ଷା ପୂର୍ବଭାର ଯେବେ ନ ମିଳିବ
ଏ ଦାନ ନେଇ ଭାରତ କି କରି ପାରିବ । ୭୨
ଶତ୍ରୁ ଆସି ବାରଦ୍ୱାରେ ହେଲା ଉପଗତ
କି କରି ପାରିବା ଆମ୍ଭେ ନିରସ୍ତ୍ର ଭାରତ । ୭୩
ଏହି ପରକାରେ ନାନା ଯୁକତି ଦେଖାଇ
କ୍ରିପସଙ୍କୁ ଭାରତରୁ ଦେଲେକ ଫେରାଇ । ୭୪
କ୍ରିପସ ନିରାଶ ହୋଇ ଭାରତୁଁ ଫେରିଲେ
ଉଡ଼ାଯାନେ ଆସିଥିଲେ ସେହି ଯାନେ ଗଲେ ।
ଗଲାବେଳେ ନାନାକଥା କହିଦେଇ ଗଲେ
ସୁଯୋଗ ହରାଇଦେଲା ଭାରତ ବୋଇଲେ । ୭୬
ଆମେରିକା ସଭାପତି ଶୁଣି ରୁଷ୍ଟହେଲେ
ଇରୱିନ ସାହେବ ବହୁତ ଗାଳିଦେଲେ । ୭୭
ଭାରତର ବଡ଼ଲାଟ ପୂର୍ବେ ହୋଇଥିଲେ
ଆମେରିକା ଦେଶେ ଯାଇ ଗରଜନ କଲେ । ୭୮
ଉତ୍ତମ ମଧ୍ୟମ କଥା ବହୁତ କହିଲେ
କଂଗ୍ରେସକୁ ନିନ୍ଦାକରି ଯେତେକ ବୋଇଲେ ।
ଜହରଲାଲ ଶୁଣିଣ ଦେଲେକ ଉତ୍ତର
ବୋଇଲେ ହେ ଇରୱିନ ଗୃହର ନ କର । ୮୦
ଆମ୍ଭେମାନେ ହେଲୁଁ ଯେବେ ଏବେ ଭିଖାରୀଲୋକ
ଆମ୍ଭ ପାଖକୁ କମ୍ପାଇ ପଠାଉଛ ଲୋକ । ୮୧
ମହାଦାନ ଯେନ କମ୍ପା ଆସୁଛି ଏ ଦେଶେ
ମାଗି ତ ନ ଥିଲୁଁ ଆମ୍ଭେ ଯାଇ ତୁମ୍ଭ ଦେଶେ ।

ଆହେ ରୁଜ୍‌ଭେଲ୍‌ଟ ଆମେରିକା ସଭାପତି
ତୁମ୍ଭେ କମ୍ପା ଧରିଲ ଏ ଅଭିନବ ମତି । ୮୩
ଭଲଲୋକ କରିବାକୁ ଆମ୍ଭେ ଡାକିନାହୁଁ
ଆମ୍ଭ କଥା ବୁଝିବାକୁ କାହାକୁ ନ କହୁଁ ॥୮୪
ନିଜ ଗୋଡ଼େ ନିଜେ ଠିଆହେବା ଆମ୍ଭ ମତି
ମରିବା ବଞ୍ଚିବା ପାଇଁ ନାହିଁ କିଛି କ୍ଷତି । ୮୫
ଆମ୍ଭ ନିଜ ବାହୁବଳେ ହୋଇବୁ ସ୍ୱାଧୀନ
ନ ପାରିଲେ ଗଲେପଛେ ଯିବ ଏ ଜୀବନ ॥୮୬
ତୁମ୍ଭେ କମ୍ପା ବାର କଥା ଆମ୍ଭଙ୍କୁ କହିବ
ଉଦ୍ଧ ଘରେ ଶୁଦ୍ଧ କୁଣିଆର କିବା ଲାଭ । ୮୭
ଏହିପରି ନାନାକଥା ଦେଲେ ସେ ଶୁଣାଇ
ଟୋକ ଠୋକ ଜବାବ ସେ ଦେଲେକ ବତାଇ ।
ଯେତେବେଳେ ଏପରି ମୀମାଂସା ଚଳୁଥିଲା
ଓଡ଼ିଶା ଉପକୂଳରେ ବିପତ୍ତି ପଡ଼ିଲା । ୮୯
ସାତ ଆଠଟା ଜାହାଜ ଜବର ବୋଝାଇ
ଆସୁଥିଲା ବହୁଶତ ଲୋକ ସଙ୍ଗେ ନେଇ । ୯୦
ଇଂରେଜ ସରକାରର ଅଟଇ ଏମାନ
ଛପିଥିଲା କେଉଁଠାରେ ଦୁର୍ଦ୍ଦାନ୍ତ ଜାପାନ ।୯୧
ଜାପାନର ଉଡ଼ାଯାନ ବୁଡ଼ାଯାନ ଆସି
ଚକଦେଇ ଘୂରି ଫେରି ମାଡ଼ଦେଲା କସି ।୯୨
ଗୁଳିଗୁଳା ମାଡ଼ଦେଇ କଲକ ପ୍ରହାର
ସବୁ ଜାହାଜଗୁଡ଼ିକ ହେଲା ଚୂରମାର । ୯୩
ଘୋର ଘର୍ଘର ନାଦରେ ଧରଣୀ କମ୍ପିଲା
ସାଗର ଗର୍ଭରେ ସବୁ ଜାହାଜ ବୁଡ଼ିଲା । ୯୪
କେତେ ପ୍ରାଣୀ ହରାଇଲେ ଜୀବନ ଜଳରେ
କେତେ ପଳାଇ ଆସିଲେ ପ୍ରାଣ ବିକଳରେ ।
ଲଙ୍ଗଳା ମୁକୁଳା ହୋଇ ପହଁରି ପହଁରି
କୂଳରେ ଆସି ଲାଗିଲେ ପ୍ରାଣଭେଳା ଧରି ।୯୬

ବହୁ କଷ୍ଟରେ ସେମାନେ ଜୀବନ ପାଇଲେ
କଟକ ସହରେ ଆସି ପ୍ରବେଶ ହୋଇଲେ ।୯୭
ତହିଁ ପରଦିନ ପୁଣି ବିଜୟୀ ନଗରେ
ଗୁଳିଗୁଳା ପକାଇଲା ବନ୍ଦର ଉପରେ । ୯୮
ଯେତେକ ଜାହାଜ ସେହି ବନ୍ଦରରେ ଥିଲା
ଛାରଖାର ହୋଇ ଜଳ ଗର୍ଭରେ ବୁଡ଼ିଲା । ୯୯
ବନ୍ଦରଟି କେତେ ଯତ୍ନେ ଗଢ଼ା ଯାଇଥିଲା
ଫଳକମାନଙ୍କେ ସର୍ବ୍ବ ଧ୍ୱଂସ ହୋଇଗଲା । ୧୦୦
କାନଡ଼ା ଉପରେ ହୋଇଲା ଯେ ଗୁଳା ବୃଷ୍ଟି
କମ୍ପିଗଲା ଏ ସମ୍ବାଦେ ଏ ଭାରତ ସୃଷ୍ଟି ।୧୦୧
ଲୋକମାନେ ହୋଇଗଲେ ମହା ସନ୍ତ୍ରସ୍ତ ଚିତ୍ତ
ପଳାଇ କାହିଁ ପଶିବେ ହୋଇଲେ ବିବ୍ରତ ।
ସହର ଛାଡ଼ି କେ ପଲ୍ଲୀଗ୍ରାମେ ପଳାଇଲା
ପିଲା କବିଲାଙ୍କୁ ନେଇ ଗ୍ରାମରେ ପୂରିଲା ।୧୦୩
ମହାଘୋର ଚିନ୍ତାରେ ଜଡ଼ିତ ଲୋକମାନେ
ତ୍ରାହି ତ୍ରାହି ଡାକ ଦେଉଛନ୍ତି ମନେ ମନେ ।
ବିଶେଷେ ସମୁଦ୍ର କୂଳେ ଅଛି ଯେତେ ସ୍ଥାନ
କି କରିବା କି କରିବା ଚିନ୍ତା ନିଶିଦିନ ।୧୯୫
ଉଡ଼ାଯାନ ଦେଖିଲେ ହୁଅନ୍ତି ସନ୍ତ୍ରସ୍ତ ଚିତ୍ତ
ଜାହାଜ ଦେଖି ଚମକି ପଡ଼ୁଅଛି ଚିତ୍ତ । ୧୦୬
ସଶଙ୍କ ଚିତ୍ତରେ ରହିଛନ୍ତି ଲୋକମାନେ
ଅସିଲା କି ଶତ୍ରୁ ବୋଲି ଚିନ୍ତା ମନେ ମନେ ।
ବ୍ରହ୍ମଦେଶର ଦୁର୍ଦ୍ଦଶା କଥାମାନ ଶୁଣି
ହେବଟି କି ସେପରି ଦଶା ହେଉଛନ୍ତି ଗୁଣି ।୧୦୮
ଏହି ଲୀଳା ଲାଗିଛି ଭାରତେ ଯେତେବେଳେ
କ୍ରିପସ ଭାରତ ପାଇଁ ବେଭାର ଆଣିଲେ ।୧୦୯
ବେଭାର ପସରା ଆଣି ଭାରତେ ଥୋଇଲେ
ମୁଖିଆ ଲୋକମାନଙ୍କୁ ଡାକି ଦେଖାଇଲେ ।

ନଖାର ନଖାର ବେଭାରକୁ ପରଖିଲେ
ଘରଭଙ୍ଗା କୁଆଁ ଖାହାଡ଼ ଏ ତରକିଲେ ।୧୧୧
ସୁନା ରୂପା ନୁହେଁ ଏହୁ ବଚନ ବେଭାର
ଟୀକା ଟିପ୍‌ପଣି ବହୁତ ହୋଇଲା ତାହାର ।୧୧୨
ସରକାର ଯେବେ ପୂରା କ୍ଷମତା ନ ଦେବେ
ରାଜ୍ୟରକ୍ଷା ଭାର କେହି ନେଇ ନ ପାରିବେ ।
ବଡ଼ଲାଟଙ୍କର ଯେବେ କ୍ଷମତା ରହିବ
କପଟ ଜାଣିବୁ ସରକାର ଗଢ଼ାହେବ । ୧୧୪
କ୍ରିପସ ଏ ପ୍ରସ୍ତାବରେ ନ ହେଲେ ସମ୍ମତ
ତେଣୁ ବେଭାର ପସରା ଫେରିଲା ନିଯୁତ ।୧୧୫
କ୍ରିପସ ବୋଇଲେ ଶୁଣ ହେ ଭାରତବାସୀ
ବେଭାର ପସରା ଆଣିଥିଲି ହୋଇ ଖୁସି । ୧୧୬
କଂଗ୍ରେସ ଲୋକେ ବେଭାର ଗ୍ରହଣ ନ କଲେ
ନାନା ଯୁକ୍ତିବଳେ ଏ ବେଭାର ଫେରିଦେଲେ ।
ଆମ୍ଭ ଦେଶ ଆଡ଼ୁ ଏ ବେଭାର ନ ଆସିବ
ତୁମ୍ଭ କଥା ତୁମ୍ଭେମାନେ ବିଗୁର କରିବ ।୧୧୮
ରୁଷ୍ଟହୋଇ କ୍ରିପସ ଭାରତୁଁ ଫେରିଗଲେ
ବିଲାତେ ବିଗୁର ହେବ ସେଥି ଡରିବେଣିଲେ ।
କ୍ରିପସ ବୋଇଲେ ମୁଁ ଯେ ଫେରିଗଲି ସତ
କାହାରିକୁ ଦୋଷ ଦେଉନାହିଁ ମୁଁ ନିଯୁତ ।
ମୁଁ ଆସିଥିଲି ନିରାଶେ ଭାରତୁଁ ଫେରିଲି
ଅନ୍ୟ କାର ଦୋଷନାହିଁ ମୁଁ ତ ହାରିଗଲି ।୧୨୧
ଆଉ କେତେବେଳେ ପୁଣି ଆସିପାରେ ମୁହିଁ
କି ଭାବେ ଆସିବି କଟ୍ଟି କହିପାରୁ ନାହିଁ ।୧୨୨
ଅଗ୍ରଗାମୀ ଦଳପତି ସୁଭାଷ ଅଟନ୍ତି
ସେ ଏବେ ଶତ୍ରୁ ରାଜ୍ୟରେ ବାସ କରୁଛନ୍ତି ।
ଶତ୍ରୁ ଜାପାନ ସହିତ ମିଳାମିଶି ରହି
ସରକାର ବିପକ୍ଷରେ ରହିଛନ୍ତି ସେହି ।-୧୨୩

ତାହାଙ୍କ ଦଳ ଯେତେକ ଅଛନ୍ତି ଭାରତେ
କାହାଠାରୁ କେହି ଊଣା ନୁହନ୍ତି କଥିତେ ।୧୨୫
ସେମାନଙ୍କୁ ଦମନ କରିବାର ଉଚିତ
ଏହା କହି କି ପସ ଯେ ଛାଡ଼ିଲେ ଭାରତ ।୧୨୬
ବାଟାନ ପ୍ରଣାଳୀଠାରେ ପୁଣି ଯୁଦ୍ଧ ହେଲା
ଆମେରିକା ହାରିଗଲା ଜାପାନ ଜିତିଲା । ୧୨୭
ଏଣେ ବ୍ରହ୍ମଦେଶରେ ଅବସ୍ଥା ଗୁରୁତର
ଲାଗିଅଛି ସେ ଦେଶରେ ଭୀଷଣ ସମର । ୧୨୮
ଜାପାନ ଆଗେଇ ଚାଲିଅଛି ସେ ଅଞ୍ଚଳେ
ଭାରତକୁ ଦୃଷ୍ଟି ଦେଉଅଛି କଉଣଳେ । ୧୨୯
ଚିନ୍ତିଆ ହୋଇ ଭାରତବାସୀ ଅଛି ଚାହିଁ
କେତେବେଳେ କି ବିପଦ ମାଡ଼ି ଆସିବଇଁ ।୧୩୦
କେତେବେଳେ କେଜାଣି ବଇରୀ ଆସିଯିବ
ଗୁଳିଗୁଳା ବୃଷ୍ଟି କରି ଲୋକଙ୍କୁ ନାଶିବ । ୧୩୧
ବଇରୀ ଆକ୍ରମଣରୁ ରକ୍ଷାହେବା ପାଇଁ
ନାନାବିଧ ସତର୍କ କାର୍ଯ୍ୟ ଚିନ୍ତା କରୁଥାଇଁ ।୧୩୨
କି କି କାର୍ଯ୍ୟ କଲେ ଏ ବିପଦ ଊଣାହେବ
ସରକାରଙ୍କ ମୁଣ୍ଡରେ ଖେଳୁଛି ଏ ଭାବ ।୧୩୩
ଯେତେବେଳେ ଯେଉଁ କଥା ହେଉଛି ବିଚାର
ଲୋକେ ଏହା କର କହୁଛନ୍ତି ସରକାର ।୧୩୪
ସରକାର ରଖିଛନ୍ତି ବହୁ କର୍ମଚାରୀ
ଲୋକ ଶିକ୍ଷାପାଇଁ କଥା କହନ୍ତି ବିଚାରି । ୧୩୫
ଏହା କର ତାହା କର କରନ୍ତି ପ୍ରଚାର
କାବୁ ହେଉଛନ୍ତି ଲୋକେ ଶୁଣି ସମାଚାର ।୧୩୬
ଆତଙ୍କେ ପଡ଼ି ବିକଳ ହେଉଛନ୍ତି ଲୋକେ
ହା ମଧୁସୂଦନ ବୋଲି ଡ଼ାକୁଛନ୍ତି ଥୋକେ ।୧୩୭
କାହିଁ ପଳାଇ ପଶିବା କରନ୍ତି ବିଚାର
କେଉଁଠାକୁ ଗଲେ ଲୋକେ ପାଇବେ ନିସ୍ତାର ।

ସମ୍ବାଦପତ୍ରରେ ପଢ଼ି ଶତ୍ରୁ ସମାଚାର
କେଉଁଦେଶ ରଣକ୍ଷେତ୍ରେ କି କି ଅତ୍ୟାଚାର ।
ଘର ମାଡ଼ ଦେଖିଣ କୋଳଥ ଦୁଏ ଚେପା
ଲୋକେ ମଣନ୍ତି ସେପରି ହେବ କଲେ ହୋପା
ଦେଶରକ୍ଷାଠାରୁ ଆତ୍ମରକ୍ଷା ଚିନ୍ତା ବେଶି
ମହାଘୋର ଆତଙ୍କରେ ହେଉଛନ୍ତି ପେଷି ।
କେତେକାଳୁ ଭାରତରେ ନ ଥିଲା ସମର
ଭୁଲିଯାଇଛୁ ଭାରତ ସମର ବ୍ୟଭାର । ୧୪୨
କଳଙ୍କି ହେଲାଣି ସାମରିକ ବୁଦ୍ଧି ଧାର
ତେଣୁ ଡର ଲାଗୁଅଛି ଶୁଣି ସେ ବେଭାର ।୧୪୩
ଭୀରୁ କାପୁରୁଷ ହୋଇଅଛନ୍ତି ସମସ୍ତେ
ଶୁଣୁ ଶୁଣୁ ଯୁଦ୍ଧ ନାମ ନମସ୍ତେ ନମସ୍ତେ ।୧୪୪
ଇଂରେଜ ବାହୁଚ୍ଛାୟାରେ ରହି ଏତେକାଳ
ଇଂରେଜ ବାହୁକୁ କରିଛନ୍ତି ମହାବଳ । ୧୪୫
ନିଜବଳ ଉପରେ ନିଜର ଆସ୍ଥା ନାହିଁ
ବସିଛନ୍ତି ସର୍ବେ ଦମ୍ଭ ସାହସ ହରାଇ । ୧୪୬
ଏହିକାଳେ ସରକାର ଡାକୁଛନ୍ତି ଆସ
ବଇରି ସଙ୍ଗେ ଲଢ଼ିବ ବାନ୍ଧ ହେ ସାହସ ।୧୪୭
ଏକାଳ ସମର ସମାଚାର ଶୁଣି କାନେ
ଆପଣା ଦେହରେ ବଳ ଆସୁନାହିଁ ଧାନେ ।
ବାହାବେଳେ ବାଇଗଣ ରୁଆ ମାତ ମଣି
ଆବାକାବା ହେଉଛନ୍ତି ଏ ବାରତା ଶୁଣି ।୧୪୯
ସଇନମାନଙ୍କୁ ଦେଖି ଦୁଲୁକଇ ଛାତି
ଛାନିଆ ହୋଇ କେଉଁଠି ପଳାଇ ପଶନ୍ତି ।୧୫୦
ସଇନମାନଙ୍କ ଅତ୍ୟାଚାର କଥା ଶୁଣି
ପିଲା ବାଳକଙ୍କୁ କାହିଁ ରଖିବେ ଭାଳେଣି ।୧୫୧
ଏତିକି ମାତ୍ର ସାହସ ଯାହାଠାରେ ନାହିଁ
ବଇରି ସଙ୍ଗେ କିପରି କରିବେ ଲଢ଼ାଇ ।୧୫୨

ନାହିଁ ଆଉ ଉନ୍ମାଦନା କାହାରି ମନରେ
ରାଜ୍ୟରକ୍ଷା କରିବ କି ଖାଲି କଳ୍ପନାରେ ।୧୫୩
ମନ ଖୋଲି କଥା କହିବାକୁ ନାହିଁ ବଳ
ବଳ-ନାହିଁ ଆଉ ଦର୍ପେ କରିବ ସମର । ୧୫୪
ଶାସନ କଳ ଲୋକଙ୍କୁ କରିଛି ଏମନ୍ତ
ସନ୍ତତ ଶଙ୍କା ଧକାରେ ଥିବେ ତ୍ରସ୍ତ ଭୀତ ।୧୫୫
ଭୟ ଭୀତି ପଶିଅଛି ଶିରାରେ ଶିରାରେ
ଦମ୍ଭ ସାହସ ଉଦ୍ୟମ ନାହିଁ କାହାଠାରେ ।୧୫୬
ଟିକିଏ କିଛି ଶୁଣିଲେ ହୋଇ ମହାଭୀତ
ପଳାଇ ଯାଉଅଛନ୍ତି ହୋଇ ଇତସ୍ତତ । ୧୫୭
ଭୀମ ଅରଜୁନ ଯେଉଁ ଦେଶେ ଜନ୍ମିଥିଲେ
ସେମାନଙ୍କ ବଂଶଧର କାପୁରୁଷ ହେଲେ । ୧୫୮
ସତେ ପ୍ରଭୁ ଏ ବିପଦୁ କରିବେ ଉଦ୍ଧାର
ପୁଣି ଏ ଭାରତ ମୁଣ୍ଡ ଟେକିବ ନିକର ।୧୫୯
ଏପରି ଅବସ୍ଥା ଅଟେ ଯେ ଦେଶ ଲୋକର
ଭାରତ ରକ୍ଷା ବିଷୟ ତାଙ୍କୁ ନ ପଚାର । ୧୬୦
ବିଶାଳ ଭାରତ ରକ୍ଷା ନୁହେଁ ପିଲାଖେଳ
ମୁକୁଳା ପଡ଼ିଛି ଯାର ସବୁ ଉପକୂଳ । ୧୬୧
ଏ ଯୁଗ ରଣ ମାଣ୍ଡିକ ନୁହଇ ପାତର
ଦାଆ ବାଡ଼ି ହାତେ ନାହିଁ ଆଉ କି ପଚାର ।
ବିପତ୍ତି ପଡ଼ିଲା ଆସି ଭାରତ ଉପରେ
କି ପ୍ରକାରେ ଏ ବିପତ୍ତି ଦୂରୁ ଯାଇପାରେ ।୧୬୩
କ୍ରିପସ ତ ଭାରତୁ ନିରାଶ ହୋଇଗଲେ
ଗଲାବେଳେ ତାଙ୍କ ମନକଥା କହିଗଲେ ।୧୬୪
ଅନେକ ବିଷୟକର କଥା ଗଲେ କହି
ସବୁଠାରୁ କଥା ଏକ ପ୍ରଧାନ ଅଟଇ । ୧୬୫
ବୋଇଲେ କଂଗ୍ରେସ ମନ ସବୁ ସେ ପାଇବ
ନୋହିଲେ ଶେଷରେ ସେହୁ କିଛି ନ ପାଇବ ।

ଫଳରେ କଂଗ୍ରେସ ଏବେ କିଛି ନ ପାଇଲା
ଆମ୍ଭେ ତ ନିରାଶେ ଗଲୁଁ ଫଳ ଏହା ହେଲା ।
ଜହରଲାଲ ଏଥିକି ଦେଲେକ ଉତ୍ତର
"ଯାହା କହିଲ ନିଃପସ ସତ୍ୟେଟି ନକର ।୧୬୮
ଯେବେ ବିଚାରୁଛ ଆମ୍ଭ ବକ୍ତବ୍ୟ ସେତିକି
ବଡ଼ ଭ୍ରମରେ ପଡ଼ିଛ କହୁଛି ଏତିକି । ୧୬୯
ଦାବି ବକ୍ତବ୍ୟ ଆମ୍ଭର ଆଜି ନୂଆ ନୁହେଁ
ଏ ଭାରତବାସୀ ପୂର୍ଣ୍ଣ ସ୍ୱାଧୀନତା ଚାହେଁ ।୧୭୦
ଭାରତର ଅର୍ଥନୀତି ଅନ୍ୟ ନୀତିମାନ
ବିଦେଶୀଙ୍କ କବଳରୁ ମୁକ୍ତହେବ ଘେନ ।୧୭୧
ଆମ୍ଭେ ଏହି ଦାବି କରୁଅଛୁଁ ବହୁକାଳ
ଯେତିକି କହିଲୁ ନୁହେଁ ତେତିକି କେବଳ ।୧୭୨
ଆମ୍ଭେ ଚାହୁଁ ଆମ୍ଭ ନିଜ ଗୋଡ଼େ ଠିଆ ହେବୁଁ
ଆମ୍ଭ ନିଜ ମାର୍ଗ ଖୋଜି ଆମ୍ଭେ ଚାଲିଯିବୁଁ ।
କିଛିମାତ୍ର ବାହାର ଆଲୋକ ଚାହୁଁ ନାହୁଁ
ବିନା ବାହାର ଆଲୋକେ ବଞ୍ଚିବାକୁ ଚାହୁଁ ।
ଦେଢ଼ଶହ ବରଷର ଇତିହାସ ଅଛି
ସମୂଳେ ସେ ସବୁ ଆମ୍ଭେ ପାରୁନାହୁଁ ପୋଛି ।
ଯେଉଁ ଶୋଚନୀୟ ସ୍ମୃତି ଅଛି ଆମ୍ଭ ମନେ
ପାଶୋରି ନ ପାରୁଁ ତାକୁ ସବୁ ଏକାଦିନେ ।
ଦାସତ୍ୱ ସ୍ମୃତିକି ଯାହା ଜାଗିଦେବ ମନେ
ପୋଛିଦେବୁ ସେ ସ୍ମୃତିକୁ ନ ରଖିବୁ ଧାନେ ।
ଏହା କରିବାକୁ ଚାହୁଁ ଜାଣିଥାଅ ଭଲେ
ଅବଶ୍ୟ ଭୋଗିବୁଁ ଯାହା ଲେଖାଥିବ ଭାଲେ ।
ମହାମାନ୍ୟବର ଗ୍ରୁମୁଁମାନଙ୍କ ଜଗତ
ତ୍ରାହି ତ୍ରାହି ଡ଼ାକୁଅଛି ତହୁଁ ହେବୁ ମୁକ୍ତ ।୧୭୯
ଅରଜିଛୁଁ ଯାବତ ବିଳାସ ଆଡ଼ମ୍ବର
ଅଯଥା ଅବୈଚ୍ଛନ ଖରଚ ବେଭାର । ୧୮୦

ଇଂରେଜ ଶାସକମାନଙ୍କର ଅଯୋଗ୍ୟତା
ଏଥିରୁ ଉଦ୍ଧାର ପାଇବାକୁ ସଦା ଚିନ୍ତା ।୧୮୧
ଜଣେ ବିଶିଷ୍ଟ ଇଂରେଜ କହିଥିଲେ ଯାହା
ସେହି ଭାଷାରେ କହୁଛି କହିଥିଲି ତାହା ।୧୮୨
ଅତିରକ୍ତ କାଳ ତୁମ୍ଭେ ରହିଛ ଭାରତେ
ଯାହା ଭଲ କରିବାର କରିଗଲ ଯେତେ ।୧୮୩
ଏବେ ମୁଁ କହୁଛି ଏ ଦେଶରୁ ବେଗେ ଯାଅ
ସରଲ ତୁମ୍ଭର କାମ ପ୍ରଭୁନାମ ନିଅ ।   ୧୮୪
ମୂକ କ୍ଷୁଧାତୁର ଅମ୍ଭେ ବହୁକଥା ଗୃହୁଁ
ହାଁଆ ହାଁଆ ହେଉଅଛୁଁ ମୁକ୍ତି ମିଳଯାଉ ।୧୮୫
ମୂକତ ତୃଷାରେ ଆମ୍ଭ ତଣ୍ଟି ଶୁଖିଲଣି
ସବୁକଥା କହିବାକୁ ଆସୁନାହିଁ ବାଣୀ । ୧୮୬
ନିଜସ୍ବକୁ ସବୁ ମନକଥା କହି ନାହୁଁ
ବେଳକାଳ ଦେଖି କହିଥିଲୁଁ କସ ଗୃହୁଁ । ୧୮୭
ଅତି ଜଣା ଅତି ଆବଶ୍ୟକ ଅଟେ ଯାହା
ଏ ପରିସ୍ଥିତିକ ଉକ୍ତି କହିଥିଲୁଁ ତାହା । ୧୮୮
ଆମ୍ଭ ପ୍ରିୟ ମାତୃଭୂମି ଅଟେ ଏ ଭାରତ
ବିପତ୍ତି ମୁଖରେ ହୋଇଅଛି ଉପଗତ । ୧୮୯
ସେ କର୍ତ୍ତବ୍ୟ ଆମ୍ଭେ ଯେବେ ମୁଣ୍ଡରେ ବୋହିବ
କର୍ତ୍ତବ୍ୟ ପାଳିବା ଭଳି କାମ ଦେଖାଇବା ।୧୯୦
ସେଭଳି ଦାୟିତ୍ଵ ଯେବେ ଅବା ନ ମିଳିବ
କର୍ତ୍ତବ୍ୟ ବୋଝ ବୋହିବା ଅକାମି ହୋଇବ ।
ପନ୍ଥ ଗୋଡ଼ାଣିଆ ହେବା ହୋଇବଟି ସାର
ଏପରି ବୋଝ ବୋହିବା ହୋଇବ ଅସାର ।
ସମାଧାନ ପାଇଁ ହେଲୁ ଯେତିକ ବ୍ୟାକୁଳ
ଖସିଗଲୁ ବହୁଦୂର ନ ମିଳିଲା ଥଳ ।   ୧୯୩
ଅନେକ ବନ୍ଧୁ ଆମ୍ଭର ଏ ଅବସ୍ଥା ଦେଖି
ପଗ୍ଭରନ୍ତି ମୋତେ କେତେ ନିରେଖି ନିରେଖି ।

ବୋଳନ୍ତ କହୋ ବହୁତ ମାଡ ଧରିଥିଲ
ଏବେ ତ ଚୂଳରୁ ଆସି ମୂଳେ ପ୍ରବେଶିଲ ।୧୯୫
ଯାହା ଯେ କହିବ କହ ଜାଣିଶୁଣି କଲୁଁ
ଭାରତ ରକ୍ଷାପାଇଁକି ସବୁ ଭୁଲିଗଲୁଁ । ୧୯୬
ମାତୃଭୂମି ରକ୍ଷା ଅଟେ ପରମ ଧରମ
ଏହା ପାଇଁ ଭୁଲିଗଲୁ ସକଳ କରମ । ୧୯୭
କାନ୍ଧରେ କାନ୍ଧ ମିଳାଇ ଆମ୍ଭ ଲୋକମାନେ
ରଖିପାରିବେ ଦେଶକୁ ବିଶ୍ବାସ ମୋ ମନେ ।
କୋଟି କୋଟି ଭାଇମାନେ ଦେଲେ ମନଧ୍ୟାନ
ଭାରତ ରକ୍ଷା କରମ ଦିଶୁଛି ସାମାନ୍ୟ ।୧୯୯
ହୋଇପାରେ ଲକ୍ଷ ଲକ୍ଷ ଲୋକ ହେବେ ବଳି
କରିବୁଁ ଦେଶକୁ ରକ୍ଷା କେ ପାରିବ ଚଳି ।୨୦୦
ପର୍ବତ ଶିଖରେ କିବା ବଡ଼ଲାଟ ଘରେ
ବସି ଏ କାର୍ଯ୍ୟ ନ ହେବ ବିଚାର ମନରେ ।
ଯୁଦ୍ଧ ଆସି ପ୍ରବେଶିଲା ଭାରତ ଭିତରେ
ଏହା ଆମେରିକା ଯୁଦ୍ଧ ବୋଲନ୍ତି ଦାଣ୍ଡରେ ।
ଆମେରିକା ଅସ୍ତ୍ର ଶସ୍ତ୍ର ଦେଉଛି ପଠାଇ
ମିତ୍ର ରାଜ୍ୟମାନଙ୍କୁ ସାହାଯ୍ୟ କରେ ସେହି ।
ଆମେରିକା ସୁନା ଢ଼ାଳି ଦେଉଛି ତାହାର
ଉଡ଼ନ୍ତା ଦୁର୍ଗ ପଠାଇ କରେ କାରବାର ।୨୦୪
ଭାରତକୁ ଦେଉଅଛି ଯେଉଁ ମହାଦାନ
ସୁଝିବାକୁ ପଡ଼ିବ ଏ ବେଳ୍ଯ ଭଲେ ଜାଣ ।୨୦୫
ଲହୁ ଲହୁ ଦେବାକୁ ପଡ଼ିବ ଏଥିପାଇଁ
ଅଳପ ସଙ୍ଖ୍ୟାରେ ଏହା ସୁଝା ହେବନାହିଁ ।
ଅସଙ୍ଖ୍ୟ ଲୋକଙ୍କ ଲହୁ ଲହୁ ଲୋଡ଼ା ହେବ
ବ୍ରହ୍ମଦେଶ ମାଳୟରେ ଦେଖିଲୁ ଏ ଭାବ ।୨୦୭
ଆମ ଭାରତ ସମସ୍ତ ଆସେ ନିକଟାଇ
ସେହିହେତୁ ନ୍ଫ ପସଙ୍କ ପାଶେ ଗଲୁଁ ଧାଇଁ ।

ଭାରତ ରାଷ୍ଟ୍ରର ଏକତ୍ରିତ ଶକ୍ତିବଳେ
ଏ ବିପତ୍ତି ଆଗେ ଠିଆହେବୁଁ ଅବହେଳେ ।
ଏହି କାରଣରୁ ଆମ୍ଭେ ହୋଇଲୁଁ ବ୍ୟାକୁଳ
କପଟ ଭାରତ ଲୋକେ ହେବେ ଏକଠୁଳ ।୨୧୦
ସେ ବାଞ୍ଛା ଆମ୍ଭର ଏବେ ପୂରଣ ନ ହେଲା
ଅଲଗା ଅଲଗା କାର୍ଯ୍ୟ କରିବାର ହେଲା ।୨୧୧
ଆମ୍ଭେ ଯାଇ ଇଂରେଜଙ୍କୁ ପ୍ରାର୍ଥୀ ହେବୁନାହିଁ
ଜାଣିଲୁ ତାଙ୍କର ମତି ଯାହା ଥିଲା ତାଇ ।୨୧୨
ସେହି ପୁରୁଣା ସୂତ୍ର ସେ ଧରି ନଚାଇବେ
ସେହି ପରକାରେ ସେହୁ ବେଭାର କରିବେ ।
ଲୁହ ଲହୁ ଅଟେ ଆମ୍ଭ କପାଳ ଲିଖନ
ସେ ଦୁଇଟି ଅଟେ ଭାରତର ସାର ଧନ ।୨୧୪
କର୍ମକ୍ଷେତ୍ରୁ ପଳାଇବା ନୁହଇ ଉଚିତ
ଯାହା ହେବ ହେଉ ହୁଅନାହିଁ ଭୟ ଭୀତ ।୨୧୫
ଲଙ୍ଗର ଛୁଣ୍ଡାଇ ନ ବସିବା ଏ ବେଳରେ
ସ୍ୱଇଚ୍ଛାରେ ଠିଆହେବା ଏ ଦୁଃଖ ଆଗରେ ।
ଭାଗ୍ୟଚକ୍ର ଗତିବଳେ ଏମନ୍ତ ଘଟିଛି
ମହାଘୋର ଅଗ୍ନି ପରୀକ୍ଷାରେ ପକାଇଛି ।୨୧୬
ଶେଷ ଚରମ ପରୀକ୍ଷାବେଳ ଆସିଅଛି
ଉଠିବା ପଡିବା ବେଳ ଆସି ପହଞ୍ଚିଛି । ୨୧୮
ବୀର ଭାବେ ଠିଆହୁଅ ରଖ ଜାତି ଟେକ
ଆତ୍ମବଳି ଦେବାପାଇଁ ନ ହୁଅ ବିମୁଖ ।୨୧୯
ଆମ୍ଭ ପ୍ରିୟ ଜନ୍ମଭୂମି ଦେଇଛି ଜନମ
ତାର ଟେକ ରଖିବାକୁ କରିବା କରମ ।୨୨୦
ଲୁହ ଲହୁ ସ୍ରୋତ ବହିପାରେ ଶତ ଧାରେ
ଭାରତର ଶୁଷ୍କଭୂମି ତାକୁ ଶୋଷିପାରେ ୨୨୧
ତେବେ ଅବା ମୁକ୍ତି ପୁଷ୍ପ ଫୁଲକ ଉଠିବ
ସୁବାସରେ ଏ ଧରାକୁ ମହକାଇ ଦେବ ।୨୨୨

ଏ ଦେଶୁ ଅବଶ୍ୟ ଦିନେ ଦେବାକୁ ପଡ଼ିବ
ଏ ବିଶ୍ୱାସ ପ୍ରତି ସତ୍ୟ ବେଭାର କରିବ । ୨୨୩
ପଛଘୁଞ୍ଚା ନ ଦେଇ ଆଗରେ ଠିଆହୁଅ
ଅବଶ୍ୟ ମଙ୍ଗଳ ହେବ ନକର ସଂଶୟ"। ୨୨୪
ଜହରଲାଲ ବୋଇଲେ ଶୁଣ ଦେଶ ଭାଇ
ଜାପାନ ମାଡ଼ିଆସିବ ଶୁଣି ଡର ନାହିଁ । ୨୨୫
ଯେ ଆସି କରିବ ପଛେ କରୁ ଆକ୍ରମଣ
ଭାରତ କା ପାଶେ କେବେ, ନ ନେବ ଶରଣ
ବଇରି ଆସିଲେ ସବୁମତେ ବାଧା ଦେବ
କାହା ଆଗେ କେବେ ଶିର ନିଚା ନ କରିବ
ଭାରତର ଶେଷ ଲକ୍ଷ ହୋଇବ ସ୍ୱାଧୀନ
ଅନ୍ୟ କେଉଁ ଜାତିର ସେ ନୋହିବ ଅଧୀନ ।
ଆମ୍ଭୁ ଜାପାନ ଜର୍ମାନୀ ନାହିଁ କିଛି ଡର
ଲୁହ ଲହୁ ମହାଅସ୍ତ୍ର ଅଛି ତ ଆମ୍ଭର । ୨୨୯
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
ବୋଲେ ଜଗବନ୍ଧୁ ରକ୍ଷାକର ଜଗନ୍ନାଥ ।୨୩୦
ଶ୍ରୀହରି ଭରସା ବିନୁ ନାହିଁ କିଛି ଆନ
ଏକାନ୍ତେ ଶ୍ରୀହରି ପଦେ ଢାଳିଦିଅ ମନ ।୨୩୧
ସର୍ବେ ହୋଇ ଏକମୁଖ ଡାକ ନାରାୟଣ
ସମ୍ପଦେ ବିପଦେ ନାମ କର ପାରାୟଣ ।୨୩୨
ହରିବୋଲ ଭାଇ ହେ ଗୋବିନ୍ଦ ନାମ ବୋଲ
ତାଙ୍କ କୃପାରୁ ପଥର ହୋଇପାରେ ସୋଲ ।
ଧର୍ମ ଗ୍ଲାନି ହେତୁ ଆସିଅଛି ଏ ବିପତ୍ତି
ଧର୍ମ ଧାରଣାକୁ ଧର ଲଭିବ ମୁକତି । ୨୩୪
ପଲକେ ପ୍ରଳୟ ମେଘ ଯିବଟି ମିଳାଇ
ସଂଶୟ ନ କର ମନେ ଡାକ ଭାଇ ଭାଇ ।୨୩୫
ସଂସାର ଦର୍ପଣେ ଲାଗିଲାଣି ବହୁମଳି
କରିଛି କୁଟ କାଳିଆ ଛଡ଼ାଇବ କାଳି । ୨୩

ଇତି ଶ୍ରୀ ଭାରତ-ଚରିତାମୃତେ ବିପଦ ଭାରତ ସମସ୍ୟା ସମାଧାନ ବର୍ଣ୍ଣନେ
ଏକଶତ ଦଶମ ଅଧ୍ୟାୟଃ ।

# ଏକଶତ ଏକାଦଶ ଅଧ୍ୟାୟ

ମହାପ୍ରଭୁ ବିଶ୍ୱରୂପ ଧରିଛ ଆପଣ
ବିଶ୍ୱଗ୍ରାସ କରିବାକୁ କରିଛ କି ପଣ । ୧
ସାରାବିଶ୍ୱେ ଧ୍ୱଂସଲୀଳା ହେଉଛି ପ୍ରକଟ
ଅଟ୍ଟହାସ କରି ପ୍ରଭୁ ଲଗାଇଛ ନାଟ । ୨
ଶଶୀ ସୂର୍ଯ୍ୟ ଦୁଇ ନେତ୍ରେ ଗୃହିଁଛ ତରାଟି
ଲହଲହ ଜିହ୍ୱାକାଢ଼ି ମେଲାଇଛ ପାଟି । ୩
ନାହିଁ ଆଦି ଅନ୍ତ ମଧ୍ୟ ବିସ୍ତାରିଛ କାୟା
ସହସ୍ର ଭୁଜ ବିରାଜେ ଆହେ ଚକ୍ରଧାରୀ । ୪
ସୁନୀଳ ମହାସାଗର ଅନନ୍ତ ଆକାଶ
ଘୋଟିଅଛି ସବୁଠାରେ ଦେଖି ଲାଗେ ତ୍ରାସ । ୫
ନାନାପରକାର ଅସ୍ତ୍ର ଶସ୍ତ୍ର କରେ ଧରି
କରାଳ ବଦନ ପ୍ରଭୁ ଦେଇଛ ବିସ୍ତାରି । ୬
ଅଗଣିତ ଧନ ରତ୍ନ ପୁଣ ନର ନାରୀ
ବଦନ ଗହ୍ୱରେ ପଶୁଛନ୍ତି ସୁଅପରି । ୭
କୋପ ମୂରତି କାହିଁକି ଧରିଛ ଆପଣ
ଧୂଡ଼ୁଧୂଡ଼ୁ ଜଳୁଅଛି କୋପ ହୁତାଶନ । ୮
ମହାଘୋର କାଳରୂପ ଧରିଛ ଆପଣ
ଲୋକକ୍ଷୟେ କାମ ଲାଗିଅଛି ନିଶି ଦିନ । ୯
ଦମ୍ଭ ଦର୍ପ ଗର୍ବ ଅହଂକାରେ ହୋଇ ମତ୍ତ
ତବ ଶ୍ରୀଚରଣୁ ଲୋକେ ଛାଡ଼ିଦେଲେ ଚିତ୍ତ ।୧୦
ମୁଁ ବଡ଼ ମୁଁ ଧନୀ ବଳୀ ବୋଲି ଅହଂକାର
କେ କାକୁ ହରାଣିପାରେ ଲାଗିଛି ସମର ।୧୧
ରଣାଙ୍ଗନେ ଯେତେ ବୀର ହୋଇଛନ୍ତି ଠିଆ
ମୋଠାରୁ କେ ଅଛି ବଳୀ ଫୁଲାଇଣ ହିଆ ।୧୨
ରାଜ୍ୟଲୋକ ସକଳଙ୍କୁ ଗ୍ରାସ କରିଅଛି
ଠିଆ ହୋଇଛନ୍ତି ରଣେ ପରାଣ ମୂର୍ଚ୍ଛି । ୧୩

କାହା ପାଶେ ଅଛି କେତେ ଧନ ଜନ ବଳ
କଷାକଷି ହେବାପାଇଁ ହେଉଛନ୍ତି ଠୂଳ । ୧୪
ବଳୁଆ ଲୋକ ଆରମ୍ଭ କରୁଛନ୍ତି କଳି
ଦୁର୍ବଳ ଲୋକଙ୍କୁ ପାଦେ ଦେଉଛନ୍ତି ଦଳି । ୧୫
ଷଣ୍ଢ ଲଢ଼େଇରେ ବେଣାବୁଦା ଯାଏ ଉଡ଼ି
ସେ ଦଶା ଭୋଗୁଛି ଏ ଭାରତ ଫାନ୍ଦେ ପଡ଼ି । ୧୬
ଯେ ଯାହାର ଭୁସି ଦେଖି ବଜାଇ ଗଇବେ
ମାତିଅଛନ୍ତି ଏ ବିଶ୍ୱବିନାଶି ଆହବେ । ୧୭
କଏ କାହିଁ ଲୁଚି ବସି ସ୍ୱରଧରି କରେ
ନଚାଏ ସଭିଙ୍କି କରେ ମୂର୍ତି ପରକାଶେ । ୧୮
ଚତୁର୍ଦ୍ଦିଗେ ଜଳୁଛି ସମର ହୁତାଶନ
ଗୁଳି ଗୁଳା ଶବଦେ ପୂରୁଛି ତ୍ରିଭୁବନ । ୧୯
ଘୋର ଘର୍ଘର ନାଦରେ କମ୍ପୁଛି ମେଦିନୀ
ବଜ୍ର ନିନାଦକୁ ବଳି ଶୁଭେ ଗୁଳା ଧ୍ୱନି । ୨୦
ବ୍ରହ୍ମଦେଶ ପରିସ୍ଥିତି ବଡ଼ ଗୁରୁତର
ଜାପାନ ଦଖଲ କଲା ମାଣ୍ଡାଲେ ସହର । ୨୧
ବ୍ରହ୍ମଦେଶଠାରୁ ଚିନା ଯାକେ ରହିଥିଲା
ଜାପାନ ସେରହାତାର ଦଖଲରେ ନେଲା ।
ଚିନାଦେଶ ଲୋକେ ବ୍ରହ୍ମଦେଶେ ଲଢୁଥିଲେ
ଘାହାବନ୍ଦୀ ହେଲା ଏବେ ଅଟକ ରହିଲେ । ୨୩
ବଡ଼ଦ୍ରୁତ ଗତିରେ ହେଉଛି ଆଗଭର
ବ୍ରହ୍ମଦେଶ ଜିଣିନେବ ପ୍ରତିଜ୍ଞା ତାହାର । ୨୪
ଇଂରେଜଙ୍କ ସୈନ୍ୟମାନେ ଅତି କଉଶଳେ
ଗୁରୁତର ଦଶା ଦେଖି ପଛକୁ ହଟିଲେ । ୨୫
ବ୍ରିଟିଶ ସିଂହ ସଇନ ଅତି କଉଶଳ
ପଛକୁଦା ମାରି ହଟି ଆସୁଛନ୍ତି ଚଳି । ୨୬
ନରଜଡ଼ର ଗୋଟିଏ ବଡ଼ ଘାଟିସ୍ଥାନ
ଫିଲିପାଇନ ଦ୍ୱୀପର ପ୍ରଧାନ ଆସ୍ଥାନ । ୨୭

ପଞ୍ଚମ ଦିନ ପର୍ଯ୍ୟନ୍ତ ସମର ଲାଗିଲା
ଶେଷରେ ସେ ଦୁର୍ଗ ଆତ୍ମସମର୍ପଣ କଲା । ୨୮
ଏ ଦ୍ୱୀପଟି କ୍ଷୁଦ୍ର ମାତ୍ର ଅତି ସୁରକ୍ଷିତ
ଚଉପଟେ ଦୁର୍ଗମାଳା ଏହାର ବେଷ୍ଟିତ । ୨୯
ଅନେକ କମାଣ ଏଥି ଖଞ୍ଜା ହୋଇଥିଲା
ଏଠାରେ ପ୍ରଧାନ ନଉଘାଟି ଏକ ଥିଲା । ୩୦
ମାନିଲା ଉପସାଗର ଦ୍ୱାରଦେଶେ ଥିଲା
ଜାପାନକୁ ବହୁବାଧା ବିଘ୍ନ ଦେଉଥିଲା । ୩୧
ଏତେଦିନ ଲଢ଼ିଲା ସେ ସାହସ ସହିତ
ଅଟକାଇ ରଖିଥିଲା ଶତ୍ରୁକୁ ନିୟତ । ୩୨
ମାକଆରଥର ତାର ସେନାପତି ଥିଲେ
ସେ ଦ୍ୱୀପକୁ ଛାଡ଼ି ଅଷ୍ଟ୍ରେଲିଆ ଯାଇଥିଲେ । ୩୩
ଏତେକାଳ ଅଟକାଇ ରଖିବ ବଇରୀ
କେହି ସ୍ୱପନେ ଏକଥା ନ ଥିଲା ବିଚାରି । ୩୪
ଏଠାରେ ଯେଉଁ ସଇନମାନେ ରହିଥିଲେ
ଖାଦ୍ୟ ଅଭାବରୁ ବଡ଼କଷ୍ଟ ପାଉଥିଲେ । ୩୫
ଖାଦ୍ୟ ଆଣିବା ପାଇଁକି କେତେ ଯତ୍ନ ହେଲା
ଆମେରିକାରୁ ଖାଇବା ଦ୍ରବ୍ୟ ନ ଆସିଲା । ୩
ଛଅ ହଜାର ମାଇଲ ଆମେରିକା ଦୂର
ପଥ ପୁଣି ନିରାପଦ ନୁହଇ ନିକର । ୩୭
ବଇରୀ ଜାହାଜ ଚଉପଟେ ଅଛି ଘେରି
ଆମେରିକା ଜାହାଜକୁ ଦେଇପାରେ ମାରି । ୩୮
ଏକଶତ ବଂଶବାର ଉଡ଼ାଜାହାଜ ଆସି
ଆକ୍ରମଣ କରି ବଳବପୁ ଦେଲା ନାଶି । ୩୯
ଉପକୂଳେ ଥିଲା ଜାପାନର ତୋପମାନ
ପ୍ରଚଣ୍ଡ ଗୁଳି ବରଷା କଲା ଘନ ଘନ । ୪୦
ଏ ଚକ୍ରବ୍ୟୂହରେ ପଡ଼ି ନ ପାରି ସମ୍ଭାଳି
ଅବଶେଷେ ବାଧ୍ୟହୋଇ ଦେଲା ଆତ୍ମବଳି । ୪

ଏ ଦୁର୍ଗ ପତନ ଫଳେ ଏମନ୍ତ ଘଟିଲା
ମାନଲ ବନ୍ଦର ଶତ୍ରୁ ହାତକୁ ଆସିଲା । ୪୨
ତେଣେ ପୁଣି ଆକେୟୁାବ ଭିତରେ ପଶିଲେ
ଚିନାମାନଙ୍କ ସହିତ ଘୋରରଣ କଲେ । ୪୩
ଚିନ ଦେଶ ଭିତରକୁ କରେ ଅଗ୍ରଗତି
ଓ୍ୱାଟିଙ୍ଗ ଡ଼େଇଁ ଜାପାନ ଗମଇ ଝଟତି । ୪୪
ଉତ୍ତର ପୂର୍ବ ମୁହଁରେ ଯାଉଅଛି ମାଡ଼ି
ଚିନାଦେଶ ଉପରକୁ ଦେଉଅଛି ଧାଡ଼ି । ୪୫
ଆକେୟୁାବ ପରେ ଆସାମକୁ ଦୃଷ୍ଟି ଦେଲା
ଗୋଟିଏ ସହର ପରେ ଗୁଳା ପକାଇଲା । ୪୬
ତେଣେ ରୁଷିଆରେ ଶୀତ ହେଲା ଅବସାନ
ବରଫ ତରଳଗଲା ବସନ୍ତାଗମନ । ୪୭
ହିଟଲର ଏ ସମୟୁ ଖୋଜବୁଲୁଥିଲା
ବସନ୍ତ ଅଭିଯାନକୁ ସଜବାଜ ଥିଲା । ୪୮
କୋଡ଼ିଏ ଲକ୍ଷ ସଇନ ଯାନ୍ତ୍ରିକ ବାହିନୀ
ଗୁଳି ଗୁଳା ଆଦି ସମ୍ଭାଦିଛି କେତେ ପୁଣି ।୪୯
ଏସବୁ ନେଇ ରଖିଛି ରୁଷିଆ ଦେଶରେ
ମହାଘୋର ଆକ୍ରମଣ କରିବ ସେଠାରେ । ୫୦
ବସନ୍ତ ପ୍ରବେଶେ ଆରମ୍ଭିଲା ଘୋରରଣ
ଶୀତକାଳୁ ବସିଅଛି କରି ସେହି ପଣ । ୫୧
ବିରାଟ ସେନାବାହିନୀ ଚଳଲେ ଧସାଇ,
ରୁଷିଆ ଦେଶରେ ପୁଣି ପଶିଲେକ ଯାଇ । ୫୨
ଦୁଇ ଶତ ପଞ୍ଚାଶ ମାଇଲ ଫାର୍ଦ୍ଧର
ସେନାମାନଙ୍କୁ ସଜାଡ଼ି ରଖିଛି ବଇଶି । ୫୩
ରୁଷିଆକୁ ଧ୍ୱଂସ କରିଦେବ ତାର ମତ
ଦେଖାଯାଉ କି କରିବେ ପ୍ରଭୁ ଜଗନ୍ନାଥ । ୫୪
ରହୁଁ ରହୁଁ ବ୍ରହ୍ମଦେଶ ସମର ସରିଲା
ଜାପାନ ଏ ଦେଶଟାକୁ ଅଧିକାର କଲା । ୫୫

ଇଂରେଜ ସଇନମାନେ ପଛକୁ ହଟିଲେ
ପଳାଇଆସି ଭାରତେ ପ୍ରବେଶ ହୋଇଲେ ।୫୬
ସେନାପତି ବୋଇଲେ ଦଇବ ବାମହେଲା
ସେ ଦେଶ ନଦୀ ପ୍ରବଳ ବେଗରେ ବଢ଼ିଲା ।୫୭
ଭଲ ଭଲ ସରଞ୍ଜାମ ଆଣି ନ ପାରିଲେ
କେବଳ ଜୀବନ ନେଇ ପଳାଇ ଆସିଲେ । ୫୮
ବ୍ରହ୍ମଦେଶ ଯୁଦ୍ଧ ଏହିଠାରେ ଶେଷ ହେଲା
ଚୀନାଦେଶକୁ ଜାପାନ ବେଗେ ଧାଡ଼ିଦେଲା ।୫୯
କେତେକାଳୁ ଚୀନାସଙ୍ଗେ କରୁଛି ଲଢ଼ାଇ
ଏବେ ଏ ସମର ଗତି ଦେଲାକ ବଢ଼ାଇ । ୬୦
ତୁମୁଳ ସଂଗ୍ରାମ ଲାଗିଗଲା ଚୀନା ଦେଶେ
କେ ଜିତିବ କେ ହାରିବ ଦେଖାଯାଉ ଶେଷେ
ଏଣେ ରୁଷିଆ ସହିତ ଜର୍ମାନୀ ସମର
ବେଳୁଁ ବେଳ ବୃଦ୍ଧି ହେଉଅଛି ଭୟଙ୍କର । ୬୨
ପ୍ରାଣପଣେ ରୁଷିଆ ସଇନ ଲଢ଼ୁଛନ୍ତି
ନିଜ ଦେଶ ଜାତି ମାନ ରଖିବେ ବୋଲନ୍ତି ।୬୩
ମହାକୋପଭରେ ବସିଅଛି ହିଟଲର
ଅଣ୍ଟାଭିଡ଼ି ରୁଷ ସଙ୍ଗେ କରୁଛି ସମର । ୬୪
ରୁଷିଆ ଦେଶର ଲୋକେ ଧରିଛନ୍ତି ଟାଣ
ପଣ କରିଛନ୍ତି ନିଜ ଧନ ଜନ ମାନ । ୬୫
ଯେବେ ଜରମାନୀ ଆମ୍ଭ ଦେଶ ନେଇଯିବ
ଜୀଇଥାଇ ଯେବେ ନେତ୍ର ଏ ଦୃଶ୍ୟ ଦେଖିବ ।
ଏହାଠାରୁ ଶତଗୁଣ ଭଲଟି ମରଣ
ଗଲେଯାଉ ପଛେ ଜୀବ କର ଘୋରରଣ । ୬୭
ଏମନ୍ତ ବିଚାରି କରୁଛନ୍ତି ଘୋରରଣ
କିପରି ରଖିବେ ନିଜ ଦେଶ ଜାତି ମାନ ।୬୮
ଇଂଲଣ୍ଡ ସହିତ ରୁଷ କଲା ଏକ ସନ୍ଧି
କୋଡ଼ିଏ ବରଷପାଇଁ ହେଲେ ବନ୍ଧାବନ୍ଧି । ୬୯

ଏମାନଙ୍କ ସହିତ ରହିଛି ଆମେରିକା
ଏମାନେ କେ କେହି କିଛି ନ କରିବେ ଏକା ।
ଯେତେବେଳେ ଯାହାକିଛି କରିବାକୁ ହେବ
ଏ ତିନି ଦେଶର ମତାମତ ନଆସିବ । ୭୧
ଏ ତିନି ଜଣ ମତରେ ଯାହାହେବ ସ୍ଥିର
ସେହିପରି କାମକାର୍ଯ୍ୟ ହୋଇବ ନକର । ୭୨
ତାହାକୁ ଛାଡ଼ି କେ ସନ୍ଧି କରି ନ ପାରିବ
ଆପଦ ବିପଦବେଳେ ତିନହେଁ ବାନ୍ଧବ । ୭୩
ରୁଷିଆ ସଙ୍ଗେ ଜର୍ମାନୀ କରୁଛି ସମର
ବେଲ୍ଜିଅଁ ବେଲ ସମର ହେଉଛି ଭୟଙ୍କର । ୭୪
ମାଡ଼ିଯାଉଛି ଜର୍ମାନୀ ନଦୀ ସ୍ରୋତ ସମ
ବେଲ୍ଜିଅଁ ବେଲ ସମର ଯେ ହେଉଛି ବିଷମ । ୭୫
ଖାର୍କୋଭ ସିବାଷ୍ଟୋ ପୋଲ ଦୁଇଯାକ ସ୍ଥାନ
ମହାଘୋରରଣ ଚାଲିଅଛି ଘନ ଘନ । ୭୬
ସିବାଷ୍ଟୋ ପୋଲର ଦଶା ଅତି ଭୟଙ୍କର
ହିଟଲର ନିଜେ ରହି ଲଢୁଛି ସମର । ୭୭
ତେଣେ ଲିବିଆ ପଖରେ କରୁଅଛି ରଣ
ଟ୍ରୋବ୍‌କ ଦୁର୍ଗର ଏବେ ହୋଇଲା ପତନ ।୭୮
ଇଜିପ୍ଟ ସରିକି ଏବେ ଦେଉଅଛି ଧାଡ଼ି
ଖରତର ଗତିରେ ସେ ଯାଉଅଛି ମାଡ଼ି । ୭୯
ଆଲେକଜାଣ୍ଡ୍ରିଆ ପାଖେ ହେଲଣି ହାଜର
ସୁଏଜ ପ୍ରଣାଳୀ ନେବ ମାନସ ତାହାର । ୮୦
ତେଣେ ଇଂଲଣ୍ଡ ଉପରେ ଦେଉଅଛି ଧାଡ଼ି
ଗୁଳି ଗୁଳା ମାଡ଼େ ଘରଦ୍ୱାର ଯାଏ ପୋଡ଼ି ।୮୧
ମୃତାହତ ହେଉଛନ୍ତି କେତେ କେତେ ଲୋକ
ଧନ ଦ୍ରବ୍ୟ କୋଠା ବାଡ଼ି ଭାଙ୍ଗୁଛି ଅନେକ ।
ଚିନଦେଶେ ଜାପାନର ହେଉଛି ସମର
ଏକ ଏକ ଅଞ୍ଚଳ କ ୁଛି ଅଧିକାର । ୮୩

ଆମେରିକା ପଠାଉଛନ୍ତି ଜାହାଜ ଯେତେକ
ବାଟରେ ଜଳ ସମାଧି ହୁଅନ୍ତି ଅନେକ । ୮୪
ଶୁଣାଥିଲା ପୂର୍ବକାଳେ ଅଗ୍ନିଦେବଙ୍କର
ଲୁହୁବୁହୁ ବ୍ୟାଧି ହୋଇ କଲା ହରବର । ୮୫
ଖାଣ୍ଡବ ବନକୁ ଖାଇଗଲା ତାଙ୍କ ବ୍ୟାଧି
ସେ ରୋଗକୁ ସେହି ଏକା ହେଲା ଅଉଷଧି ।୮୬
ଏବେ ଦେଖାଯାଏ ସମୁଦ୍ରର ସେହି ବ୍ୟାଧି
କେତେକାଳୁ ଖୋଜୁଥିଲା ବାଞ୍ଛିତ ଔଷଧି । ୮୭
ଅନନ୍ତ ଉଦର ଯାର ନ ଯାଏ କଳନା
ଅସଂଖ୍ୟ ଜାହାଜ ସେହୁ କରୁଛନ୍ତି ପାରଣା । ୮୮
ଯେତେକ ଜାହାଜ ଅଛି ଏ ଧରା ମଣ୍ଡଳେ
ସବୁଯାକ ଠୁଳ କଲେ ନ ହୋଇବ କଳେ ।
ପ୍ରତିଦିନ ଦୁଇଗୁଟି ଭଜୁଛି ସମାଧି
ଅନନ୍ତ ସାଗର ସବୁ ରଖୁଛି ସମ୍ବାଦ । ୯୦
କେତେ କେତେ ଜାହାଜ ବୁଡ଼ୁଛି ପ୍ରତିଦିନ
ତଥାପି ସମୁଦ୍ର ବକ୍ଷ ଯେସନ ତେସନ । ୯୧
ଅଚଳ ଅଟଳ ହୋଇଅଛି ପାରାବାର ·
ଉଛୁଳି ନ ପଡ଼େ ଜଳ କରି ଏ ଆହାର ।୯୨
ଧନ୍ୟ ପାରାବାର ତୁହି ଅସୀମ ଅନନ୍ତ
କେବେ ମୂରତି ଭୀଷଣ କେବେ ଦିଶୁ ଶାନ୍ତ ।୯୩
ଗାଢ ନୀଳଶାଢ଼ୀ ପିନ୍ଧି ଦିଶୁ ମନୋହର
ସ୍ୱଚ୍ଛ ନିର୍ମଳ ଫେନିଳ ଲହରୀ ଉଜ୍ଜ୍ୱଳ । ୯୪
ପବନ ପରଶେ ନାଚଉଠୁ ନିରନ୍ତର
କୂଳେ ଆସି ପୁଣି ଫେରି ଯାଉ ତୁ ନିକର ।୯୫
ପୁଣି ଆସୁ ପୁଣିଯାଉ ଦିବସ ରଜନୀ
କୂଳଲଙ୍ଘି ପାରୁନାହୁଁ କାହା ଆଜ୍ଞାମାନି । ୯୬
କୂଳେ ଆସି ନମସ୍କାର କରି ଯାଉ ଫେରି
ଏ କାର୍ଯ୍ୟରେ ଲାଗିଅଛୁ ଦିବସ ଶର୍ବରୀ । ୯୭

କେତେବେଳେ ହୋଇ ତୁହି ଭୀମ ଭୟଙ୍କର
ଘୋର ଗରଜନ କରି ଚମକାଉ ପୁର । ୯୮
ଦେଖି ତୋ ଭୀମ ମୂରତି ମନେ ଲଗେ ଡ଼ର
କେତେବେଳେ ମଧୁର ପ୍ରଶାନ୍ତ ମୂର୍ତ୍ତି ତୋର ।
ଧରଣୀର ତିନି ଭାଗ ତୋର ଅଧିକାର
ଗୁହାଁଦେଲେ ଚମକ ପଡ଼ିବ ନର ସ୍ଥିର । ୧୦୦
ଅସୀମ ଅନନ୍ତ ଅଟେ ତୋର କଳେବର
ଭାସୁଛି ତୋ କଳେବରେ ଏ ସ୍ଥଳ ଅଞ୍ଚଳ ।
ଯେଉଁଠୁ ସ୍ଥଳ ଅଞ୍ଚଳ ତଳକୁ ଖୋଳିବ
ଜଳସ୍ରୋତ ବହୁଅଛି ସାକ୍ଷାତ ଦେଖିବ । ୧୦୨
ଅଦ୍ଭୁତ କୌଶଳ ଏହା ସୃଷ୍ଟି ପ୍ରକ୍ରିୟାରେ
କିଏ କାହିଁ ବସି ଏହା କରୁଛି ବେଭାରେ ।
ତାଙ୍କ ଶ୍ରୀଚରଣେ କୋଟି କୋଟି ନମସ୍କାର
ତବ ସୃଷ୍ଟି ପ୍ରଭୁ ତୁମ୍ଭେ ନିଜେ ରକ୍ଷାକର ।୧୦୪
ରେ ଅନନ୍ତ ପାରାବାର ତୋ ସୁନୀଳ ବକ୍ଷ
କେବେ ବା ପ୍ରଶାନ୍ତ କେବେ ହୁଏ ପୁଣି ରୁକ୍ଷ ।
ତୋର ବକ୍ଷ ଦଳକଳ ଅସଂଖ୍ୟ ଜାହାଜ
ଖରଗବେଗେ ଗତିକରି କରେ ମଉଜ । ୧୦୬
ଦେଶ ଦେଶାନ୍ତରେ ଯାଇ ବଣିଜ ବେପାରେ
ବହିଆଣେ ଧନରତ୍ନ ଦେଶ ଦେଶାନ୍ତରେ ।୧୦୭
କେତେକାଳୁ କେତେ ଜାତି କରି ଲୀଳାଖେଳ
ଏବେ ବୁଡ଼ି ଯାଉଅଛି ସେମାନଙ୍କ ଭେଳା ।୧୦୮
ସହି ନ ପାରିଲୁ କି ତୁ ସେମାନଙ୍କ ଦାଉ
ବୁଡ଼ାଇ ଦେଇଛୁ ତାଙ୍କ ଭେଳା ଗୁହାଁ ଗୁହାଁ ।
ଆପଣା ଆପଣା ପାପେ ମରୁଛନ୍ତି ବୁଡ଼ି
ଯେ ଯାହା ଧରମ ପଥ ଯାଉଛନ୍ତି ଛାଡ଼ି ।୧୧୦
ଅହମିକା ମଦେ ମତ୍ତ ହୋଇଣ ସକଳ
ବୁଡାଇ ଦିଅନ୍ତି ଭେଳା କରି କଉଶଳ ।୧୧୧

ଜାହାଜ ବୁଡ଼ାଇଦେବା ଯନ୍ତ୍ର କରି କେତେ
ଅଜାତରେ ବୁଡ଼ାଇ ଦିଅନ୍ତି ନାନାମତେ ।୧୧୨
କେତେକାଳର ସଞ୍ଚିତ ଧନ ରତ୍ନମାନ
ପଲକ ମାତ୍ରକେ ତୋର ଗର୍ଭେ ହୁଏ ଲୀନ ।
ସିବାଷ୍ଟୋପୋଲ ଦୁର୍ଗର ହୋଇଲା ପତନ
ଜରମାନୀ ସେନା ପଶି କଲେ ରଣ ଭଣ୍ଡ ।୧୧୪
ଏପରି ସୁଦୃଢ଼ ଦୁର୍ଗ କେଉଁଠି ନ ଥିଲା
ଜରମାନୀ ସେ ଦୁର୍ଗକୁ ଧ୍ୱଂସ କରିଦେଲା ।୧୧୫
ନାରଖାର ଗୁରଖାର ହେଲା ସେ ଅଞ୍ଚଳ
ନାଶ ହୋଇଗଲା କେତେ କାଳର ସମ୍ବଳ ।
ଏ ଲଢ଼ାଲଢ଼ିରେ କ୍ଷୟ ହେଉଅଛି ବଳ
ମାର ମାର ଧର ଧର ଶୁଭୁଅଛି ଗୋଳ ।୧୧୭
ନବ ନବ ଆଗ୍ନେୟାସ୍ତ୍ର ହେଉଛି ଭିଆଣ
ଆକାଶଯାନ ଲଭୁଛି ଏ ଯୁଦ୍ଧେ ପ୍ରାଧାନ୍ୟ ।୧୧୮
ଆକାଶଯାନ ଅଛଇ ନାନା ପରକାର
ଆକାଶ ଭ୍ରମଣ ପାଇଁ ହେଲା ଆବିଷ୍କାର ।୧୧୯
ଅଳପ ସମୟେ ବହୁଦୂର ଯିବ ଉଡ଼ି
ଭୁଁଅ ଭୁଁଅ ଶବଦେ କରଇ ଘୋର ରଡ଼ି ।୧୨୦
ମାଛରଙ୍କା ପକ୍ଷୀ ପରି କାହାର ଶକତି
ଝାମ୍ପମର ଉଡ଼ାଯାନ ଏହାକୁ ବୋଲନ୍ତି ।୧୨୧
ମାଛରଙ୍କା ଗତିରେ ଆସଇ ବେଗେ ମାଡ଼ି
ବହୁତ ତଳକୁ ଖସିଆସେ ଦିଏ ଧାଡ଼ି । ୧୨୨
ଶରବେଗେ ଛୁଟିଆସେ ବହୁତ ତଳକୁ
ଅଗ୍ନିଗୁଳା ପକାଇ ପଳାଏ ଉପରକୁ । ୧୨୩
ମାଛରଙ୍କା ଉଡ଼ାଯାନ ଦେବା ତାର ନାମ
ଅତି ବେଗେ ଆସେ ଯାଏ କେଡ଼େ ପରାକ୍ରମ ।
ଏ ଗୁଳା ପଡ଼ି ଫାଟିଲେ ରକ୍ଷା ନାହିଁ ଆଜି
କେତେ କେତେ ଘର ଜଳଉଠେ ଦାଉଦାଉ ।

ଏମନ୍ତ ପ୍ରଳୟ ଲୀଳା ଲାଗିଛି ସେ ଦେଶେ
ଲୋକମାନେ ରହିଛନ୍ତି ମହାଭୟ ବାସେ ।୧୨୬
ରୁଷିଆ ଦେଶ ଅବସ୍ଥା କହିଲେ ନ ସରେ
ବହୁକାଳ ହେଲା ଯୁଦ୍ଧ ଲାଗିଛି ସେଠାରେ ।୧୨୭
ସେଷ୍ଟଭ ନାମକ ସ୍ଥାନ ହୋଇଲା ପତନ
ମହାଘୋର ଯୁଦ୍ଧ ପରେ ଘଟିଲା ଏସନ ।୧୨୮
ଏ ଗୋଟାଏ ବଡଘାଟି ରୁଷିଆ ଦେଶର
ଜର୍ମାନୀ ଏହାକୁ କରିନେଲା ଅଧିକାର । ୧୨୯
ଆଗକୁ ଆଗକୁ ମାଡ଼ି ଚାଲିଛି ଜର୍ମାନୀ
ଏକ ପରେ ଆରେକ ନଗର ନଏ ଜିଣି ।୧୩୦
ପ୍ରାଣପଣେ ରୁଷିଆ ଯେ କରୁଛି ସମର
ଧନ୍ୟ ତା ସାହସ ଧନ୍ୟ ବଳ କଳ ତାର ।୧୩୧
ଚାରିପଟୁ ଘେରିଯାଇ ଲଢ଼ୁଛି ଜର୍ମାନୀ
ଜମାକରି ଦେଉଅଛି ବହୁତ ସଇନ । ୧୩୨
କାହୁଁ କେତେ ଅସ୍ତ୍ର ଶସ୍ତ୍ର ଆଣୁଛି ବୁହାଇ
ଷଣ୍ଢୁ ଆସି ଆକ୍ରମଣ ଦେଉଛି ଲଗାଇ । ୧୩୩
କକେସସ ପାହାଡ଼ ଆଡ଼କୁ ଦିଏ ଧାଡ଼ି
ସେ ଦିଗକୁ କ୍ରମେ କ୍ରମେ ଯାଉଅଛି ମାଡ଼ି ।୧୩୪
ସେ ଅଞ୍ଚଳେ ତେଲଖଣି ଅଚ୍ଛଳ ବହୁତ
ତେଣୁ ସେ ଅଞ୍ଚଳ ସେହୁ କରିବ ଆୟତ୍ତ ।୧୩୫
ଯାହାର ବହୁତ ତୈଳ ଅଛି ଅଧିକାରେ
ତାର ବଳ ବେଶି ଦେଖାଯାଏ ସେ ସମରେ ।
ତେଲ ସରିଯିବ ଯାର ତା ବଳ ଭାଜିବ
ସବୁ କଳ କାରଖାନା ଅଚଳ ହୋଇବ ।୧୩୭
ଯାବତ ତେଲ ଯାହାର ଅଛି ଅଧିକାରେ
ସେ ବେଶି ଲଢ଼ିପାରିବ ଏ ଯୁଗ ସମରେ ।୧୩୮
ଉଡ଼ାଯାନ ବୁଡ଼ାଯାନ ଆଦି ଯେତେ ଯାନ
ତେଲ ଆଶ୍ରୟରେ ଚଳୁଅଛଇ ଏମାନ । ୧୩୯

ତେଲ ବିନୁ ଏ ସମର ଦଣ୍ଡେ ନ ଚଳିବ
ଯାର ତେଲ ସରିଯିବ ସେ ବଳେ ହାରିବ ।
ଜର୍ମାନୀ ରୁଷିଆ ଦେଶେ ଯାଉଅଛି ମାଡ଼ି
ଯେଉଁଠି ତଇଳ ଖଣି ଖୋଜନ୍ତିଏ ଧାଡ଼ି । ୧୪୧
କକେଶସ ନାମକ ପାହାଡ଼ ଅଛି ତହିଁ
ସେ ଅଞ୍ଚଳେ ତେଲଖଣି ବହୁତ ଅଛଇ । ୧୪୨
ସେହି ଅଞ୍ଚଳକୁ ଏବେ ଯାଉଛି ମୁହାଁଇ
ବହୁତ ବହୁତ ସେନା ହିଏ ପହଞ୍ଚାଇ । ୧୪୩
ରୁଷିଆ ସଇନମାନେ ଯାଉଛନ୍ତି ହଟି
ମଝିରେ ମଝିରେ ଦଳ ଯାଉଅଛି ଫାଟି ।୧୪୪
ବ୍ୟୂହଭେଦ କରି ପଶିଯାଏ ଜରମାନୀ
ଆକାଶଛତ୍ରୀ ବାହିନୀ ଆଣେ ପୁଣି ପୁଣି । ୧୪୫
ତୁମୁଳ ସମର ଲାଗିଅଛି ସେ ଅଞ୍ଚଳେ
କେତେ କେତେ ଲୋକ କ୍ଷୟ ହୁଏ ଅବହେଳେ ।
ଏହିଠାରେ ଏ ଅଧ୍ୟାୟ ହୋଇଗଲା ଶେଷ
ଦୀନ ଜଗବନ୍ଧୁ ଭାବେ ଆହେ ଜଗନ୍ନାଥ ।୧୪୭
କେତେକାଳ ଲାଗାଇବ ଏ ସମର ଖେଳ
ରହୁଁ ରହୁଁ କଟିଗଲା ଦ'ବରଷ କାଳ । ୧୪୮

ଇତି ଶ୍ରୀ ଭାରତ-ଚରିତାମୃତେ ରୁଷିଆ ଯୁଦ୍ଧ ଉପାଖ୍ୟାନ ବର୍ଣ୍ଣନେ ଏକଶତ ଏକାଦଶ ଅଧ୍ୟାୟଃ ।



## ଏକଶତ ଦ୍ୱାଦଶ ଅଧ୍ୟାୟ

ଗଜର ଉବାଚ

ବିଦେଶ ସମର କଥା କହିଲେ ବହୁତ
ଜଣା ନ ପଡ଼ିଲା କିଛି ଭାରତ ଚରିତ । ୧

କଂଗ୍ରେସ ମନ୍ତ୍ରୀମଣ୍ଡଳ କାମ ଛାଡ଼ିଦେଲେ
ତାପରେ କି ହେଲା ଜଣା ନ ଗଲା ତ ଭଲେ ।
ଏ କଥା ଶୁଣିବାପାଇଁ ବଳୁଅଛି ମନ
ଠିକେ ଠିକେ ସବୁକଥା କହନ୍ତୁ ଆପଣ । ୩

ଜଗା ଉବାଚ

ବଡ଼ ବିଷମ ସମସ୍ୟା ପୁଚ୍ଛିଲ ଗଉର
ଠିକେ ଠିକେ କହୁଛି ମୁଁ ଶୁଣ ଏ ବେଭର । ୪
ଆଠ ପ୍ରଦେଶରେ କଂଗ୍ରେସର ମନ୍ତ୍ରୀ ଥିଲେ
ମନ୍ତ୍ରୀପଦ ଛାଡ଼ିଦେଇ ସବୁଠୁଁ ଆସିଲେ । ୫
କାହିଁକି ଛାଡ଼ିଲେ ବୋଲି ପଚ୍ଚରିବ ଯେବେ
ତହିଁର କାରଣ ଶୁଣ କହୁଅଛି ଏବେ । ୬
ଏ ଯେଉଁ ସମର ଲଗିଅଛି ବିଦେଶରେ
ଭାରତର ସରକାର ପଶିଲେ ସେଥିରେ । ୭
କଂଗ୍ରେସ ମନ୍ତ୍ରୀଦଳଙ୍କୁ କିଛି ନ ବିଚ୍ଚରି
ଭାରତ ହେଲା ଏ ଯୁଦ୍ଧେ ସବୁରି ବଇରୀ । ୮
ତେଣୁ କଂଗ୍ରେସ ବୋଇଲା ନ ହେଲା ଉଚିତ
ମନ୍ତ୍ରୀମାନଙ୍କୁ ପଚରା ନ ହେଲା ଯେମନ୍ତ । ୯
ବଳଦ ବାପୁଡ଼ା ପରି ମନ୍ତ୍ରୀମାନେ ଥିବେ
ଟଗାରୁ ମୁଣ୍ଡ ଥପାହୋଇ କପା ତୋଳାହେବେ
କଂଗ୍ରେସ ପ୍ରତି ଏ କଥା ଘୋର ଅପମାନ
କାହିଁକି ରହିବେ ଯହିଁ ନାହିଁଟି ସମ୍ମାନ । ୧୧
ତେଣୁ କଂଗ୍ରେସ ବୋଇଲା ହେ ମନ୍ତ୍ରୀମଣ୍ଡଳ
ଛାଡ଼ିଦେଇ ଚ୍ଛଲିଆସ ଏ ଶାସନକଳ । ୧୨
ଏହିହେତୁ କଂଗ୍ରେସ ମନ୍ତ୍ରୀତ୍ୱ ଛାଡ଼ିଦେଲା
ପୁଣି ପୁରୁଣା ପ୍ରକାରେ ଶାସନ ଚଳିଲା । ୧୩
ଲାଟ ସାହେବ ହାତକୁ ନେଲେକ ଶାସନ
ଜଣେ ପରାମର୍ଶଦାତା ରହିଲେକ ପୁଣ । ୧୪

ଏହିପରି କେତୁକାଳ ଶାସନ ଚଳିଲା
ଶୁଣ ସୁଜ୍ଞଜନେ ଏହାପରେ କିସ ହେଲା । ୧୫
ଯେତେ ପ୍ରଦେଶରେ ଥିଲା କଂଗ୍ରେସ ଶାସନ
ଓଡ଼ିଶା ତହିଁ ମଧ୍ୟରୁ ଏକବୋଲି ଜାଣ । ୧୬
କଂଗ୍ରେସ ମନ୍ତ୍ରୀଦଳରେ ଯେତେ ସଭ୍ୟ ଥିଲେ
ତିନି ଚାରି ଜଣ ଏକ ବିଚାର ବାନ୍ଧିଲେ । ୧୭
ଏହି ମରମରେ ମତ କଲେକ ପ୍ରଚାର
ମନ୍ତ୍ରୀ ହୋଇ ମୁଣ୍ଡାଇବେ ଶାସନର ଭାର ।୧୮
କଂଗ୍ରେସ ନାୟକମାନେ ଏ କଥା ଜାଣିଲେ
କଂଗ୍ରେସ ବିରୁଦ୍ଧ କର୍ମ ହେବ ଏହା ଭଲେ ।୧୯
କଂଗ୍ରେସ ମତ ବିରୁଦ୍ଧ କର୍ମ ଯେ କରିବ
କଂଗ୍ରେସର ସଭ୍ୟପଦେ ରହି ନ ପାରିବ ।୨୦
ମନ୍ତ୍ରୀପଦରେ ଲାଳସା ଥିଲା ଯାହାଙ୍କର
ନ ମାନିଲେ କଂଗ୍ରେସର ଆଦେଶ ନିକର ।୨୧
ତେଣୁ କଂଗ୍ରେସ ତାହାଙ୍କୁ କଲା ବହିଷ୍କାର
ସେମାନେ ଦମ୍ଭରେ ରହି କଲେକ ବିଚାର ।୨୨
ଲାଟସଭାର ବିରୁଦ୍ଧ ଦଳେ ଯେତୁ ଥିଲେ
ସେମାନଙ୍କ ସଙ୍ଗେ ମିଳି ବିଚାର ବାନ୍ଧିଲେ ।୨୩
ଲାଟ ସାହେବଙ୍କୁ ଯାଇ କହିଲେ ବୃତ୍ତାନ୍ତ
ମନ୍ତ୍ରୀପଦ ନେଇ କାର୍ଯ୍ୟ କରିବେ ନିଶ୍ଚିତ ।୨୪
ସମର କାର୍ଯ୍ୟରେ ସେତୁ ସାହାଯ୍ୟ କରିବେ
ଏହି ମତରେ ସକଳ କାର୍ଯ୍ୟ ଚଳାଇବେ ।୨୫
ପାରଳାର ଅଧୀଶ୍ୱର ହୋଇଲେ ଅଗ୍ରଣୀ
ପ୍ରଧାନମନ୍ତ୍ରୀ ହୋଇ ସେ ଗଢ଼ିଲେ ମନ୍ତ୍ରୀଶ୍ରେଣୀ ।୨୬
କଂଗ୍ରେସ ଦଳରୁ କେତେଜଣ ଖସିଗଲେ
ନୂତନ ମନ୍ତ୍ରୀମଣ୍ଡଳ ଦଳେ ଯୋଗଦେଲେ । ୨୭
ନୀଳକଣ୍ଠ ଏ ଦଳର ପ୍ରଧାନ ନାୟକ
ସ୍ୱରାଜ୍ୟ ଦଳ ଏହାର ନାମ ହୋଇଲାକ । ୨୮

ବିଧିରେ ଏ ଦଳ ସଂଖ୍ୟା ଲଘିଷ୍ଠ ଅଟଇ
କଉଣଠେ ଅଛି ଦଳ ସଂଖ୍ୟାଧିକ ହୋଇ ।୨୯
ସଂଖ୍ୟାଧିକ ଦଳ ଏକା ମନ୍ତ୍ରୀ ହୋଇପାରେ
ବିଧାନ ଅଛଇ ଦୃଢ଼େ ସିନା ଆଇନରେ । ୩୦
କଂଗ୍ରେସ ଦଳ ସଂଖ୍ୟାରେ ଅଟଇ ଅଧିକ
ଭାଗ୍ୟକୁ ସଂଖ୍ୟା ଲଘିଷ୍ଠ ହୋଇ ହେଲେ ମୂକ ।
ଏତିକିବେଳେ ପ୍ରସଙ୍ଗ ଏମନ୍ତ ହୋଇଲା
ସରକାର ଦମନାସୁରକୁ ଛଠାଇଲା । ୩୨
କଂଗ୍ରେସର ବଇଠକ ପୁନାଠାରେ ହେଲା
ସକଳ କଥା ବିଚାର ସେ ସଭାରେ ହେଲା ।୩୩
ଗାନ୍ଧିଜୀ ସେହି ସଭାରେ ଥିଲେ ଉପସ୍ଥିତ
ଆଇନ ଅମାନ୍ୟ କରା ହୋଇଲା ନିଶ୍ଚିତ । ୩୪
ଆଗେ ବଡ଼ଲାଟଙ୍କୁ ସକଳ ଲେଖାଯିବ
କି ଉତ୍ତର ଦେବେ ତାର ବିଚାର ହୋଇବ ।୩୫
କଂଗ୍ରେସ ବିଚାର କରି କହିଲା ଏମନ୍ତ
ଭାରତକୁ ସ୍ୱାଧୀନତା ଦିଅ ହେ ତୁରନ୍ତ । ୩୬
ଏମନ୍ତ ହେଲେ କଂଗ୍ରେସ ସାହାଯ୍ୟ କରିବ
ସମରପାଇଁ ଯା ଲୋଡ଼ା ତାହା ଯୋଗାଇବ ।୩୭
ସରକାର ଯେବେ ଦାବି ଅଗ୍ରାହ୍ୟ କରିବ
କଂଗ୍ରେସ ଏ ସମରରେ ଭାଗୀ ନ ହୋଇବ ।୩୮
ବଡ଼ଲାଟ ଶୁଣିପାରି କଂଗ୍ରେସ ସିଦ୍ଧାନ୍ତ
ଦମନ ମାତ୍ର ପ୍ରୟୋଗ କଲେକ ତୁରନ୍ତ । ୩୯
କଂଗ୍ରେସର ବହୁକର୍ମୀ ଧରା ହୋଇଗଲେ
କାରାଗାର ମଧ୍ୟରେ ଅଟକବନ୍ଦୀ ହେଲେ । ୪୦
ଅନିର୍ଦ୍ଦିଷ୍ଟ କାଳପାଇଁ ସେହୁ ବନ୍ଦୀ ହେଲେ
ବିନା ବିଚାରରେ ତହିଁ କାଳ କଟାଇଲେ ।୪୧
ଗାନ୍ଧିଜୀ ପ୍ରମୁଖ କେତେ ଅଟକ ଅଛନ୍ତି
ଭାରତ ରକ୍ଷା ଆଇନ ବଳେ କେ ଅଛନ୍ତି ।୪୨

ଗାନ୍ଧି କାରାଗାରେ ଯହୁଁ ଅଟକ ହୋଇଲେ
ଲୋକମାନେ ନାନା ଗଣ୍ଡଗୋଳ ଭିଆଇଲେ ।
ଭାରତର ଚାରିଆଡ଼େ ହେଲା ଗଣ୍ଡଗୋଳ
ଘରପୋଡ଼ା ତାରକଟା ଚାଲିଲା ବହୁଳ । ୪୪
ଲୁଟପାଟ ଡକାଇତି ଠାବେ ଠାବେ ହେଲା
ଦମନ ନୀତି ପ୍ରବଳ ବେଗରେ ଚାଲିଲା । ୪୫
ଛାତ୍ରମାନେ ଠାବେ ଠାବେ କଲେ ଗଣ୍ଡଗୋଳ
ପାଠପଢ଼ା ଛାଡ଼ି ଠାବେ ଠାବେ କଲେ ମେଳ ।
କେତେଲୋକ ଧରା ହୋଇ କାରାଗାରେ ଗଲେ
ଅର୍ଥଦଣ୍ଡ ସମୂହରେ କେତେ ଠାବେ ଦେଲେ ।
ଲକ୍ଷ ଲକ୍ଷ ଅର୍ଥଦଣ୍ଡ ଆଦାୟ ହୋଇଲା
ଗୁଳିଚ୍ଛୋଟେ କେଉଁଠାବେ କେତେଲୋକ ମଲା ।
ବହୁକାଳ ଧରି ହେଲା ନାନା ଗଣ୍ଡଗୋଳ
ଦମନଲୀଳା ଲାଗିଲା ନାନା ପରକାର । ୪୯
କଂଗ୍ରେସ ମୁଣ୍ଡରେ ସବୁ ଦୋଷ ଲଦା ହେଲା
ସରକାର ବୋଲନ୍ତି କଂଗ୍ରେସ ଏହା କଲା ।୫୦
ଅନେକ ଯୁକ୍ତି ତରକ କାରଣ ଦେଖାଇ
କଂଗ୍ରେସକୁ ସରକାର ବୋଲେ ଦୋଷୀ ସେହି ।
ଏହିପରି ସାତ ଆଠ ମାସ କାଳ ଗଲା
କ୍ରମେ କ୍ରମେ ଗଣ୍ଡଗୋଳ ଥମାଇ ଆସିଲା ।୫୨
ଗାନ୍ଧିଜୀ ସରକାରକୁ ଯାହା ଲେଖିଥିଲେ
ସରକାର ଉତ୍ତରରେ ଯାହା କହିଥିଲେ ୫୩
ସମ୍ବାଦ ପତ୍ରରେ ସବୁ ପ୍ରକାଶ ପାଇଲା
ସବୁକଥାମାନ ଆସି ଦାଣ୍ଡେ ଥୁଆ ହେଲା ।୫୪
ଗାନ୍ଧିଙ୍କର ସବୁ ଦୋଷ ବୋଲେ ସରକାର
ଗାନ୍ଧି ବୋଲନ୍ତି କିଛିହିଁ ଦୋଷ ନାହିଁ ମୋର ।
ଏପରି ଟଣା ଓଟରା ରହିଅଛି ଲାଗି
କେ କହିବ କେତେ ପରମାଣେ କିଏ ଭାଗୀ ।୫୭

ଏହି ପରିସ୍ଥିତି ଘୋଟିଅଛି ଭାରତରେ
କାଳ କାଟୁଛନ୍ତି ଲୋକେ ଅତି ଅଶାନ୍ତିରେ ।୫୭
ଇତି ଅବସରେ ଗାନ୍ଧି କଲେ ଉପବାସ
ଲେମ୍ବୁରସ ଖାଇଲେ ସେ ଦିନ ଏକବିଂଶ ।୫୮
ସାରା ପୃଥିବୀରେ ପଡ଼ିଗଲା ହାହାକାର
କାଳେ ପ୍ରାଣ ଉଡ଼ିଯିବ ହୋଇଲେ କାତର ।୫୯
ସକଳେ ସରକାରଙ୍କୁ କହିଲେ ବହୁତ
ଗାନ୍ଧିଙ୍କୁ କାରାଗାରରୁ କରନ୍ତୁ ମୁକତ । ୬୦
ସରକାର ବୋଇଲେ ଗାନ୍ଧିଙ୍କି ଛାଡ଼ିଦେବେ
ଯେବେ ଉପବାସପରେ ପୁଣି ବନ୍ଦୀ ହେବେ ।୬୧
ଗାନ୍ଧି ଏ କଥାରେ ସନମତ ହେଲେନାହିଁ
ବୋଇଲେ ଏକଥା କେବେ ନ କରିବି ମୁହିଁ ।
ଯେବେ ଛାଡ଼ିଦେବ ଏକାବେଳେ ଛାଡ଼ିଦିଅ
ନୋହିଲେ ଯେପରି ରଖିଅଛ ରଖିଥାଅ । ୬୩
ସରକାର ବୋଇଲେ ସେ ଛାଡ଼ିଦେବେ ନାହିଁ
ନୀତି ଦୃଷ୍ଟିରୁ ଏକଥା କରି ନ ଯୋଗାଇ ।୬୪
କାରାଗାରେ ଥାଇ ଯେବେ ଉପାସ କରିବେ
ତାଙ୍କ ପ୍ରାଣପାଇଁ ସେହୁ ନିଜେ ଦାୟୀ ହେବେ ।
ନିଜ ଦାୟିତ୍ୱରେ ସେ କରନ୍ତୁ ଉପବାସ
ସରକାରର ଦାୟିତ୍ୱ ନାହିଁ କିଛି ଲେଶ । ୬୬
ସରକାର ବୋଇଲେ ଏତିକି ସେ କରିବେ
ବନ୍ଧୁଜନ ଆସିବାକୁ ଅନୁମତି ଦେବେ । ୬୭
କେତେଜଣ ଚିକିତ୍ସକ ଆସି ଦେଖୁଥିବେ
ପତ୍ନୀ ପୁତ୍ର ରହି ତାଙ୍କ ସେବା କରୁଥିବେ ।୬୮
ଏହି ଅନୁକ୍ରମେ ସବୁ ବନ୍ଦୋବସ୍ତ ହେଲା
ଗୃହୁଁ ଗୃହୁଁ ଏକବିଂଶ ଦିନ ପୂର୍ଣ୍ଣ ହେଲା । ୬୯
ଏକେ ବୃଦ୍ଧ ବୟସ ଦ୍ୱିତୀୟେ ଅଙ୍ଗ କୃଶ
ମନ ବଳେ ବଳୀୟାନ ଅଟନ୍ତି ଅବଶ୍ୟ । ୭୦

ବହୁ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଗଲେ ଉପବାସେ
ଶଯ୍ୟାଶାୟୀ ହୋଇ ସେ ରହିଲେ ଅବଶେଷେ ।
ପ୍ରାଣ ଉଡ଼ିଯିବାର ଆଶଙ୍କା ଉପୁଜିଲା
ଚିକିତ୍ସକ ମନେ ଆସି ନିରାଶ ଛୁଇଁଲା । ୭୨
ଚଉଦିଗେ ଲୋକମାନେ ମଣିଲେ ବିପତ୍ତି
ଦିଅଁ ଦେଉଳେ ହୋଇଲା କେତେ ସ୍ତବ ସ୍ତୁତି ।
ରକ୍ଷାକର ରକ୍ଷାକର 'ଭଗବାନ ଡାକ
ରକ୍ଷାକର ବୋଲି ଉଚ୍ଚେ ଡାକିଲା ନାସ୍ତିକ ।
ଶତ୍ରୁ ମିତ୍ର ସକଳେ ବୋଇଲେ ଏକ ସ୍ୱରେ
ଯାହାହେଉ ଗାନ୍ଧିବୁଢ଼ା ରହୁ ଜୀବନରେ ।୭୫
ସରକାର ମାତ୍ର ନମ୍ରମକୁ କଲେ ବଳ
ନିଜ କଥା ନଜେ ଜଗି ରହିଲେ ଅଟଳ । ୭୬
ଆବେଦନ ନିବେଦନ କିଛି ନ ଶୁଣିଲେ
ଯାହାହେବ ହେଉ ପଛେ ଦେଖାଯିବ ଭଲେ ।
ଯାହାହେଉ ଏକ ବିଂଶ ଦିନ ଗତହେଲା
ଗାନ୍ଧିଙ୍କ ଉପାସବ୍ରତ ସମ୍ପୂର୍ଣ୍ଣ ହୋଇଲା । ୭୮
ଚିକିତ୍ସକମାନେ ଦେଖି ହେଲେ ଆଚମ୍ବିତ
ନିର୍ବିଘ୍ନରେ ପୂରଣ ହୋଇଲା ତାଙ୍କ ବ୍ରତ । ୭୯
କ୍ରମେ କ୍ରମେ ପୁଣି ନିଜ ଆହାର ଖାଇଲେ
ଦିନୁଦିନୁ ପୂର୍ବବଳ ପୁଣି ଲାଭକଲେ । ୮୦
ଯେତେକ ସୁବିଧା ଦେଇଥିଲେ ସରକାର
ପୁଣି ସବୁ ବନ୍ଦ କରି ଦେଲେକ ନକର । ୮୧
ଯେପରି ଥିଲେକ ଗାନ୍ଧି ସେପରି ରହିଲେ
ସରକାର କାହା କଥା କିଛି ନ ଶୁଣିଲେ ।୮୨
ରାଜଗୋପାଳ ପ୍ରମୁଖ କେତେ ଦେଶ ଲୋକ
ବହୁତ ଯତନ କରି ହୋଇଲେ ବିମୁଖ । ୮୩
ଏମାନେ ବଡ଼ଲାଟଙ୍କୁ ବହୁତ କହିଲେ
ଅଚଳ ଅବସ୍ଥା ସମାଧାନ କରି ଭଲେ । ୮୪

ଦିଅ ଅନୁମତି ଯାଇ ଗାନ୍ଧିଙ୍କୁ ଭେଟିବୁଁ
ତାଙ୍କ ମତ ବୁଝି ଆସି ପୁଣି ଜଣାଇବୁଁ । ୮୫
ଗାନ୍ଧିଙ୍କି ମଗାଇ ପୁଣି କଥା ପକାଇବା
କିପରି ସାଲିସ ହେବ ସେକଥା ବୁଝିବା । ୮୬
ଠୋ କରିଣ ବଡ଼ଲାଟ କରିଦେଲେ ନାହିଁ
କିଛିଫଳ ନାହିଁ ଆଉ ସେକଥା ଉଠାଇ । ୮୭
ଅଗଷ୍ଟ ପ୍ରସ୍ତାବ କଂଗ୍ରେସର ଅଛି ରହି
ହିଂସା କାର୍ଯ୍ୟମାନ ହେତୁଣ ହୁଏ ତ୍ରାହି ତ୍ରାହି ।
ଗାନ୍ଧି ଉପବାସ ବେଳେ ବହୁଲୋକ ଗଲେ
ତାଙ୍କ ସଙ୍ଗେ ଦେଖାକରି କଥାବାର୍ତ୍ତା ହେଲେ ।
ତେତେବେଳେ ଗାନ୍ଧି ତାଙ୍କୁ କିଛି ନ କହିଲେ
ହିଂସା ମୂଳକ କାର୍ଯ୍ୟକୁ କିଛି ନ ନିନ୍ଦିଲେ ।୯୦
ଗାନ୍ଧି ବା କଂଗ୍ରେସ ନେତା ଯେସବୁ ଅଛନ୍ତି
ଆପଣା ସମ୍ପର୍କ କିଛି ତୁଟାଇ ନାହାନ୍ତି । ୯୧
କି ବିଶ୍ୱାସ ଅଛି ପୁଣି ହେବ ସମାଧାନ
ଦେଖାଯାଉ ନାହିଁ କିଛି ତହିଁର କାରଣ । ୯୨
ନୀତି ନିୟମ ଶୃଙ୍ଖଳା ଯେପରି ରହିବ
ସେପରି କର୍ମ କରିବା ସବୁରି କର୍ତ୍ତବ୍ୟ । ୯୩
ସରକାର ମୁଣ୍ଡେ ଅଛି ଗୁରୁଭାର ରହି
ଦେଶରେ ଶାନ୍ତି ଶୃଙ୍ଖଳା ରଖିବ ତ ସେହି ।୯୪
ଛାଡ଼ିବା ଲକ୍ଷ ଲକ୍ଷଣ କିଛି ଦିଶୁନାହିଁ
ତେଣୁ ସରକାର ନୀତି ଅଟଳ ହେବଇ । ୯୫
ଜାତୀୟ ସରକାରର ଅଛି କି ସମ୍ଭବ
କିଏ କିପରି ବା ତାହା ଗଠନ କରିବ । ୯୬
ଜଣେ ଦିଜଣ କହିଲେ ଏକଥା ନ ହେବ
ସବୁ ଦଳ ଏକମତ ଯେବେ ନ ହୋଇବ । ୯୭
ସେପରି ଲକ୍ଷ ଲକ୍ଷଣ କିଛି ଦିଶୁନାହିଁ
ତେଣୁ ସରକାର ଦୃଢ଼ କରିଦେଲେ ନାହିଁ ।

ଶୁଣି ରାଜଗୋପାଳଙ୍କ ବୁଦ୍ଧି ହେଲା ହତ
କି କରିବେ ଏହାପରେ କି ଅବା ଉଚିତ ।୯୯
ସୁମରୁ ସୁମରୁ ନିଜ ଦେଶର ଚରିତ
ରାଜଗୋପାଳଆଚାରି ଏବେ ଦାରୁଭୂତ । ୧୦୦
କର୍ଣ୍ଣଗଲା କର୍ଣ୍ଣଗଲା ହୋଇ ସେ ଫେରିଲେ
ବଡ଼ଲାଟ ଉତ୍ତରରେ ଯାହା ବା କହିଲେ ।୧୦୧
କାହିଁକି କଂଗ୍ରେସ ନେତାମାନେ ବନ୍ଦୀହେଲେ
ଛିନ୍ନ ଭିନ୍ନ କରି ସରକାର ବତାଇଲେ ।୧୦୨
କଂଗ୍ରେସ ଯେ ସବୁ ଗଣ୍ଡଗୋଳ ଲଗାଇଲା
ବଇରୀଙ୍କ ଦୁଇଗୁଣ ଉତ୍ସାହିତ କଲା ।   ୧୦୩
ଭାରତ ଯୁଦ୍ଧ ପଥରେ ବହୁବାଧା ଦେଲା
ସାରାଭାରତରେ ମହାଗଣ୍ଡଗୋଳ ହେଲା । ୧୦୪
କଂଗ୍ରେସର ଏ ମାନ୍ତ ତ ମୂଳୁ ମରିନାହିଁ
କି ହେବ ପୁଣି ପାଲସ ପ୍ରସ୍ତାବ ଉଠାଇ ।୧୦୫
ଆମେରି ଚର୍ଚିଲ ଭାରତର ବଡ଼ଲାଟ
ଏକ ସ୍ୱରେ ଏକ କଥା କହିଲେ ନିରାଟ ।୧୦୬
ରାଜଗୋପାଳଆଚାରି ନାଚି ନାଚି ଥେଇ
ମୁହଁପାଣି ମୁହେଁ ମଲା କହି ନ ଯୋଗାଇ ।୧୦୭
ଭାରତର ରାଜନୀତି ପରିସ୍ଥିତି ଏହା
କି ହେବ ଭବିଷ୍ୟତକୁ କହିନୁହେଁ ତାହା ।୧୦୮
ଓଡ଼ିଶାର ରାଜନୀତି ସବୁଠୁ ବାହାର
ଅବ୍ୟବସ୍ଥା ବ୍ୟବସ୍ଥା ସଭାରେ କାରବାର ।୧୦୯
ଅଳପକୁ ବହୁତ କପଟ କରାଯିବ
ଓଡ଼ିଶା ବ୍ୟବସ୍ଥା ସଭା ଏହା ଶିକ୍ଷା ଦେବ ।
ଦେଶର ଅବସ୍ଥା ଏବେ କହିଲେ ନ ସରେ
ଟଙ୍କାକୁ ଗୁଡ଼ଲ ହେଲା ଦୁଇ ତିନ ସେରେ ।
ଟଙ୍କାକ ଲୁଗା ହେଲାଣି ଗୁରେ ପାଞ୍ଚ ଟଙ୍କା
ଲୁଗା ଦୋକାନକୁ ଗଲେ ମୁହଁ ହୁଏ ବଙ୍କା ।

ଚତୁର୍ଗୁଣ ଦର ବଢ଼ିଅଛି ଜନଙ୍କର
ଆୟୁ ଊଣା ବ୍ୟୟ ବେଶୀ ହେଲା ଲୋକଙ୍କର ।
ଶସ୍ୟ ହାନି ଘଟିଗଲା ସାରା ଦେଶଟାରେ
କେଉଁଠି କସ ଫଳିଲା କଏ କହିପାରେ । ୧୧୪
ବିଦେଶରୁ ଯେତେ ଯେତେ ଦ୍ରବ୍ୟ ଆସୁଥିଲା
ଯୁଦ୍ଧ ପରିସ୍ଥିତି ହେତୁ କିଛି ନ ଆସିଲା । ୧୧୫
ସୁନା ଆଖିଠାରେ ବୋଲେ ତୁ ମତେ ଛୁଇଁନା
ଯେ ମୋତେ କିଣିବ ତାର ଘର ହେବ ଚୂନା ।
ଭରିକୁ ସତୁରି ଟଙ୍କା ଅବା ଏକସ୍ତର
ରୂପାମୂଲ୍ୟ ବୃଦ୍ଧି ହୋଇ ହେଲାଣି ଦୋହର ।
ଟଙ୍କା ମୋହର ଛପିଲା ନୋଟ କରେ ନାଟ
ଟଙ୍କା ବଦଳରେ ରେଜା ପଡ଼ିଛି ନଅଣ୍ଟ ।୧୧୮
ସାରା ଭାରତରେ ଖାଦ୍ୟ ସଙ୍କଟ ପଡ଼ିଛି
ପ୍ରତି ଜନସରେ ମୂଲ୍ୟ ବହୁତ ବଢ଼ିଛି । ୧୧୯
ଲୋକଙ୍କ ଭିତରେ ପଡ଼ିଅଛି ହାହାକାର
କି କରିବା କି କରିବା କରନ୍ତି ବିଚାର । ୧୨୦
ପଞ୍ଚଗ୍ରହ କୂଟ ଏ ବରଷ ବାର ବାର
ଓଡ଼ିଶାର କେତେ ଜିଲ୍ଲା ହେଲା ଛାରଖାର ।
ମହାଘୋର ବତାସ ଏ ବରଷ ହୋଇଲା
ଘରଦ୍ୱାର ଗଛପତ୍ର ଶସ୍ୟ ନାଶ ଗଲା । ୧୨୨
ଗୋରୁ ଗାଈ ପଶୁ ପକ୍ଷୀ ଜୀବ ଜନ୍ତୁ ମଲେ
ବହୁତ ମଣିଷ ଏଥେ ପ୍ରାଣ ହରାଇଲେ । ୧୨୩
ସମର ହେତୁ ଯେ ପରିସ୍ଥିତି ଉପୁଜିଲା
ବତାସ ବିପତ୍ତି ତା ସହିତ ଯୋଗଦେଲା ।୧୨୪
ଉଭୟ ମିଶି ଲୋକଙ୍କୁ କରନ୍ତି ପେଷଣ
ବଢ଼ୁଅଛି ଲୋକଙ୍କର ଦ୍ୱିଗୁଣେ କଷଣ । ୧୨୫
ଅନ୍ନବସ୍ତ୍ର କଷ୍ଟ ଲୋକଙ୍କର ନୁହେଁ କହି
ଯା କରିବେ ସାଇଁ ତାହା କାହା ହାତେ ନାହିଁ ।

ରୁଷିଆ ଆଫ୍ରିକାଠାରେ ଲାଗିଛି ସମର
ଆରାକାନରେ ଜାପାନ କରେ ହୁର ଜୁର ।
କାହାର ବିରାମ ନାହିଁ ହେଉଛି ସମର
ଏ ଜିଣିଲା ସେ ଜିଣିଲା ମିଳୁଛି ଖବର । ୧୨୮
କିଏ ପଛକୁ ହଟଇ କାର ଅଗ୍ରଗତି
ଏହିପରି ସମ୍ବାଦ ମିଳୁଛି ନିତି ନିତି । ୧୨୯
କୋଟି କୋଟି ଟଙ୍କା ନିତି ନିତି ବ୍ୟୟ ହୁଏ
କାହାଠାରେ କେତେ ଧନ କଳନା ନ ଯାଏ ।
ଦିନକୁ ବିଂଶ ପଚିଶ କୋଟି ଟଙ୍କା ବ୍ୟୟ
ଶୁଣିଲେ ମନେ ଧାରଣା ନ ହୁଏ ନିଶ୍ଚୟ ।
ଯେଉଁ ଯେଉଁ ଦେଶ ଏ ସମରେ ପଶିଛନ୍ତି
ଏହି ପରିମାଣେ ବ୍ୟୟ କରୁଥିବେ ନିତି ।୧୩୨
ଚାରି ବରଷ ହେଲାଣି ଲାଗିଛି ସମର
କେତେ ବ୍ୟୟ ହୋଇଥିବ ଜନେ ହେତୁ କର ।
କେତେ ଧନ କେଉଁ ଦେଶେ ଅଛି କେ କହିବ
ପ୍ରତିଦିନ କେତେ ଧନ ଗ୍ରାସୁଛି ଆହବ । ୧୩୪
ଅନନ୍ତ ପାରାବାରର ଅନନ୍ତ ଗର୍ଭରେ
ଅକଳିତ ଧନ ବୁଡ଼ିଯାଏ ଅକାତରେ । ୧୩୫
ବଣିଜ ବେପାର କରି ଧନ ସାଇତିଲେ
ଅଗ୍ନି ଜଳବାୟୁ ମୁଖେ ପୂର୍ଣ୍ଣାହୁତି କଲେ ।୧୩୬
ଯେ ଦେଶର ଧନ ସବୁ ବଣିଜରେ ନେଲେ
ସେ ଦେଶ ଲୋକେ ମୁଠିଏ ଅନ୍ନ ନ ପାଇଲେ ।
ଦେଖ ଏ ଭାରତବାସୀ ଦଶା ଏହିପରି
ଅନ୍ନ ବସନ ବିହୁନେ ସଦା ମରେ ଝୁରି ।୧୩୮
ରତ୍ନପ୍ରସୂ ଭାରତର ଘରେ ଅନ୍ନ କଷ୍ଟ
ବସନ ଦୁର୍ମୂଲ୍ୟ ଦୁଃଖ ବାଧଇ ନିରାଟ । ୧୩୯
ଘରେ ଘରେ ଚାଲୁଥିଲା ଯେ ଦେଶେ ଅରଟ
ସେ ଦେଶ ପୁଣି ଭୋଗିଲା ଏ ବସନ କଷ୍ଟ ।୧୪୦

ବସନ ବେପାର କରୁଥିଲା ଯେଉଁ ଦେଶ
ତାକୁ ଏବେ ସ୍ୱପନ ହୋଇଲା ବସ୍ତ୍ରବାସ ।୧୪୧
କପା ବୃକ୍ଷ ଛାଡ଼ି ଏବେ ବୁଲୁଅଛି ଭୂଆଁ
ବସନ ବିହୁନେ ହେଉଛନ୍ତି କୁଆ ଭୂଆ । ୧୪୨
ଏପରି ଅର୍ଥ ସଙ୍କଟ ଦେଖାଥିଲା ନାହିଁ
ଚିନ୍ତାଗ୍ରସ୍ତ ଲୋକେ ଦୀର୍ଘ ନିଶ୍ୱାସ ପକାଇ ।
ଚିନ୍ତାମଣି ଏ ଚିନ୍ତାରୁ କରିବେ ମୁକତ
ଆଉ ଜଣେ କେହି ନାହିଁ ଏଥିକି ସମର୍ଥ ।୧୪୪
ଚିନ୍ତାମଣି ଏ ଦେଶରୁ ଚିନ୍ତାକର ଦୂର
ତବ ନାମ ସୁମରି ହୁଅନ୍ତୁ ଧୀର ସ୍ଥିର । ୧୪୫
ଚିନ୍ତାମଣି ପାଦପଦ୍ମେ ଲଗାଇଲେ ମନ
ଲୋକମାନେ ନ ଭୋଗନ୍ତେ ଏ ସବୁ କଷଣ ।
ଲୋଭ ମୋହ ରାହୁଗ୍ରାସେ ପଡ଼ିଣ ସକଳ
ପଥ ନପାଇ ହୁଅନ୍ତି ଉହଳ ବିକଳ । ୧୪୭
ଜଗତର ନାଥ ଆଉ ହୋଇଲେ ଅନାଥ
ହସିବେ ଇତର ଜନେ କହୁଛି ନିଶ୍ଚିତ । ୧୪୮
ଦୀନ ଜଗବନ୍ଧୁ ଭାଷେ ହେ ଜଗତ ସାଇଁ
ରକ୍ଷାକର ରକ୍ଷାକର ଆନଗତି ନାହିଁ । ୧୪୯

ଇତି ଶ୍ରୀ ଭାରତ-ଚରିତାମୃତେ ଯୁଗ ପରିସ୍ଥିତି ବର୍ଣ୍ଣନେ ଏକଶତ ଦ୍ୱାଦଶ ଅଧ୍ୟାୟଃ ।



# ଏକଶତ ତ୍ରୟୋଦଶ ଅଧ୍ୟାୟ

ଗଉର ଉବାଚ

ଯୁଗଧରମ ଆପଣ କହିଲେ ବହୁତ
ସକଳ ଦରବ ମୂଲ୍ୟ ବଢ଼ୁଛି ନିୟତ । ୧
ଏଥିକି ଉପାୟ କିଛି ଦିଶୁନାହିଁ ମୋତେ
କିପରି ଚଳିବେ ଲୋକମାନେ ଏ ଜଗତେ । ୨

କେତେକାଳେ ଏ ସଂସାରୁ ସରିବ ସମର
କେତେକାଳ ଯାଏ ଲୋକେ ହେବେ ହରବର ।
ଯେଉଁ ଯେଉଁ ରାଇଜରେ ଲାଗିଛି ସମର
ଧନ ପ୍ରାଣେ ନାଶ ହେଉଛନ୍ତି ନିରନ୍ତର । ୪
ଆମ ଭାରତରେ ଲାଗିନାହିଁ ତ ସମର
ଅନ୍ନ ବସ୍ତ୍ରର ଅଭାବ କମାଇ ଏହାର । ୫
ଏ ଗୂଢ଼ ରହସ୍ୟ କିଛି ବୁଝିପାରୁ ନାହିଁ
ଠିକେ ଠିକେ କହ ମୋତେ ଆହେ ଭାବଗ୍ରାହୀ ।୬

ଜଗା ଉବାଚ

ଏ ତ ବିଷମ ସମସ୍ୟା ବଡ଼ ଗୂଢ଼ କଥା
ପାଞ୍ଚ ପାଞ୍ଚ ଲୋକଙ୍କର ଘୁରିଯାଏ ମଥା । ୭
କାହିଁକି କିପରି ହେଲା କିଏ ସେ କହିବ
ଦିବ୍ୟଚକ୍ଷୁ ଥିବ ଯାର ସେ ସିନା ଜାଣିବ । ୮
ମୁଁ ମୁଁ ହୋଇଣ ସକଳେ ହେଉଛନ୍ତି ଧନ୍ଦ
ଜଣେ କେହି ଜାଣିପାରୁ ନାହିଁ କଥାସନ୍ଧି । ୯
ନାହିଁ ମୋର ଦିବ୍ୟଦୃଷ୍ଟି ନାହିଁ ଦିବ୍ୟଜ୍ଞାନ
କିପରି କହିପାରିବି ଏ ରହସ୍ୟମାନ । ୧୦
ଦେଖୁଛି ଲୋକର ନାହିଁ କିଛିହିଁ ଆସ୍ଥିତ
ମୋହମାୟାରେ ସକଳେ ଅଛନ୍ତି ଜଡ଼ିତ । ୧୧
କିଏ ଏ କୋକୁଆଭୟ ଦେଇଛି ଲଗାଇ
କରେ ରଜ୍ଜୁ ଧରି ଲୁଚି ବସିଅଛି କାହିଁ । ୧୨
ବିଜ୍ଞୁଆ ଲୋକେ ହୁଅନ୍ତି ବଳ କଷାକଷି
ମୂର୍ଖଲୋକମାନେ ହୋଇ ଯାଉଛନ୍ତି ପେଷି ।୧୩
ଧନ ବଳ ଅସ୍ତ୍ର ବଳ ଯାର ଯେତେ ବେଶି
ତା ମନେ ତେତେ ଗରବ ଆଜଯାଏ ଲସି ।୧୪
କିଏ ଲଗାଇ ଦେଇଛି କାହିଁକି ସମର
ସେହି ଏକା ଜାଣେ ସିନା ତାର ଫଳାଫଳ ।୧୫

କେତେବେଳେ ଶେଷହେବ ତାହାର ଏ ଖେଳ
ସେ ସିନା କହିପାରିବ ଘଟଣା ସକଳ । ୧୬
ଦେଖୁଛୁ ଶୁଣୁଛୁ ଯାହା ତାହା ମୁଁ କହିବି
ତହୁଁ ଅଧିକ କିଛିହିଁ କହି ନ ପାରିବି । ୧୭
ଦେଖ ଏବେ ଲାଗିଅଛି ବଡ଼ କଉତୁକ
ରୁଦ୍ଧବନ୍ଦ କରାଗଲା ଧାନକୋଠି ଯାକ । ୧୮
କୋଠି ପାଳଗଦାମାନ ଜଗିଛି ପ୍ରହରୀ
ଥିଲା ନଥିଲା ସକଳେ ହୈଲେ ସମସରି । ୧୯
ନିଜଘରେ ନିଜର ନାହିଁକ ଅଧିକାର
ଅଛଇ ଆପଣାବାସେ ପ୍ରବାସୀ ପ୍ରକାର । ୨୦
ଘୋର ସମର ଲାଗିଛି କେଉଁ ଦୂରଦେଶେ
ମହାଘୋର ଦୁର୍ଭିକ୍ଷ ହେଲାଣି ଆମ୍ଭଦେଶେ ।୨୧
ସବୁ ଜିନଷର ମୂଲ୍ୟ ବଢ଼ିଲା ବହୁତ
କିଣିଖିଆ ଲୋକେ ହେଉଛନ୍ତି ଅସ୍ତବ୍ୟସ୍ତ । ୨୨
ଚାଉଳର ମୂଲ୍ୟ ଅତି ଅଧିକ ବଢ଼ିଲା
ଦୁଇ ସେର ଦେଢ଼ ସେର ଟଙ୍କାକୁ ମିଳିଲା ।୨୩
ବିରି ମୁଗ କୋଳଥର ମୂଲ୍ୟ ଏକ ହେଲା
ଦୁଇ ସେରକୁ ଟଙ୍କାଏ ଦରେ ବିକାହେଲା ।୨୪
ଘିଅ ସେର ପାଞ୍ଚ ଟଙ୍କା ତେଲ ଦୁଇ ଟଙ୍କା
ଲୁଗା ଦର ଦେଖି ମୁହଁ ହୋଇଯାଏ ବଙ୍କା ।୨୫
ଦଶ ବାରଅଣା ଯେଉଁ ଲୁଗା ଦର ଥିଲା
ପାଞ୍ଚ ଗୁଣ ସାତ ଗୁଣ ତାର ମୂଲ୍ୟ ହେଲା । ୨୬
ବିଦେଶୀ ଜିନିଷ ମୂଲ୍ୟ କହିଲେ ନ ସରେ
ଆଠ ଟଙ୍କାରେ ମହଣିଛତା ଖଣ୍ଡେ ମିଳେ ।୨୭
ଧାନ ଚାଉଳର ଭାଉ ବୃଦ୍ଧି ହେଲା ଯେତେ
ଆନ ଦରବର ମୂଲ୍ୟ ବୃଦ୍ଧି ହେଲା ତେତେ ।୨୮
ଜର୍ମାନୀ ଜାପାନ ଆଦି ଦେଶ ସହିତରେ
ଆମ ଦେଶ ସରକାର ଲାଗିଲେ ସମରେ । ୨୯

ସେ ଦେଶ ଦରବମାନ ଆଉ ନ ଆସିଲା
ଯାହା ରହିଥିଲା ତାର ମୂଲ୍ୟ ବୃଦ୍ଧି ହେଲା । ୩୦
ଜଳ ସ୍ଥଳ ଆକାଶରେ ପଥରେ ସମର
ଯିବା ଆସିବା ସୁଗମ ନ ହେଲା ନକର । ୩୧
ଶତ୍ରୁମାନେ ବେଳେବେଳେ ଆସନ୍ତି ଦଉଡ଼ି
ଆମ୍ଭ ଦେଶ ଉପରକୁ ଦେଉଛନ୍ତି ଧାଡ଼ି । ୩୨
ଗୁଳି ଗୁଳା ପକାଇ କରନ୍ତି ହରବର
ମରୁଛନ୍ତି ଲୋକ ଭାଙ୍ଗି ଯାଏ ଘରଦ୍ୱାର । ୩୩
ଆମ ଦେଶ ସରକାର ହେଲେ ତତପର
ଶତ୍ରୁ ନ ଆସିବାପାଇଁ ପାଞ୍ଚିଲେ ନକର । ୩୪
ଛକମୁଣ୍ଡ ଜଗି ତହିଁ ରଖିଲେ ସଇନ
ଶୂନ୍ୟ ଜାହାଜ ଗୁଳିଣୀ ଖଞ୍ଜିଲେ ସଘନ । ୩୫
ସମୁଦ୍ର କୂଳ ଜାଗାରେ ହେଲେ ସାବଧାନ
ତୋପ ଆଦି ଖଞ୍ଜି ଜଗାଇଲେ ବହୁ ଜନ । ୩୬
ଉଡ଼ାଜାହାଜର ଉପଦ୍ରବ ଯେବେ ହେବ
କପରେ ଯେ ବିପଦରୁ ଉଦ୍ଧାର ପାଇବ । ୩୭
ତହିଁ ପାଇଁ ଲୋକମାନେ ହେବେ ହୁସିଆର
ଲୁଚି ରହିବାପାଇଁକି ହେବେ ତତପର । ୩୮
ଘର ମଧ୍ୟରେ ରହିବେ ନ ଆସି ବାହାରେ
କେହୁ ପଶି ଲୁଚିପାରେ ଗାତର ଭିତରେ । ୩୯
ରାସ୍ତାଘାଟ ପାଖେ କେତେ ଖାତ ଖୋଳାହେଲା
ସ୍ଥାନେ ସ୍ଥାନେ ଏ ବିଷୟେ ଶିକ୍ଷା ଦିଆଗଲା । ୪୦
ବହୁତ ଲୋକ ଏଥିରେ ହୋଇଲେ ନିଯୁକ୍ତ
ଉଡ଼ାଜାହାଜ ବିପତ୍ତି ପ୍ରହରୀ ଉକତ । ୪୧
ଯେତେବେଳେ ସେ ବିପତ୍ତି ଆସି ଦେଖାଦେବ
ନିଆଁ ଗୁଳା ପକାଇଣ ଅନିଷ୍ଟ କରିବ । ୪୨
ଲୋକମାନଙ୍କୁ ମାରିବ ଘରଦ୍ୱାର ପୋଡ଼ି
ଅନିଷ୍ଟ ଘଟାଇ ପୁଣି ଯିବଟି ବାହୁଡ଼ି । ୪୩

ବାହୁଡ଼ିବା ପରେ ଘଣ୍ଟି ଶବଦ ଶୁଭିବ
ଶତ୍ରୁ ଗଲା ବୋଲି ଏହା ସଙ୍କେତ ହୋଇବ । ୪୪
ସେ ସଙ୍କେତ ଶୁଣି ପ୍ରହରୀଏ ଉପଗତ
ଲୋକଙ୍କ ସେବା ଶୁଶ୍ରୂଷା କରିବେ ନିୟତ । ୪୫
ନିଆଁ ଲିଭାଇବେ ଶବ ଉଠାଇଣ ନେବେ
କ୍ଷତବିକ୍ଷତ ଲୋକର ସାହାଯ୍ୟ କରିବେ । ୪୬
ପ୍ରହରୀ ସଇନ ନାମେ ହୋଇଲେ ବହୁତ
ବହୁତ ଦରମାପାଇ ହୋଇଲେ ନିଯୁକ୍ତ । ୪୭
ବେକାର ଯୁବକମାନେ ଯେତେ ବୁଲୁଥିଲେ
ବାର ମନ୍ଦ ଚିନ୍ତାକରି କାଳ କାଟୁଥିଲେ । ୪୮
ସେମାନେ ଏ କାମପାଇ କର୍ମୀ ବୋଲାଇଲେ
ସରକାର ଘରୁ ଯୋତା ପୋଷାକ ପାଇଲେ ।
ଭଲଭଲ ଲୋକ ପୁଣି ହେଲେ ସରଦାର
ସେମାନେ ଉଚ୍ଚ ପାଇଣ ଗୃଳକ ନିକର । ୫୦
ଜନ ସାଧାରଣ ରକ୍ଷୀ ଦଳ ଗଢ଼ାହେଲେ
ପୁଲିସ ସିପାହୀ କାମ ସଙ୍ଗେ ଯୋଗଦେଲେ । ୫୧
ଏପରି ନାନା ଉପାୟମାନ ଖଞ୍ଜା ହେଲା
ଯୁଦ୍ଧ ସାମୁଖ୍ୟ ନାମରେ ଦଳ ଗଢ଼ାହେଲା । ୫୨
ସମର ଢଙ୍ଗକୁ ଲୋକଙ୍କର ମନ ଯିବ
ସମର କଥା ଶୁଣିଲେ ଭୟ ନ ହୋଇବ । ୫୩
ଆନନ୍ଦ ମନରେ ସମରକୁ ଚଳିଯିବ
ପ୍ରାଣପଣେ ଶତ୍ରୁ ସଙ୍ଗେ ଲଢ଼ାଇ କରିବ । ୫୪
ଏକଥା ପ୍ରଚାରପାଇଁ ବହୁ ଧନ ବ୍ୟୟ
ବଡ଼ ବଡ଼ କର୍ମଚାରୀ ରହିଲେ ନିଶ୍ଚୟ । ୫୫
ମଟରଗାଡ଼ି ଗୋଟାଏ ସତତ ବୁଲିଲା
କଳଗାଉଣା ଯନ୍ତ୍ରର ତହିଁରେ ଖଞ୍ଜିଲା । ୫୬
ସମର ସଙ୍ଗୀତମାନ ଗାଉଛି ନିୟତ
କେତେ ଲୋକ ରହିଲେ ରଚିବାପାଇଁ ଗୀତ ।

ସଙ୍ଗୀତକଳାରେ ଯାର ନାହିଁ କାଣ୍ଡଜ୍ଞାନ
ସେହୁ ଏ ନାଟର ସଙ୍ଗ ଧରିଲେକ ପୁଣ । ୫୮
ସଙ୍ଗୀତ ରଚକ ଟଙ୍କା ପାଇବ ନକର
ଗୀତଗୁଣେ ପାଇବ ତାହାର ପୁରସ୍କାର । ୫୯
ଏପରି କର୍ମବିଭାଗ ଖୋଲିଲା ବହୁତ
ନାନାରୂପେ ଧନବ୍ୟୟ ହୋଇଲା ବହୁତ ।୬୦
କେ ସେନା ବିଭାଗେ ଯାଇ ନାମ ଲେଖାଇଲେ
କେହୁ ଉଡ଼ାଜାହାଜର ଚାଳକ ହୋଇଲେ । ୬୧
ଅଗ୍ରଗ ସେନା ବିଭାଗ ଆବର ହୋଇଲେ
ତହିଁରେ ନାନାପ୍ରକାର କର୍ମ ଲୋଡ଼ା ହେଲେ ।
ସୂପକାର ଧୋବା ଆଦି ନାନାଦି ସେବକ
ସେ କାମରେ ଯାଇ ଯୋଗଦେଲେକ ଅନେକ ।
ନାନାଦିଗେ ଧନ ବ୍ୟୟ ହେଉଛି ବହୁତ
ପତନରେ ଧନ ଉଡ଼ିଯାଉଛି ନପୂତ । ୬୪
ସାହସୀ କର୍ମଠମାନେ ନେଉଛନ୍ତି ଧରି
ଅଳସୁଆ ରହିଁ ବସେ ପ୍ରାଣଭୟେ ଡରି । ୬୫
ପ୍ରାଣଭୟ ଛାଡ଼ି ଯେହୁ ଯାଉଛି ଦଉଡ଼ି
ଗୁଣି ଆଣୁଅଛି ସେହୁ ବହୁତ କଉଡ଼ି । ୬୬
ଯେ କାନ୍ଧା ପଣନ୍ତବନ୍ଧା ହୋଇଛି ନପୂତ
କପାଳକୁ ଠୁକ ସେହୁ ରହିଁଛି ସନ୍ତତ । ୬୭
ସାହସୀ ଲୋକପାଇଁକ ଏ ବାରୁଣୀଯୋଗ
ଧନ ଅରଜନ କରି କରୁଅଛି ଭୋଗ । ୬୮
ମରିବା ପାଇଁକ କାହିଁପାଇଁ ଏତେ ଡର
ଜନମିଛି ଜୀବ ଦିନେ ମରିବ ନକର । ୬୯
ଏ ଦୃଢ଼ ବିଶ୍ୱାସ ଯାର ତାର ଡରନାହିଁ
କର୍ମକ୍ଷେତ୍ରେ ପଶୁଅଛି ସେ ଯାଇ ଝସାଇ । ୭୦
ଇଂରେଜ ଜର୍ମାନୀ ପୁଣି ଜାପାନ ରୁଷିଆ
ଏ ସାହସ ଅସ୍ତ୍ର ଧରି ହୋଇଛନ୍ତି ଠିଆ । ୭୧

ଶୁଣୁଛି ଦେଇ ପରାଣ କରନ୍ତି ସମର
ମାରି ମରିବା ପାଇଁକି ଟିକେ ନାହିଁ ଡ଼ର ।୭୨
ମନେ ବାନ୍ଧିଛି ସାହସ ଜିଣିବ ସମର
ଆପଣା ଦେଶର ଟେକ ରହିବ ନକର । ୭୩
ଏହି ଜାଣିଶୁ ଜୀବନ ସ୍ରୋତ ଯାଏ ବହି
ସମର ପ୍ରାଙ୍ଗଣେ ଦୋଳି ଖେଳୁଛନ୍ତି ସେହି ।୭୪
ଭାରତବାସୀର ସେ ଜାଣିଶୁ ପ୍ରାଣ ନାହିଁ
ବହୁକାଳୁଁ ସେ ମରଣ ଯାଇଛି ଉଭାଇ । ୭୫
ତେଣୁ ଏ ସମର ନାମ ପଡ଼ିଲେ କାନରେ
ଥରି ଉଠୁଛି ପରାଣ ଜୀବନ ଭୟରେ । ୭୬
ଗୃହୁଁ ଗୃହୁଁ ମୂଲ୍ୟ ବୃଦ୍ଧି ହୋଇଲା ବହୁତ
ବଣିକ ବେପାରି ଲାଭକଲେ ଅପ୍ରମିତ । ୭୭
ଯେ ଯେତେ ପାରିଲା ତେତେ ଭାଉରେ ବିକଲା
ଭାଉ ଦେଖି ଲୋକଙ୍କର ଆତଙ୍କ ପଡ଼ିଲା । ୭୮
ସରକାର କଲେ ପୁଣି ଦର ନିୟନ୍ତ୍ରଣ
ଘନ ଘନ ଜାରି ହେଲା ଆଇନ କାନୁନ । ୭୯
କି ମୂଲ୍ୟରେ କେଉଁ ଦ୍ରବ୍ୟ ହୋଇବ ବିକ୍ରୟ
ସରକାର କଲେ ତାର ଏକମୂଲ୍ୟ ଥୟ । ୮୦
ସରକାର ତରଫରୁ ପ୍ରତିନିଧିମାନେ
ଧାନ ଚାଉଳ କିଣିଲେ ନିରଖ ପ୍ରମାଣେ । ୮୧
ପୁଣି ବିକଲେ ସେ ଧାନ କିଛି ଲାଭ ରଖି
ସେର ତରାଜୁରେ ଧାନ ନେଲେକ ପରଖି ।୮୨
ପ୍ରତିନିଧି ତଳେ ପର-ପ୍ରତିନିଧି ହେଲେ
କିଛି ଲାଭ ନେଇ ପୁଣି ସେମାନେ ବିକଲେ ।
କଣିଖିଆର ଦୁର୍ଦ୍ଦଶା କହିଲେ ନ ସରେ
ଶତ ଶତ ଲୋକ ମରିଗଲେ ଅନାହାରେ ।୮୪
ଅଶନ ବସନ ମୂଲ୍ୟ ବଢ଼ିଲା ବହୁତ
କାଙ୍ଗାଳ ହୋଇ ବୁଲିଲେ ଲୋକ ଶତଶତ ।

ଚୋଡ଼ାଣି ଦିଅ ମା ବୋଲି ଉଚ୍ଚେ ଡାକଦେଲେ
ସହର ବଜାରେ ଆସି ବହୁତ ବୁଲିଲେ । ୮୬
ସ୍ଥାନେ ସ୍ଥାନେ ଅନ୍ନଛତ୍ରମାନ ବସିଗଲା
ଦରିଦ୍ରମାନଙ୍କୁ ମୁଠିଭିକ୍ଷା ଦିଆଗଲା । ୮୭
ପୁଣ୍ୟବନ୍ତ ସେଠ ସାହୁକାର ଯେହୁ ଥିଲେ
ଏ ବେଳକୁ ଉଣ୍ଡି ପୁଣ୍ୟ ଅରଜନ କଲେ । ୮୮
ଅନ୍ନ ବସ୍ତ୍ରମାନ ଦାନ କଲେକ ବହୁତ
ଏ କର୍ମରେ ଯୋଗଁଦେଲେ ଲୋକ ଶତ ଶତ ।
ସରକାର ସ୍ଥାନେ ସ୍ଥାନେ ଅନ୍ନଛତ୍ର ଦେଲେ
ସେ ତାଙ୍କ ପ୍ରଜା ପାଳନ ଧର୍ମ ଦେଖାଇଲେ ।
ଏହି ଅଭିନୟ ଲଗିଅଛି ଭାରତରେ
ଅନ୍ନ ବିନୁ ମରେ କେହୁ କେ ଅଛି ଭୋଗରେ ।
କଏ ଡ଼ାକ ଡ଼ାକ ଅନ୍ନ ମୁଠାଏ ନ ପାଏ
କେ ନାଟକ ଦେଖିବାକୁ ଆନନ୍ଦରେ ଯାଏ । ୯୨
କେହୁ ଚଳଚ୍ଚିତ୍ର ଦେଖି ଗମାଏ ପଇସା
ଅନ୍ନ ନ ପାଇ କାହାର ଉଡ଼ୁଅଛି ହଂସା । ୯୩
ତେଣେ ଯୁଦ୍ଧପାଇଁ ଚାନ୍ଦା ଆଦାୟ ବହୁତ
ନାନା ଆକାରେ ପ୍ରକାରେ ହେଉଛି ସନ୍ତତ ।
ଏ କି ବିଚିତ୍ର ବେଭାର ଆହେ ଭଗବାନ
ଏ ଲୀଳା ଦେଖି ସନ୍ତୋଷ ଲଭୁଛ ଆପଣ । ୯୫
କାହାଦ୍ୱାରେ ଝୁଲୁଅଛି ଶତ ଶତ ହାତୀ
କାହାକୁ ଅନ୍ନ ନ ମିଳେ ପାହିଯାଏ ରାତି । ୯୬
ସମଦରଶୀ ଆପଣ ବୋଲାଅ ନିଶ୍ଚିତ
ବିଷମ ବେପାର ଜଗ ଦେଖେ ଶତ ଶତ । ୯୭
କର୍ମଫଳ କହି ପ୍ରଭୁ ଭଣ୍ଡି ଦେବ ସିନା
କେ କରି କରାଉଅଛି ପ୍ରଭୁ ତୁମ୍ଭ ବିନା । ୯୮
ଯେ ତବ ନାମ ନ ନିଏ ସେ ତ ବଡଲୋକ
ଯେ ତବ ନାମକୁ ଗାଏ ମାରେ ସଦା ଭୋକ । ୯୯

ଏ କର୍ମ କର୍ତ୍ତାହେ କାହା ସନ୍ତୁଷ୍ଟି ନିତି
କେ ବୁଝି ପାରିବ ପ୍ରଭୁ ଏ ବିଚିତ୍ର ଗତି ।୧୦୦
ସମର ପ୍ରାଙ୍ଗଣେ ପଶି କଲକି ରୂପଧରି
କୋଟି କୋଟି ପରାଣୀଙ୍କ ପକାଉଛ ମାରି ।
କୂଢ଼ କୂଢ଼ ଧନ ଜଳେ ଦେଉଛ ବୁଡ଼ାଇ
କେତେ କେତେ ଦିଅ ପୁଣି ଅନଳେ ପୋଡ଼ାଇ ।
ଅଜସ୍ର ଧନ ପବନେ ଯାଉଅଛି ଉଡ଼ି
କିଏ କାହା ଧନ ନେବ କ୍ଷଣେ ଭିଡ଼ା ଭିଡ଼ି ।
ଦରିଦ୍ର ବେଶରେ ପ୍ରଭୁ ମାଗୁଅଛ ଭିକ
ଦାମୀ ବେଶେ ପୁଣି ତାର ହରୁଅଛ ଦୁଃଖ ।
କଟୁଆଳ ବେଶେ ପ୍ରଭୁ ହୋଇଛ ପ୍ରହରୀ
ଚୋର ବେଶେ କାହିଁ ପୁଣି କରୁଅଛ ଚୋରି ।
ବିଚାରପତି ହୋଇଣ କରୁଛ ବିଚାର
ଚୋରକୁ ଆବର ଦଣ୍ଡ ଦେଉଛ ଅପାର ।
ଏ ବିଚିତ୍ର ଲୀଳାକରି କି ସୁଖ ଲଭୁଛ
ଦଣ୍ଡକେ ଭାଙ୍ଗୁଛ ପୁଣି ଦଣ୍ଡକେ ଗଢ଼ୁଛ । ୧୦୭
ବଡ଼ ବିଚିତ୍ର ଶିଳ୍ପୀ ଅଟ ତୁମ୍ଭେ ଜଣେ
ପଲକଂ ମାନବେ ଗଢ଼ କେତେ ପରିମାଣେ ।
ବିଚିତ୍ର ଚିତ୍ର ଦେଖିଲେ ମଣିବ ବିସ୍ମୟ
ମାନବର ବୁଦ୍ଧି ବିଦ୍ୟା ହୋଇଯାଏ ଲୟ ।
ମାନବ କଳିବାପାଇଁ ଏ ବିଶ୍ୱ ରହସ୍ୟ
ଜ୍ଞାନ ବିଜ୍ଞାନ ଖଟାଇ ଲଢ଼ୁନ୍ତି ଅବଶ୍ୟ । ୧୧୦
କେତେଦୂର ଯାଇ ପୁଣି ତାର ବୁଦ୍ଧି ହତ
ପୁଣି ତବ ଶ୍ରୀଚରଣେ ଲଗାଉନ୍ତି ଚିତ୍ତ । ୧୧୧
ଆସୁରୀ ପ୍ରକୃତି ଲୋକ ଯେତେ ଏ ସଂସାରେ
ତବ ନାମ ନ ଧରଇ ନିମିଷେ ତୁଣ୍ଡରେ ।୧୧୨
ପାଞ୍ଚେ ନିଜ ବୁଦ୍ଧିବଳ ବାହୁବଳ ଧରି
ବିଶ୍ୱ ପାରାବାରକୁ ସେ ଯିବନ୍ତି ପହଁରି । ୧୧୩

ଧନ୍ୟରେ ମାନବ ତୋର ବୁଦ୍ଧି ବାହୁବଳ
ତୁ ବିଶ୍ୱବିଧାତା ସଙ୍ଗେ କରୁଅଛୁ ଖେଳ ।
କେତେବେଳେ ଆକାଶରେ ଯାଉଅଛୁ ଉଡ଼ି
କେତେବେଳେ ଭୂମିପରେ ଯାଉଅଛୁ ପଡ଼ି ।
ପ୍ରକୃତି ସହିତ କେବେ କରୁଅଛୁ ଖେଳା
ପ୍ରକୃତି କେବେ ବୁଡ଼ାଇଦିଏ ତୋର ଭେଳା ।
ଝଡ଼ ତୋଫାନ ବରଷା ଅଗ୍ନି ଉତପାତ
ବନ୍ୟା ବଜ୍ରଆଦି ଶତ୍ରୁ ତୋର ଶତ ଶତ ।
ଏ ସବୁ ତୋ ବୁଦ୍ଧି ବିଦ୍ୟା କରିଦିଏ ପଣ୍ଡ
ପ୍ରକୃତି ତାଣ୍ଡବଲୀଳା କରେ ଲଣ୍ଡଭଣ୍ଡ । ୧୧୮
ପୁଣି ଉଠୁ ପୁଣି ପଡ଼ୁ ଲାଗୁ ତୋ କାମରେ
ଭାସୁଅଛୁ ସଦା ଆଶା ନିରାଶା ସ୍ରୋତରେ ।୧୧୯
କେତେବେଳେ ତବ ନାମ କରଇ ସ୍ମରଣ
କେତେବେଳେ ପୁଣ ନାମ ହୁଏ ବିସ୍ମରଣ ।
ଦୁରୁବଳ ମନ ତାର ମାୟାରେ ମୋହିତ
ଅଭୟ ଚରଣେ ରଖି ନ ପାରଇ ଚିତ୍ତ ।୧୨୧
ମୁଁ କରୁଛି ମୁଁ କରିବି ମୋର ମୋର କହି
ଏ ବିଶ୍ୱ କର୍ମଜାଲରେ ପଡ଼େ ଛନ୍ଦି ହୋଇ ।
ଛନ୍ଦାହୋଇ ବନ୍ଧାପଡ଼େ ବିଚିତ୍ର ସଂସାରେ
କୁହୁଡ଼ି ପହଁରି ସଦା ଧନ୍ଦି ହୋଇ ମରେ ।୧୨୩
ସତପଥ ଛାଡ଼ି ସଦା ଅସତେ ଗମଇ
ଏ ମାୟା ମୋହ କୁହୁକ ଏଡ଼ି ନ ପାରଇ ।୧୨୪
କେତେ କଉଶଳେ ପ୍ରଭୁ ଗଢ଼ିଛ ସଂସାର
ପେଟ ଖଣ୍ଡିକେ ବାନ୍ଧି ରଖିଅଛ ଡୋର ।
ଆହାର ଲମ୍ପଟେ ଜୀବ ସଦା ଛଟ ପଟ
ଖାଦ୍ୟ ପାଇଁ ଲଗାଇଛ ନାନା ନଟ କୂଟ ।
ଆହାର ପାଇଁ ଲାଗିଛି ଭୀଷଣ ସମର
ହଣା! ହଣି ମରାମରି ଲାଗିଛି ନିକର । ୧୨୬

ଅଚିହ୍ନା ବ୍ୟାଧି ଘୋଟଇ ଖାଦ୍ୟ ଊଣାହେଲେ
ପିତା ପୁତ୍ର ମରାମରି ହେଉଛନ୍ତି ବଳେ । ୧୨୮
ସ୍ୱାମୀ ପ୍ରାଣ ନେଉଅଛି ସ୍ତ୍ରୀ ଅକାତରେ
ସ୍ତ୍ରୀକ ପୁରୁଷ ହତ୍ୟା କରେ ଅବଶ୍ୱରେ ।
ପରସ୍ପର ସ୍ନେହ ସମ୍ବନ୍ଧ ପ୍ରେମ ଆଦି ଯେତେ
ସବୁ ଭାସି ଯାଉଅଛି ଅନାହାର ସ୍ରୋତେ ।
କି ମହା ଅଗ୍ନି ରଖିଛ ଉଦର ମଧ୍ୟରେ
କାଷ୍ଠ ପାଷାଣ ଇତ୍ୟାଦି ସବୁ ଭସ୍ମ କରେ ।୧୩୧
ଯାବତ ଉଦର ପୂର୍ତ୍ତି ନ ହୁଏ ପ୍ରାଣୀର
ଦଣ୍ଡକେ ସକଳ ଦିଗ ଦିଶଇ ଅନ୍ଧାର । ୧୩୨
ଜ୍ଞାନ ବିଜ୍ଞାନ ସକଳ ହୋଇଯାଏ ଲୋପ
ବାରି ନ ପାରଇ କିଛି ପୁଣ୍ୟ ଅବା ପାପ ।୧୩୩
ପଶୁଠାରୁ ହୀନ ହୋଇଯାଏ ତତକ୍ଷଣ
ଜୀବନ୍ତ ନରପିଶାଚ ମୂରତି ଧରଣ । ୧୩୪
କିପରି ହୋଇବ ତାର ଉଦର ପୂରଣ
ତହିଁପାଇଁ ହତହୁଏ ହିତାହିତ ଜ୍ଞାନ । ୧୩୫
ଏହି ଏକ ମହା ସ୍ୱାର୍ଥ ତାକୁ ଗ୍ରାସ କରେ
ସେ ସ୍ୱାର୍ଥ ସିଦ୍ଧି ପାଇଁକି ଯାହା ତାହା କରେ ।
ସେହି ପାତକ ଅନଳ ତୁମ୍ଭେ ପରା ଅଟ
କାହିଁପାଇଁ ଲଗାଇଛ ପ୍ରଭୁ ଏତେ ନାଟ ।୧୩୭
କେ ବୁଝିପାରିବ ତବ ଏ ଲୀଳା ଚରିତ
ଚିନ୍ତା କରି କେତେ ଲୋକ ହେଲେ ଦାରୁଭୂତ ।
ମୋ ପରି କ୍ଷୁଦ୍ରମାନବ କି ବୁଝିପାରିବ
ତବ ଇଚ୍ଛା ତୁମ୍ଭେ ପ୍ରଭୁ ପୂରଣ କରିବ । ୧୩୯
ଏ ମହା ଖାଦ୍ୟ ସଙ୍କଟ ଦୁର୍ଭିକ୍ଷ କାନ୍ତାର
ଚତୁର୍ଦ୍ଦିଗେ ଶୁଭୁଅଛି ସଦା ହାହାକାର । ୧୪୦
କି କରିବା କି କରିବା କେବଳ ଈଶ୍ୱର
ତବ ନାମ ନେବାପାଇଁ ନାହିଁ ଅବସର ।୧୪୧

ଛଡ ଦସ୍ୟା ବନୁ ନାହିଁ ଏଥିରୁ ଉଦ୍ଧାର
ପ୍ରଳୟ ମୂରତି ପ୍ରଭୁ ଫନ୍ଦର ଚଞ୍ଚଳ । ୧୪୨
କେବେ ଲିଭିବ ମହାସମର ଅନଳ
ବୃଶ ବରଷ ପୂରିଲା ଆଜ କେତେକାଳ ।୧୪୩
ରୁଷିଆ ଦେଶ ସମର ହେଲାନାହିଁ ଶେଷ
ରୁଷିଆ ଜିଣୁଛି ବୋଲି ମିଳୁଛି ସନ୍ଦେଶ ।୧୪୪
ଜରମାନୀ ସେନାମାନେ ଅଛନ୍ତି ସେ ଦେଶେ
ଫେରି ତ ଆସି ନାହାନ୍ତି ବଜସ୍ୟ ନିବାଶେ ।୧୪୫
ଦୁଇ ପକ୍ଷ ହୋଇଛନ୍ତି ସମାନ ଟାଣୁଆ
ମୁହାଁମୁହିଁ ହୋଇ ଦମ୍ଭେ ହୋଇଛନ୍ତି ଠିଆ ।
କେ ଆଗକୁ ଆସେ ମାଡ଼ି କେହୁ ପଛଘୁଞ୍ଚା
ଏତେକାଳ ହେଲା ଲାଗିଅଛି ପାଞ୍ଚପୁଞ୍ଚା । ୧୪୭
ଛକାଛକି ହୋଇ ଲଢ଼ୁଛନ୍ତି ଦୁଇଜଣ
ଊଣା ଦେଖାଯାଉନାହିଁ ଜଣକର ଟାଣ ।୧୪୮
କେତେକ ଅଞ୍ଚଳ ଜରମାନୀ ନେଇଥିଲା
ରୁଷିଆ ପୁଣି ତାହାକୁ ବେଦଖଲ କଲା । ୧୪୯
ଦଖଲ ବେଦଖଲର ମିଳୁଛି ଖବର
ଜଣାଯାଏ ଲାଗିଅଛି ସମର ଜବର । ୧୫୦
ତେଣେ ଆଫ୍ରିକା ଦେଶରେ ଲାଗିଛି ସମର
ଜିଣୁଛନ୍ତି ସେଠାରେ ଇଂରେଜ ସରକାର ।
ଏଣେ ଜାପାନ ଲଢ଼ୁଛି ଇଂରେଜ ସହିତ
ଛକପାକେ ରହି ମୁଣ୍ଡଟୁଙ୍ଗାରେ ନିଯୁତ ।୧୫୨
ଆସାମ କଲିକତାକୁ ଦେଉଅଛି ଧାଡ଼ି
ବେଳକାଳ ଜଣିକରି ଆସୁଅଛି ଉଡ଼ି । ୧୫୩
ଗୁଳିଗୁଳା ପକାଇଣ ଯାଉଛି ଚଳାଇ
ମୁହାଁମୁହିଁ ହୋଇନାହିଁ କେଉଁଠି ଲଢ଼ାଇ ।
ଛକାପଞ୍ଝାରେ ଅଛନ୍ତି ଏହି ଦୁଇ ପକ୍ଷ
କେତେବେଳେ ହେବ ପୁଣି ସମ୍ମୁଖ ପରଖ ।

ଏ ବିପତ୍ତି ରହିଅଛି ଭାରତ ମୁଣ୍ଡରେ
ସଦା ସ୍ୱସ୍ଥ ଭାତ କହି ନ ପାରେ ତୁଣ୍ଡରେ ।
ଅନ୍ନ ସଙ୍କଟ ତାହାର ବିଷମ ବିପତ୍ତି
ଅନ୍ନ ବିହୁନେ ତାହାର ଭାଙ୍ଗି ଯାଏ ଛାତି ।୧୫୭
ଥିଲା ନ ଥିଲା ସକଳେ ଏବେ ସମସରି
ଥୋଇଲା ଧନ ବାସୁକି କାହିଁ ନେଏ ହରି ।୧୫୮
ଘାସକୁ ଲମ୍ବ ପାଳକୁ ଶ୍ରେଷ୍ଠ ସବୁବେଳେ
ସଞ୍ଜ ସକାଳେ ଗାଲରେ ହାତ ଦେଇ ଭାଳେ ।
ପେଟ ପୂରୁନାହିଁ ଯାର ତାର କି ଶକତି
ଅସ୍ଥି କଙ୍କାଳ ଧରିଣ ଦାଣ୍ଡେ ବୁଲୁଛନ୍ତି । ୧୬୦
ଆନ ଦୟା କୃପାପାତ୍ର ହୋଇ ଯେ ବଞ୍ଚିବ
ତାର କି ଶକତି ଅଛି କି କରିପାରିବ । ୧୬୧
କୁକୁର ଉଦ୍‌ଗାର ଅନ୍ନେ ଯାର ଅଭିଳାଷ
ତାର କାହିଁ ମନେ ଦମ୍ଭ ଗରବ ସାହସ ।୧୬୨
ଶଙ୍କା ଦକା ଭ୍ରାନ୍ତି ଭୟ ସଦା ତା ମନରେ
ଲସିଯାଏ ଆନ ଛାଇ ପଡ଼ିଲେ ତା ପରେ ।୧୬୩
ଭିକ୍ଷା ଜୀବିକା ଯାହାର ଦାସଗିରିବୃତ୍ତି
ସେ ଶୂଳପାରେ କି ଦାଣ୍ଡେ ଫୁଲାଇଣ ଛାତି ।
ଅନ୍ନପୂର୍ଣ୍ଣା ଭାରତର ଏ ଦଶମ ଦଶା
ଦେଖି ପୁଣି ଲୋକଙ୍କର ଉଡ଼ିଯାଏ ହଂସା ।
କେଉଁ ମହାପାପ ଫଳେ ଆଜି ଏ ଭାରତ
ଦୁଇବେଳା ନ ପାଉଛି ପେଟପୁର ଭାତ ।୧୬୬
ଆହେ ମହାପ୍ରଭୁ ତୁମ୍ଭେ ଅଛ ତ ଭାରତେ
କାହୁଁ କାହୁଁ ଦୁଃଖ ମାଡ଼ିପଡ଼ୁଛି ନରତେ ।୧୬୭
ଇଂରେଜ ସମ ବନ୍ଧୁଆ ରକ୍ଷକ ଥୋଇଲ
ତେବେ ଭାରତରେ ଦୁଃଖ ବଢ଼ୁଛି କେବଳ ।
ଆହେ ପ୍ରଭୁ ଚକ୍ରଧର ଚକ୍ର ଧରି କରେ
ବିପତ୍ତି ଖଣ୍ଡନ କର ପ୍ରଭୁ ସ୍ୱହସ୍ତରେ । ୧୬୯

କେଁକେସ କଲ ଭାରତ କି ଅବା ନ କଲ
କାହିଁ ପାଇଁ ମହାଘୋର ଦୁଖ ସେ ସହିଲା ।
ଆହୁରି କି ଅବଶେଷ ଅଛି ତାର ପାପ
କେତେକାଳ ଭୋଗିବ ଏ ବିପତ୍ତି ଅମାପ ।
କୃପା ନୟନ ଫେରାଇ ଦେଲେ ବାରେ ଚାହିଁ
ଏ ବିପତ୍ତି କୁଜ୍ଝଟିକା ଯିବ ତ ମିଳାଇ ।୧୭୨
ବିପତ୍ତି ପେଷଣା ମଧ୍ୟେ ଆଉ କେତେକାଳ
ପେଷିହେବ ଏ ଭାରତ ଆହେ ଆଦିମୂଳ ।୧୭୩
ପାପୀ ଦରିଦ୍ର ଭାରତ ସଙ୍ଗେ କେତେକାଳ
ଖେଳିବ ହେ ମହାପ୍ରଭୁ ଲୁଚୁକାଳି ଖେଳ ।୧୭୪
ଭାଙ୍ଗିଲଣି ମେରୁଦଣ୍ଡ ସରିଲା ବଡ଼ାଇ
ମହା ଶ୍ମଶାନ ଭୂମିରେ ଦେବ କି ଗଡ଼ାଇ ।
ଅଭାବେ ସ୍ୱଭାବ ନଷ୍ଟ ହୋଇଯାଏ ସତ
ତବ ପାଦପଦ୍ମେ ରଖି ନପାରଇ ଚିତ୍ତ । ୧୭୬
ଅତି କଷ୍ଟବେଳେ ଡାକେ ଆହେ ପ୍ରଭୁ ରଖ
ରଖ ବା ନ ରଖ ତବ ଇଚ୍ଛା ପଦ୍ମମୁଖ ।୧୭୭
ଅନନ୍ୟ ଚିତ୍ତରେ ଭଜି ନ ପାରଇ ତୋତେ
ପେଟ ଚିନ୍ତାରେ ବିକଳ ହୁଅଇ ସତତେ ।୧୭୮
ଉଡ଼ାଯାନ ବୁଡ଼ାଯାନ ଦେଖି ଲଭେ ଖ୍ୟାତି
ନାନା ବିଭୀଷିକା ଦେଖି କମ୍ପେ ସଦା ଛାତି ।
କେତେଦିନେ ଧ୍ୱଂସଲୀଳା ହେବ ସମାପନ
ସୁଖ ଶାନ୍ତି ଲଭିବ ଏ ଭାରତ ସନ୍ତାନ । ୧୮୦
ଷଣ୍ଢରେ ଦଣ୍ଡରେ ହେଉଛନ୍ତି ଲଢ଼ାଲଢ଼ି
ବେଣାବୁଦା ଏ ଭାରତ ଯାଉଅଛି ଛିଡ଼ି ।୧୮୧
ବାଡ଼ିବସନ୍ତ ଜ୍ୱରରେ ମରୁଛନ୍ତି ଲୋକ
କେତେ ମାରି ନେଉଅଛି ଅନାହାର ଜୋକ ।
ଖାଇବା ବିନା ଭେଣ୍ଡାଏ ମେଣ୍ଢାପରି ହେଲେ
ଟାଣରେ ଲଙ୍ଗଳ କଣ୍ଠି ଧରି ନପାରିଲେ ।୧୮୩

ଗିରିଗିରିକିଆ ଚାଷ ଖିତ ମାଟି ନାହିଁ
ବଳଦ ବାପୁଡ଼ା ଗୋଡ଼ ଗୋଡ଼ରେ ବାଜଇ
ବେଳକାଳ ଜାଣି ମେଘ ନ ବରଷେ ଆଉ
ଅକାଳ ବରଷା ଝଡ଼ ହଏ ନାନା ଦାଉ ।୧୮୫
ଶସ୍ୟ ହାନି ହେଲା ବେଳୁଁ ବେଳ ବହୁତର
ଆଠପଣ ହାରାହାରି ମିଳିଲା କେବଳ । ୧୮୬
ଏହିପରି ନାନା ଦଶା ଭୋଗୁଅଛି ଚଷା
ଶସ୍ୟ ଅମଳକୁ ଦେଖି ଉଡ଼ିଯାଏ ହଂସା । ୧୮୭
ଆୟକୁ ବ୍ୟୟ ବହୁତ ହେଲା ଦିନୁଦିନ
କି କରିବ କି କରିବ ଭାଳି ନଏ ଦିନ । ୧୮୮
ଏଣେ ମହାରଣ ତେଣେ ହେଲା ଶସ୍ୟ ହାନି
ଚିନ୍ତାର୍ଥି ହୋଇ କେବଳ ଡାକେ ଚିନ୍ତାମଣି ।
ଆହେ ଚିନ୍ତାମଣି କେବେ ତା ଚିନ୍ତା ହରିବ
କେବେ ଏ ସମରାନଳ ସମିତ ହୋଇବ । ୧୯୦
ସମର ପ୍ରାଙ୍ଗଣେ ରହିଛନ୍ତି ସରକାର
ପରଜା କଥା ବୁଝିବାପାଇଁ କାହିଁ ତର ।୧୯୧
ସମର ଅନଳେ ଝାସ ଦେବେ ଯେଉଁମାନେ
ତାଙ୍କ କଥା ଆଗ ବୁଝାଯିବ ସନମାନେ ।୧୯୨
ତାଙ୍କ ପରେ ରାଜ୍ୟ ରକ୍ଷୀ କଟୁଆଳ ଗଣ
ରାଜକର୍ମଚାରୀ କଥା ତା ପଛକୁ ଗଣ । ୧୯୩
ଏମାନଙ୍କ ପରେ ଜନସାଧାରଣ କଥା
ଏତେ କଥା ବୁଝି ବୁଝି ଘୁରିଯାଏ ମଥା ।୧୯୪
ଯେତେ ଯାହା ମିଳିଲା ଦରବ କିଣିନେଲେ
ଦର ନିୟନ୍ତ୍ରଣ କରି ପଡ଼ି ଯୋଗାଇଲେ ।୧୯୫
ଲୁଗା ଧାନ ଚାଉଳ ଗହମ କିରାସିନି
ପଡ଼ି ବଣ୍ଟା ହେଉଅଛି ଧରି କର୍ମ ଶ୍ରେଣୀ ।୧୯୬
ନଗରକୁ ବେଶି ଦୃଷ୍ଟି ପଲ୍ଲୀକୁ ଅଳପ
କେ କିସ ପାଇବ ତାର ହୋଇଅଛି ମାପ ।

କଳାହାଟ ସ୍ଥାନେ ସ୍ଥାନେ ବସିଛୁ ଗୁପତେ
କେ କଳ ନପାରେ ଦର ସେ ହାଟରେ କେତେ
ମନଇଚ୍ଛା ଦରେ ସେ ହାଟରେ ବିକାକଣା
ଆଖିଥିଲା ଲୋକ ତହିଁ ହୋଇଯାଏ କଣା ।
ନିତ ଆବଶ୍ୟକ ଯାହା ଅବଶ୍ୟ କିଣିବ
ଭାଉ ଖୋଜହେଲେ କାହୁଁ ପାଇବ ଦରବ ।
ତେଣୁ ଭାଉକୁ ନ ଚାହିଁ ଯେତେ ଦର ହେଉ
କିଣୁଛି ଦରବ ଭାଉଠାରୁ ବେଶି ଫାଉ ।୨୦୧
ଧରମକୁ ସାକ୍ଷୀଦେଇ ଘରେ ଯାଏ ଚଳ
ଘରଣୀଏ ଦର ଶୁଣି କରୁଥାନ୍ତି କଳ । ୨୦୨
ପଇସାକୁ ଚାହିଁ ମାଲ ଅତ୍ୟନ୍ତ ଅଳପ
କପରି ଘର ଚଳିବ କାହିଁ ମାପଖାପ । ୨୦୩
ଯେଉଁ ହିସାବରେ ଏତେକାଳ ଚଳୁଥିଲୁ
ସେ ହିସାବ ଆଜ ଏ କାଳରେ ନ ରହିଲୁ ।
ଦରବର ମୂଲ୍ୟ ହେଲା ଚାର ପାଞ୍ଚଗୁଣ
କେଉଁଘରୁ କାହୁଁ ଆସି ହୋଇବ ପୂରଣ ।୨୦୫
ଧାନ ଦର ବେଶିହେଲା ଦେଖି କେହୁ ବୋଲେ
ଚାଷୀଏ ବହୁତ ଲଭ ପାଇବେ ଏକାଳେ ।
ସତ କଥା ଧାନ ଭଜ ହୋଇଅଛୁ ବେଶି
କିଣିଲେ ଆନ ଦରବ ଯାଏ ସବୁ ଖସି । ୨୦୭
ଚାଷରୁ ସବୁ ଦରବ ଯାର ଉପୁଜିବ
ସେହି କେବଳ ଏକାଳେ ଲଭବାନ ହେବ ।
ପିଣ୍ଡାବସା ଚାଷୀଙ୍କର ହେବ ସର୍ବନାଶ
ଛତାଧରା କହୁ କହୁ ମାରିବେ ନିଶ୍ୱାସ । ୨୦୯
ଇଂରେଜ ପାଠୁଆ ସରକାରୀ ଚାକିରିଆ
ଚାଷୀ ହେଲେ ତାଙ୍କ ବଳେ ନ ବୁଲିବ ଦାଆ ।
ବହୁତ ଜମି କିଣିବେ ପଇସା ବଳରେ
ଚାଷ ଲଭ କିଛୁମାତ୍ର ନ ହେବ ଫଳରେ ।୨୧୧

ଭାଗ ସଞ୍ଜା ଲଗାଇଣ ନିଶ୍ଚିନ୍ତେ ଶୋଇବେ
ଚାଲ ଘାସବାଡ଼ ହେବ ଜାଣି ନପାରିବେ ।୨୧୨
ଏସବୁ ଚାଷୀର ନାହିଁ ଜମିରେ ସବଗ
ଯାହା ଫଳିଲା ସେଥିରୁ ଦେବ ଅଧେଭାଗ ।୨୧୩
ଉଣେଇଶ ଚେୟାଳିଶ ସନ ହେଲା ଶେଷ
ଧନକ୍ଷୟ ଜନକ୍ଷୟ ହୋଇଲା ବିଶେଷ । ୨୧୪
ଆସନ୍ତା ସନର କଥା କେଜାଣେ କି ହେବ
ଦଇବ ବିଗୃର କଥା କେ କହି ପାରିବ ।୨୧୫
ଏହିଠାରେ ଏ ଅଧ୍ୟାୟ ହୋଇଗଲା ଶେଷ
ଭଜେ ଜଗବନ୍ଧୁ ରକ୍ଷାକର ଜଗଦୀଶ । ୨୧୬

ଇତି ଶ୍ରୀ ଭାରତ-ଚରିତାମୃତେ ଯୁଗ ଧର୍ମ ବର୍ଣ୍ଣନେ ଏକଶତ ତ୍ରୟୋଦଶ ଅଧ୍ୟାୟଃ ।



## ଏକଶତ ଚତୁର୍ଦ୍ଦଶ ଅଧ୍ୟାୟ

ଗଡ଼ର ଉବାଚ

ଘୁଞ୍ଚି ଘୁଞ୍ଚି ପୂରିଗଲା ଚାରି ଯେ ବରଷ
ପାଞ୍ଚବରଷରୁ ଅଧେ ହେଲା ଆସି ଶେଷ । ୧
ଅବସାନ ହେଲାନାହିଁ ସେକାଳ ସମର
ଘୋର ଅଶାନ୍ତ ବ୍ୟାପୁଛି ସାରା ଭୂମଣ୍ଡଳ । ୨
ଅର୍ଥ ସଙ୍କଟ ଘୋଟିଛି ସବୁ ପ୍ରଦେଶରେ
ଦୁର୍ଭିକ୍ଷ ମଡ଼କ ଖେଳାକରେ ଦ୍ୱାରେ ଦ୍ୱାରେ ।୩
ଖାଦ୍ୟ ଦରବ ଉପରେ ହେଲା କଟକଣା
ପଡ଼ ବଣ୍ଟାହୁଏ ଦେଖି ବୁଦ୍ଧି ହୁଏ ବଣା । ୪
ନୂଆ ବଡ଼ଲାଟ ଜଣେ ଦିଲ୍ଲୀକି ଆସିଲେ
ଲିନଲିଥିଗୋ ଆପଣା ଦେଶକୁ ଫେରିଲେ । ୫

ନୂଆ ନୂଆ କଥା କିସ ହେବ କି ଭାରତେ
ଏଥିର ସନ୍ଦେଶ କିଛି କହିଦିଅ ମୋତେ । ୬
ଶୁଦ୍ଧ ସମାଚାର କିଛି ଜାଣିଥିଲେ କହ
ଜାଣି ନ ପାରି ଉପୁଜେ ନାନାଦି ସଂଶୟ । ୭

ଜଗା ଉବାଚ

ଓ୍ୟାଭେଲ ନାମେ ସାହେବ ବଡ଼ଲାଟ ହେଲେ
ଏଥି ପୂରୁବେ ସେ ଯୁଦ୍ଧ ସେନାପତି ଥିଲେ । ୮
ତାଙ୍କ ମୁଣ୍ଡେ ଶାସନର କଳସ ଢଳିଲା
ଶାସନଭାର ନେବାର ଅଳ୍ପଦିନ ହେଲା । ୯
ଗ୍ରାମ ଗହଳରେ ଯାଇ ହୁଅନ୍ତି ପ୍ରବେଶ
ଲୋକଙ୍କ ଅବସ୍ଥା ବୁଲି ଦେଖୁଛନ୍ତି କିସ । ୧୦
ଖାଦ୍ୟ ଯୋଜନାରେ ଏବେ ଦେଇଛନ୍ତି ମନ
ସମର ବିଜୟ ପାଇଁ କରିବେ ଯତନ । ୧୧
ଏ ଦୁଇ ଦିଗରେ ଦେଇଛନ୍ତି ମନ ଜ୍ଞାନ
ଏହି ଦିଗେ ଲକ୍ଷ୍ୟ ରଖି ଚଳାନ୍ତି ଶାସନ । ୧୨
ମୃତକ ପରି ଭାରତ ରହିଥିଲା ଶୁହିଁ
ଅଚଳ ଅବସ୍ଥା ଶୀଘ୍ର ଦେବେ ସେ ତୁଟାଇ । ୧୩
କେନ୍ଦ୍ର ବ୍ୟବସ୍ଥା ସଭାରେ ଦେଲେ ସେ ଭାଷଣ
କହିଦେଲେ ଆଣ୍ଟେ ରାଜନୀତି କଥାମାନ । ୧୪
ସରଳ ଭାବରେ ମତ କଥା ସେ କହିଲେ
ବଚନ ଚାତୁରୀ ଭାଷା କିଛି ନ କହିଲେ । ୧୫
ବୋଇଲେ କଂଗ୍ରେସ ଯେବେ ତା ମତ ଛାଡ଼ିବ
ବନ୍ଦୀମାନଙ୍କୁ କାରାରୁ ମୁକ୍ତ ଦିଆଯିବ । ୧୬
ଶାସନ ଖସଡ଼ା ସବୁ ଦଳ ମିଳିକଲେ
ଅଧିକାର ଭାରତକୁ ଦିଆଯିବ ବଳେ । ୧୭
ଯାବତ ଏ କଥାମାନ ନ ହେବ ସମ୍ଭବ
ତାବତ ଭାରତ ଅଧିକାର ନ ପାଇବ । ୧୮

ମନଖୋଲି ସତ କଥାମାନ କହିଦେଲେ
ବୁଝିନାଅ ଦେଶବାସୀ ଏ କଥାକୁ ଭୁଲେ । ୧୯
ସମର ସରିଲେ ଯାହା ବିଚାର ହୋଇବ
ସେ କଥାକୁ ଦେଶବାସୀ ଗୃହେଁ ବସିଥିବ । ୨୦
ବଡ଼ଲାଟ ଏହା କହି ତୁନି ତାନି ହେଲେ
ଦେଶବାସୀ କେତେଲୋକ ସନ୍ତୁଷ୍ଟ ନ ହେଲେ ।
ବୋଇଲେ ଏକଥା କେବେ ଲାଏକ ନ ହେଲା
କେତେ ବଡ଼ ଆଶାଥିଲା •ବିଫଳ ହୋଇଲା ।
ଏଥି ମଧ୍ୟରେ କି ହେଲା ଶୁଣ ଦେଇ ଚିତ୍ତ
ଗାନ୍ଧି କାରାଗାର ଘରେ ଥିଲେକ ନିଶ୍ଚିନ୍ତ ।୨୩
ପତ୍ନୀ ତାହାଙ୍କର ଥିଲେ ସେବାରେ ନିଯୁକ୍ତ
ସେବା କରୁଥିଲେ ସେହୁ ଦେଇ ମନଚିତ୍ତ ।୨୪
ତାଙ୍କର ବିୟୋଗ ହେଲା ସେହି କାରାଗାରେ
ସମାଧି ଲଭିଲେ ପୁଣି ସେହୁ ସେହିଠାରେ ।୨୫
ସାରା ଭାରତରେ:ପଡ଼ିଗଲାକ ଚହଳ
କୋଟିଏ ଟଙ୍କାରେ ସ୍ମୃତି ପାଣ୍ଠି ହେବଠୂଳ ।
ଯେଉଁ ଜିଲ୍ଲାରେ ଯେତେକ ଟଙ୍କା ଠୂଳହେବ
ସେ•ଟଙ୍କାର ଅଧିକାଂଶ ସେଠାରେ ରହିବ ।
ନାରୀ ଶିକ୍ଷାରେ ଲାଗିବ ସେହି ଠୂଳ ଧନ
ଲାଗିଛି ସାରା ଦେଶରେ ସଗ୍ରହ ଯତନ । ୨୮
ଭାରତ ବିଲାତ ଆମେରିକା ଚୀନ ଦେଶ
ଗୃହିଆଡ଼େ ଲୋକମତ ଉଠିଲା ବିଶେଷ । ୨୯
କଂଗ୍ରେସ ବନ୍ଦୀମାନଙ୍କୁ କାରା ମୁକ୍ତକର
ସମାଧାନ ହେବ ତେବେ ଅବସ୍ଥା ଅଚଳ । ୩୦
ଆମେରି ଭାରତ ମନ୍ତ୍ରୀ କିଛି ନ ବିଚାରି
ଉତ୍ତରିଲେ ପୁରାତନ ଜବାବ ନିଖାରି । ୩୧
କେତେକାଳ ଗତେ ପୁଣି କହିଲେ ଏମନ୍ତ
ଭାରତର ବଡ଼ଲାଟ ନେଲେ ସେ ଦାୟିତ୍ୱ ।୩୨

ଅଖଣ୍ଡ କ୍ଷମତା ତାଙ୍କୁ ଦିଆଗଲା ଯେନ
ସକଳ ବିଷୟ ସେହୁ କରିବେ ଗଣନ । ୩୩
ଅଟକ ବନ୍ଦୀମାନଙ୍କୁ କରିବେ ମୁକତ
ଯେବେ ତାଙ୍କ ହସ୍ତରେ ହେବ ଯୁକ୍ତିଯୁକ୍ତ ।
ଇତି ଅବସରେ ଗାନ୍ଧି ହୋଇଲେ ମୁକତ
ଅସୁସ୍ଥତା ନିବନ୍ଧନ ନଥାଇ ସରତ । ୩୫
ଗାନ୍ଧିଙ୍କର ଦେହ ପୂରା ଭଲ ହୋଇ ନାହିଁ
କ୍ରମେ କ୍ରମେ ସ୍ୱାସ୍ଥ୍ୟ ଲାଭକରୁଛନ୍ତି ସେହି । ୩୬
ସୁସ୍ଥ ହେଲେ ଗାନ୍ଧି ପୁଣି କି କାର୍ଯ୍ୟ କରିବେ
କେହି ତାଙ୍କ ମନକଥା କହି ନ ପାରିବେ । ୩୭
ଏଣେ ଜାପାନ ଭାରତେ ପଶୁଛି ଧପାଇ
ଆସାମର ଉପକଣ୍ଠ ଅଞ୍ଚଳେ ପଶଇ । ୩୮
ଆମ ସରକାର ସେନା ଅଛନ୍ତି ସେଠାରେ
ଗଡ଼ବାନ୍ଧି ରହିଛନ୍ତି ସୁଦୃଢ଼ ଭାବରେ । ୩୯
ମହାଘୋର ଲଢ଼ାଇ ଲାଗିଛି ସେହିଠାରେ
କେ ପଛକୁ ହଟି ଆସେ କେ ଯାଏ ଆଗରେ ।
ଏହିପରି ଲାଗିଅଛି ମହାଘୋର ରଣ
ମରୁଛନ୍ତି କେତେ କେତେ ସଇନ ପ୍ରମାଣ । ୪୧
କେତେଦିନ ପରେ ଗାନ୍ଧି ହୋଇଲେକ ସୁସ୍ଥ
ବ୍ୟକତ କଲେ ଆବର ତାହାଙ୍କର ମତ । ୪୨
ପୁଣି ସେ ପୁରୁଣା କଥା କଲେକ ପ୍ରଚାର
ରଚନାମୂଳକ କାର୍ଯ୍ୟ କରିବା ନିକର । ୪୩
ସୂତା କାଟି ଲୁଗା ପିନ୍ଧ ଗ୍ରାମ ସଂଗଠନ
କାମେ ପୁଣି ଲାଗିଯାଅ ହେ ଭାରତ ଜନ । ୪୪
କସ୍ତୁରବା ସ୍ମୃତି ପାଣ୍ଠି ଟଙ୍କାତକ ନିଅ
ବାଣ୍ଟି କୁଣ୍ଢି ସାରଦେଶେ କାମରେ ଲଗାଅ ।
ନିରବ ନିଶ୍ଚଳ ଥିଲେ ଯେଉଁମାନେ ବସି
ଏ ପାଣ୍ଠି ପାଇ ହାତରେ ହେଲେ ମହାଖୁସି ।

ଏତକ ପାଣ୍ଠିକି ନେଇ ହେବ କାରବାର
ପୁଣି କଟ୍ଟାଦିନ ପାଇଁ ଯୁଟିଲା ଆହାର । ୪୭
ଦେଖାଯାଉ ଏ କର୍ମୀଙ୍କ କର୍ମଦକ୍ଷ ପଣ
ଦେଖାଇ ପାରନ୍ତି ପୁଣ ନୂତନ ନୂତନ । ୪୮
ଆଉଦଳେ ନେତା ବସି ବିଚାରନ୍ତି ମନେ
ମନ୍ତ୍ରୀମଣ୍ଡଳ ଆବର ଗଢ଼ିବେ କେସନେ । ୪୯
କଂଗ୍ରେସର ମନ୍ତ୍ରୀଦଳ କାର୍ଯ୍ୟ ଛାଡ଼ିଦେଇ
ସରକାର ହାତେ ଦେଲେ ଶାସନକୁ ନେଇ ।
ବେକଂଗ୍ରସ ମନ୍ତ୍ରୀ ଯେଉଁ ପ୍ରଦେଶରେ ଥିଲେ
କେତେ ଦିନ ଯାଏ ସେ ଶାସନ ଚଳାଇଲେ ।
ଆପଣା ଭିତରେ ପୁଣି ହେଲେ ଦଳ ଦଳ
ମତାନ୍ତର ମନାନ୍ତର ଭାଙ୍ଗିଦେଲା ବଳ । ୫୨
ଅବଶେଷେ ମନ୍ତ୍ରୀ ଗାଦି ଛାଡ଼ି ପଳାଇଲେ
ପୁଣି କି କରିବେ ବୋଲି ମନରେ ଭାଳିଲେ ।
ସାନ ମନ୍ତ୍ରୀମଣ୍ଡଳ ଗଢ଼ିବେ ଭାବୁ ଭାବୁ
କରି ନ ପାରି ମନକୁ ହୋଇଗଲେ କାବୁ ।୫୪
ରାଜଗୋପାଳଆଗ୍ରହୀ ଆଉ କେତେଜଣ
ମିଳିତ ମନ୍ତ୍ରୀମଣ୍ଡଳେ ଦେଲେ ମନ ଧ୍ୟାନ । ୫୫
କେତେକାଳ ବହିଗଲା ଚାଲିଛି ମନ୍ତ୍ରଣା
କିପରି ଏ କାର୍ଯ୍ୟ ହେବ ପଡ଼ିଛି ଭାବନା । ୫୬
ସରକାର ମନ ଯଥା ତଥା ଅଛି ରହି
ସେହି ପୁରୁଣା ଉତ୍ତର ଦିଅନ୍ତି ଛୁହାଇ । ୫୭
ସେ ତ ଭାରତବାସୀଙ୍କ ନାଡ଼ୀ ଚିପିଛନ୍ତି
ଲୁହା ଜାଣି ଥରେ ଥରେ ପାଣି ଦେଉଛନ୍ତି ।୫୮
କେତେଦିନ ପରେ ପୁଣି ଏବେ ଶୁଣାଗଲା
ଉତ୍ତର ପଶ୍ଚିମ ପ୍ରଦେଶରେ ଯା ଘଟିଲା । ୫୯
କଂଗ୍ରେସ ଦଳ ସେଠାରେ ପୁଣି ମନ୍ତ୍ରୀହେଲେ
ଆସାମେ ମିଳିତ ମନ୍ତ୍ରୀଦଳ ଗଢ଼ାଗଲେ । ୬୦

ଏ ବିଷୟେ ଗାନ୍ଧିଜୀଙ୍କ ମତ ଲୋଡ଼ା ଗଲା
ଆସ୍ତି ନାସ୍ତି ବାଣୀ ବୁଢ଼ା କିଛି ନ କହିଲା ।୬୧
ବୋଇଲେ ଯାହାକୁ ଯାହା ସୁବିଧା ଦିଶୁଛି
ସେପରି ରାସ୍ତାରେ ଯାଅ ମନା ନାହିଁ କିଛି । ୬୨
ଦେଶରେ ଲାଗିଛି ଯେଉଁ ଲାଞ୍ଚ ମିଛ ଲୀଳା
ସମୂଳେ ବିନାଶ କରି ପାରିଲେ ତ ହେଲା ।୬୩
ମଜନେ ସମ୍ମତି ଅଛି ବୋଲି ଲୋକେ ବୁଝି
ମିଳିତ ମନ୍ତ୍ରୀମଣ୍ଡଳ କଲେ ଖଞ୍ଜା ଖଞ୍ଜି । ୬୪
ଆନ ଆନ ପ୍ରଦେଶରେ ପଡ଼ିଛି ଚାଲେଣି
ପଡ଼ଶା ଘରେ ଏପରି ବ୍ୟବସ୍ଥା ହେଲାଣି । ୬୫
ଆମେ କାହିଁପାଇଁ ସେହି ପଥରେ ନ ଯିବା
ଅକର୍ମା ହୋଇ କମାଇ ବସି ରହିଥିବା । ୬୬
ମିଳିତ ମନ୍ତ୍ରୀମଣ୍ଡଳ କାହାକୁ କହିବ
ସବୁଦଳ ମିଳିମିଶି ଯେବେ ମନ୍ତ୍ରୀ ହେବ । ୬୭
ବିଧି ଅଛି ଯେଉଁ ଦଳ ସଂଖ୍ୟାରେ ଅଧିକ
ସେହି ଦଳ ମନ୍ତ୍ରୀ ବାଛି ହୋଇବେ ଶାସକ ।୬୮
ମିଳିତ ମନ୍ତ୍ରୀମଣ୍ଡଳେ ସେ କଥା ନ ହେବ
ଊଣା ଅଧିକ ଦଳରୁ ମନ୍ତ୍ରୀ ବସିହେବ । ୬୯
ବଡ଼ଲାଟ ଓ୍ୱାଭେଲ ବିଲାତ ଯାଇଛନ୍ତି
ଭାରତ କଥା ସେଠାରେ ପକାଇ ପାରନ୍ତି ।୭୦
ଲେଉଟିଲେ ଜଣାଯିବ କି ହେଲା ବିଚାର
ଚାହିଁଛି ଭାରତବାସୀ ହୋଇଣ କାତର । ୭୧
ତେଣେ ଦେଖ ରଣକ୍ଷେତ୍ରେ ପଡ଼ିଛି ଚହଳ
ମାରମାର ଧରଧର ଶୁଭେ ରଣଗୋଳ । ୭୨
ଇଂରେଜ ସରକାରର ହେଉଅଛି ଜୟ
ବିଜୟ ସମ୍ବାଦ ଶୁଣାଯାଏ ଅହରହ । ୭୩
ବର୍ମାଦେଶ ଜାପାନ ଜୟ କରିଥିଲା
ସେଠାରେ ଇଂରେଜ ବୀର ଧସାଇ ପଶିଲା ।୭୪

କେତେକ ଅଞ୍ଚଳ ପୁଣି କଲେ ଅଧିକାର
ଜାପାନ ପଛକୁ ହଟି ଯାଉଛନ୍ତି ନିକର । ୭୫
ତେଣେ ଜର୍ମାନୀ ଯେତେକ ରାଜ୍ୟ ନେଇଥିଲା
ରୁଷିଆ ତା ରାଜ୍ୟମାନ ପୁଣି ଜିଣିନେଲା । ୭୬
ଆମ ସରକାର ସବୁଠାରେ ଜଣାପଟ
ବଇରୀ ଏ କଥା ଦେଖି ହୁଏ ଛଟପଟ । ୭୭
ପବନ ପଥରେ ବ୍ୟୋମଯାନ ଆକ୍ରମଣ
ବଇରୀ କରିବ ଯେବେ ହୋଇବ ବିଷମ । ୭୮
କି ଉପାୟ କଲେ ସେହି ବାଧା ନ ଲାଗିବ
ସେ ଉପାୟମାନ ଖଞ୍ଜା ଥିଲା ଠାବଠାବ ।୭୯
ସେ ଆକ୍ରମଣର ଭୟ ଯହୁଁ ଊଣାହେଲା
ସେ ସବୁ ଉପକରଣ ଏବେ ଉଠିଗଲା । ୮୦
ଆଉ ଶତ୍ରୁ ଭୟ ବେଶି ନାହିଁ ବୋଲି ଜାଣ
ସ୍ଥାନେ ସ୍ଥାନେ ଦେଖାଦେଲା ଏଥିର ଲକ୍ଷଣ ।୮୧
ତଥାଚ ଯୁଦ୍ଧର ଭିଳେ ନାହିଁ କ ବିରାମ
କେତେକାଳ ଲୋକେ ଆଉ ଭୋଗିବେ କଷଣ ।
ଆହେ ଦୟାମୟ ହରି ଦୟାକର ବାରେ
ଶେଷକର ପ୍ରଳୟ ସମର ଧାଡିକାରେ । ୮୩
ଦେଖି ଏ ଯୁଦ୍ଧର ରୀତି ମାଡୁଅଛି ଡର
ଧନ୍ୟ ଏ ରଚନା ପ୍ରଭୁ ମାୟାର ସଂସାର ।୮୪
ଏ ବିଚିତ୍ର କାରବାର ହସ କାନ୍ଦ ଲୀଳା
ଅହରହ ଲାଗିଅଛି ଏ ବିଚିତ୍ର ଖେଳା । ୮୫
ଲୁହାଠାରୁ ଟାଣ ପାଣି ଫୋଟକାରୁ ହୀନ
ଜନମ ଲଭିଲେ ନିଶ୍ଚେ ହୋଇବ ମରଣ ।୮୬
ନିତିପ୍ରତି କୋଟି କୋଟି ପ୍ରାଣୀ ଯାଏ ନାଶ
ନିତି କୋଟି କୋଟି ପୁଣି ହୁଅଇ ପ୍ରକାଶ ।୮୭
ଦମ୍ଭ ଦର୍ପ ଗର୍ବ ଅହଂକାର ବହି ମନେ
ଯାବତ ଚନ୍ଦ୍ରାର୍କେ ଥିବାପରି ସଦା ଜାଣେ ।୮୮

ପୃଥିବୀ ଜୟ କରିବା ଇଚ୍ଛା ସଦା ତାର
ପଲକ ମୁଦିଲେ ସବୁ ହୁଅଇ ଅନ୍ଧାର । ୮୯
ମୋର ମୋର କହି ସଦା କରୁଅଛୁ ନାଟ
ଅହରହ ଲାଗିଅଛୁ ଏ ମମତା ହାଟ । ୯୦
ମୁଁ ମୋହର ପ୍ରେମେ ଜାଣି ଦିନ ଅଛୁ ମଜ
କ ସାର ଅଛୁ ଏଥିରେ ପାରୁନାହିଁ ହେଜ ।୯୧
ନାନା ଶାସ୍ତ୍ର ପଢ଼ି ଶୁଣି ବୋଲାଏ ପଣ୍ଡିତ
କାର୍ଯ୍ୟକ୍ଷେତ୍ରେ ଆଚରଣ କରେ ବିପରୀତ ।୯୨
ମୂରୁଖପରି ସନ୍ତତ କରେ ଆଚରଣ
ପଶୁ ପକ୍ଷୀଠାରୁ ହୀନ ଗୀତ ମିତ ପୁଣ । ୯୩
ଏଡ଼େ ବଡ଼ ଚେତା ଘଟେ ହୁଏ ଅଚେତନ
ଶୁଣିଲେ ବିବେକ ବାଣୀ ନ କରେ ମନନ ।୯୪
ବିବେକ ସତର୍କ ଘଣ୍ଟି ଦିଏ ବେଳ ଉଣ୍ଡି
ଷଡ଼ ରିପୁମାନେ ବଳେ ନେଉଛନ୍ତି ଭଣ୍ଡି ।୯୫
କ୍ଷଣକୁ ନାହିଁ ଜୀବନ କେତେ ଆଶା ପୋଷେ,
ଲୋଭ ବୋଇତରେ ବସି ମୋହଜଳେ ଭାସେ ।
ବିଚିତ୍ର ରଙ୍ଗ ମଞ୍ଚରେ କରେ ଅଭିନୟ
କିଏ ନଚାଉଛି ତାକୁ ପାଏନାହିଁ ଥୟ । ୯୭
ନୃତ୍ୟ ଶେଷେ ପଡ଼ିଯାଏ ହୋଇ ହତଜ୍ଞାନ
କି ହେଲା କି ହେଲା ହୁରି ପଡ଼ଇ ତକ୍ଷଣ ।୯୮
କାହୁଁ ଆସିଥିଲା ପୁଣି କେଉଁଠାକୁ ଗଲା
କେଉଁ ବାଟେ ଗଲା କେହି ଦେଖି ନ ପାରିଲା ।
ମାୟା ସଉଦା ଯେତେକ ପଛେ ରହେ ପଡ଼ି
ଆଖି ମୁଦିଲେ ଯାବତ କଥା ଯାଏ ହୁଡ଼ି ।୧୦୦
ସ୍ତ୍ରୀ ପୁତ୍ର ପରିବାର କାନ୍ଦନ୍ତି ଦି'ଦିନ
ପୁଣି ସକଳ ପାଶୋରି ଲୁହାଠାରୁ ଟାଣ ।୧୦୧
ପୁଣି ହାଣ ମାର କାଟ କଳା ତକରାଳ
ମୋର ମୋର କୁହାଟିଣ କରିବ ସେ ଖେଳ ।

ଏ ବିଶ୍ୱବ୍ୟାପୀ ସମର କ୍ଷେତ୍ରକୁ ଚାହିଁଲେ
ଆଚମ୍ବିତ ହେବ ଲୋକ କଥାକୁ ଭାବିଲେ ।
ଧନ ଜନ କ୍ଷୟ ଯଜ୍ଞ କେ କରୁଛି ବସି
ଅଗ୍ନିକି ଦେଖି ପତଙ୍ଗ ହୁଏ ଯଥା ଖୁସି ।୧୦୪
କୋଟି କୋଟି ଧନ ଜନ ଦେଉଛି ଆହୁତି
ଅକାତରେ ଲୋକମାନେ ଡାଳି ଦେଉଛନ୍ତି ।
ଦେବ ଦରିଦ୍ର ବ୍ରାହ୍ମଣ ପାଇଁକି କଉଡ଼ିଏ
ନ ମିଳେ ଦେବାକୁ ଏଣେ କୋଟିଏ କୋଟିଏ ।
କେତେ କାଳର ସଞ୍ଚିତ ଧନ ଯାଏ ଚାଲି
ନଦୀସ୍ରୋତ ମୁଖେ ଯଥା ବୋହିଯାଏ ବାଲି ।
କେତେକାଳର ରକ୍ଷିତ ସୁରମ୍ୟ ଅଟ୍ଟାଳି
ଅଗ୍ନିଗୁଳା ଘାତେ ଉଡ଼ିଯାଏ ଯଥା ଧୂଳି ।୧୦୮
କେତେ ପରକାର ଘର କରଣା ଦରବ
ପୋଡ଼ି ଜଳି ଯାଉଅଛି ଖରବ ଖରବ । ୧୦୯
କେତେ କାଳର ମମତା ଡୋର ଛିଣ୍ଡିଯାଏ
ନିରୁପାୟ ହୋଇ ଲୋକ ଚାହିଁ ରହିଥାଏ ।୧୧୦
ଭସ୍ମ ପାଉଶ ହେଉଛି କେତେ ନରଗଣ୍ଡି
ନରମୁଣ୍ଡମାନେ କ୍ଷେତ୍ର ହୋଇଯାଏ ମଣ୍ଡି ।୧୧୧
ଅର୍ଥ ଅନର୍ଥର ମୂଳ କେତେକାଳ ବାଣୀ
ଅକ୍ଷରେ ଅକ୍ଷରେ ସତ୍ୟ ଭୋଗୁଛନ୍ତି ପ୍ରାଣୀ ।
ସକଳେ ମାତ୍ର ନିଯମ କରନ୍ତି ଟ୍ରଷ୍ଟର
କାର୍ଯ୍ୟବେଳେ ରହୁନାହିଁ କାହାର ବିଚାର ।
ମାର ଅବା ମର ମାତ୍ର ଖେଳୁଛି କେବଳ
ବଳ କଷାକଷି ପାଇଁ ହୋଇଛନ୍ତି ଠୁଳ । ୧୧୪
ଯେତେ ଯାର ବୁଦ୍ଧି ବଳ ସକଳ ଲଗାଇ
ଧନ ଜନ କ୍ଷୟକରି କରନ୍ତି ଲଢ଼ାଇ । ୧୧୫
ନାନାବିଧ ମାରଣ ଅସ୍ତ୍ର କରନ୍ତି ତିଆରି
କେ କେତେ ମାରିପାରିବ କରିଛନ୍ତି ପଣ ।୧୧୬

ଯେ ଯେତେ ମାରପାରିବ ତାର ହେବ ଜୟ
ଏଥିପାଇଁକି ମେଦିନୀ ହେଉଛି ଅଥୟ । ୧୧୭
କାଳକବଳରେ ପଡ଼ି ସର୍ବେ ହତଜ୍ଞାନ
କାହାରି ଅଛୁଉ ରହୁନାହିଁ ଚିତ୍ତେ ଧ୍ୟାନ ।
କାହାରି ମନରେ ଶାନ୍ତି ଲେଶମାତ୍ର ନାହିଁ
ବେଳେବେଳେ ଖରଶ୍ୱାସ ଦେଉଛି ପକାଇ ।
ଯେତେ ଯେତେ ବ୍ୟସ୍ତ ହେଉଅଛନ୍ତି ଆହବେ
ପ୍ରଜାକୁଳ ମୁଣ୍ଡେ ଘର ପଡ଼ିବଟି କେବେ ।୧୨୦
ଦୀନ ଜଗବନ୍ଧୁ ଭଣେ ଆହେ ଦୀନବନ୍ଧୁ
ଏ ସଂସାରେ ତୁମ୍ଭେ ଏକା ଦୀନଜନ ବନ୍ଧୁ ।୧୨୧

ଇତି ଶ୍ରୀ ଭାରତ-ଚନ୍ଦ୍ରାମୃତେ ଦେଶକାଳ ପାତ୍ର ବର୍ଣ୍ଣନେ ଏକଶତ ଚତୁର୍ଦ୍ଦଶ ଅଧ୍ୟାୟଃ ।



## ଏକଶତ ପଞ୍ଚଦଶ ଅଧ୍ୟାୟ

ଗଉର ଉବାଚ

ଜଗତନାଥ ବଲ୍ଲଭ ମଠ ପୁରୀ ଧାମେ
ବିରାଜୁଛି କେତେକାଳୁ କଏ ତାହା ଜାଣେ ।୧
ପ୍ରକାଣ୍ଡ ଉଦ୍ୟାନ ଅଛି ଏ ମଠ ଭିତରେ
ଜଗନ୍ନାଥଙ୍କର ପ୍ରିୟସ୍ଥାନ ଏ କ୍ଷେତ୍ରରେ । ୨
ମହାରମ୍ୟ ସ୍ଥାନ ଏ ଗୁପତ ବୃନ୍ଦାବନ
ପ୍ରଭୁଙ୍କର ହୁଏ ଏହି ଉଦ୍ୟାନେ ଶୟନ । ୩
ଆସନ ପୋଖରୀ ନାମେ ଅଛି ପୁଷ୍କରଣୀ
ଲୋକମୁଖୁଁ ଶୁଣାଯାଏ ଏସନ କାହାଣୀ । ୪
ବେଣ୍ଟ ପୁଷ୍କରଣୀ ନାମେ ଆନ ଏକ ଖ୍ୟାତ
ବେଣ୍ଟ କରିବାକୁ ପ୍ରଭୁ ଆସନ୍ତି ନିୟତ । ୫

ପ୍ରଭୁଙ୍କର ସବୁ ଯାହା ହୁଅଇ ଏଠାରେ
ନାନା ଦେବ ମୂର୍ତ୍ତିମାନ ଅଛି ଏ ମଠରେ । ୬
ଚତୁର୍ଭୁଜ ଗୋପାଳ, ଶ୍ରୀମତୀ ରାଧାରାଣୀ
ଜଗନ୍ନାଥ ବଳଭଦ୍ର ସହିତ ଭଉଣୀ । ୭
ମହାବୀର ହନୁମାନ ଅଞ୍ଜନା ସହିତ
ଗୁମ୍ଫା ମହାବୀର ନାମେ ଅଛନ୍ତି ନିଭୃତ । ୮
ଚୈତନ୍ୟ ରାମାନନ୍ଦ ଏଠାରେ ନ ଥିଲେ
ଏବେ କେତେଦିନ ହେଲା ମୂର୍ତ୍ତିବନ୍ତ ହେଲେ ।୯
ଏଥିରେ କି ଗୁଢ଼ ତତ୍ତ୍ୱ ଅଛି ନ ଜାଣଇ
ଅନୁଗ୍ରହ କରି ମୋତେ କହନ୍ତୁ ବୁଝାଇ । ୧୦

ଜଗା ଉବାଚ

ଆଚ୍ଛା କଥାଏ ପୁଚ୍ଛିଲ ଗଉର ଏଥର
ଯାହା ମୋତେ ଜଣାଅଛି କହିବି ନିକର ।୧୧
ପୁରୀଧାମ ମର୍ତ୍ତ୍ୟ ବଇକୁଣ୍ଠ ନାମେ ଖ୍ୟାତ
ଯାଇତ ରଖିଛି କେତେ କେତେ ପୁରା ତତ୍ତ୍ୱ ।୧୨
ଚୈତନ୍ୟ ରାମାନନ୍ଦ ତତ୍ତ୍ୱ ମନୋରମ
ଶୁଣିଲେ ଲୋକର ହେବ ମହାମହା ପୁଣ୍ୟ ।୧୩
ଓଡ଼ିଆ ଜାତିର ଏ ଦୁଇଟି ମଥାମଣି
ଏମାନଙ୍କ ଇତିହାସ ଅଛି କି ହେ ଶୁଣି । ୧୪
ଶ୍ରୀ ଚୈତନ୍ୟ ଯୁଗଅବତାର ନାମେ ଖ୍ୟାତ
ଜାତିରେ ବ୍ରାହ୍ମଣ ଜଗନ୍ନାଥ ମିଶ୍ର ସୁତ । ୧୫
ଯାଜପୁରେ ଘର ଥିଲା ବହୁ ପୁରାକାଳେ
ଓଡ଼ିଶା ରାଜକୋପରୁ ଓଡ଼ିଶା ଛାଡ଼ିଲେ । ୧୬
ତେଣୁ ଯାଇ ବଙ୍ଗଦେଶେ ପଳାଇ ପଶିଲେ
ନବଦ୍ୱୀପ ନଗରେ ଘର କରିଣ ରହିଲେ । ୧୭
ସେହିଠାରେ ଶ୍ରୀ ଚୈତନ୍ୟ ହୋଇଲେ ଜନମ
ଶଚୀ ମାତାଙ୍କ ଉଦର ଆଶ୍ରୟ କରିଣ । ୧୮

ବଙ୍ଗଦେଶେ ଶିକ୍ଷା ଦୀକ୍ଷା ସନ୍ନ୍ୟାସୀ ହୋଇଲେ
ନୀଳାଚଳେ ଆସି ସବୁ ଲୀଳା ଖେଳା କଲେ ।୧୯
କାଶୀ ମିଶ୍ର ଘରେ ରହି ଗମ୍ଭିରା ଭିତରେ
ଯେତେଯେତେ ଲୀଳା ଖେଳା ସବୁ ଭିଆଇଲେ ।
ଅଦ୍ୟାବଧି ରହିଅଛି ଗମ୍ଭିରା ସେଠାରେ
କନ୍ଥା କୌପୀନ କଠଉ ଅଛଇ ଵଧିରେ ।୨୧
ରାଧାକାନ୍ତ ମଠ ନାମେ ସେହି ଧାମ ଖ୍ୟାତ
ରାଧାକାନ୍ତ ଠାକୁର ଯେ ଅଛନ୍ତି ନିଯୁକ୍ତ । ୨୨
ରାୟ ରାମାନନ୍ଦ ଘର ଏ ପୁରୀ ଜିଲ୍ଲାରେ
ବ୍ରହ୍ମଗିରି ଥାନା ଗ୍ରାମ ବେଣ୍ଟପୁରଠାରେ ! ୨୩
ଭବାନନ୍ଦ ରାୟଙ୍କର ଥିଲେ ସେ ସନ୍ତାନ
ପଟ୍ଟନାୟକ ଉପାଧି ଜାତିରେ କରଣ । ୨୪
ମହା ପ୍ରତାପୀ ପ୍ରତାପରୁଦ୍ର ଦେବ ନୃପ
ଓଡ଼ିଶା ସୀମା ବଢ଼ାଇଥିଲେ ସେ ଅମାପ ।୨୫
କୃଷ୍ଣାନଦୀ ଉତ୍ତର ପର୍ଯ୍ୟନ୍ତ ବୃଦ୍ଧି କଲେ
ଓଡ଼ିଶାର କଳେବର ବଢ଼ିଲା ସେ କାଳେ ।୨୬
ଗୋଦାବରୀର ପଶ୍ଚିମ ପୂର୍ବ ରାଜ୍ୟମାନ,
ରାୟ ରାମାନନ୍ଦ କଲେ ସେ ସବୁ ଶାସନ । ୨୭
ବିଜୟ ନଗରେ ଥିଲେ ଶାସନ କରନ୍ତା
ରାଜ ଅନୁକୂଳେ ହେଲେ ହରତା କରତା ।୨୮
ଚଇତନ୍ୟ ଯେତେବେଳେ ସେ ଅଞ୍ଚଳେ ଗଲେ
ଗୋଦାବରୀ ତୀରେ ରାମାନନ୍ଦଙ୍କୁ ଭେଟିଲେ ।୨୯
ଓଡ଼ିଶା ମହାରାଜାଙ୍କ ପ୍ରତିନିଧି ହେଲେ
ବହୁତ ଆଧିରେ ସେହୁ କାଳ କାଟୁଥିଲେ ।୩୦
ରାଜଦଣ୍ଡ ଶୋଭା ପାଉଥିଲା ଯାର ହସ୍ତେ
ଲୋକମାନେ ଦେଖି ତାଙ୍କୁ ନମସ୍ତେ ନମସ୍ତେ ।୩୧
ପାଲିଙ୍କି ଉପରେ ପାଟଛତା ଯାହାଙ୍କର
ହାଣ୍ଡି କଳସ ଢ଼ାଳଇ ଯାର ଶିରପର । ୩୨

ଏତେ ଭୋଗ ବିଳାସରେ ଯେହ୍ନ ଚଳୁଛନ୍ତି
ବାହ୍ୟ ଆଡ଼ମ୍ବର ବୋଲି ସକଳ ମଣନ୍ତି । ୩୩
ନିଷ୍ଠାପର ଭକତିରେ ହୃଦ ଜରଜର
କୃଷ୍ଣ ପ୍ରୀତି ସ୍ରୋତ ବହେ ଅନ୍ତର ବାହାର ।୩୪
ଶ୍ରୀ ଚୈତନ୍ୟ ରାମାନନ୍ଦଙ୍କର ଭକ୍ତି ଦେଖି
ମୁଗ୍‌ଧହୋଇ ମନେ ମନେ ହେଲେ ମହାସୁଖୀ ।
ସୁନା ଭଲ ମନ୍ଦ ସିନା ଚହ୍ନାଇ ବଣିଆ
ଗୁଣ ଭଲ ମନ୍ଦ ଚହ୍ନି ପାରଇ ଗୁଣିଆ । ୩୬
ପରସ୍ପର ଆଳାପ ମେଳାପ ହେଲା ଯହୁଁ
ରାମାନନ୍ଦଙ୍କୁ ଚହ୍ନିଲେ ଶ୍ରୀ ଚୈତନ୍ୟ ତହୁଁ ।
ରାମାନନ୍ଦ ମୁଖୁଁ କୃଷ୍ଣ ରସକଥା ଶୁଣି
ପରସ୍ପର ଭଲରୂପେ ହେଲେ ଚହ୍ନାଚହ୍ନି ।୩୮
ଏଥି ଉତ୍ତାରୁ ଚୈତନ୍ୟ ଦକ୍ଷିଣକୁ ଗଲେ
ପୁଣି ଫେରି ଆସି ରାମାନନ୍ଦଙ୍କୁ ଭେଟିଲେ ।୩୯
ବୋଇଲେ ଯାଉଛୁ ଶ୍ରୀକ୍ଷେତ୍ରରେ ମୁଁ ରହିବି
ଆଶାକରେ ସେହିଠାରେ ତୁମ୍ଭଙ୍କୁ ଭେଟିବି ।
ଏହାକହି ଶ୍ରୀ ଚୈତନ୍ୟ ପୁରୀ ଧାମେ ଗଲେ
କେତେଦିନ ପରେ ରାୟେ ତାହାଙ୍କୁ ଭେଟିଲେ ।
ଜଗନ୍ନାଥବଲ୍ଲଭରେ ରାୟେ ବାସ କଲେ
ରାଜ ଅନୁମତି ନେଇ ଚାକିରି ଛାଡ଼ିଲେ । ୪୨
ରତ୍ନମାଳ ମହାଦେବୀ ତାହାଙ୍କ ଘରଣୀ
କୃଷ୍ଣ ଭକ୍ତି ଧନେ ଦୁହେଁ ହେଲେ ମହାଧନୀ ।
କୃଷ୍ଣଭକ୍ତି ରସତତ୍ତ୍ୱ ଗୂଢ଼କଥା ମାନ
ରାମାନନ୍ଦଠାରୁ ସବୁ ଶୁଣିଲେ ଚୈତନ୍ୟ । ୪୪
ଶ୍ରୀଚୈତନ୍ୟ ଜଗନ୍ନାଥବଲ୍ଲଭ ଉଦ୍ୟାନେ
ଭ୍ରମଣ କଲେକ ଦିନେ ହରଷିତ ମନେ । ୪୫
ଅକସ୍ମାତେ କୃଷ୍ଣମୂର୍ତ୍ତି କଲେ ଦରଶନ
ଚାହୁଁ ଚାହୁଁ ସେ ମୂରତି ହେଲା ଅନ୍ତର୍ଦ୍ଧାନ ।

କାନ୍ଦିଗଲ କାନ୍ଦିଗଲ ଆହେ ପ୍ରାଣଧନ
ବିରହ ବ୍ୟାକୁଳେ ମୋହହେଲେ ଶ୍ରୀଚୈତନ୍ୟ
ସ୍ୱରୂପ ରାମାନନ୍ଦ ଆଦି ସର୍ବ ଭକ୍ତଗଣ
ଚତୁର୍ଦ୍ଦିଗେ ହରିନାମ କଲେକ କୀର୍ତ୍ତନ । ୪୮
ହରିନାମ କୋଳାହଳ ଶୁଭେ ଘନ ଘନ
ଚକିତ ହୋଇଲେ ଶୁଣି ପଶୁପକ୍ଷୀ ଗଣ । ୪୯
ହରିନାମ ସ୍ରୋତ ତରଙ୍ଗରେ ଭାସିଯାଏ
ବୃକ୍ଷଲତା ପଶୁପକ୍ଷୀ ହରିନାମ ଗାଏ । ୫୦
କେତେକ ସମୟୁପରେ ଭାବାବେଶ ଗଲା
ଭାବାନ୍ତରେ ଶ୍ରୀଚୈତନ୍ୟ ନୟନ ଫେଡ଼ିଲା ।୫୧
ଜଗନ୍ନାଥବଲ୍ଲଭର ମାହାତ୍ମ୍ୟ ଏମନ୍ତ
ଲୀଳା ଖେଳା କଲେ ଏଥି କେତେ ପୁଣ୍ୟବନ୍ତ ।
ଶ୍ରୀଚୈତନ୍ୟ ରାମାନନ୍ଦ ଅଭିନ୍ନ ପରାଣ
ମହାପ୍ରେମେ ଦୁଇ ଜଣ କାଟୁଥିଲେ ଦିନ । ୫୩
ଦୁଇ ଜଣ ଭବଧାମ ଛାଡ଼ି ଯାଇଛନ୍ତି
ଯୁଗେ ଯୁଗେ ବିରାଜନ୍ତି ସେ ପ୍ରାଚୀନ ସ୍ମୃତି ।
ସେ ସ୍ମୃତି ଉଦ୍ଧାର ପାଇଁ ଏବେ ଦି'ମୂରତି
ଜଗନ୍ନାଥବଲ୍ଲଭରେ ବିରାଜି ଅଛନ୍ତି । ୫୫
ଅଛଇ ବକୁଳ ବୃକ୍ଷ ସେହି ଉଦ୍ୟାନରେ
ପଡ଼ିଥିଲା ଦୁଇ ଖଣ୍ଡ ପ୍ରସ୍ତର ସେଠାରେ । ୫୬
ଲଗାଲଗି ହୋଇ ଦୁଇଖଣ୍ଡ ପଡ଼ିଥିଲା
ସେ ଦୁଇ ଖଣ୍ଡରେ ଦୁଇ ମୂରତି ହୋଇଲା ।୫୭
କେତେ କାହିଁ ଖୋଜାଗଲା ଦି'ଖଣ୍ଡ ପ୍ରସ୍ତର
କାହିଁ ନ ମିଳିଲା ପରିଶ୍ରମ ହେଲା ସାର । ୫୮
ଅକସ୍ମାତ ସେ ଦି'ଖଣ୍ଡ ପ୍ରସ୍ତର ମିଳିଲା
ଦୁହେଁ କି ଶିଳା ହୋଇଣ ତହିଁ ରହିଥିଲା ।୫୯
ବିଶ୍ୱକର୍ମା ଆରତକୃଷ୍ଣର ହାତ ଧନ୍ୟ
ସାକ୍ଷାତ ଜୀବନ୍ତ ରୂପ ଗଢିଲେକ ଜାଣ । ୬୦

ପଥୁରିଆ ସାହିରେ ଏ ଦୁହିଁଙ୍କ ବସନ୍ତି
ଶଙ୍ଖ କ୍ଷେତ୍ର ମଧ୍ୟରେ ଏମାନେ ରହିଛନ୍ତି । ୬୧
ହାତି ମହାରଣା ଶିବକାର ତୁମ୍ଭେ ଧନ୍ୟ
ବନକ ଲଗାଇ କରି ଦେଲେ ଜୀବ ଦାନ । ୬୨
ଏ ଦୁଇ ମୂରତି ଯେହୁ ଦେଖିବ ନେତ୍ରରେ
ସାକ୍ଷାତ ଜୀବନ୍ତ ବୋଲି ଭାବିବ ମନରେ । ୬୩
ମୂକ ସାକ୍ଷୀରୂପେ ଦୁହେଁ ବସିଛନ୍ତି ସିନା
ଉଡ଼ାଉ ଅଛନ୍ତି ଚଇତନ୍ୟ ଧର୍ମବାନା । ୬୪
ଭକ୍ତ ଦର୍ଶକ ସକଳେ ଦେଖି ମୁଗ୍ଧ ହୋନ୍ତି
ଉତ୍କଳର ଦୁଇ ମହା ପ୍ରାଚୀନ କୀରତି । ୬୫
ବୁଝୁଁ ବୁଝୁଁ ସେକାଳର ପୂର୍ବ ଇତିହାସ
ମୂକ ସାକ୍ଷୀରୂପେ ଗାଉଛନ୍ତି ଅହର୍ନିଶ । ୬୬
କଳିଯୁଗେ ଚଇତନ୍ୟ ଅବତାର ହେଲେ
ହରେକୃଷ୍ଣ ମହାମନ୍ତ୍ର ଭବେ ପ୍ରଚାରିଲେ । ୬୭
ହରିନାମ କଳିଯୁଗେ ଏକମାତ୍ର ଗତି
ନାହିଁ ଆନଗତି ବୋଲି ପ୍ରଚାର କରନ୍ତି । ୬୮
କୃଷ୍ଣ ପ୍ରେମେ ମତୁଆଳ ହେଲେ ଶ୍ରୀଚୈତନ୍ୟ
ମହାଭାବାବେଶେ ସଦା ମନ ନିମଗନ । ୬୯
ହରିନାମେ ଅଧିକାର ସକଳ ଜନର
ନାହିଁ ଏଥି ଜାତିଭେଦ ବ୍ରାହ୍ମଣ ଚଣ୍ଡାଳ । ୭୦
ହରିନାମ ଯେହୁ ଜନ ମୁଖେ ନ ଧରଇ
ଅସ୍ପୃଶ୍ୟ ଚଣ୍ଡାଳ ହୀନ ଜନ ସେ ଅଟଇ । ୭୧
ଯେ ଯେଉଁ କରମ କରି ମୁଖେ ହରିନାମ
ଗାଉଥିଲେ ସବୁ ପାପ ହେବ ବିନାଶନ । ୭୨
ପ୍ରାଣ ଭରି ତନମନେ ଥରେ ହରିନାମ୍
ଗାଇଲେ ଅସଂଖ୍ୟ ପାପ ହୁଅଇ ନାଶନ । ୭୩
ଥରେ ହରିନାମ ନେଲେ ଯେତେ ପାପ ନାଶ
ତେତେ ପାପ କରିବାକୁ କାହିଁ ବା ଆୟୁଷ ।

ହିନ୍ଦୁ ମୁସଲମାନ ଅବା ଚଣ୍ଡାଳ ବ୍ରାହ୍ମଣ
ହରିନାମେ ଭେଦାଭେଦ ନାହିଁ ଜାତି ବର୍ଣ୍ଣ ।
କଳିଯୁଗେ ସାରଧର୍ମ ଅଟେ ହରିନାମ
ହରିନାମ କରିବାକୁ ଶିକ୍ଷା ଦେଲେ ପୁଣ । ୭୭
ହରିନାମେ ଭୋଳ ହୋଇ ତେଜି ଘର ଦ୍ୱାର
ପତ୍ନୀ ପୁତ୍ର ମାତା ମାୟା ତେଜିଲେ ନକର ।
ଗୃହ ତେଜି ନୀଳାଚଳେ କଲେ ଲୀଳାଖେଳା
ହରିନାମ କଲେ ସାର ଭବାର୍ଣ୍ଣବ ଭେଳା ।୭୮
କି ସ୍ୱାଦୁ ଅଛି ସେ ହରିନାମ କରିବାନେ
ଅନୁଭବ ବିନୁ କିଏ କହିବ ବଚନେ । ୭୯
ହରିନାମ ବୁଟି ଖାଇ ଯେ ହୁଅଇ ଭୋଳ
ନ ବାଧେ ତାହାକୁ ଲେଶେ ସଂସାର ଜଞ୍ଜାଳ ।
ହରି ବିନୁ ଆନ ଯେହୁ କାହାକୁ ନ ଗଣେ
ତାହାର ଅଭାବ କିଛି ନାହିଁ ତ୍ରିଭୁବନେ । ୮୧
ଆନ ସବୁ ଚିନ୍ତାଗ୍ରାଣ୍ଡ ହରିଙ୍କି ଭଜିଲେ
ଯୋଗକ୍ଷେମ ହୋଇ ହରିଥାନ୍ତି ତା ପଛରେ ।
ଭକତ ଦେଖିପାରଇ ସବୁଠାରେ ହରି
ସକଳ ଘଟରେ ହରି ରହିଛନ୍ତି ପୂରି । ୮୩
ନାମ ଶୁଣୁଶୁଣୁ ଭକ୍ତ ହୃଦ ତରଳଇ
ସ୍ୱେଦ ପୁଲକାଶ୍ରୁ କମ୍ପଦେହେ ଜନମଇ । ୮୪
ହରିନାମେ ତନମୟ ହୋଇଯାଏ ମନ
ଲୋପ ହୁଏ ତତକ୍ଷଣ ଦେହ ଭେଦ ଜ୍ଞାନ ।
ସମ୍ପଦେ ବିପଦେ ଯେହୁ ହରି ଆଶ୍ରେ କରେ
କି ଅଭାବ ଅଛି ତାର ଏଭବ ସଂସାରେ । ୮୬
କର ସକଳ କରମ ହରିଙ୍କର ପାଇଁ
ବିଶ୍ୱ ବ୍ରହ୍ମାଣ୍ଡ କରତା ସେ ହରି ଅଟଇ । ୮୭
ନିମିତ୍ତ ମାତର ହୋଇ କର ସବୁକାମ
ହରି କେବେହେଁ ତାହାକୁ ନ ହୋଇବ ବାମ ।

ମୁଁ ମୋହର ବୋଲି ଯାର ଦମ୍ଭ ଅହଂକାର
ହରିପାଦପଦ୍ମେ ଭକ୍ତି ନ ହୁଏ ତାହାର । ୮୯
ମୁଁ ସବୁ କରୁଛି ବୋଲି ବିଶ୍ୱାସ ଯାହାର
ନ ମାନଇ ଜଣେ କିଏ ଅଛଇ ଈଶ୍ୱର । ୯୦
ମାନୁ ବା ନ ମାନୁ କେହି ଅଛନ୍ତି ଈଶ୍ୱର
ତାହାଙ୍କ ନିୟମ ଅଟେ ସବୁଠୁ ପ୍ରବଳ । ୯୧
ଈଶ୍ୱର ଇଚ୍ଛାକୁ ବଳି ଆନ କିଛି ନାହିଁ
ନିରଙ୍କୁଶ ଭାବେ ତାହା କାର୍ଯ୍ୟ କରୁଥାଇ ।୯୨
ମାନବ ମନରେ ନାନା ପାଞ୍ଚ କରୁଥାଇ
ଈଶ୍ୱରେଚ୍ଛା ଅନୁସାରେ ସକଳ ହୁଅଇ । ୯୩
ଆପଣାର ବୁଦ୍ଧି ବଳ ଯହିଁ ପରାହତ
ଈଶ୍ୱରେଚ୍ଛା ବୋଲି ତେବେ ମାନଇ ନିୟତ ।
କେତେ କେତେ ନାସ୍ତିକ ଏ ପୃଥିବୀରେ ଥିଲେ
ଆଖର ବେଳକୁ ସେହୁ ଆସ୍ତିକ ହୋଇଲେ ।
ଅଜ୍ଞାନେ ସିନା ମାନବ କରେ ଅହଂକାର
କେତେ ବା ଶକତି ତାର ନ କରେ ବିଚାର ।
ସମଗ୍ର ଜଗତ ପ୍ରତି ଯେବେ ଦୃଷ୍ଟି ଦେବ
ଦମ୍ଭ ଗର୍ବ ଅହଙ୍କାର ସବୁ ଚୂର୍ଣ୍ଣ ହେବ । ୯୭
ଜ୍ଞାନ ବିଜ୍ଞାନେ ପଣ୍ଡିତ ବୋଲି ଗର୍ବ କରେ
ମହୁମାଛିର ଶକତି ଅଛି କି ତାଠାରେ । ୯୮
ମହୁଫେଣା କରି ମଧୁ ସଞ୍ଚି ନ ପାରଇ
ଗରବ ଗିରି ଚୂଳରେ ସଦା ବସିଥାଇ । ୯୯
ଉଇ ହୁଙ୍କାଟିଏ ସେହୁ ଗଢ଼ି କି ପାରଇ
ମୁଁ ଜ୍ଞାନୀ ପଣ୍ଡିତ ବୋଲି ଗର୍ବ କରୁଥାଇ ।୧୦୦
ପାଠ ପିଢ଼ି ନାଟକରେ ମନେ ଅହଙ୍କାର
ଘାଟପୋକର ଶକତି ଅଛି କି ତାହାର ।୧୦୧
ଘାସ ଗଛଟିଏ ଯେହୁ ସରଜି ନ ପାରେ
ମୁଁ ବଡ଼ ବୋଲିଣ ଦମ୍ଭ କେତେ ପରକାରେ ।

ଚଉଦିଗ ତଳ ଉପରକୁ ଗୃହିଁ ଦେଲେ
ତାକୁ ବଳ ତାକୁ ବଳ ଦେଖିପାର ଭଲେ ।
ଆପଣାକୁ ପରୀକ୍ଷା ନକରି ମୂର୍ଖ ଲୋକ
ମନେ ଗର୍ବ ବହି ମଣେ ସବୁଠୁ ଅଧିକ । ୧୦୪
ତୃଣଠାରୁ ଆପଣାକୁ ମଣୁଥିବ ସାନ
ତରୁପରି ସହୁଥିବ ସବୁକଥାମାନ । ୧୦୫
ଅମାନ୍ୟ ଲୋକକୁ ଯେହୁ କରେ ମାନଦାନ
ହରି କୀର୍ତ୍ତନକୁ ଯୋଗ୍ୟ ବୋଲି ତାକୁ ଜାଣ ।
ଶ୍ରୀଚୈତନ୍ୟ ଏହି ମହା ମନ୍ତ୍ରଶିକ୍ଷା ଦେଲେ
ଘରେ ଘରେ ହରିନାମ ଯାଚ ବିଚରିଲେ ।
ବହୁତ ଶିଷ୍ୟ ପ୍ରଶିଷ୍ୟ ଦୀକ୍ଷିତ ହୋଇଲେ
ଗଉଡ଼ୀୟ ସମ୍ପ୍ରଦାୟ ନାମେ ଖ୍ୟାତ ହେଲେ ।
ବଙ୍ଗଳା ଓଡ଼ିଶା ପ୍ରଦେଶରେ ବହୁଲୋକ
ଦୀକ୍ଷିତ ହୋଇ ଏ ଧର୍ମେ ନେଲେ କଣ୍ଠିଭେକ ।
ଶ୍ରୀ ଚୈତନ୍ୟ ଧର୍ମନିଷ୍ଠା ଗଲାଣି ଭୁଷୁଡ଼ି
ହରିନାମ ବିକ ଏବେ ଭୁଞ୍ଜନ୍ତ ଖେଚଡ଼ି । ୧୧୦
ହରିଦାସ ନାମେ ଜଣେ ବଡ଼ ଭକ୍ତ ଥିଲେ
ଭିକ୍ଷା କରିବାକୁ ଦିନେ ବୁଲି ଯାଇଥିଲେ ।୧୧୧
ଶିଖି ମହାନ୍ତି ଗୃହରେ ହୋଇଲେ ପ୍ରବେଶ
ଶିଖି ମହାନ୍ତି ଭଗିନୀ ଖ୍ୟାତ ଯାର ଯଶ । ୧୧୨
ଦିବ୍ୟ ଶାଳି ତଣ୍ଡୁଳ ସେ ଭିକ୍ଷା ଆଣି ଦେଲେ
ହରିଦାସ ଦେଖି ପ୍ରେମେ ଗଦଗଦ ହେଲେ ।
ଆଜି ପ୍ରଭୁଙ୍କର ଭୋଗେ ଲଗିବ ଏ ଅନ୍ନ
ଅତି ଆନନ୍ଦରେ ପ୍ରଭୁ କରିବେ ଭୋଜନ । ୧୧୪
ଅତି ଯତନରେ ଅନ୍ନ ରନ୍ଧାବଢ଼ା କଲେ
ମହାପ୍ରେମେ ଚୈତନ୍ୟ ପ୍ରଭୁଙ୍କୁ ସମର୍ପିଲେ ।୧୧୫
ଦିବ୍ୟଶାଳି ଅନ୍ନ ଦେଖି ପ୍ରଭୁ ପୁଚ୍ଛା କଲେ
ଏପରି ତଣ୍ଡୁଳ କାହୁଁ ଆଣିଲ ବୋଇଲେ ।

ହରିଦାସ ଉତ୍ତରିଲେ ପ୍ରକୃତ ବିଷୟ
ଶୁଣି ପ୍ରଭୁ ମନେ ମନେ ହୋଇଲେ ବିସ୍ମୟ ।
ପ୍ରକାଶ କରି କହିଲେ ଆନନ୍ଦେ ହରିଦାସ
ମନୁ ଛାଡ଼ ପାରନାହିଁ ଜିହ୍ୱାର ଲାଳସ । ୧୧୮
ରମଣୀ ମୁଖ ଦର୍ଶନ ନୁହଇ ଧରମ
ସନ୍ନ୍ୟାସୀ ପକ୍ଷରେ ଏହା ଅତୀବ ଅଧମ । ୧୧୯
ରମଣୀ କି ଭିକ୍ଷା ମାଗି ଆଣିଲ ତଣ୍ଡୁଳ
ହରାଇ ବସିଲ ତହୁଁ ଏବେ ନିଜକୁଳ । ୧୨୦
ତୁମ୍ଭ ମୁଖ ଚାହିଁବାର ନୁହଁଇ ଉଚିତ
ଯାଅ ଦୂର ହୋଇଯାଅ କହୁଛନ୍ତି ତୁରନ୍ତ । ୧୨୧
ଏଡ଼କ କଠୋର ନୀତି ସେହୁ ପାଳିଥିଲେ
ଏବେ ତାଙ୍କ ଶିଷ୍ୟମାନେ ନଷ୍ଟ ଭ୍ରଷ୍ଟ ହେଲେ ।
ମୃଣ ପଣ ଶିକ୍ଷା ଏବେ ତାଙ୍କ ବାନାଧରି
ମାତାବେଶେ ବୁଲୁଛନ୍ତି ଭିକ୍ଷାପାତ୍ର ଧରି ।୧୨୩
ରାଧେ ଗୋବିନ୍ଦ ବୋଲଣି ଉଚ୍ଚର ତୁଣ୍ଡରେ
ଗିନି କରତାଳ ଧରି ବୁଲନ୍ତି ଦାଣ୍ଡରେ । ୧୨୪
ଭିକ୍ଷା ଚାଉଳ ଉପରେ ଥାଏ ମନମୂନ
ଆସିଲା କି ନାହିଁ ତୁଣ୍ଡେ ହରିହରି ନାମ । ୧୨୫
ମହାଘୋର ଧର୍ମଗ୍ଳାନି ହୋଇଛି ଭାରତେ
ଧର୍ମପଥ ଛାଡ଼ି ଏବେ ବୁଲନ୍ତି ସମସ୍ତେ । ୧୨୬
ଘରେ ଘରେ ଅଧରମ ପତାକା ଉଡ଼ୁଛି
ସାନ ବଡ଼ ମାନନା ତିଳେହେଁ ନାହିଁ କରୁଛି ।୧୨୭
ଭାଇ ଭାଇରେ କଳହ ଈର୍ଷା ଦ୍ୱେଷ ଖେଳ
ଅହରହ ଲାଗିଅଛି କଳହ କନ୍ଦଳ । ୧୨୮
ବିଷୟ ବିଷରେ ସବେ ହୋଇ ଜର୍ଜରିତ
ଭାଇକି ଭାଇ ସ୍ୱହସ୍ତେ କରୁଛି ନିହତ । ୧୨୯
ଲକ୍ଷ୍ମଣ ଭରତ ପରି ଭାଇ ଯେଉଁ ଦେଶେ
ସେ ଦେଶେ ଏ ଅଭିନୟ ହେଲା ଅବଶେଷେ ।

ପିତା ପୁତ୍ର ଶାଶୁ ବୋହୂ ଭକ୍ତିଭାବ ନାହିଁ
ଶ୍ରୀରାମ ଜାନକୀ କଉଶଲ୍ୟା ଗଲେ କାହିଁ । ୧୩୧
ବିଷକୁମ୍ଭପୟଃମୁଖ କପଟ ବେଶରେ
ସକଳେ ଚଳନ୍ତି ଏହି ଭାରତ ଦେଶରେ ।୧୩୨
କପଟ ବୈରାଗୀବୃନ୍ଦ ହେଲେ ପଣ ପଣ
କାହିଁ ଲୁଚିଗଲେ ଆର୍ଯ୍ୟଋଷି ମୁନିଗଣ । ୧୩୩
ବେଦ ମୁଖରିତ ଦେଶ ଈର୍ଷା ଦ୍ୱେଷ ପୂର୍ଣ୍ଣ
ମିଥ୍ୟା ପ୍ରବଞ୍ଚନା ହେଲା ଏ ଦେଶ ପୂରଣ ।୧୩୪
ଭାଇ ଭାଇଠାରୁ ଲାଞ୍ଚଖାଏ ମିଥ୍ୟା କହି
ଟିକେହେଁ ସଙ୍କୋଚ କେଭେ ମନେ ନ ଗଣଇ ।
ନମ୍ର ସରଳ ସ୍ୱଭାବ ଲୁଚିଗଲା କାହିଁ
କୃଟ କପଟ ବେଭାର ସ୍ରୋତ ଯାଏ ବହି । ୧୩୬
ଜଗାଇ ମାଧୋଇ ଚୈତନ୍ୟଙ୍କୁ ମାଡଦେଲେ
ଚୈତନ୍ୟ ତାହାଙ୍କୁ ମହା ପ୍ରେମେ କୋଳକଲେ ।
ବୋଇଲେ ମାର ପଛକେ ତୁଣ୍ଡେ ବୋଲ ହରି
ହରିହରି ଗାଇଲେ ଏ ଭବୁ ହେବ ପାରି । ୧୩୮
ଏତେ ସାଧୁ ଉପଦେଶ ଆଉ କିଏ ଦେବ
କାହିଁ ଗଲା ଭାରତୁଁ ଏସବୁ ମହାଭାବ । ୧୩୯
ଅହିଂସା ସତ୍ୟ ପରମଧର୍ମ ଭାରତର
ହିଂସା ଅକୃତ ସେ ଦେଶେ କଲା ଅଧିକାର ।
ଏହି ମହାପାପମାନ ଗ୍ରାସିଲା ଭାରତ
ଅନ୍ନପୂର୍ଣ୍ଣା ଭାରତକୁ ନ ମିଳଇ ଭାତ । ୧୪୧
ପୁଣି ଭଗବାନଙ୍କର ହେଲା କରୁଣା
ଏସବୁ ଦୁଃଖ ଦାରିଦ୍ର୍ୟ ହେବନାହିଁ ଊଣା ।୧୪୨
ଧର୍ମବଳ ହାନି ହେତୁ ସବୁହୁଏ ହାନି
ଆଜି ସେ ମହାଦରିଦ୍ର ଥିଲା ଯେହୁ ଦାନୀ ।୧୪୩
ଅଛି ଆକାର ପ୍ରକାର ସାରନାହିଁ କିଛି
ପୂର୍ବ ଇତିହାସ ଖାଲି ସାକ୍ଷୀ ଦେଉଅଛି । ୧୪୪

ଅଛୁ କେବଳ ବଚନ ନ ଥାଇ ସାଧନ
ସାଧନା ପଥକୁ କେହି ନ ହୁଏ ଭାଜନ ।୧୪୫
ସାଧନା ବିହୁନେ ସିଦ୍ଧି ନୁହେଁ କଦାଚନ
ବଚନ ଗୃହସ୍ଥ ଶାସ୍ତ୍ରପଢ଼ା ଅକାରଣ । ୧୪୬
ନିଷ୍ଠାବାନ ହୋଇ ଯେବେ ହୋଇବ ସାଧକ
କର୍ମଭୂମି ଜଗତରେ ରଖିପାର ଟେକ । ୧୪୭
କର୍ମବଳ ଧର୍ମବଳ ହୋଇବାରୁ ଊଣା
ଭାରତ ହେଉଛି ଘରଆଣ୍ଡେ ପଥବଣା । ୧୪୮
ଯେତେବେଳେ ଏ ଭାରତ ଥିଲା ସାଧକ
ଜ୍ଞାନଗୁରୁ ବୋଲି ଥିଲା ଜଗତରେ ଟେକ ।୧୪୯
ସାଧନା ଛାଡ଼ି ଯେ ଦିନୁ ହେଲା ବାକ୍ୟସାର
ସେଦିନୁ କ୍ରମେ ପତନ ହୋଇଲା ତାହାର ।୧୫୦
ମାଳାଚଳ ଛାଇତଳେ ଅଛନ୍ତି ଯେ ଜନ
ଦୀପତଳ ଅନ୍ଧାର ପରାଏ ଦଶା ଘେନ । ୧୫୧
ହେ ଭାରତବାସୀ ଚକ୍ଷୁଫେଡ଼ି ଚାହଁ ବାରେ
ଦେଖ କି ଲୀଳା ଲାଗିଛି ବିଶ୍ୱ ଜଗତରେ ।୧୫୨
ବିଚିତ୍ର କର୍ମକ୍ଷେତ୍ରରେ ଲୀଳା ଖେଳା ଦେଖ
ଭୁଲିଯାଇଛ ଯେ ସବୁ ଏବେ ଦେଖି ଶିଖ । ୧୫୩
ଆସ ଆହେ ମହାପ୍ରଭୁ ଆଉ ଥରେ ଆସ
ଧର୍ମ କର୍ମ ଶିକ୍ଷାଦେଇ ରଖ ତବ ଯଶ । ୧୫୪
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
ଦୀନ ଜଗବନ୍ଧୁ ଭାଷେ ରଖ ଜଗନ୍ନାଥ । ୧୫୫

ଇତି ଶ୍ରୀ ଭାରତ-ଚରିତାମୃତେ ଚୈତନ୍ୟ ରାମାନନ୍ଦ ଚରିତ ବର୍ଣ୍ଣନେ ଏକଶତ
ପଞ୍ଚଦଶ ଅଧ୍ୟାୟଃ ।



# ଏକଶତ ଷୋଡ଼ଶ ଅଧ୍ୟାୟ

ଗଉର ଉବାଚ

ଘୁଞ୍ଚି ଘୁଞ୍ଚି ବିତିଗଲା ପଞ୍ଚମ ବରଷ
ଷଷ୍ଠ ବରଷ ଆସିଣ ହେଲା ପରବେଶ । ୧
ଷଷ୍ଠ ବରଷରୁ କେତେକାଳ ବହିଗଲା
ୟୁରୁପ ମହାସମର କେଉଁଆଡ଼େ ଗଲା । ୨
ଜାପାନ ସମର ଦଶା କସ ହେଲା ପୁଣ
ଜଣା ତ ନ ଗଲା କିଛି ତାର ଶେଷବାର୍ତ୍ତା । ୩
କେତେକାଳେ ସରବ ଏ ପ୍ରଳୟ ସମର
କେତେକେତେ ରାଜ୍ୟ ହୋଇଲାଣି ଛାରଖାର ।୪
କିଛି ଜାଣିପାରୁନାହିଁ କି ହେଲା କି ହେବ
ଅସଲ ତଥ୍ୟ ଏଥିର କହି କି ପାରିବ । ୫

ଜଗା ଉବାଚ

ଅସଲ କଥାଏ ତୁମେ ପୁଚ୍ଛିଲ ଗଉର
ଶୁଣିଛ ମୂଳରୁ ତୁମ୍ଭେ ବହୁତ ଖବର । ୬
ମାନବର ଆଶା ସ୍ରୋତ ବଢ଼ଇ ପ୍ରଖର
କ୍ଷଣକ୍ଷଣକେ ଭେଦଇ ଯାଇ ଭିନପୁର । ୭
ଧାଁଇ କରୁଥାଇ ସଦା ଜିଣିବ ସଂସାର
ସକଳ ଜନେ ହୋଇବେ ତାର ପରିଷ୍କାର । ୮
ସକଳଙ୍କୁ ମାରିଧରି କରିବ ଶାସନ
ସବୁ ରାଜ୍ୟଯାକ ହେବ ତାହାର ଅଧୀନ । ୯
ବଳ ଯାହାର ମୂଳକ ହୋଇବ ତାହାର
ଦୁରୁବଳ ଲୋକର ନାହିଁକି ଅଧିକାର । ୧୦
ଧନଜନ ଗୋପ ଲକ୍ଷ୍ମୀ ଦୁନିଆରେ ଯେତେ
ଯାର ବଳ ଅଛି ସେହି ରଖିବ ଆୟତ୍ତେ । ୧୧
ସବୁ ସୁଖ ସ୍ୱଚ୍ଛନ୍ଦରେ କାଟିବ ସେ କାଳ
ତା ସୁଖ ଲାଗି ଆନର ପୁରୁ ପଛେ କାଳ ।୧୨

ଅହରହ ଏହି ଚିନ୍ତା ତାକୁ ଗ୍ରାସ କରେ
ମାତଇ ସତତ ଦମ୍ଭ ଗର୍ବ ଅହଙ୍କାରେ । ୧୩
ନ୍ୟାୟ ଅନ୍ୟାୟ କିଛିହିଁ ନ କରେ ବିଚାର
ନ ମାନେ କେହିବା ଜଣେ ଅଛନ୍ତି ଈଶ୍ୱର ।
ନିଜ ବାହୁବଳେ ନିଜେ ସବୁ କରିପାରେ
ଦୁର୍ବଳ ଲୋକ ବସଇ ଈଶ୍ୱର ନିର୍ଭରେ । ୧୫
ନିଜ ବୁଦ୍ଧି ବଳେ ନିଜେ ସକଳ କରିବ
ଈଶ୍ୱର ଈଶ୍ୱର କହି କି ଫଳ ମିଳିବ । ୧୬
ଏପରି ଦାମ୍ଭିକେ ଯେତେ ଅଛନ୍ତି ଜଗତେ
ପାଞ୍ଚନ୍ତି ସବୁରି ଚୁଟି ରଖିବେ ଆୟତ୍ତେ । ୧୭
ଦାମ୍ଭିକ ଚିତ୍ତେ କାହାକୁ ନ କରେ ଖାତିର
ବିଚାରେ ମୋ ଭୁଜବଳ ମୋହର ଈଶ୍ୱର ।
ପାଞ୍ଚେ ନିଜ ବୁଦ୍ଧି ବଳେ ଆକାଶ ପାତାଳେ
ବିଚରଣ କରୁଅଛୁ ଆମେ ଧରାତଳେ । ୧୯
ଅସ୍ତ୍ର ଶସ୍ତ୍ର ବଳେ ଜିଣି ପାରିବା ସଂସାର
ଜଳ ଆକାଶେ ବୁଲିଲେ ନାହିଁ କିଛି ଡର ।୨୦
ଯେ ଯେତେ ମାରଣ ଅସ୍ତ୍ର ସରଜି ପାରିବ
ସଭିଙ୍କି ମାରି ସଂସାର ସହଜେ ଜିଣିବ । ୨୧
ଏପରି ଦାମ୍ଭିକ ଯେତେ ଅଛନ୍ତି ଜଗତେ
ଅହରହ ପାଞ୍ଚ କରୁଛନ୍ତି କେତେ କେତେ ।୨୨
ନ ଗଣନ୍ତି ମନେ କେବେ ତାଙ୍କ ଭାଗ୍ୟଡୋରି
ଆଉ କାହା ହାତେ ଅଛି ଦେବ ସେ ଓଟାରି ।
ଅତର୍କେ ଝୁଣ୍ଟି ପଡ଼ି ଉଡ଼ି ଯିବ ପ୍ରାଣ
ସବୁ ଆଶା ସ୍ରୋତ ତାର ହୋଇବ ବିଲୀନ ।
ଏହି ନାଟ ଲାଗିଅଛି ସାରା ଜଗତରେ
କ୍ଷଣକେ ଚେତନା ଆଣେ କ୍ଷଣକେ ପାଶୋରେ ।
କେତେ ମାୟା ଜାଲ ମେଲାଇଲା ଦୁନିଆରେ
କମ୍ପାଇ ଦେଲା ମେଦିନୀ ପ୍ରଳୟ ହୁଙ୍କାରେ ।୨୬

କେତେ ନବ ନବ ଅସ୍ତ୍ର ଶସ୍ତ୍ର ଭିଆଇଲା
କୋଟି କୋଟି ଲୋକ ମାରି ଗଦା କରିଦେଲା ।
କେତେ କେତେ ରାଜ୍ୟ ଜିଣି କଲା ଅଧିକାର
ଗୃହଆଡ଼େ ଜୟ ଢ଼କ୍କା ବାଜିଲା ତାହାର ।୨୮
ରୁଷିଆ ସଙ୍ଗତେ ଭୟଙ୍କର ଯୁଦ୍ଧ କଲା
ବିଜୁଳି ବେଗରେ ସେ ରାଜ୍ୟକୁ ମାଡ଼ିଗଲା ।୨୯
କେତେ କେତେ ରାଜ୍ୟ ଜିଣି କଲା ଅଧିକାର
ମସକାଉ ରାଜଧାନୀ ଯାକେ କଲା ଯୁର । ୩୦
ଧାଡିକାରେ ଜିଣିନେଲା କେତେ କେତେ ଦେଶ
କେତେ ପୁର ଗ୍ରାମର କଲାକ ସର୍ବନାଶ । ୩୧
ସମର ଅନଳ ଜାଳି ଦେଲା ଜଗତରେ
ବିଜୟ ଦୁନ୍ଦୁଭି ବଜାଇଲା ଖରତରେ । ୩୨
ଦ୍ୱିପ୍ରହର ରବି ସମ ପରକାଶି ତେଜ
ଦେଖାଇଲା ନିଜର ପ୍ରଭୁତ୍ୱ ଓଜ ବୀର୍ଯ୍ୟ । ୩୩
ଇଂଲଣ୍ଡ ଦେଶକୁ ଦେଲା ବାର ବାର ଧାଡ଼ି
ନିଆଁ ଗୁଳା ପକାଇ ସହର ଦେଲା ପୋଡ଼ି ।୩୪
ଆମେରିକା ଇଙ୍ଗଲଣ୍ଡ ରୁଷିଆ ମିଶିଲେ
ମେଣ୍ଟ ବାନ୍ଧି ଜରମାନି ସଙ୍ଗତେ ଲଢ଼ିଲେ ।୩୫
ହିଟଲର ରୁଷିଆରେ ଯାଉଥିଲା ମାଡ଼ି
ବହୁତ ଅଞ୍ଚଳ ତା ହାତରେ ଗଲା ପଡ଼ି । ୩୬
ପୁଣି ରୁଷିଆର ମନ୍ଦ ବେଳ ସରିଗଲା
ପୁଣି ଶୁଭ ମୁହୂର୍ତ୍ତ ତାହାର ଆସି ହେଲା ।୩୭
ଜର୍ମାନମାନଙ୍କୁ ରୁଷିଆରୁ ଘଉଡ଼ିଲା
ଘଉଡ଼ ଘଉଡ଼ ସୀମା ପାରି କରି ଦେଲା । ୩୮
ହିଟଲର ଯେତେ ଗ୍ରାମ ପୁର ନେଇ ଥିଲା
ରୁଷିଆ ସେଠାରୁ ବଇରୀ କି ତଡ଼ିଦେଲା । ୩୯
ନିଜ ରାଜ୍ୟ ଶତ୍ରୁଠାରୁ ନେଲାକ ଛଡ଼ାଇ
ଭାଙ୍ଗି ଦେଲା ବଇରୀର ସକଳ ବଡ଼ାଇ । ୪୦

ଜର୍ମାନୀ ଦେଶକୁ ପୁଣି ଦେଲ ସେହୁ ଧାଡ଼ି
ହାରିଲ ଜର୍ମାନୀ ଦେଲ ଶାସନ ଗୁଡ଼ି । ୪୧
ଜର୍ମାନୀ ସଇନମାନେ ପଶିଲେ ଶରଣ
ବିନା ସରତରେ ସନ୍ଧି କଲେ ଆରଗଣ । ୪୨
ବ୍ରିଟିଶ ସ୍ତମ୍ଭ ପୋତିଲେ ଜର୍ମାନୀ ଦେଶରେ
ହିଟଲର ମଲେ ଅବା ଗୋପନେ ରହିଲେ ।
ତେଣେ ରେଙ୍ଗୁନ ସମରେ ଜାପାନ ହାରିଲ
ରେଙ୍ଗୁନ ପୁଣି ବ୍ରିଟିଶ ଅଧିକାର କଲ । ୪୪
ଜାପାନୀ ଜର୍ମାନୀ ଏକଦଶା ଭୋଗ କଲେ
ବାର ବାର ଜିଣି ଜିଣି ପଛକୁ ହାରିଲେ । ୪୫
କେତେ ଧନ ଜନ ଗୋପଲକ୍ଷ୍ମୀ ଗଲ ନାଶ
କଲେ ଧରଣୀକି ସେହୁ ଅଶାନ୍ତ ଆବାସ । ୪୬
କେତେ କାଳର ସଞ୍ଚିତ ଧନ କୋଠା ବାଡ଼ି
ସମର ଅନଳେ ଭସ୍ମ ହେଲ ପୋଡ଼ିପାଡ଼ି । ୪୭
ଉନବିଂଶ ଶତ ପଞ୍ଚଚାଳିଶ ସାଲର
ମଇମାସ ସାତ ତାରିଖର ଏ ଖବର । ୪୮
ଇଉରୋପ ଦେଶ ମହା ସମର ସରିଲ
ଗୁରିଆଡ଼େ ଏ ବିଜୟ ଘୋଷଣା ବାଜିଲ ।୪୯
ଚେର ଚଉଦ ଚାରିଖେ ହୋଇଲ ଉତ୍ସବ
ଭାରତପୁର ପଲ୍ଲୀରେ ଜୟ ଜୟ ରବ । ୫୦
ଦେବଦାରୁ ପତ୍ର ଡାଳ ରମ୍ଭା ବୃକ୍ଷମାନ
ପୋତା ହେଲ ଠାବେ ଠାବେ ବିଜୟ ନିଶାଣ ।
କାଗଜ କନା ଉପରେ ନାନାଜାତି ଲେଖା
ପୁରପଲ୍ଲୀ ଦାଣ୍ଡ ହାଟେ ଦେଲ ବଳେ ଦେଖା ।
ଉପଭୋଗ କର ଆହେ ବ୍ରିଟିଶ ବିଜୟ
ମିତ୍ରପକ୍ଷ ଜୟ ଭୋଗ କର ହେ ନିଶ୍ଚୟ । ୫୩
ଆଲୋକ ମାଳାରେ ପୁର ପଲ୍ଲୀ ଆଲୋକିତ
ଦରିଦ୍ରଙ୍କୁ ଅନ୍ନ ବସ୍ତ୍ର ମିଳିଲ ବହୁତ । ୫୪

ଯାତ୍ରା ସଙ୍ଗୀତ ଇତ୍ୟାଦି ହେଲା ଠାବେ ଠାବେ
ଇତ୍ୟାଦି ରଙ୍ଗ ରହସ୍ୟ ଦେଖିଲେ ସରବେ ।
ରାବଣର ଅତି ଦର୍ପେ ଲଙ୍କା ନାଶ ଗଲା
ଅତି ମାନେ କୁରୁବଂଶ ବିନାଶ ଭଜିଲା । ୫୬
ଅତି ଦାନ କରି ବଳି ପାତାଳକୁ ଗଲା
ହିଟଲର ଦଶା ସେପରି କି ନ ହୋଇଲା ।୫୭
ଟିମାଣି ଖେଳରୁ ମହାଭାରତ ହୋଇଲା
ଭାରତରୁ ଶାନ୍ତିଶକ୍ତି ଲୋପ ହୋଇଗଲା । ୫୮
ଷ୍ଟାଲିନ ଚର୍ଚ୍ଚିଲ ରୁଜୁଭେଲ୍ଟ ହିଟଲର
ମୁସୋଲିନ ନାମେ ଥିଲେ ଆଉଜଣେ ବୀର ।
ଏ ପଞ୍ଚ ବୀର କାହାକୁ କେହି ନୁହେଁ ଊଣା
ଟାଳୁଛି ଜଗତ ଏହିମାନଙ୍କ ମନ୍ତ୍ରଣା । ୬୦
ମୁସୋଲିନ୍ ମଲେ ହିଟଲର କାହିଁ ଗଲେ
ରୁଜୁଭେଲ୍ଟ ଆବର ଦେହତ୍ୟାଗ କଲେ ।୬୧
ଷ୍ଟାଲିନ୍ ଚର୍ଚ୍ଚିଲ ଦୁହେଁ ବଡ଼ ଭାଗ୍ୟବାନ
ଉଡ଼ାଇଲେ ଚଉଦିଗେ ବିଜୟ କେତନ । ୬୨
ଯେ ଯାହାର ଜାତିପାଇଁ ପ୍ରାଣପଣେ ଲଢ଼ି
ସ୍ୱଦେଶରୁ ବଇରୀକି ଦେଲେକ ଘଉଡ଼ି । ୬୩
ଜାତି ଟେକ ରଖିବାକୁ କଲେ ପ୍ରାଣପଣ
ନଷ୍ଟ ହେଲା ପଛେ କେତେ କେତେ ଧନ ଜନ ।
ସବୁ ଯାଉ ପଛେ ଦେଶ ଜାତି ଟେକ ରହୁ
ଜାତି ପ୍ରେମ ବହ୍ନି ଜଳାଇଲେ ଦାଉଦାଉ ।
ଥାଉ ପଛେ ଯେତେ ମତାନ୍ତର ମନାନ୍ତର
ଛାଡ଼ି ଦେଇ ଏକମନେ କଲେକ ସମର । ୬୬
ଜାତି ନଉକା ମଙ୍ଗରେ ଯାକୁ ବସାଇଲେ
ଅଟଳ ଅଟଳ ଭାବେ ତା କଥା ମାନିଲେ ।
ପୂର୍ଣ୍ଣ ବିଶ୍ୱାସରେ ତାର କଥାକୁ ମାନିଲେ
ମାନିବୃତି ହୋଇ ତାହା କଥାରେ ଚଳିଲେ ।

ଜାତିତ୍ୱରେ ନିଜ ନିଜ ସ୍ୱାର୍ଥ ଦେଲେ ଗୁଡ଼ି
ପଡ଼ିଲେ ପଡ଼ୁ ଆକାଶ ମଥାପରେ ମାଡ଼ି । ୬୯
ଗୁରୁ ଦମ୍ଭକରି ସର୍ବେ ଚଳିଲେ ଏକାଳେ
ନିଜ ନିଜ ଭୋଗ ସୁଖ ପକାଇଲେ ତଳେ । ୭୦
କେତେ ଲୋକଙ୍କର ହେଲା କେତେ ସର୍ବନାଶ
ତଥାପି ଟଳିଲାନାହିଁ ପଣ ତାଙ୍କ ଲେଶ । ୭୧
ଜାତି ପ୍ରେମ ବହ୍ନିର ଏ ଅଟଇ ଲକ୍ଷଣ
ଏହାକୁ କହିବା ସିନା ଜାତୀୟ ଜୀବନ । ୭୨
କେତେ ଜନ ନାଶଗଲେ ନାହିଁକ କଳନା
କେତେକାଳ ଧନ ଗଲା ନାହିଁକ ଠିକଣା । ୭୩
ଧନ ଜନ ଯାଉପଛେ ରହୁ ଜାତି ଟେକ
ଏ ମୋହନ ମନ୍ତ୍ରେ ସର୍ବେ ହୋଇଗଲେ ମୂକ ।
କେତେ କେତେ ବିପତ୍ତି ଭୋଗିଲେ ଜାତିପାଇଁ
ଏପରି ନ କଲେ ଜାତି ଟେକ କି ରହଇ । ୭୫
କୋଟି କୋଟି ଧନ ବ୍ୟୟ କଲେ ପ୍ରତିଦିନ
ମାତିଲେ ସମରେ ଦେଇ ପ୍ରାଣ ମନ ଧ୍ୟାନ । ୭୬
ଯେ ଯେଉଁ କର୍ମକୁ ସାମରଥ୍ୟ ତାହା କଲା
ଅମ୍ଳାନ ବଦନେ ଏ ଅଗ୍ନିରେ ଝାସଦେଲା । ୭୭
ହାରିବା ଜିଣିବା ଜାତି ଉଭୟ ସମାନ
ସମର କ୍ଷେତ୍ରରେ କରିଥିଲେ ପ୍ରାଣ ପଣ । ୭୮
ଭଗବାନଙ୍କର ଯାହାଠାରେ ଦୟା ହେଲା
ବଇରୀକି ନାଶକରି ସେ ସିନା ଜିଣିଲା । ୭୯
କେ ଜିଣିବ କେ ହାରିବ ଠାକୁରଙ୍କୁ ଜଣା
କର୍ମକଲେ ସବୁ ଜାତି ଲଢ଼ି ଅକଳନା । ୮୦
ଯୁଦ୍ଧ ଭଲ ଅବା ମନ୍ଦ ସେ ବିଚାର ଆନ
କଲେ ଯୁଦ୍ଧ କପରି କରିବ ଶିଖ ପୁଣ । ୮୧
ଜାତୀୟ ଜୀବନ କିସ ଆକାର ପ୍ରକାର
ଶିଖିପାରିବ ଏଥିରୁ କଲେକ ବିଚାର । ୮୨

ଦେଶାତ୍ମବୋଧ ଏହାର ଅଟେ ଆନ ନାମ
ବହୁକାଳ ହେଲା ଭୁଲିଲଣି ସେ ଲକ୍ଷଣ । ୮୩
ବରନର୍ଡ଼ସା ନାମରେ ବଶିଷ୍ଟ ଲେଖକ
ବିଲାତର ଜଣେ ସେହୁ ଚିନ୍ତାଶୀଳ ଲୋକ ।୮୪
ଅସ୍ତି ବରଷ ବୟସ ହେଲାଣି ବୟସ
ତାହାଙ୍କ ମତରେ ଯୁଦ୍ଧ ହେଲାନାହିଁ ଶେଷ ।୮୫
ସେ ବୋଲନ୍ତି ଆନ ଯୁଦ୍ଧର ଏ ମୂଳଦୁଆ
ପୁଣି କେତେଦିନେ ଲୋକେ ହେବେ କୁଆଁଭୁଆ ।
ଯେଉଁମାନେ ଭାବୁଛନ୍ତି ଯୁଦ୍ଧ ଶେଷହେଲା
ତାଙ୍କଠାରୁ ନିରିବୋଧ କିଏ ଅଛି ଭଲା । ୮୬
ଯାବତ ସଂସାରୁ ସ୍ୱାର୍ଥ ନ ହେବ ବିନାଶ
ତାବତ ସମର କେବେ ନ ହୋଇବ ଶେଷ ।୮୮
ଏକ ଦେଶ ପରେ ଆନ ଦେଶ ଅଧିକାର
ଥିବାଯାଏ ନ ଲିଭିବ ସମର ଅନଳ । ୮୯
ସକଳ ଜାତି ସଂସାରେ ନ ହେଲେ ସ୍ୱାଧୀନ
ଲାଗି ରହିଥିବ ସଦା ସରବଦା ରଣ । ୯୦
ଗାନ୍ଧି ମହାତ୍ମା କହୁଛନ୍ତି ସେହିକଥା,
ଅହିଂସା ବିନୁ ସକଳ ଚେଷ୍ଟା ହେବ ବୃଥା ।୯୧
ଚିନ୍ତାଶୀଳ ଲୋକଙ୍କର ବିଗ୍ରହ ଏମନ୍ତ
ଏକା ଭଗବାନ କରିପାରନ୍ତି ସିଦ୍ଧାନ୍ତ । ୯
ତ୍ରିଗୁଣରୁ ଉତପତ୍ତି ହୋଇଛି ସଂସାର
ତ୍ରିଗୁଣ ନେଇ ପ୍ରକୃତି କରେ କାରବାର ।୯୩
ଗୁଣ ବୈଷମ୍ୟରୁ ସୃଷ୍ଟି ଗୁଣ ସାମ୍ୟେ ଲୟ
ଏହା ତ ସୃଷ୍ଟି ନିୟମ ଅଟଇ ନିଶ୍ଚୟ । ୯୪
ସକଳେ ସତ୍ତ୍ୱଗୁଣରେ ହେଲେ ବିଭୂଷିତ
ସଂସାରେ ଶାନ୍ତି ସନ୍ତୋଷ ହେବ ପ୍ରତିଷ୍ଠିତ ।୯୫
ସତ୍ତ୍ୱଗୁଣେ ଗୁଣୀ ହେଲେ ହିଂସା ଦୂରହୁଏ
ଅହିଂସା ଧର୍ମ କେବଳ ହୋଇ ସଦା ଥାଏ ।୯୬

ଏକ କୁଟୁମ୍ବରେ ଧରା ହୁଏ ପରିଣତ
ଏ ମହା ଆଦର୍ଶ ଶ୍ରେଷ୍ଠ ଅଟଇ ନିଶ୍ଚିତ । ୯୭
ସମ୍ଭବ କି ଏ ଅବସ୍ଥା ହେବ ଦୁନିଆରେ
ପ୍ରକୃତି ବିରୁଦ୍ଧ ପରି ଦେଖୁଛୁ ବିଶ୍ବରେ । ୯୮
ଜୀବ ଜୀବର ଜୀବନ ଏ ସୃଷ୍ଟି ବିଧାନ
ଜୀବକୁ ନ ଖାଇ ଜୀବ ନ ଧରେ ପରାଣ । ୯୯
ଯାହା କିଛୁ ଆମ୍ଭେମାନେ କରୁଛୁଁ ଭୋଜନ
ନିରେଖି ବୁଝିଲେ ପ୍ରାଣୀ ବିନୁ ନାହିଁ ଆନ ।
ଦୁର୍ବଳକୁ ସବଳ ଖାଉଛି ନିରନ୍ତର
ଦୁନିଆରେ ନିତ ଲାଗିଅଛି ଏ ସମର । ୧୦୧
ପ୍ରାଣୀ ନାଶ ତେଣୁ ଅଟେ ଅତି ଅନିବାର
ଯାବତ ଏ ପେଟ ଚିନ୍ତା ଅଛି ମାନବର ।୧୦୨
ସ୍ୱଚ୍ଛନ୍ଦରେ ଜାତ ବନ ଫଳ ମୂଳ ଆଦି
ଶାଗ ମୁଗ ଶସ୍ୟ ଜଳ ପତ୍ର ପବନାଦି । ୧୦୩
ସବୁଠାରେ ଅଛି ପ୍ରାଣ ତେଣୁ ପ୍ରାଣୀ ଜାଣ
ଜନମ ମରଣ ଅଭିବୃଦ୍ଧି ତା ଲକ୍ଷଣ । ୧୦୪
ପ୍ରାଣୀର ପ୍ରବୃତ୍ତି ଅଟେ ଅବଶ୍ୟ ଖାଇବ
ତା ପାଇଁ ଆନ ପ୍ରାଣୀକି ଅବଶ୍ୟ ବଧିବ ।୧୦୫
ଦୁଇଟି ଶକ୍ତିର ଯେବେ ହେବ ସଙ୍ଘରଷ
ତାର ନାମ ହିଂସା ଏହା ବୁଝିବ ଅବଶ୍ୟ ।୧୦୬
ପ୍ରବଳ ଶକତି ହେଲେ କରିବ ସମର
ଦୁରୁବଳକୁ ଅକ୍ଲେଶେ କରନ୍ତି ଆହାର ।୧୦୭
ପ୍ରବୃତ୍ତିକି ବଢ଼ାଇଲେ ଅବଶ୍ୟ ବଢ଼ିବ
ଅଗ୍ନିରେ ଆହୁତି ଦେଲେ ଦି'ଗୁଣେ ଜଳିବ ।
ପ୍ରବୃତ୍ତି ମାର୍ଗ ଧରିଲେ ନାହିଁକି ନିସ୍ତାର
ସମରର ସମ୍ମୁଖୀନ ହୋଇବ ନିକର । ୧୦୯
ନିବୃତ୍ତି ମାର୍ଗ ଧରିଲେ ହୋଇବ ସଂଯତ
ହିଂସାଭାବ ବହୁ ପରିମାଣେ ହେବ ହତ ।୧୧୦

ପ୍ରାଣୀ ହିଂସା ଯେତେ ପରିମାଣେ ହେବ ଊଣା
ତେବେ ଅହିଂସା ବୃତ୍ତିର କରିବ ଧାରଣା ।
କେବଳ ଧର୍ମପଥରେ ହୋଇବ ନିବୃତ୍ତି
ଅନ୍ୟଥା ଉପାୟ ନାହିଁ ଯେନ ହେ ସୁମତି ।
ପ୍ରବୃତ୍ତିମାର୍ଗ ଯାବତ ଥିବନ୍ତି ପ୍ରବଳ
ସଂସାରରୁ ନ ଲିଭିବ କେବେ ଗଣ୍ଡଗୋଳ ।୧୧୩
ଆସୁରୀ ପ୍ରବୃତ୍ତି ଅଟେ ସମରର ବୀଜ
ଯାର ଯେତେ ଆସୁରୀ ପ୍ରବୃତ୍ତି ତେତେ ତେଜ ।
ଆସୁରୀ ପ୍ରବୃତ୍ତି ପାଞ୍ଚେ ସବୁ ମାରି ଧରି
ରାଜତ୍ୱ କରିବ ସବୁ ପଦାନତ କରି । ୧୧୫
ଅଛୁ ମୋର ବଳ ସବୁ ରାଇଜ ଜିଣିବ
ମୋଠାରୁ କିଏ ବଳିଲେ ତାଠାରୁ ହାରିବ ।
ନିର୍ମଳ ନିବୃତ୍ତି ମାର୍ଗ ପାଞ୍ଚଇ ଓଲଟା
ସକଳେ କୁଟୁମ୍ବ ମୋର ବିଶ୍ୱ ଜଗତଟା ।୧୧୬
ସକଳେ ସମାନ ମୋର କାହାକୁ ମାରିବ
କାହା କବଳରୁ ଗ୍ରାସ ଛଡ଼ାଇ ଆଣିବ । ୧୧୮
ଶାଗ ମୁଗ ଖାଇ ଯେବେ ଦିନ ଚଳିଯିବ
ନିହତ ପାତକ କରି କିମ୍ପା ଦିନ ନେବ ।୧୧୯
ଏ ଶିକ୍ଷା ସାଧନା ଧର୍ମ ନ ହେଲେ ଜାଗ୍ରତ
ସମର ଅନଳ ନ ଲିଭିବ କଦାଚିତ । ୧୨୦
ଅହିଂସା ଅହିଂସା ବୋଲି କଥାରେ କହିଲେ
ନହେବ ହିଂସାର ନାଶ ଜଗତରୁ ଭଲେ ।୧୨୧
କାୟମନବାକ୍ୟେ ଯେବେ ଅହିଂସ ନ ହେବ
ଅହିଂସା ଧର୍ମ କେବଳ ବଚନେ ରହିବ । ୧୨୨
ଅହିଂସା ଦୁର୍ଗମ ପଥ ବିନା ସାଧନାରେ
କେହି କି କେବେ ଏ ପଥେ ପଦ ଦେଇପାରେ ।
ପୂର୍ଣ୍ଣମାତ୍ରାରେ ଅହିଂସା ଅଟେ ଅସମ୍ଭବ
କଳ୍ପନା ରାଜ୍ୟରେ ଏହା ନୁହଇ ସମ୍ଭବ । ୧୨୪

ବଡ଼ ବଡ଼ ରାଜ୍ୟମାନେ ଫ୍ରିସୋ ନଗରରେ
ବଇଠକ କରି ଲାଗିଅଛନ୍ତି ବିଚାରରେ । ୧୨୫
କପରି ଶାନ୍ତି ପ୍ରତିଷ୍ଠା ହେବ ଜଗତରେ
ଭବିଷ୍ୟତେ କେହି ଅସ୍ତ୍ର ନ ଧରିବେ କରେ ।
ଯେ ଯାହା ରାଜ୍ୟରେ ସେହୁ ରହିବେ ସ୍ୱାଧୀନ
ଏକ ଜାତି ଆନର ନ ହେବ ପରାଧୀନ । ୧୨୭
ସବୁଦେଶ ପ୍ରତିନିଧିମାନେ ଆସିଛନ୍ତି
ସମରପର ବ୍ୟବସ୍ଥା ବିଚାର କରନ୍ତି । ୧୨୮
ବହୁତ ସମୟ ଧନ ବ୍ୟୟ ହେଉଅଛି
ଦେଖାଯାଉ ଏ ବୃକ୍ଷରେ କି ଫଳ ଫଳୁଛି ।୧୨୯
ମୂଲଚୋବ ରୁଷିଆ ଦେଶର ପ୍ରତିନିଧି
ଭିନ୍ନ ଦେଖା ଯାଉଅଛି ତାଙ୍କ ଗତିବିଧି । ୧୩୦
ତାଙ୍କ ଦେଶ ନୀତି ହେଉଅଛି ସାମ୍ୟବାଦ
ସାମ୍ରାଜ୍ୟବାଦ ନୀତିର ଅଛଇ ବିରୋଧ । ୧୩୧
ଆମେରିକା ଇଙ୍ଗଲଣ୍ଡ ଦେଶର ଏ ନୀତି
ସାମ୍ରାଜ୍ୟବାଦ ବୋଲଣ ତାହାକୁ କହନ୍ତି ।୧୩୨
ରୁଷିଆ ଦେଶରେ ପରଜାର ଅଧିକାର
ଇଂଲଣ୍ଡ ଆମେରିକାରେ କ୍ଷମତା ରାଜାର ।୧୩୩
ଯେ ଯାହା ନୀତିକ ଯେବେ ବଜାୟ ରଖିବେ
କେହି କାହା ଶିଖି କେବେ ଦେଖି ନ ପାରିବେ ।
ଉପରେ ମିତ୍ରତା ଥାଇ ପାରଇ ହଜାର
କୁହୁଳ ହେବଟି ପୁଣି ନାନା ପରକାର । ୧୩୫
ଏକମତ ଏକମନ ହୋଇଲେ ଏ ତିନ
ହୋଇପାରେ କିଛି ଏହା ଭଲେ ଥାଅ ଜାଣି ।
ଦେଖାଯାଉ ଭଗବାନ କିସ କରୁଛନ୍ତି
ଶୁଣିବା ବିନୁ ଆମର କି ଅଛି ଶକତି । ୧୩୭
ଦେଖ ଆଖିର ସରିକ କିସ ବା ଘଟିବ
କହିଲେ ଗୁଡ଼ାଏ ଆଉ ଚହୁଁ କି ମିଳିବ ।୧୩୮

ଏ ଅଧ୍ୟାୟ ଏହିଠାରେ ହୋଇଲାକ ଶେଷ
ଭଣେ ଦୀନ ଜଗବନ୍ଧୁ ଆହେ ପୀତବାସ ।୧୩୯

ଇତି ଶ୍ରୀ ଭାରତ-ଚରିତାମୃତେ ଉତ୍କଳ ଦେଶ ସମର ଶେଷ ଚରିତ ବର୍ଣ୍ଣନେ ଏକଶତ ଷୋଡ଼ଶ ଅଧ୍ୟାୟଃ ।



# ଏକଶତ ସପ୍ତଦଶ ଅଧ୍ୟାୟ

ଗରୁଡ଼ ଉବାଚ

ସମର କଥା ବହୁତ କହିଲେ ଆପଣ
ଯୁଗେ ଯୁଗେ ଲାଗି ରହିଅଛି ଘୋରରଣ । ୧
ଭାରତ ଦେଖିଛି କେତେ କେତେଥର ରଣ
ରଣ ଇତିହାସ ଗାଉଅଛି ତା ପୁରାଣ । ୨
ତ୍ରେତୟା ଯୁଗରେ ରାମ ରାବଣ ସମର
ଦ୍ୱାପରେ ମହାଭାରତ କୃଷ୍ଣ କଂସଙ୍କର । ୩
କଳିଯୁଗେ ବହୁବାର ଦେଖିଲା ସମର
ଶୁଣିଲା ଦେଖିଲା କେତେ କେତେ ଚମତ୍କାର ।୪
ଅସନ୍ତୋଷ ଅଶାନ୍ତିରେ ବହିଯାଏ କାଳ
ରଜା ପରଜା ଭିତରେ ନାନା ଗଣ୍ଡଗୋଳ । ୫
ଧର୍ମପ୍ରାଣ ଭାରତରେ ସତତ ଅଶାନ୍ତି
ପଶୁ ପକ୍ଷୀପରି କାଟୁଛନ୍ତି ଦିନ ରାତି । ୬
ଛାଡ଼ନ୍ତୁ ସେ କଥା ହେଲେ ହେଉ ଯାଉ ରଣ
ଶୁଣିଶୁଣି ବଧିର ହେଲାଣି ଆମ୍ଭ କର୍ଣ୍ଣ । ୭
ଜଟିଳ ରାଜନୀତିରେ ଛଟପଟ ହେଲେ
ସଂସାରର ସାରଧର୍ମ ସକଳ ଭୁଲିଲେ । ୮
ପେଟ ଚିନ୍ତା ହେଲାଣି ସବୁଠୁ ବେଶି ଭାରି
ଆନ ଚିନ୍ତାପାଇଁ ବେଳ ନ ମିଳେ କାହାରି ।୯

ଧର୍ମକୁ ପଛେ ପକାଇ ଧନେ ପ୍ରୀତି କଲେ
ଧନ ପଛେ ପଛେ ଲୋକ ସଦା ଗୋଡ଼ାଇଲେ ।
କେଉଁ କର୍ମକଲେ ବେଶି ଧନ ଅରଜନ
ଏ ଚିନ୍ତାରେ ଦିବା ନିଶି କାଟୁଛନ୍ତି ଜନ । ୧୧
କପରି ଉଦ୍ଧାର ଏଥୁଁ ପାଇବ ଭାରତ
ଭାତ ଦେଶେ ପୂର୍ବପରି ହେବ ପରିଣତ । ୧୨

## ଜଗା ଉବାଚ

ଏ ବଡ଼ ବିଚିତ୍ର କଥା ଏବେ ପଚାରିଲ
ଭାରତ ଯେ ଭାତ ଦେଶ ଯଥାର୍ଥ ବୋଇଲ ।୧୩
ଷଡ଼ ରସ ଫଳ ମୂଳ ଶସ୍ୟ ଅଗଣିତ
ଭାରତ ଜନନୀ ପ୍ରସବୁଛି ନିତ୍ୟ ନିତ୍ୟ । ୧୪
ଯାର ଗରଭରେ ଅଷ୍ଟରତ୍ନ ଅଛି ପୂରି
ଗୋରସ ଆଦି ଅମୃତ ପଡ଼ୁଛି ଉଛୁଳି । ୧୫
ପ୍ରକୃତି ଜନନୀ ଦୟାମୟୀ କୃପାମୟୀ
ଯାଇତ ରଖିଛି ସବୁ ଦିଏ ଦୟାବହି । ୧୬
ପକ୍ଷୀ କୀଟ ଆଦି ଶିଳ୍ପୀ ଅଟେ ଯେ ଦେଶର
ପୃଥିବୀରେ ସେ ସମାନ ନାହିଁ କାରିଗର । ୧୭
ଲଜ୍ଜା ପାଇ ପଦାର୍ଥ ବିଜ୍ଞାନ ଏଥୁଁ ଗଲା
ପାଶ୍ଚାତ୍ୟ ଦେଶ ଲୋକଙ୍କୁ ଯାଇ ଶିଷ୍ୟ କଲା ।
ପଦାର୍ଥ ବିଜ୍ଞାନ ହେଲା ସେ ଦେଶର ଗୁରୁ
ଶିକ୍ଷାଦେଲା ବହୁତତ୍ତ୍ୱ ସେ ଦେଶେ ପଚାରୁ ।୧୯
ପଦାର୍ଥର ଗୁଣମାନ ନିଖାରି ବୁଝିଲେ
କି ଫଳ ହେବ କାହାକୁ କା ସଙ୍ଗେ ଯୋଡ଼ିଲେ ।
ଅଗ୍ନି ବାୟୁ ବିଜୁଳିର ଶକତି ବଳରେ
ନାନା ମନୋହାରୀ ଦ୍ରବ୍ୟମାନ ତିଆରିଲେ ।୨୧
କଞ୍ଚାମାଲ ମାନ ଅଟେ ପ୍ରକୃତି ଦେବୀର
ଯୋଡ଼ନ ଯାଡ଼ନ ପାଠ ଅଟେ ବିଜ୍ଞାନର । ୨୨

ଭୋଗ ବିଳାସ ନିମନ୍ତେ ନାନା ଦ୍ରବ୍ୟ ହେଲା
ପ୍ରକୃତିକ ଗୁଡ଼ ଲୋକ ବିଜ୍ଞାନେ ମଜ୍ଜିଲା । ୨୩
ବିଜ୍ଞାନ ହେଲା ଲୋକର ପ୍ରଧାନ ସେବକ
ତା ଗୁଣୁଗ୍ରବଳେ ଲୋକେ ହେଲେ ଏବେ ବଳ ।
ଭୋଗ ବିଳାସ ବାସନା ବଢ଼ିଲା ବହୁତ
ଅଧିକୁ ଅଧିକେ ଲୋକେ ରସିଲେ ନିୟତ । ୨୫
କଳ କାରଖାନା ଯନ୍ତ୍ର ବହୁତ ବଢ଼ିଲା
ଶହେ ଜଣକର କାମ ଜଣେ କରିନେଲା । ୨୬
ଭୋଗ ବିଳାସ ବାସନା ବଢ଼ିଲା ଯେତିକ
ଦେଶାତ୍ମବୋଧ ବାସନା ବଢ଼ିଲା ତେତିକ ।୨୭
ଯେ ଦେଶ ବିଜ୍ଞାନବଳେ ଯେତେ ଦ୍ରବ୍ୟ କଲା
ଦେଶ ବିଦେଶରେ ନେଇ ସେସବୁ ବିକଲା ।୨୮
ଯେଦେଶେ ଯେଦ୍ରବ୍ୟ ନାହିଁ ସେ ଦେଶର ଲୋକ
ମନୋହାରୀ ଦ୍ରବ୍ୟମାନ କିଣିଲେ ଅନେକ ।୨୯
କଳ ଆଗେ ହାତ ବଳ ବଳେ ଗଲା ହାରି
ଭାରତେ ମାଡ଼ିବସିଲେ ବିଦେଶୀ ବେପାରୀ ।୩୦
ମନୋହାରୀ ଦ୍ରବ୍ୟ ବିକ ନେଲେ ଖାଦ୍ୟ ଦ୍ରବ୍ୟ
ତାଙ୍କ ଦେଶେ ଯାହା ସବୁ ଅଟେ ଅପୂରୁବ ।୩୧
ଜଡ଼ବିଜ୍ଞାନ ସବୁରି ଧନ ହରିନେଲା
ଯେ ଦେଶ ତାର ସେବକ ତାକୁ ଧନୀ କଲା ।୩୨
ଧନ ଐଶ୍ୱର୍ଯ୍ୟ ମଦରେ ମତ୍ତ ହେଲେ ଲୋକ
ଭାଳିଲେ ତାହାଙ୍କଠାରୁ କେ ଅଛି ଅଧିକ ।୩୩
ବଳ ଯାହାର ମୂଲକ ତାହାର ଏ ମତି
ବ୍ୟାପିଲା ସେ ଦେଶମାନଙ୍କରେ ଏ ପ୍ରବୃତ୍ତି ।
ପୁଣି ଜଡ଼ ବିଜ୍ଞାନକୁ ଏ ବର ମାଗିଲେ
ମାରଣାସ୍ତ୍ର ଦିଅ ବୋଲି ତପ ଆଚରିଲେ । ୩୫
ନାନା ପରକାର ମାରଣାସ୍ତ୍ର ସେ ପାଇଲେ
ଦୁର୍ବଳ ଲୋକଙ୍କ ପରେ ଆଧିପତ୍ୟ କଲେ ।୩୬

ଯାର ଯେତେ ମାରଣାସ୍ତ୍ର ତାର ତେତେ ବଳ
ରଣହୁଙ୍କାରେ ଧରାକୁ କଲେ ଟଳମଳ । ୩୭
ଭାରତ ସିନା ବହୁତ ଇଂରାଜୀ ପଢ଼ିଲା
ଜଡ଼ ବିଜ୍ଞାନ ଭଣ୍ଡାରେ ପଶି ନ ପାରିଲା । ୩୮
ସେ ଭଣ୍ଡାର କଞ୍ଚି ତାକୁ ହୋଇଲା ଗୁପତ
କେବଳ ଶୃକର ପାଇଁ ହେଲା ସମରଥ । ୩୯
ଅତିବଡ଼ ଶୃକରଙ୍କ ନାହିଁ ଅଧିକାର
ଇଂରେଜମାନେ ସେଥିକି ଝୁଙ୍କନ୍ତ କେବଳ ।୪୦
ଭାରତର ପରିସ୍ଥିତି ଏପରି ଯେ କାଳେ
ପାଶ୍ଚାତ୍ୟ ଦେଶରେ ଯୁଦ୍ଧ ହେଲା ତେତେବେଳେ
ମହାଘୋର ପ୍ରଳୟ ସମର ଉପୁଜିଲା
ବଳ କଷାକଷି ହୋଇ ଲଢ଼ାଲଢ଼ି ହେଲା ।୪୨
ବିଦେଶୀ ଦରବମାନ ଆଉ ନ ଆସିଲା
ଯାହାଥିଲା ତାର ମୂଲ୍ୟ ଅତ୍ୟନ୍ତ ବଢ଼ିଲା । ୪୩
ଭାରତ ଯେ ଭାତ ଦେଶ ନୁହେଁ ମିଥ୍ୟା କଥା
ଏ ପରିସ୍ଥିତିରେ ପଡ଼ି ଭୋଗିଲା ଅବସ୍ଥା । ୪୪
ଆନ ଦେଶମାନ ଏଠୁ ଭାତ ନେଇଗଲେ
ଭାତ ମହରଗ ହେଲା ତେଣୁ ଏ ଦେଶରେ ।
ଭାତ ଦେଶେ ଭାତପାଇଁ ଲୋକେ ଛଟପଟ
ଯେତେ ଅରଜିଲେ ତାର ପୂରୁନାହିଁ ପେଟ ।
ଅନ୍ନଚିନ୍ତା ଖାଇଗଲା ଭାରତର ଗଣ୍ଡି
ଲବଣ ଯେସନେ ଖାଇଯାଏ ତାର ହାଣ୍ଡି ।
ଅନ୍ନ ଅଭାବରୁ ଲୋକେ ସଦା କଲବଲ
ଆଉ ବଡ଼ ଚିନ୍ତାପାଇଁ ନାହିଁ ତାର ବେଳ ।
ବୁଦ୍ଧିହୀନ କ୍ଷୀଣବପୁ ଅଳପ ଆୟୁଷ
ଭାତ ଦେଶେ ବସାକଲା ରଜନୀ ଦିବସ । ୪୯
କୁଟୁମ୍ବ ପୋଷିବାପାଇଁ ସଦା ଛଟପଟ
ଏହି ଚିନ୍ତାରେ ସକଳେ ହେଉଛନ୍ତି କଷ୍ଟ ।୫୦

ଜ୍ଞାନ ବିଜ୍ଞାନ ପାଇଁକି ବେଳ ମିଳୁନାହିଁ
ପେଟ ଚିନ୍ତାରେ ବୁଲଇ ସଦା ଖାଲୁ ଝୋଇ ।
ସ୍ୱାଧୀନ ବା ପରାଧୀନ ନ ଆଣେ ମନକୁ
ପେଟ ଚିନ୍ତା ଘୁଞ୍ଚିଦିଏ ଏ ସବୁ ଭାବକୁ । ୫୨
ଏ ଦେଶରେ ପେଟ ଚିନ୍ତାଭାର ତ ବିଶେଷ
ତେଣୁ ଭାତ ଦେଶ ନ ବୋଲିଏ ଭାରତ ଦେଶ ।
ଅଭାବ ହେଲେ ସ୍ୱଭାବ ନଷ୍ଟ ହୁଏ ବଳେ
କି କରି ନ ପାରେ ଲୋକ ଏ ପେଟ ବିକଳେ ।
ଧର୍ମ ଅଧର୍ମ ବିଚାର ଲୋପହୁଏ ତାର
ରାକ୍ଷସ ପରିଏ ତାର ସକଳ ବିଚାର । ୫୫
ପେଟ ଚିନ୍ତାରୁ ଅଚିହ୍ନା ବ୍ୟାଧି ଉପୁଜଇ
ପେଟ ବିନୁ ଆନଚିନ୍ତା ତାକୁ ନ ଦିଶଇ । ୫୬
ଯାବତ ତାର ଉଦର ନ ପୂରେ ଅନ୍ନରେ
ହତଜ୍ଞାନ ହୋଇ ବୁଲେ ସଂସାର ମଧ୍ୟରେ ।୫୭
ମାନବ ବୃତ୍ତି ତାହାର ହୋଇଯାଏ ଲୋପ
ପଶୁ ବୃତ୍ତି ଧରି ସଦା ଅନ୍ନରେ ଲୋଲୁପ ।୫୮
ଭୁରିବାହା ପିଠି ଯେବେ ନପୂରିଲା ଆଶ
ଆନ ଧନରେ ତାହାର ବଳଇ ମାନସ । ୫୯
ଯେନ କେନ ପ୍ରକାରେ ତ ପୂରିବ ଉଦର
ନ ପୂରିବା ଯାଏ ଆନ ଜ୍ଞାନ ନାହିଁ ତାର ।୬୦
ସକଳ ନାଟର ଗୋଡ଼ ଅଟେ ପୋଡ଼ା ପେଟ
ଅହର୍ନିଶ ଜୀବ ଏହା ପାଇଁକି ଲମ୍ପଟ । ୬୧
ଆହାର ଲମ୍ପଟେ ପ୍ରାଣୀ ସଦା ଛଟ ପଟ
କାହୁଁ ଆଣି କି ଖାଇବ ମାରଇ କୁହାଟ । ୬୨
ଅଭାବ ନାହିଁ ଯେଉଁଠି ଆହାର ସଂସ୍ଥାନ
ସେଠାରେ ଅଛଇ ସବୁ ଧରମ କରମ । ୬୩
ଆହାର ଅଭାବ ହେଲେ ସକଳ ଅଭାବ
ଧରମ ଭାବକୁ ତିଳେ ନ ମିଳଇ ଠାବ । ୬୪

ଅନ୍ନ ବନ୍ଧନେ ବ୍ରହ୍ମାଣ୍ଡ ଦିଶଇ ଅନ୍ଧାର
ଜ୍ଞାନ ବିଜ୍ଞାନ ସକଳ ଲୋପହୁଏ ତାର । ୬୫
କି ମାୟା ଯନ୍ତ୍ରେ ବସାଇ ଦେଇ ଭଗବାନ
ଖେଳାଉଛ ଦିବା ନିଶି ଦେଇ ଥୋପ ଅନ୍ନ ।୬୬
ମାନବ ତ ମହାପ୍ରାଣୀ ବୋଲି ସୃଷ୍ଟି କଲ
ଅନ୍ନ ମୁଠାକରେ ତାର ପରାଣ ବାନ୍ଧିଲ । ୬୭
ଖାଇଲେ ଜିଇଁଲା ପ୍ରାଣୀ ନ ଖାଇଲେ ମଲା
ଏଡ଼େ ବଡ଼ ମହାଯନ୍ତ୍ର ଅନ୍ନରେ ଚଳିଲା । ୬୮
କୀଟ ପତଙ୍ଗରୁ ମହା ମାନବ ସରିକ
ଆହାରର ବଶ ହୋଇ ଚଳନ୍ତି ନାହାନ୍ତି କି ।୬୯
କୋଟି କୋଟି ଜୀବ ସୃଷ୍ଟି କରିଛନ୍ତି ଯେହୁ
ପ୍ରଚୁର ଅନ୍ନସଂସ୍ଥାନ କରିଛନ୍ତି ସେହୁ । ୭୦
ଜୀବକୁ ଜୀବ ଖାଇଣ ପରାଣ ଧରିଛି
କେ କାହାକୁ ଖାଇବାକୁ ଗୋଡ଼ାଇ ଧରୁଛି ।
ସକଳ ପ୍ରାଣୀ ଆପଣା ଖାଦ୍ୟ ବସ୍ତୁ ପାଇଁ
ରାତି ନ ପାହୁଁ ମନରେ ଚିନ୍ତା କରୁଥାଇ ।୭୨
କି ଖାଇ କରିବ ସେହୁ ଉଦର ପୂରଣ
ଏହି କଳ୍ପନାରୁ ଉପୁଜଇ ଘୋର ରଣ । ୭୩
ଏ ସଇନମାନେ ହେଲେ ପୂରା ବଳଶାଳୀ
ପରସ୍ପର ମଧ୍ୟରେ ଲାଗଇ ଘୋର କଳି । ୭୪
ପ୍ରବୃତ୍ତି ମାର୍ଗରେ ହେଲେ ଏ ସଇନ ରତ
ଆପେ ଆପେ ଖୋଲି ବସେ ଆପଣାର ଖାତ ।
ପ୍ରବୃତ୍ତି ପ୍ରବଳ ହେଲେ ରକ୍ଷା ନାହିଁ ଆଉ
ମାନବକୁ ଗ୍ରାସକରେ ସର୍ବଗ୍ରାସୀ ରାହୁ । ୭୬
ପଶୁଠାରୁ ହୀନହୋଇ ପଡ଼ଇ ମାନବ
ଜ୍ଞାନ ଗୋଚର ନ ରହେ ହିତାହିତ ଭାବ ।୭୭
ଏ ରୋଗର ଔଷଧି ଅଟଇ ନିବୃତ୍ତି
ନିବୃତ୍ତି ଆଶ୍ରୟ କଲେ ଲଭକରେ ଶାନ୍ତି । ୭୮

ନିବୃତ୍ତି ମାର୍ଗ ସାଧନ ଅତ୍ୟନ୍ତ ଦୁର୍ଗମ
ସାଧି ପାରିଲେ ମାନବ କରେ ସୁଧା ପାନ ।୭୯
ସାଧି ନ ପାରିଲେ ପ୍ରବୃତ୍ତିର ବିଷ ଜ୍ୱାଳା
ମାନବକୁ ଗ୍ରାସକରି କରାଏ ଲଙ୍ଗଳା । ୮୦
ପ୍ରବୃତ୍ତି ମାର୍ଗର ଅଛି ମୋହିନୀ ଶକତି
ଅତି ଆଗ୍ରହରେ ତାକୁ ରସୁଥାଏ ନିତି । ୮୧
ନିବୃତ୍ତି ମାର୍ଗକୁ ଦେଖେ ଶୁଷ୍କ ବା ନିରସ
ମନ ତାକୁ ନ ରସଇ ମଣେ ବଡ଼ କ୍ଳେଶ ।୮୨
ତୁରନ୍ତ କ୍ଷଣିକ ସୁଖ ପ୍ରବୃତ୍ତିରୁ ମିଳେ
ନିବୃତ୍ତି ବୃକ୍ଷର ଫଳ ଫଳେ ବହୁକାଳେ । ୮୩
ଏହିପରି ଏ ସଂସାରେ ଲାଗିଅଛି ଖେଳ
କେବେ ପ୍ରବୃତ୍ତି ଅଥବା ନିବୃତ୍ତି ପ୍ରବଳ । ୮୪
ଅନାଦି କାଳରୁ ଲାଗିଅଛି ଏହିପରି
ଆଦି ଅନ୍ତ କିଏ କହି ପାରିବ ବିସ୍ତାରି । ୮୫

## ଗଉର ଉବାଚ

ଏ ସଂସାର ଖେଳ ଲାଗିଥିଲା ଲାଗିଅଛି
ଲାଗିଥିବ କାଳେ କାଳେ ସୀମାନାହିଁ କିଛି ।୮୬
ଭାରତ ସ୍ୱାଧୀନ ହେବ ବୋଲି ଆଶାକଲା
କେତେକାଳ ହେବ କେତେ କଷଣ ଭୋଗିଲା ।
ବହୁତ ସନ୍ତାନ ତାର କାରାଗାର ଗଲେ
କେତେକାଳ ଧରି ସେହୁ ବନ୍ଦୀରେ ରହିଲେ ।
ଇଉରୋପର ମହା ଘୋର ସମର ସରିଲା
ଆମ ସରକାରଙ୍କର ବିଜୟ ହୋଇଲା । ୮୯
ଭାରତ ଶାସନ କଳ ଥିଲାକ ଅଚଳ
କଂଗ୍ରେସ ମନ୍ତ୍ରୀ ମଣ୍ଡଳ ଛାଡ଼ିଥିଲେ କଳ । ୯୦
ବଡ଼ଲାଟ ଓ୍ୟାଭେଲ ବିଲାତ ଯାଇଥିଲେ
କେତେ ଦିନ ରହି ଏବେ ଭାରତେ ଫେରିଲେ ।

ଭାରତ ସମସ୍ୟା ହୋଇଲା କି ସମାଧାନ
କି ମୀମାଂସା କରି ସେହୁ ଫେରିଲେକ ପୁଣ ।
ବିସ୍ତାରି କହ ଆପଣ ଏ ସବୁ ଚରିତ
ଶୁଣିବାକୁ ବିଶେଷରେ ବଳୁଛି ମୋ ଚିତ୍ତ । ୯୩

ଜଗା ଉବାଚ

ଆଚ୍ଛା କଥାଏ ଗଉରି ପଚାରିଲ ପୁଣ
ଦେବା ନେବା ଦରବ କି ସ୍ୱାଧୀନତା ଧନ ।୯୪
ଓ୍ୟାଭେଲ ସାହେବ ଫେରି ଆସିଲେ ଭାରତେ
ଦିଲ୍ଲୀରେ ଘୋଷଣା କରି ଦେଲେ ସାଥେ ସାଥେ ।
ଊନବିଂଶ ଶତ ପଞ୍ଚଚାଳିଶ ସନରେ
ଜୁନ ମାସ ଚଉଦ ତାରିଖ ଦିବସରେ । ୯୬
ବିଲାତ ଭାରତ ଦୁଇଠାରେ ଏକାବେଳେ
ବେତାର ଯନ୍ତ୍ରରେ ସେ ଘୋଷଣା ଶୁଣାଇଲେ ।
ଶୁଣ ହେ ଭାରତବାସୀ ଦେଇ ମନକର୍ଣ୍ଣ
ବିଲାତ ସରକାରର କ୍ଷମତା ବିଳେଣ । ୯୮
କହୁଛି କାହିଁକି ତୁମ୍ଭେ କରୁଛ ଫିକିର
ତୁମ ଅଚଳ ଅବସ୍ଥା ତୁରନ୍ତ ତୁଟାଅ । ୯୯
ଭାରତ ଶାସନ ଯନ୍ତ୍ର ଚାଳି ତୁମ୍ଭେମାନେ
ଇଂରେଜ କେହି ରହିବେ ନାହିଁ ସେହିସ୍ଥାନେ ।
ଘରୋଇ ବିଭାଗ ଅର୍ଥ ବିଭାଗ ସହିତ
ସବୁ ବିଭାଗର ଚାବି ତୁମ୍ଭ ମାରଫତ । ୧୦୧
ରାଜ୍ୟରକ୍ଷା ବିଭାଗ କେବଳ ମୋ ଜିମାରେ
ଜଙ୍ଗିଲାଟ ସେନାପତି ରହିବେ ସେଠାରେ ।
ବିଦେଶ ବିଭାଗେ ଯାହା ସମ୍ପର୍କ ମୋ ଦେଶେ
ସେ କଥାମାନ ବୁଝିବ ତୁମ୍ଭେମାନେ ତୋଷେ ।
ଆନ ଆନ ବିଦେଶର କଥା ଆମ୍ଭ ହାତେ
ଦେଶୀୟ ରାଜ୍ୟ ବିଭାଗ ଆମ୍ଭ ମାରଫତେ ।୧୦୪

ତୁମ୍ଭେମାନେ ସକଳ ବିଷୟ ବୁଝିଥିବ
ହିଁ ନାହିଁ କରିବା କ୍ଷମତା ମୋର ଥିବ । ୧୦୫
ସକଳ ବିଭାଗ କାର୍ଯ୍ୟ ଥିବ ତୁମ୍ଭ ହାତେ
ମୋ କାର୍ଯ୍ୟଟି କିନ୍ତୁ ସଦା ମୋହର ଆୟତ୍ତେ ।
ବ୍ରିଟିଶ ବାଣିଜ୍ୟ ସ୍ୱାର୍ଥ ଅକ୍ଷୁର୍ଣ୍ଣ ରହିବ
ଜଣେ ଗୋରା କର୍ମଚାରୀ ଜଗୁଆ ରହିବ ।୧୦୭
କଂଗ୍ରେସ ମୁଖିଆ ନେତା କାରାମୁକ୍ତ ହେଲେ
କାର୍ଯ୍ୟକାରୀ କମିଟିର ଯେତେ ସଭ୍ୟ ଥିଲେ ।
ଆଜାଦ, ନେହେରୁ, କୃପାଳନୀ, ସରଦାର-
ପଟେଲ, ରାଜେନ୍ଦ୍ର, ଶୁକ୍ଳ ପ୍ରମୁଖ ଆବର ।
ପୁଣି ବଡ଼ଲାଟ କଥା କହିଲେ ଏମନ୍ତ
ସିମଲାରେ ବଇଠକ ହୋଇବ ତୁରନ୍ତ । ୧୧୦
ଗାନ୍ଧି, ଜିନା ଆଦି ନେତା ହେବେ ନିମନ୍ତ୍ରିତ
ସେଠାରେ ବିଚାର ହେବ ସକଳ ବୃତ୍ତାନ୍ତ ।୧୧୧
ଏମାନେ ବଡ଼ଲାଟଙ୍କୁ ପରାମର୍ଶ ଦେବେ
ନୂତନ ଶାସନ ଯନ୍ତ୍ର କିଏ ଚଳାଇବେ । ୧୧୨
ବଡ଼ଲାଟଙ୍କ ଭାଷଣ କଲେକ ଗ୍ରହଣ
ଏହି ଅନୁରୂପେ ହେବ ଭାରତ ଶାସନ । ୧୧୩
ସବୁ ପ୍ରଦେଶେ ମିଳିତ ମନ୍ତ୍ରୀଏ ରହିବେ
ପ୍ରତି ପ୍ରଦେଶ ଶାସନ ଯନ୍ତ୍ର ଚଳାଇବେ । ୧୧୪
ଭାରତବାସୀ ଘୋଷଣା ଗ୍ରହଣ ନ କଲେ
ଯଥା ତଥା ଶାସନ ଚଳିବ ଅବହେଳେ ।୧୧୫
ବଡଲାଟ ବୋଲୁଛନ୍ତି ହେ ଭାରତବାସୀ
ଗ୍ରହଣ କର ଘୋଷଣା ମନେ ହୋଇ ଖୁସି ।
ଏହି ପଥେ ଗଲେ ତୁମ୍ଭ ବାଞ୍ଛା ପୂର୍ଣ୍ଣ ହେବ
ସମବକାଶ ମଣ୍ଡଳେ ସ୍ୱରାଜ୍ୟ ପାଇବ । ୧୧୭
ବିଳାତ ସଭାରେ ହେଲା ଏ କଥା ବିଚାର
ସକଳେ ଏହି କଥାରେ କଲେ ସିଉକାର

ଏ ଯେଉଁ ନବଶାସନ ଯନ୍ତ୍ର ଗଢ଼ା ହେବ
ତିନୋଟି ପ୍ରଧାନ କାର୍ଯ୍ୟ ଏହାର କରିବ ।୧୧୯
ପ୍ରଥମ କାର୍ଯ୍ୟ ଏହାର ଜାପାନ ସମର
ଯୁଦ୍ଧୋତ୍ତର କାର୍ଯ୍ୟମାନ ଦ୍ୱିତୀୟ ନିକର ।୧୨୦
ତୃତୀୟ କର୍ତ୍ତବ୍ୟ କର୍ମ ଅଟଇ ଏହାର
ମତାନ୍ତର ଭୁଲି ଯେବେ ହେବେ ଏକମେଳ ।
ଇଚ୍ଛାକଲେ ଏ ଯନ୍ତ୍ରକୁ ସଂସ୍କାର କରିବେ
କିମ୍ବା ନୂଆକରି ଅନ୍ୟ ବ୍ୟବସ୍ଥା ଗଢ଼ିବେ ।
ସକଳ ଶକତି ଯାହା ଅଛି ଭାରତର
ଲଗାଇ ଜିଣିବ ଦୃଢ଼େ ଜାପାନ ସମର । ୧୨୩
ଏଇଟି ମୂଳ ସରତ ଏ ସମାଧାନର
ଏ ଲକ୍ଷକୁ ଦୃଷ୍ଟି ଦେଇ ସର୍ବ କାର୍ଯ୍ୟକର ।
ଏ ଘୋଷଣା ହେବ ବୋଲି ପଡ଼ିଲା ରହିଲ
ଗୁହ୍ମ ଗୁହ୍ମ ଜଣାଗଲା ଆକାର ପ୍ରକାର ।୧୨୫
ଲାଗିଛି ବଡ଼ର ଘୋଷଣାର ଫଳାଫଳ
ସମ୍ବାଦପତ୍ରରେ ବକ୍ତୃତିର ମାଳ ମାଳ । ୧୨୬
କିଏ କେତେ ପରକାରେ କହେ ନିଜ ମତ
କେ କହେ ଉଚିତ କେହୁ କହେ ଅନୁଚିତ ।
ଗାନ୍ଧିଙ୍କ ମୁଖକୁ ସର୍ବେ ଚାହିଁ ରହିଛନ୍ତି
ତାହାଙ୍କର କିସ ମତ ଅପେକ୍ଷା କରନ୍ତି ।୧୨୮
ସେ ବୋଇଲେ ମୁଁ ନୁହେଁ କଂଗ୍ରେସ ପ୍ରତିନିଧି
କଂଗ୍ରେସ ପକ୍ଷରୁ ମତ ଦେବା ନୁହେଁ ବିଧି ।
କଂଗ୍ରେସ ସଭାପତିର ଅଛି ଅଧିକାର
ସେ କହି ପାରନ୍ତି ସିନା ଏଥିର ବିଚାର ।୧୩୦
ମୁଁ ଜଣେ ବେସରକାରି ପରାମର୍ଶଦାତା
ନୁହେଁ କଂଗ୍ରେସର ମୁହିଁ ହରତା କରତା ।
ଗଲା କେତେକ ବରଷ ହେଲା ଏହିପରି
ପରାମର୍ଶ ଦିଏ ଯେବେ କେ ଦିଏ ପଚାରି ।୧୩୨

ଜିନା ସଙ୍ଗେ ଯାହା ସବୁ କଥାବାର୍ତ୍ତା ହେଲା
କଂଗ୍ରେସର ପ୍ରତିନିଧି ଭାବେ ନ ହୋଇଲା ।୧୩୩
ପୁଣି ବଡ଼ଲାଟ ସଙ୍ଗେ କଥାବାର୍ତ୍ତା ହେଲେ
ସେହି ଭାବେ ଜିନା ହୋଇପାରେ ଅବହେଳେ ।
ବଡ଼ଲାଟ ବୋଇଲେ ଏ ନୂତନ ଶାସନ
ପରିଷଦ ଯେବେ ଗଢ଼ାହେବ ତା ବିଧାନ ।୧୩୫
ସବର୍ଣ୍ଣ ହିନ୍ଦୁ ମୁସଲମାନ ସଂଖ୍ୟା ସମ
ଏ ବିଧିରେ ଗଢ଼ାଯିବ ନୂତନ ଶାସନ । ୧୩୬
ଗାନ୍ଧିଜୀ ଏକଥା ଶୁଣି ହେଲେ ମର୍ମାହତ
ତୀବ୍ର ପ୍ରତିବାଦ କରି କଲେ ମତବ୍ୟକ୍ତ । ୧ ୭
ସବର୍ଣ୍ଣ ହିନ୍ଦୁ ଶବଦ ଅଟେ ଅନୁଚିତ
ବଡ଼ଲାଟଙ୍କ ତୁଣ୍ଡରେ ନୁହେଁ ଯୁକ୍ତିଯୁକ୍ତ । ୧୩୮
ଏ କଥାରେ ହିନ୍ଦୁମନେ ଲାଗିବ ଆଘାତ
ଭେଦାଭେଦ ଭାବ ପୁଣି ବଢ଼ିବ ବହୁତ । ୧୩୯
ଏହି ଆଶଙ୍କାରୁ ଜିନା ଏକଥା କହୁଛି
ଅନ୍ୟଥା ମୁଁ କହିବାର ନ ଥିଲା ତ କିଛି ।୧୪୦
ପୁଣି ଗାନ୍ଧି କହିଲେ ଯେ ବଇଠକ ହେବ
ଭେଦଭାବ ଯେପରି ଏଥିରେ ନ ପଶିବ ।୧୪୧
ତହିଁପ୍ରତି ମୂଳରୁ ହେବାର ସାବଧାନ
ଉଚିତ ଅଟଇ ତେଣେ ଦିଅ ମନ ଧ୍ୟାନ ।୧୪୨
ମୂଳରୁ ସତର୍କ ହେଲେ ବିଶ୍ୱାସ ମୋହର
ଭଲକାମ କରିପାରେ ଏ ସଭା ନିକର । ୧୪୩
ଯେଉଁମାନେ ଏ ସଭାକୁ ଡକରା ହୋଇବେ
ଭାରତୀୟ ଭାବେ ସେ ସଭାରେ ଯୋଗଦେବେ ।
କିଏ କେଉଁ ସମାଜର ଅଟେ ପ୍ରତିନିଧି
ଏଭାବେ ଯୋଗଦେବାର ନୁହେ ବିଧିସିଦ୍ଧି ।
ଭାରତର ପ୍ରାକୃତିକ ଲକ୍ଷ୍ୟ ସିଦ୍ଧି ପାଇଁ
ମିଳିତ ଭାବେ ଲଢ଼ିବେ ସେ ସଭାରେ ଯାଇ ।

ବୁଲାଭାଇ ଲିଆକତ ସମାଧାନ ଫଳ
ବହୁରୁଛି ଏ ସଭାର ଅଟଇଟି ମୂଳ । ୧୪୭
ବଡଲାଟ ସଦସ୍ୟଙ୍କୁ ଚିହ୍ନିଲେ ଯେପରି
ଦେଶାଇଙ୍କ ପ୍ରସ୍ତାବରେ ନଥିଲା ସେପରି ।୧୪୮
ଦେଶାଇ ଯେ ସମାଧାନ ପ୍ରସ୍ତାବ ଆଣିଲେ
ମୋର ପରାମର୍ଶ ତେତେବେଳେ ନେଇଥିଲେ ।
ଏଥିପାଇଁ ତଳେ ମାସ ନୁହେଁ ମୁଁ ଲଜ୍ଜିତ
ବହୁରଥିଲ ଏ ଭେଦ ଘୁଞ୍ଚିବ ନିଶ୍ଚିତ । ୧୫୦
ଏଥିପାଇଁ ଦେଇଥିଲି ତାହାଙ୍କୁ ଜବାବ
ସପକ୍ଷରେ ମତ ଦେବି ଯେଉଁଠି ପଡ଼ିବ ।୧୫୧
ଭାରତର ସ୍ୱାଧୀନତା ମୂଳ ଲକ୍ଷ୍ୟ କରି
ସ୍ୱପକ୍ଷର ଦାବିମାନ କଲେକ ବିସ୍ତର । ୧୫୨
ସୁଫଳ ଫଳିବ ବୋଲି ବିଶ୍ୱାସ ମୋହର
ଏତିକି କହି ନିରତ ହେଲି ମୁଁ ନିକର ।୧୫୩
ଓ୍ୟାଭେଲ ସାହେବ କଲେ ଯେତକ ଘୋଷଣା
ପର୍ବତ ସମାନ ଲାଗିଅଛି ଆଲୋଚନା । ୧୫୪
କେ ବୋଲେ ଏ ଭାଗବଣ୍ଟା ନୁହଇ ଉଚିତ
ସମାନ ସମାନ ଭାଗ ଅନ୍ୟାୟ ଅତ୍ୟନ୍ତ । ୧୫୫
ହିନ୍ଦୁ ମୁସଲମାନ ଭାଗ କମାଇ ସମାନ
ଉଣା ଅଧିକ ସଂଖ୍ୟାରେ ଦୁଇ ଜାତି ପୁଣ ।୧୫୬
ସମ୍ବାଦପତ୍ରକୁ ଫୁଟିଗଲା ପୃଷ୍ଠମାସ
ବିବୃତି ସମାଲୋଚନା ମିଳୁଛି ବିଶେଷ । ୧୫୭
ନାନା ମୁନିଙ୍କର ନାନା ମତ ପରକାଶ
ଠିକଣା କଥା କେ କହୁନାହିଁ ସବିଶେଷ ।୧୫୮
ଶବଦ ସମର ଲାଗିଅଛି ଭାରତରେ
ଭାରତ ନାଟିକା ଅଛି କେବଳ ଭାଗରେ ।୧୫୯
ବଡ଼ଲାଟଙ୍କର ଭୋଳପଣ ଇଚ୍ଛା ଜାଣ
ଅଚଳ ଅବସ୍ଥା ହୋଇଯାଉ ସମାଧାନ । ୧୬୦

ଭାର ଲାଗି ପଡ଼ିଛନ୍ତି ଏ ସମାଧାନରେ
ମନ ଧ୍ୟାନ ଦେଇ ଲାଗିଛନ୍ତି ଏ କାମରେ ।୧୬୧
ଷୋଳପଣ କ୍ଷମତାତ ନାହିଁ ତାଙ୍କ ହାତେ
ଅସଲ ମାଆ କହୁଛି ଅଛଇ ବିଲାତେ । ୧୬୨
ବିଲାତରେ ସରକାର ଯେପରି କହିବେ
ଓ୍ୱାଭେଲ ସେ ଆଦେଶକୁ ଅବଶ୍ୟ ମାନିବେ ।
ସିମଳା ପାହାଡ଼ପରେ ହେବ ବଇଠକ
ସେଠାରେ କଥାପଡ଼ିବ ସବୁ ରୋକଠୋକ ।
ସିମଳା ଅଟଇ ଅତି ଶୀତଳ ପ୍ରଦେଶ
ବଡ଼ଲାଟଙ୍କର ଗ୍ରୀଷ୍ମକାଳର ନିବାସ । ୧୬୫
ଦିଲ୍ଲୀରେ ଯେକାଳେ ହୁଏ ବିଶେଷ ଗରମ
ସିମଳାକୁ ବଡ଼ଲାଟ କରନ୍ତି ଗମନ । ୧୬୬
ସାହେବମାନେ ସହଜେ ଥଣ୍ଡାଦେଶ ଲୋକ
ଗରମ ହେଲେ ଖୋଜନ୍ତି ଥଣ୍ଡାଥାନଯାକ ।୧୬୭
ଗରମ ଶୀତଳ ଥାନ ଅଛି ଭାରତରେ
ଯେ କାଳେ ଯେଉଁଠି ଭଲ ମିଳିବ ଏଠାରେ ।
ରାଜଭୋଗ କରୁଛନ୍ତି ସାହେବ ଏ ଦେଶେ
ଭଲଭଲ ସ୍ଥାନ ବାଛି ରହନ୍ତି ନିବାସେ ।୧୬୯
ଋତୁ ଅନୁସରି ବାସ ବଦଳ କରନ୍ତି
ରାଜଭୋଗ ଅନୁସରି ଆରାମେ ରହନ୍ତି । ୧୭୦
ଦେଶର ମୁଖିଆଲୋକ ସେଠାକୁ ଚଳିଲେ
କେହୁ ଉଡ଼ିଗଲା, କେହୁ ଗଲାକ ରେଳରେ ।
ଗାନ୍ଧି, ନେହେରୁ, ଆଜାଦ, ଜିନା, ଲିଆକତ
ରାଜଗୋପାଳ ଆଚାରି, କୃପାଳିନୀ ସତ । ୧୭୨
ଓଡ଼ିଶାରୁ ହରେକୃଷ୍ଣ ମହତାବ ଗଲେ
ନିମନ୍ତ୍ରିତ ବ୍ୟକ୍ତିମାନେ ଗଲେକ ସକଳେ ।
ସେଠାରେ ହୋଇବ ଘମାଘୋଟିଆ ବିଚାର
ଓ୍ୱାଭେଲଙ୍କ ପ୍ରସ୍ତାବ କମନ୍ତ୍ରିତ କମାକାର ।୧୭୪

ବଡ଼ଲାଟ ଭବନରେ ସକଳେ ଅତିଥି
ତିଥି ବାର ନକ୍ଷତ୍ର ନ ବୁଝି ଯାଇଛନ୍ତି । ୧୭୫
ଅଧିକାଂଶ ଆଜଯାକେ କାରାଗାରେ ଥିଲେ
ହଠାତ୍ ମୁକତି ଲଭି ସିମଳାକୁ ଗଲେ । ୧୭୬
ଆଜ କାରାଗାରେ କାଲି ରାଜ ଦରବାରେ
ପୁ ରୁଷର କ୍ଷଣଦଶା କେ ନବାର ପାରେ ।୧୭୭
ଚରଚିଲ ସେଦିନ ଗରବେ କହିଥିଲେ
ଲଙ୍ଗଳା ଫକିରଟାକୁ ବଳଦେବେ ଭଲେ ।୧୭୮
ଗାନ୍ଧିଜୀ ଏଥିରେ ହେଲେନାହିଁ ବିଚଳିତ
କାଳବେଳ ଉଣ୍ଡି ଦେଲେ ଉତ୍ତର ଯୁକତ ।
ବୋଇଲେ ହେ ଚରଚିଲ ସତ ଯା କହିଲ
ଅଜାଣନ୍ତେ ଏ ଉପାଧି ସିନା ଏବେ ଦେଲ ।
ଉପଯୁକ୍ତ ଉପାଧି ଏ ଅଟଇ ମୋହର
ସହଜ ନୁହଇ ହେବା ଲଙ୍ଗଳା ଫକିର ।୧୮୧
ଏବେ କହୁଅଛି ଏହି ଲଙ୍ଗଳାକୁ ନେଇ
ପୃଥିବୀ ଲୋକଙ୍କ କାମେ ଦିଅହେ ଲଗାଇ ।
ତୁମ୍ଭ ମୋ ଦେଶ ଲୋକଙ୍କ କାମରେ ଲଗାଅ
ବିଶ୍ୱାସ ମୋଠାରେ ତୁମେ କରହେ ନିଶ୍ଚୟ ।
ଏବେ ସେ ଲଙ୍ଗଳା ଫକିରକୁ ଅଛି ଲୋଡ଼ା
ନ ହୋଇବ ବଇଠକ ସେ ଲଙ୍ଗଳା ଛଡ଼ା ।
ଓ୍ୱାଭେଲ ସାହେବଙ୍କର ବହୁ ଅନୁରୋଧ
କରୁଛି ଏଥିରେ କିଛି ମନେନାହିଁ ଦ୍ୱନ୍ଦ ।୧୮୫
ଯେପରି ହେଲେ ମୋ ସଙ୍ଗେ ଥରେ ଦେଖାକର
ତୁମ୍ଭେ ନ ଆସିଲେ କିଛି ନ ହେବ ବିଗୃର ।
ସିମଳାର ବଇଠକେ ଯୋଗ ଦେବାପାଇଁ
ତେଣୁ ଚଳିଲେ ସକଳେ ହରିବୋଲ ଦେଇ ।
ଭାରତ ଜନତା ଦୀର୍ଘନିଶ୍ୱାସ ପକାଇ
ସିମଳା ବଇଠକକୁ ବସିଛନ୍ତି ଗୃହିଁ । ୧୮୮

ସିମଳାରେ ନେତାମାନେ ହେଉଛନ୍ତି ଠୁଳ
ଦେଖାଯାଉ ସେଠାରେ ଫଳିବ କିସ ଫଳ ।
ସିମଳା ଶଇଳ ପରେ ଇଡ଼ନ୍ତି ତଇଳ
ବିଷମ ପଥ ପିଚ୍ଛିକ୍ଳୁଁ ଅତ୍ୟନ୍ତ ପିଚ୍ଛଳ । ୧୯୦
ସବୁରି ପାଦ ଭୂଷିତ ଚର୍ମ ପାଦୁକାରେ
ଖସଡ଼ା ପଥରେ ବଳେ ଖସି ଯାଇପାରେ ।୧୯୧
ପାଦଅଙ୍ଗୁଠିକୁ ଚିପି କେତେ ବା ଚଳିବ
ଅଜାଣନ୍ତେ କେବେଁବେଳେ ବଳେ ଖସିଯିବ ।
ରାଜମାତ ବୁଡ଼ିଆଣୀ ଜାଲକୁ ଆଉଣ
ବସିଛି ଓ୍ୟାଭେଲ ବଡ଼ଲାଟ ହୋଇ ଟାଣ ।୧୯୩
ଚର୍ଚ୍ଚିଲ ଆମେରି ଦେଇଛନ୍ତି ପଦ ଗଦ
ଇନ୍ଦ୍ରଜାଲ ବିଦ୍ୟା ଯାର ପ୍ରଧାନ ସମ୍ପଦ ।୧୯୪
ଏତେବଡ଼ ସମରକୁ ପଦ ଗଦ ବଳେ
ବ୍ରିଟିଶ ଜାତି ସମରେ ଜୟଲାଭ କଲେ ।୧୯୫
ସମାଧାନ ଥୋପ ଦେଇ ଧରିଛି ବଡ଼ଶୀ
ବଳେ ସକଳଙ୍କୁ ନେଉଅଛି ଆକରଷି । ୧୯୬
ଜହରଲାଲ ଦି'ଥର କହିଲେଣି କଥା
ସୂଚାଇ ଦେଉଛି ତାହାଙ୍କର ମନବ୍ୟଥା ।୧୯୭
ପ୍ରଥମେ ବୋଇଲେ ବଡ଼ଲାଟ ଦରବାରେ
ସଂଖ୍ୟାବୃଦ୍ଧି ହେଲେ ଅବା କିସ ହୋଇପାରେ ।
ଦାରିଦ୍ର୍ୟ ଦାସତ୍ୱ ଯେବେ ବିନାଶ ନ ହେବ
ଏ ସମାଧାନରୁ ଅବା କି ଫଳ ମିଳିବ । ୧୯୯
ପୁଣି କହୁଛନ୍ତି ଏବେ ଶୁଣ ମୋ ବଚନ
ଅସ୍ଥାୟୀ ସମାଧାନରେ ବଳାଉଛ ମନ । ୨୦୦
ପୁଲିସ ସଇନ କେତେକାଳ ଭାରତରେ
ଶାସନତନ୍ତ୍ର ଚଳାଉଛନ୍ତି ଅବାଧରେ । ୨୦୧
ଲୋକମାନେ ହୋଇଛନ୍ତି ଏ ଶାସନେ ମୂକ
ଭୋଗ କରୁଛନ୍ତି ଦୁଃଖ ଦାରିଦ୍ର୍ୟ ଅନେକ ।

ଏ ପ୍ରକାର ଶାସନ ତୁରନ୍ତ ରଦ୍ଦହେଲେ
ଭାରତର ଦଶା ଫେରି ଯାଇପାରେ ଭଲେ ।
ଏ ଲକ୍ଷ୍ୟକୁ ଦୃଷ୍ଟି ଦେଇ କରିବା ବିଗ୍ଭର
ଅସ୍ଥାୟୀ ଭାବରେ କରା ଯାଇପାରେ ସ୍ଥିର ।
ନାନା କଳ୍ପନା ଜଳ୍ପନା ନାନା ମୁନିଙ୍କର
ଦେଖାଯାଉ କି ନିଷ୍ପତ୍ତି ହୋଇବ ଏଥର ।୨୦୫
ଗାନ୍ଧି, ଆଜାଦ, ନେହେରୁ ନିଶ୍ଚିନ୍ତ ଏଥିର
କଂଗ୍ରେସ ଦେଇଛି ତିନିଜଣଙ୍କୁ ନିର୍ଭର । ୨୦୬
ଦେଶ କାଳପାତ୍ର ବୁଝି ଯାହା ସେ କରିବେ
ଭାରତବାସୀ ସେ କଥା ଅବଶ୍ୟ ମାନିବେ ।୨୦୭
ଯାବତ ଏ ମହାମାରି ଯୁଦ୍ଧ ଲଗିଥିବ
କଂଗ୍ରେସ କିଛିହିଁ ଆନ୍ଦୋଳନ ନ କରିବ ।୨୦୮
ଏ କଥା ଆଜାଦେ ଦେଇଅଛନ୍ତି ଶୁଣାଇ
କେହି କିଛି କଲେ କଂଗ୍ରେସର ଦୋଷନାହିଁ ।
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
ଜଗବନ୍ଧୁ ବୋଲେ ପ୍ରଭୁଙ୍କର ଯା ଉଚିତ ।୨୧୦

ଇତି ଶ୍ରୀ ଭାରତ-ଚରିତାମୃତେ ବର୍ତ୍ତମାନ ରାଜନୀତି **ପରିସ୍ଥିତି** ବର୍ଣ୍ଣନେ
ଏକଶତ ସପ୍ତଦଶ ଅଧ୍ୟାୟଃ ।



# ଏକଶତ ଅଷ୍ଟାଦଶ ଅଧ୍ୟାୟ

ଗଉର ଉବାଚ

ସିମଳା ପାହାଡ଼େ ବଇଠକ ବସିଥିଲା
ବହୁଦିନ ଧରି ନାନା କଥାବାର୍ତ୍ତା ହେଲା । ୧
ଭାରତର ଯେତେ ଯେତେ ବଡ଼ ବଡ଼ ମୁଣ୍ଡ
ସିମଳା ପାହାଡ଼େ ପରା ହୋଇଥିଲେ ରୁଣ୍ଡ । ୨

ଭାରତରୁ ବିଲାତ ସରିକି କଥା ଗଲା
ଆମେରିକା ଚର୍ଚ୍ଚିଲ ସଙ୍ଗେ ପରାମର୍ଶ ହେଲା ! ୩
ମହାଘୋର ଆଲୋଚନା ହୋଇଲା ଭାରତେ
ଖବରକାଗଜମାନ ଲେଖିଲେ ସତତେ । ୪
ଶେଷ ଫଳ କିସ ହେଲା ଜଣାଗଲା ନାହିଁ
ଆପଣଙ୍କୁ ଜଣାଥିବ କହନ୍ତୁ ବୁଝାଇ । ୫
ରହିଁ ବସିଅଛୁଁ ଆମ୍ଭେ କି ଫଳ ଫଳିବ
ସେ ଫଳ ଖାଇଲେଁ ଆମ୍ଭ ଉଦର ପୂରିବ । ୬

ଜଗା ଉବାଚ

ଆଚ୍ଛା କଥାଏ ପୁଚ୍ଛିଲ ଗଉର ଏଥର
ଅତି ବଡ଼ ବୃକ୍ଷେ ଫଳେ ଅତି ସାନ ଫଳ । ୭
ପ୍ରକାଣ୍ଡ ବଟ ବୃକ୍ଷର ଫଳକୁ ନିରେଖ
କେତେବଡ଼ ବୃକ୍ଷେ କେତେ ଫଳ ନିରେଖି ପରଖ । ୮
ଯେଉଁଠାରେ ହୁଅଇ ବହୁତ ଆଡ଼ମ୍ବର
ଲଘୁକ୍ରିୟା ହୁଏ ମାତ୍ର ଅଛଇ ନିକର । ୯
ସେହିପରି ଏତେବଡ଼ ବଇଠକ ହେଲା
ବଡ ବଡ଼ ଲୋକଙ୍କର ବିଚାର ଲାଗିଲା । ୧୦
ଗ୍ରହଣ ଦିନ ଆରମ୍ଭ ହେଲା ବଇଠକ
ଗ୍ରହଣ ଖଣ୍ଡିଆ ହେଲା ଆଲୋଚନାଯାକ । ୧୧
ଅବଶେଷେ ବଡ଼ଲାଟ କରିଦେଲେ ନାହିଁ
ସକଳ ପ୍ରକାର ଦୋଷ ନେଲେକ ମୁଣ୍ଡାଇ ।୧୨
କାହା ଦୋଷେ ବଇଠକ ହୋଇଲା ବିଫଳ
ସେ କଥା ବିଚାର କଲେ ନାହିଁ କିଛି ଫଳ ।୧୩
ଜନା ରାଜି ନ ହେବାରୁ କଥା ଭାଙ୍ଗିଗଲା
ଯଥା ପୂର୍ବ ତଥା ପର ଶାସନ ଚଳିଲା । ୧୪
ବହ୍ୱାରମ୍ଭ ଲଘୁକ୍ରିୟା ହେଲା ଏଥୁ ଫଳ
ହିନ୍ଦୁ ମୁସଲମାନଙ୍କ ହେଲାନାହିଁ ମେଳ । ୧୫

କଂଗ୍ରେସ ପକ୍ଷରୁ ନାମ ଦିଆ ଯାଇଥିଲା
ସକଳ ସମ୍ପ୍ରଦାୟରୁ ଲୋକ ବଛାଗଲା । ୧୬
ଜିନା ବୋଇଲେ ଏକଥା କର ବିଚାର
ମୁସଲମାନ ବାଛିବା ତାଙ୍କ ଅଧିକାର । ୧୭
ସେ ଯେଉଁ ମୁସଲମାନ ନାମ ବାଛିଦେବେ
ସେହିମାନେ କେବଳ ସେ ଘନ୍ତାରେ ପଶିବେ ।
ଏ କଥା ନ ହେଲେ ନାମ ତାଲିକା ନ ଦେବେ
ଶାସନ ସଭା ଗଢ଼ାରେ ଅଲଗା ରହିବେ । ୧୯
ଜିନାଙ୍କର ଜିଦ ଯୋଗୁ ଏ କଥା ଭାଙ୍ଗିଲା
ବଡ଼ଲାଟଙ୍କର ଆଉ ବଳ ନ ପାଇଲା । ୨୦
କଂଗ୍ରେସ ଯେପରି ଏ ସଭାରେ କାମ କଲା
ବଡ଼ଲାଟଙ୍କ ଆଖିକି ପସନ୍ଦ ଦିଶିଲା । ୨୧
ବଡ଼ଲାଟ ଫିଟାଇ କହିଲେ ଏହି ବାଣୀ
ଜିନାଙ୍କର ଦୋଷ ଗୁଣ କିଛି ନ ବଖାଣି । ୨୨
ମୁଣ୍ଡପାତି ସବୁଦୋଷ ନେଲେ ନିଜ ମୁଣ୍ଡେ
ଫିଟାଇ କହିଲେ ଏହି ମରମଟରେ ଦାଣ୍ଡେ । ୨୩
ଏହିପରି ଏ ଉଷା ଉଜୁଁଆ ହୋଇଗଲା
ଆଶାଥିଲା ବଡ଼ ଫଳ ଫସର ଫାଟିଲା । ୨୪
ମୁହଁ ପାଣି ମୁହେଁ ମାରି ଫେରିଲେ ସକଳ
ଭୁଚ୍ଛାଟାକୁ ଲଗିଲା ବହୁତ କୋଳାହଳ । ୨୫
କିଏ କେତେ ଆଶା ପୋଷି ହେଉଥିଲେ ଖୁସି
ବିଫଳ ସମ୍ବାଦ ସବୁ ଆଶା ଦେଲା ନାଶି । ୨୬
କେବଳ ଲଭ ମଧ୍ୟରେ ଏତିକି ହୋଇଲା
ଅନେକ ଅଟକ ବନ୍ଦୀ ଶାଙ୍କୋଳ ଫିଟିଲା । ୨୭
ଭାରତେ ବିଲାତେ କିଏ କେତେ ପରକାର
ସିମଳା ବଇଠକକୁ କରନ୍ତି ବିଚାର । ୨୮
କିଏ ସପକ୍ଷରେ କିଏ ବିପକ୍ଷରେ କହେ
କିଏ ବଡ଼ଲାଟ ମୁଣ୍ଡେ ଦୋଷ ଢାଳଦିଏ । ୨୯

କେ ବୋଲେ ବିଲାତେ ନଆ ଯାଉଥିଲା ଭୋଟ
ତେଣୁ ଭାରତରେ ଲାଗିଥିଲା ଏହା ନାଟ ।୩୦
ବିଲାତର ଭୋଟ ନାଟ ହୋଇଲାକ ଶେଷ
ଜାତି ଦଳଙ୍କର ଏବେ ହେଲା ସର୍ବନାଶ । ୩୧
ଚର୍ଚ୍ଚିଲ୍ ଆମେରି ଏହା ଜାତିଦଳ ଲୋକ
ଭୋଟ ସମରରେ ହାରି ହୋଇଲେକ ମୂକ ।୩୨
ଆମେରି ଏକାବେଳକେ କାଟ ଖାଇଗଲେ
ଚରଚିଲ୍ ଜଣି ମନ୍ତ୍ରୀପଦ ତ୍ୟାଗକଲେ । ୩୩
ଶ୍ରମିକଦଳ ସବୁଠୁଁ ହୋଇଲେ ଅଧିକ
ତ୍ରିଶ ସତର ସଭ୍ୟ ସଂଖ୍ୟା ହୋଇଲେକ ।୩୪
ପାର୍ଲିଆମେଣ୍ଟ ସଭାର ସଭ୍ୟ ସଂଖ୍ୟା ଜାଣ
ଛଅଶତ ଚାଳିଶ ନିର୍ଦ୍ଦିଷ୍ଟ ସଂଖ୍ୟା ପୁଣ । ୩୫
ଶ୍ରମିକଦଳ ଏଥର ହେବ ସରକାର
ଆଟେଲି ପ୍ରଧାନ ମନ୍ତ୍ରୀ ହେଲେକ ନିକର ।୩୬
ସମ୍ରାଟ ତାହାଙ୍କୁ ଡାକ ଶାଢ଼ୀ ବାନ୍ଧଦେଲେ
ସରକାର ଗଢ଼ବୋଲି ତାହାଙ୍କୁ କହିଲେ । ୩୭
ବିଲାତ ସରକାରରେ ଅଦଳ ବଦଳ
ଏକଥାକୁ ନେଇ ପୁଣି ଲାଗିଛି ଚହଳ । ୩୮
କେ ବୋଲେ ଶ୍ରମିକ ଦଳ ହେଲେ ସରକାର
ଭାରତର ହୋଇପାରେ କିଛି ଉପକାର । ୩୯
ବିଲାତ ସରକାରରେ ଅଛୁ ଯେତେ ଦଳ
ସକଳେ ମିଶି ଚଳାନ୍ତି ସେ ଶାସନ କଳ । ୪୦
ମଇଁଷି ଶିଙ୍ଗ ବାହାରେ ଦେଖିବାକୁ ସଂଠ!
ଆନ ସଙ୍ଗେ ଲଢ଼ିଲାବେଳକୁ ହୁଏ ଗୋଠ । ୪୧
ଭାରତ ବ୍ରିଟିଶ ସାମ୍ରାଜ୍ୟର ମଥାମଣି
ତଥାପି ତ ପରାଜିତ ରାଜ୍ୟ ତାକୁ ଗଣି । ୪୨
ସକଳ ଦଳର ସୃଷ୍ଟି ତା ପ୍ରତି ସମାନ
ଏଥିଲାଗି ଦଳ ମଧ୍ୟେ ନାହିଁ ବଡ଼ ସାନ । ୪୩

ଥରେ ତ ଶ୍ରମିକଦଳ ଥିଲେ ସରକାର
ଫେରିଲା ନାହିଁ ତ ଦଶା କିଛି ଭାରତର । ୪୪
ପୂର୍ବ ଅନୁଭୂତି ହେତୁ ଚିନ୍ତାଶୀଳ ଲୋକ
ମତାମତ ଦେବାପାଇଁ ନୁହନ୍ତି ଇଚ୍ଛୁକ । ୪୫
ଏସବୁ କ୍ଷେତ୍ରରେ ଚୁନଚାପ ହେବା ଭଲ
ଦେଖ ଆଖର ସରିକି କି ହେଉଛି ଫଳ । ୪୬
ନଈ ନ ଦେଖି ଲଙ୍ଗଳା ହେବା ଅନୁଚିତ
ଦେଖାଯାଉ ଫଳାଫଳ କି ହେବ ନିଶ୍ଚିତ ।୪୭
ବେଲଫଳ ପାଚିଲେ କାକର ଲାଭ କିସ
ଥଣ୍ଟ ମାରି ମାରି ଶେଷେ ହୁଅଇ ନିରାଶ । ୪୮
ଶ୍ରମିକଦଳ ହୋଇଲେ ସିନା ସରକାର
ଦେଖାଯାଉ କି ଲାଭ ହୋଇବ ଭାରତର ।୪୯
ଜାଠଦଳ କାହାକୁ କହନ୍ତି ଏବେ ଶୁଣ
ଇଂଲଣ୍ଡର ଧନୀ ଜମିଦାର ବୋଲି ଜାଣ । ୫୦
ଚିରଦିନ ଥିଲେ ଏହି ଜାଠଦଳ ଲୋକ
ଅଣ୍ଟା ଭିଡ଼ି ରଖିଦେଲେ ବିଲାତର ଟେକ । ୫୧
ମହାଘୋର ସମର ନଉକା ମଙ୍ଗ ଧରି
ବିଲାତବାସୀଙ୍କି ସେହୁ କରିଦେଲେ ପାରି ।୫୨
ବୃଦ୍ଧ ବୟସରେ ଯୁବକର ମନବଳ
ଦଉଡ଼ଧାପଡ଼ କରି ଚଳାଇଲେ କଳ । ୫୩
ଦେଶର ମାନ ମହତ୍ତ୍ୱ ରକ୍ଷା କରିଦେଲେ
ଇଂରେଜ ଜାତି ସମରେ ଜୟଲାଭ କଲେ ।୫୪
ଶାସନକଳରେ ସେହୁ ପାଟମନ୍ତ୍ରୀ ଥିଲେ
ଇଂରେଜ ଲୋକ ତାଙ୍କୁ କି ପୁରସ୍କାର ଦେଲେ ।
ସମ୍ରାଟ ତାହାଙ୍କୁ ଶ୍ରେଷ୍ଠ ଉପାଧି ଯାଚିଲେ
ଗ୍ରହଣ କରିବେ ନାହିଁ ବୋଲି ସେ ବୋଇଲେ ।
ତାଙ୍କ ଦଳ ଯେତେ ଲୋକ ସମସ୍ତେ ହାରିଲେ
ଇଂରେଜ ଲୋକ ତାହାଙ୍କୁ ପସନ୍ଦ ନ କଲେ ।

ଚରଚିଲଙ୍କ ଦଳର ସଂଖ୍ୟା ଊଣା ହେଲା
ଶ୍ରମିକଦଳ ଅଧିକ ସଂଖ୍ୟାରେ ଜିଣିଲା । ୫୮
ତେଣୁ ଚରଚିଲ ପ୍ରଧାନମନ୍ତ୍ରୀ ହେଲେନାହିଁ
ମୁହଁ ପାଣି ମୁହେଁ ମାରି ରହିଲେକ ସେହି ।୫୯
ପୁରୁଷର ଷଣଦଶା ବୋଲି ଅଛି କଥା
କେହି ଏ କଥାକୁ କରି ନ ପାରେ ଅନ୍ୟଥା ।୬୦
ବ୍ରିଟିଶ ସାମ୍ରାଜ୍ୟ ପ୍ରଧାନମନ୍ତ୍ରୀ କାଲି ଥିଲେ
ତାଙ୍କ କ୍ଷମତା ପ୍ରତାପ କହିଲେ ନ ସରେ ।୬୧
ଗର୍ବ ଦମ୍ଭ ଅହଙ୍କାରେ ହୋଇ ଜରଜର
କହୁଥିଲେ ଗାନ୍ଧି ବୁଢ଼ା ଉଲଗ୍ନ ଫକିର । ୬୨
ପଲକ ନ ପଡୁ କାହିଁ ଗଲା ସେ ପ୍ରତାପ
ସବୁ ଦମ୍ଭ ଅହଂକାର ହୋଇଗଲା ଲୋପ । ୬୩
କ୍ଷମତା ପାଇଲେ ଲୋକ ହୋଇଯାଏ ଅନ୍ଧ
ବୁଝି ନ ପାରେ ଦିନେ ତ ପଡ଼ିବ ପ୍ରମାଦ ।୬୪
ମମତା ଛୁରୀର ଅଛି ଦୁଇଁପାଖେ ଧାର
ଧରି ନ ଜାଣିଲେ ବେକ କଟିବ ନିଜର । ୬୫
ସମଦରଶୀ ଯେ ଲୋକ ହୋଇ ନ ପାରିବ
ସେ ଛୁରି ଧରିବାପାଇଁ ସମର୍ଥ ନ ହେବ । ୬୬
କ୍ଷମତା ବଳରେ ଯେହୁ ପର ମନ୍ଦ ପାଞ୍ଚେ
ନିଜର ମରଣ ଅଉଷଧି ସେହୁ ସଞ୍ଚେ । ୬୭
ଅଧିକାରକୁ ଧିକାର ଯେବେ କରେ ମନ୍ଦ
ମନ୍ଦରୁ ଉପୁଜେ ନାନା ପରକାର ଦ୍ୱନ୍ଦ । ୬୮
ନାନାଦି ଛନ୍ଦ କପଟ କୂଟ ତର୍କ ବାଦ
ଜନମେ ତହିଁରୁ ସ୍ୱାର୍ଥମନେ ହେଲେ ଅନ୍ଧ ।୬୯
ଶ୍ରମିକଦଳର ଲୋକେ ପାଇ ଅଧିକାର
ସାମ୍ରାଜ୍ୟ ରକ୍ଷା ଦିଗରୁ କଲେକ ବିଚାର । ୭୦
ବିଲାତର ଶ୍ରମଲବ୍ଧ ଧନ ହୁଏ ଯେତେ
ଢଳା ହେଉଅଛି ସବୁ ଆମରି ଭାରତେ । ୭୧

ଭାରତ ଦାବି କରୁଛି ହୋଇବ ସ୍ୱାଧୀନ
ବିଶ୍ବରେ କି ଭଲ ହେବ ଶ୍ରମିକଙ୍କ ମନ । ୭୨
ଭାରତରେ ମନ୍ତ୍ରୀ ହେଲେ ପେଥିକ ଲରେନ୍ସ
ଶୁଣାଇଲେ ଆଶାବାଣୀ ଦେଇଣ ଆଶ୍ୱାସ ।୭୩
ଭାରତ ଇଂଲଣ୍ଡ ବର୍ମା ଏହି ତିନି ଦେଶ
ତିନି ଭାଗୀଦାର ହୋଇ ରହିବା ଅବଶ୍ୟ ।୭୪
ଭିନ୍ନାଭିନ୍ନ ନ କରିବା ଆମର ଧରମ
ଏହି ମରମେ କରିବୁ ସକଳ କରମ । ୭୫
ଏହିପରି ଇଚ୍ଛା କରିଅଛୁଁ ମନେ ମନେ
ଯଥାସାଧ୍ୟ ଏହି ମତ ରହିବ ଶାସନେ । ୭୬
ସବୁ ତୋର ଖଣ୍ଡଗୋଟି ନ ଛୁଇଁବୁ ମୋର
ଏହିପରି ଭାରତ ହେବ କି ଭାଗୀଦାର । ୭୭
ଘରେ ନ ପଶୁଣୁ ଗୃହ ବାଜିବା ମତରେ
ସଭା ସମିତି ସକଳ ମନା ଭାରତରେ । ୭୮
ଭାଗୀଦାର ଭାରତର ନାହିଁକି ଶକତି
ପାଟି ଫିଟାଇ କହିବ ତା ଦୁଃଖ ଦୁର୍ଗତି । ୭୯
ବୃକ୍ଷ ପରି ସକଳ ସହିବ ତା ଧରମ
ତୃଣରୁ ସୁନୀଚ ହୋଇ କରିବ କରମ । ୮୦
ଏ ମତରେ ଚଳୁଥିଲେ ନାହିଁ କିଛି ଖତି
ଅନ୍ୟଥା ପୁଲିସ ପଛେ ଡଣ୍ଡ ଥିବ ନିତି । ୮୧
ଶ୍ରମିକଦଳର ଜୟ ଦୁନ୍ଦୁଭି ବାଜିଲା
ବିଲାତରେ ଜୟ ଜୟ ନିନାଦ ଉଠିଲା । ୮୨
ଖୁନ୍ଦୁଁ ଖୁନ୍ଦୁଁ ଜାପାନ ସମର ଶେଷ ହେଲା
ହାରିବି ଜାଣିଣ ଆତ୍ମସମର୍ପଣ କଲା । ୮୩
ମିକାଡ଼ୋ ଅଟଇ ଜାପାନର ରାଜା ନାମ
ପରଜା ମଣନ୍ତି ତାଙ୍କୁ ଦେବତା ସମାନ । ୮୪
ଅଖଣ୍ଡ ରାଜତ୍ୱ ତାର ଜାପାନ ଦେଶରେ
କାହାର ଛାଇ ନ ପଡ଼େ ତାହାଙ୍କ ଉପରେ ।୮୫

ଜାପାନ ସ୍ୱାଧୀନ ରାଜ୍ୟ ଏସିଆ ଦେଶରେ
ଅଖଣ୍ଡ ପ୍ରଭୁତ୍ୱ ଥିଲା ପରଜା ଉପରେ । ୮୬
ବ୍ରହ୍ମଦେଶ ନେଇଥିଲା କାଲି ଯେ ଜାପାନ
ଅତି ଦମ୍ଭ ଦର୍ପଭରେ କରୁଥିଲା ରଣ । ୮୭
ମହାଘୋର ରଣ କାଲି କରୁଥିଲା ଯେହୁ
ଭାରତ ଉପରେ କରୁଥିଲା ବଡ ଦାଉ । ୮୮
ଜାପାନ ଭୟରେ ସ୍ତ୍ରସ୍ତ ଥିଲାକ ଭାରତ
ଲଙ୍ଘି ଆସିଥିଲା କେତେ ବନ ପରବତ । ୮୯
ଉଡାଜାହାଜରେ ଚଢ଼ି କାଳେ ଆସିପାରେ
ଅଗ୍ନିଗୁଳା ପକାଇ ଜୀବନ ନେଇପାରେ । ୯୦
ଏ ଦାଉରୁ ରକ୍ଷା ହେବାପାଇଁ କଉଶଳ
ନାନା ପରକାର କଲେ ଆସି ସରକାର । ୯୧
ଏବେ ସେହି ଜାପାନର କି ଦଶା ପଡ଼ିଲା
ରେଣୁକା ଅସ୍ତ୍ର ଭୟରେ ଶିର ନୁଆଇଲା । ୯୨
ବୋଇଲା ହେ ମିତ୍ରପକ୍ଷ ନେଲି ମୁଁ ଶରଣ
ଆଉ ଅସ୍ତ୍ର ନ ଧରିବ ସମ୍ଭିର ଏ ରଣ । ୯୩
ଚୁକ୍ତିପତ୍ର ଲେଖିଦେଲା ଏହି ମରମରେ
ନାମ ମାତ୍ର ରାଜା ତାର ରହିବ ଦେଶରେ ।୯୪
ଇଂରେଜଙ୍କ ସେନାପତି ଯାକ୍‌ଆରଥର
ତାହାଙ୍କ ହୁକୁମ ମାନି ଚଳିବ ନକର । ୯୫
ଏପରି ସନ୍ଧି କରନ୍ତେ ଯୁଦ୍ଧ ହେଲା ଶେଷ
ଧନ୍ୟ ଜଗନ୍ନାଥ ଧନ୍ୟ କେ ବୁଝିବ କିସ ।୯୬
ଦୁବଳୁ କରୁଛ ଦାରୁ ଦାରୁ କର ଦୁବ
ଆଜ ରାଜା କାଲିକି କେ ଫକିର ହୋଇବ ।୯୭
ପଲକ ନ ପଡୁ ଦଶା ହୋଇଯାଏ ଭିନ୍ନ
ସ୍ୱପନ ପରାଏ ଲାଗେ ଏ ବିଭବମାନ । ୯୮
କାହା ଭାଗ୍ୟେ କି ଲହିଛୁ କିଏ କହିପାରେ
ବୃଥା ଅହଂକାରେ ଲୋକ ଫେରେ ଅନ୍ଧକାରେ ।

ଏ ମହାଘୋର ସମରୁ ହେଲା କେତେ ଶିକ୍ଷା
ଜାପାନ ସ୍ୱାଧୀନ ରାଜ୍ୟ କଲା କୃପାଭିକ୍ଷା ।୧୦୦
ପୃଥିବୀ ସମର ଏବେ ହୋଇଲାକ ଶେଷ
କେତେକେତେ ରାଜ୍ୟ ଦେଶ ହୋଇଗଲା ଧ୍ୱଂସ ।
ଏ ଯେଉଁ ରେଣୁକା ଅସ୍ତ୍ର ଏବେ ବାହାରିଲା
ଆଜଯାକେ କଥା ତାର କେ ଶୁଣି ନ ଥିଲା ।
ମହାପ୍ରଳୟ ଘଟାଇ ପାରିବା ଶକତ
ନାମ ଗୁଣ ଶୁଣି ମନେ ଉପୁଜଇ ଖ୍ୟାତ । ୧୦୩
ଯେଉଁ ସ୍ଥାନରେ ଏ ଗୁଳା ପଡ଼ିବ ସେ କାଳେ
ଜନମାନବ କେ ତହିଁ ନ ରହିବେ ତଳେ ।୧୦୪
ପଶୁ ପକ୍ଷୀ କୀଟ ବୃକ୍ଷ ଲତା ଆଦି ଯେତେ
ସେ ଅଞ୍ଚଳେ କେହି ନ ବଞ୍ଚିବେ କଦାଚିତେ ।
ପଡ଼ିବା ଥାନରୁ ପଞ୍ଚକ୍ରୋଶ ଆନ୍ତାନ୍ତରେ
ସବୁ ଜଳି ପୋଡ଼ି ଭସ୍ମହେବ ନିଶ୍ଚିତରେ ।୧୦୬
ବ୍ରଜସମ ଶବଦ କରିବ ସେ କାଳରେ
ପଚାଶ କୋଶ ଦୂରକୁ ଶୁଭିବ ବଧିରେ ।୧୦୭
ଭୂମିକମ୍ପ ହେବାପରି ହେବ ତେତେବେଳେ
ମେଦିନୀ କମ୍ପିବ ଘୋର ଘର୍ଘର ନାଦରେ ।୧୦୮
ଜାପାନରେ ଗୋଟିଏ ସହର ପରେ ପଡ଼ି
ସାଢ଼େ ତିନିଲକ୍ଷ ଲୋକ ହେଲା ପୋଡ଼ପାଡ଼ି ।
ଏ ଅସ୍ତ୍ର ଯେବେବା ପ୍ରଥମରୁ ମିଳିଥାନ୍ତା
ଛଅ ବରଷର ଯୁଦ୍ଧ ଛ'ଦିନେ ସରନ୍ତା । ୧୧୦
ଜର୍ମାନୀରେ ଏହିପରି ଅସ୍ତ୍ର ହେଉଥିଲା
ଜନରବ ତେତେବେଳେ ଶୁଣା ଯାଉଥିଲା ।
ବର୍ତ୍ତମାନ ଦେଖାଗଲା ଆମ ସରକାର
ଆମେରିକା ମିଳିମିଶି କଲେ ବ୍ୟବହାର ।୧୧୨
ଏହା ଦେଖି ଜାପାନର ବୁଦ୍ଧି ହଜିଗଲା
ଉପାୟ ନ ଦେଖି ବଳେ ଶରଣ ପଶିଲା ।୧୧୩

ମହାଘୋର ସମରର ହେଲା ଅବସାନ
ଉଶ୍ୱାସ ହୋଇଲା ଧରା ସାରି ରକ୍ତ ସ୍ନାନ ।୧୧୪
ଛଅ ବରଷ ଲଗିଲା ଏ ଘୋର ସମର
କୋଟି କୋଟି ନର ନାଶି ଗଲେ ଯମପୁର ।
ଆପ୍ତେ କ୍ଷତ ପ୍ରାଣେ ପୀଡ଼ା ଲୋକେ ଭୋଗକଲେ
ଅନ୍ନ ବସ୍ତ୍ର ନ ପାଇଣ ହଇରାଣ ହେଲେ ।୧୧୬
ପେଟେ ଓଦାକନା ଦେଇ ବଞ୍ଚିଲେ କେତେକ
ଅନ୍ନ ନପାଇଣ ମଲେ କେତେ କେତେ ଲୋକ ।
କେତେ କେତେ ରାଜା ରାଜ୍ୟ ହୋଇଗଲା ଲୋପ
ସେ ରାଜ୍ୟର ଲୋକେ ଦୁଃଖ ଭୋଗିଲେ ଅମାପ ।
ନାମ ମାତ୍ର ରାଜ୍ୟ ରାଜା ରହିଲେ କେବଳ
ଚୂନା ହୋଇଗଲା ସବୁ ଧନ ଜନ ବଳ ।୧୧୯
ଯା ହେବାର ଥିଲା ଏବେ ତାହା ତ ଘଟିଲା
ଶାନ୍ତ ଶାନ୍ତ ବୋଲି ଶାନ୍ତ ଶବଦ ଶୁଭିଲା ।୧୨୦
ବିଲାତରେ ନୂଆ ସରକାର ଗଢାହେଲା
ପାର୍ଲିଆମେଣ୍ଟରେ ନୂଆ ଅଧ୍ୟାୟ ଫିଟିଲା ।୧୨୧
ବ୍ରିଟିଶ ସମ୍ରାଟ ଆସି ଦ୍ୱାର ଫିଟାଇଲେ
ସମ୍ରାଟଙ୍କ ଆଜ୍ଞାବାଣୀ ପୁଣି ଶୁଣାଇଲେ ।୧୨୨
ଶୁଣ ଶୁଣ ସଭାଜନ ଦେଇ ମନ କର୍ଣ୍ଣ
ନୂଆ ସରକାର କରିବ କି କାର୍ଯ୍ୟମାନ ।୧୨୩
ବିଲାତ ବିଷୟ ନେଇ କହିଲେ ସମ୍ରାଟ
ଭାରତ ପାଇଁ ବିପଦ କହିଲେ ନିରାଟ । ୧୨୪
ପୂର୍ବରୁ ଭାରତ ପାଇଁ ଯାହା କହିଥିଲୁଁ
ଏବେ ସେହି କଥାମାନ କାଏମ ରଖିଲୁଁ ।୧୨୫
ଭିନ୍ନ ଭିନ୍ନ ନେତାମାନେ ଏକମତ ହେଲେ
ଭାରତ ସ୍ୱରାଜ୍ୟ ପାଇପାରେ କାଳବେଳେ ।
ଏ କାର୍ଯ୍ୟକ୍ରମେ କିପରି ହେବ ଅଗ୍ରସର
ତହିଁପାଇଁ ଚେଷ୍ଟା କରାଯିବ ନିରନ୍ତର । ୧୨୭

ସୁଇନା ସଙ୍ଗେ ରୁଷିଆ ସନ୍ଧି କରିଗଲା
ଦୁଇଙ୍କ ବନ୍ଧୁତା ମେଣ୍ଟ ଠିକଣା ରହିଲା ।୧୨୮
ଭାରତର ବଡ଼ଲାଟ ହୋଇ ମହାଖୁସି
ଭାରତରେ ବଜାଇଲେ ବିଜୟ ବଇଁଶୀ । ୧୨୯
ବୋଇଲେ ସରିଲା ଯୁଦ୍ଧ ଶାନ୍ତି ଆସିଗଲା
ଏହାବୋଲି ସକଳ କି ସମାଧାନ ହେଲା ।୧୩୦
ସବୁ ସମାଧାନ ହେବା ନୁହଇ ସହଜ
ସମସ୍ତ ଲଗିବ ହେବାପାଇଁ ଏବୁ କାର୍ଯ୍ୟ ।୧୩୧
ଜାପାନ ସମ୍ରାଟ ଏକ ବାର୍ତ୍ତା ଶୁଣାଇଲେ
କାହିଁପାଇଁ ସେହୁ ଆତ୍ମସମର୍ପଣ କଲେ । ୧୩୨
ବୋଇଲେ କାଳ ଭାଗ୍ୟ ତ ଅତି ବଳଆର
ହେବାକୁ ପଡ଼ିଲା ତା ଆଗରେ ନତଶିର ।୧୩୩
ମହାଘୋର ସର୍ବଗ୍ରାସୀ ସମ ପରମାଣୁ
ଆଗ୍ନେୟାସ୍ତ୍ର ବାହାରିଲା କାହୁଁ ଶୁଣୁ ଶୁଣୁ ।୧୩୪
'ତାହାଲାଗି ପ୍ରତିଅସ୍ତ୍ର ନାହିଁକ ଆମ୍ଭର
ସମୂଳେ ଜାପାନ ହୋଇପାରେ ଛାରଖାର ।
ଅକାରଣ ଲୋକକ୍ଷୟ କମା କରାଇବ
ବର୍ତ୍ତମାନ ପାଇଁ ଏଥୁଁ ଅବସର ନେବ । ୧୩୬
ରହୁ ମୋ ଜାପାନ ରହିଯାନ୍ତୁ ପ୍ରଜାଗଣ
ଯାହାହେବ ହେଉପଛେ ରହୁ ଏ ଜୀବନ ।୧୩୭
ଭାଗ୍ୟରବି ଅନୁକୂଳ ନୁହେଁ ବର୍ତ୍ତମାନ
ତେଣୁ ସନ୍ଧି ସର୍ତ୍ତକୁ କଲି ମୁଁ ଗ୍ରହଣ । ୧୩୮
ଜଗତକୁ ଏ ବାରତା ଦେଇ ହଟିଗଲେ
ଜପାନ ଆଦର ନିଜ ରାଜ୍ୟରେ ବସିଲେ ।୧୩୯
ଯାବକ ଯେ ଗୁରୁଖଣ୍ଡି ଦ୍ୱୀପ ଥିଲା ତାର
ତାହାର ଉପରେ ତାର ଥିବ ଅଧିକାର । ୧୪୦
ଏଣୁତେଣୁ ଯେତେକ ସେ ମାଡ଼ି ବସିଥିଲା
ସେ ସବୁ ମିତ୍ର ଶକ୍ତିଙ୍କ ଅଧିକାରେ ଗଲା ।୧୪୧

ମିତ୍ର ଶକ୍ତିର ସର୍ବୋଚ୍ଚ ବଡ଼ ସେନାପତି
ତାଙ୍କ ଆଦେଶକୁ ମାନି ଚଳିବ ସେ ନିତି ।୧୪୨
ଜାପାନ ସଇନ ହାତେ ଅସ୍ତ୍ର ନ ରହିବ
ସ୍ୱପକ୍ଷ ବନ୍ଦୀମାନଙ୍କୁ ମୁକ୍ତ କରିଦେବ । ୧୪୩
ଜାପାନର ଯୁଦ୍ଧ ଶିଳ୍ପ କାରଖାନା ଯେତେ
ସେ ସବୁ ଧ୍ୱଂସ ହୋଇବ ମିତ୍ରପକ୍ଷ ହାତେ ।୧୪୪
ନୂଆ ମନ୍ତ୍ରି ନିଯୁକ୍ତ ନ ହେବାଯାଏ ପୁଣ
ମିତ୍ରପକ୍ଷ ହାତରେ ରଖିବେ କେତେସ୍ଥାନ ।୧୪୫
ପୋଟ୍‌ସଡ଼ାମରେ ଯେଉଁ ବଇଠକ ହେଲା
ସେଠାରେ ଏସବୁ କଥା ଠିକଣା ହୋଇଲା ।
ଜାପାନ ସେ ସବୁ ସରତକୁ ମାନିନେଲା
ଏ ଭୟାବହ ଯୁଦ୍ଧରୁ ଅପସରି ଗଲା । ୧୦୭
ଜାପାନ ସଇନ ଯେତେ ବନ୍ଦୀ ହୋଇଥିଲେ
ଏ ଖବର ଶୁଣି ସର୍ବେ ନିରାନନ୍ଦ ହେଲେ ।୧୪୮
ଗଛ କାଟିଲାର ପରି ହେଲା ତାଙ୍କ ଦଶା
ହେ ହୋ ରଡ଼ି ଛାଡ଼ିକରି ଉଡ଼ିଗଲା ହଂସା ।୧୪୯
ଭାଗ୍ୟ ପ୍ରତିକୂଳ ହେଲେ କାନ୍ଦିଲେ କି ହେବ
ଯା ହେବାର ଥାଏ ତାହା ଘଟାଏ ଦଇବ ।୧୫୦
ଏ ସମରେ ଶକ୍ତି କ୍ଷୟ ହୋଇଲା ବହୁତ
ବହୁତ ସ୍ୱାଧୀନ ରାଜ୍ୟ ହେଲେ ପରାଜିତ ।୧୫୧
ଇଂଗଲଣ୍ଡ ଆମେରିକା ରୁଷିଆ ଜଣିଲେ
ଏ ତିନି ଶକତି ମିତ୍ରପକ୍ଷ ହୋଇଥିଲେ । ୧୫୨
ବଡ଼ବଡ଼ ହୋଇ ତିନି ଶକତି ରହିଲେ
ଏହାଙ୍କର ମିତ୍ରଭାବ ଥିଲା କହୁଥିଲେ । ୧୫୩
ଶତ୍ରୁକୁ ଜିଣିବା ପାଇଁ ମିତ୍ରତା ସମ୍ବନ୍ଧ
ଭିତରେ ଭିତରେ ଥାଏ ଛକାଛକି ସନ୍ଧି ।୧୫୪
ବଇରୀଏ ନାଶଗଲେ ଏବେ କିସ ହେବ
କପଟ ବା ଧରାପରେ ଶାନ୍ତି ବିରାଜିବ । ୧୫୫

ପୋଟସଡ଼ାମ ନଗରେ ହେଲା ବଇଠକ
ବିଚାର ଲାଗିଲା ଶାନ୍ତି ବିଷୟ ଅନେକ । ୧୫୭
ବିଷୟାନଳ ଯାବତ ଜଳୁଛି ସଂସାରେ
ଶାନ୍ତି ଦେବୀଙ୍କର ସ୍ଥାନ ନାହିଁ ସେ ଠାବରେ ।
ବିଷୟ ବାସନା ସବୁ ଶାନ୍ତି କରେ ନାଶ
ବିଷୟ ବାସନା ଯେଣୁ ଥାଏ ସଦା ଆଶ ।୧୫୮
ସବୁ ଅନର୍ଥର ମୂଳ ବିଷୟ ବାସନା
ଥରେ ଅଙ୍କୁରିଲେ ହୃଦେ ମେଲେ ନାନାକେନା ।
କେନା ମେଲି ମହାଘୋର ଜଙ୍ଗଲ କରାଏ
ନାନା ଫୁଲ ଫଳ ଧରି ମନ ମୋହିନଏ ।୧୬୦
ଧନ ରାଜ୍ୟ ମାୟାମୋହ ଜାଲରେ ପକାଏ
ନାନାବିଧ ସୁଖ ଦେଖାଇ ବୃକ୍ଷରେ ଚଢ଼ାଏ ।୧୬୧
ଅଗଣିତ ସୁଖରାହା ଦେଖାଏ ନିୟତ
ଶିରପରେ ମାଡ଼ିବସେ ଲୋଭ ମୋହ ଭୂତ ।
ଲୋଭ ମୋହରୁ ଜନମେ ନାନାବିଧ ଅନର୍ଥ
ସକଳ ସୁଖ ଶାନ୍ତିକି କରେ ନଷ୍ଟ ଭ୍ରଷ୍ଟ ।୧୬୩
ଜଗତରେ ଏହି ମାତି କରୁଅଛି ଖେଳା
ଘରିଆଡ଼େ ଲାଗିଅଛି ଏହି ସ୍ୱାର୍ଥ ଲୀଳା । ୧୬୪
ଏହି ସ୍ୱାର୍ଥଲୀଳା ଯେବେ ବିଲୟ ଭଜିବ
ଶାନ୍ତି ସୁଖ ଏ ଧରାରେ ନିକେ ବିରାଜିବ ।୧୬୫
ଯାବତ ଅଛଇ ଏ ସଂସାରେ ତିନି ଗୁଣ
ତାବତ ଏ ସ୍ୱାର୍ଥ ଖେଳା ଲାଗିଥିବ ପୁଣ ।୧୬୬
ରାଜସ ଗୁଣରୁ ଯେତେ ବୃଦ୍ଧି ହେଉଥିବ
ସ୍ୱାର୍ଥ ବୃଦ୍ଧି ହୋଇ ତେତେ ଅଶାନ୍ତି ବଢ଼ିବ ।
ଧନ ସମ୍ପତ୍ତି ଲାଳସା ରାଜସର ଫଳ
ଏ ପୁଣ ଧରାରୁ କେବେ ହେବକି ନିର୍ମୂଳ ।୧୬
ସତ୍ତ୍ୱଗୁଣ ବିରାଜିଲେ ଶାନ୍ତି ବିରାଜିବ
ଭୂତଳେ ସରଗ ସୁଖ ମାନବ ଭୁଞ୍ଜିବ । ୧ ୬

ଶାନ୍ତ ଶାନ୍ତ ହେଉବୋଲ ପଡ଼ିଅଛି ଡ଼ାକ
ନାନା ବଇଠକେ ହୁଏ ବିଚ୍ଛୁର ଅନେକ ।୧୭୦
ହଣାହଣି କଟାକଟି ହେଲେକ ସମରେ
ବଳ କ୍ଷୟ ଗଲେ ଶାନ୍ତ ପଡ଼ଇ ମନରେ । ୧୭୧
ମର୍କଟ ବୈରାଗ୍ୟ ଯିତି ନୀତି ଅନୁସର
କେତେ ଦିନେ ପୁଣି କଥା ଦିଅନ୍ତି ପାସୋର ।
ଯୁଦ୍ଧ ସରଗଲେ ପୁଣି ଭବିଷ୍ୟତ ପାଇଁ
ନାନା ଉପାୟ ପାଞ୍ଚନ୍ତି ମନ ଧ୍ୟାନ ଦେଇ ।୧୭୩
ଇତିହାସ ଏହି ସାକ୍ଷ୍ୟ ଦେଉଛି ନିଯୁତ
ଏହା ତ ସଂସାର ନୀତି ଅଟି ସାରତତ୍ତ୍ୱ । ୧୭୪
ଏହିଠାରେ ଏ ଅଧ୍ୟାୟ ହେଲା ଆସି ଶେଷ
ଅପର ଅଧ୍ୟାରେ ଆଉ କହିବା ବିଶେଷ ।୧୭୫
ଆହେ ମହାପ୍ରଭୁ ସଂସାରକୁ ରକ୍ଷାକର
ତବ ସଂସାର ଉପରେ କାର ଅଧିକାର ।୧୭୬
ସୃଷ୍ଟି ଲୟ ପାଳନ ଅଟଇ ତବ କର୍ମ
ମୁଁ କରୁଛି ବୋଲଣ ମାନବ କରେ ଭ୍ରମ ।
ଆଦି ଅନାଦି କାରଣ ତୁମ୍ଭେ ଏକା ଅଟ
ଏ ଘୋର ସଂସାର ଅଟେ ତୁମ୍ଭରି ପ୍ରକଟ ।୧୭୮
ଦୀନ ଜଗବନ୍ଧୁ ନମେ ତବ ଶ୍ରୀଚରଣେ
ଦିଅ ଭକ୍ତି ଦିଅ ମୁକ୍ତି ଆନ ମୁଁ ନ ଗଣେ ।

ଇତି ଶ୍ରୀ ଭାରତ-ଚରିତାମୃତେ ଜାପାନ ସମର ସମାପ୍ତ ବର୍ଣ୍ଣନେ
ଏକଶତ ଅଷ୍ଟାଦଶ ଅଧ୍ୟାୟଃ ।



## ଏକଶତ ଊନବିଂଶ ଅଧ୍ୟାୟ

ଜଗା ଉବାଚ

ଜାପାନ ସମର ଏତେକାଳେ ଶେଷ ହେଲା
ଭାରତ ଏବେ ବିପଦୁଁ ନିସ୍ତୁତ ଲଭିଲା । ୧

ପୃଥିବୀର ଯୁଦ୍ଧପଣ୍ଟୁ ସରିଲା ସମର
ଉଶ୍ୱାସ ହୋଇଲା ଏବେ ସାରା ପୃଥିବୀର । ୨
ବିଲାତରେ ହୋଇଲା ଶ୍ରମିକ ସରକାର
ଲେଉଟି ପାରେକ ଦଶା ଏବେ ଭାରତର । ୩
ଏକାଳେ ଭାରତ ପୁଣି ଚେଇଁଉଠେ ବୃହେଁ
ତା କଥା ଶୁଣିବାପାଇଁ ଉଚ୍ଚେ ଡ଼ାକ ଦିଏ । ୪
ଭାରତ ସନ୍ତାନ ଯେତେ ଥିଲେ କାରାଗାରେ
ସରକାର ଆଦେଶରୁ ଆସିଲେ ବାହାରେ । ୫
ତଥାପି କେତେ ସନ୍ତାନ ଅଛନ୍ତି ଭିତରେ
କେବେ ମୁକ୍ତ ହେବେ ଅବା କିଏ କହିପାରେ ।
ଏହିକାଳେ ସରକାର ଦେଲେକ ଆଦେଶ
ପୁଣି ହେବ ନିର୍ବାଚନ ସମର ବିଶେଷ । ୭
ଭାରତବାସୀଏ ଲାଗିଯାଅ ସେ ସମରେ
ଦେଖାଯିବ କି ହୋଇବ ଏ ନିର୍ବାଚନରେ ।୮
କ୍ରିପସ ସାହେବ ଭାରତକୁ ଆସିଥିଲେ
ଯାହା ଦିଆଯିବ ବୋଲି ଯାଚି ଯାଇଥିଲେ ।୯
ସେହିକଥା ପୁଣି ଥରେ ପଚ୍ଛି ଯାଇପାରେ
ତହିଁରୁ ଅଧିକ ଆଉ କିସ ହୋଇପାରେ ।୧୦
ନିର୍ବାଚନ ଫଳ ଦେଖି କରିବେ ବିଚାର
ଏହା କହିଦେଲେ ଏ ଶ୍ରମିକ ସରକାର । ୧୧
ଲାଗିଛି ତେଣୁ ଭାରତେ ବଡ଼ କୋଳାହଳ
କଂଗ୍ରେସ ଏ ଲଢ଼ାଇରେ ହେବ ଆଗଭର ।୧୨
କଂଗ୍ରେସ ଉପରୁ କଟକଣା ଉଠିଗଲା
ବେଆଇନ ହୋଇଥିଲା ଏବେ ରଦ୍ଦହେଲା ।୧୩
କାରାଗାରୁ ବାହାରିଲେ କର୍ମକର୍ତ୍ତାମାନେ
କି କରିବେ କି କରିବେ ବିଚାରିଲେ ମନେ ।୧୪
ସିମଳା ପାହାଡ଼ ବଇଠକେ ହେଲେ ଠୁଳ
ସବୁ ବିଚାର ସେଠାରେ ହୋଇଲା ବିଫଳ ।୧୫

ପ୍ରତିନିଧି ବାଛିବାକୁ ଲୋକମତ ଲୋଡ଼ା
ଏ ନାଟ କରିବାପାଇଁ କିଏ ହେବ ଛିଡ଼ା ।୧୬
କର୍ମକର୍ତ୍ତାମାନେ ହେଲେ ବମ୍ବାଇରେ ଠୁଳ
କେତେକ ବରଷପରେ ପିଟାଇଲେ ଢୋଲ ।୧୭
ମନ ଖୋଲି ଢୋଲ ମୁଣ୍ଡ ପିଟାଇ କହିଲେ
ନିର୍ବାଚନ ସମରେ ପଶିବେ ସ୍ଥିର କଲେ ।୧୮
ଏ ବାରତା ଭାରତରେ ବେଗେ ବ୍ୟାପିଗଲା
କଂଗ୍ରେସ ଲଢ଼ିବ ବୋଲି ଡିଣ୍ଡିମ ବାଜିଲା । ୧୯
କଂଗ୍ରେସ ସମିତିଯାକ ଉଠିଲାକ ଚେଇଁ
ସଭା ବଇଠକମାନ ହୁଏ ଖାଇ ଖାଇ ।   ୨୦
ଆସ ଦେଶ ଭାଇମାନେ ହୁଅ ଏକମତ
କଂଗ୍ରେସର ଜୟ ହେବ ଦେଖାଅ ଭାରତ । ୨୧
ଏହି ଗହଳ ଚହଳ ଲାଗିଛି ଭାରତେ
କିଏ କେତେ ପରକାର କହିଯାଏ କେତେ ।
କେତେଜଣ ବସି ବାଛିଦେଲେ ରାମ ଶାମ
ଆଜ୍ଞା ପତ୍ରିକାରେ ଛପାଗଲା ତାଙ୍କ ନାମ ।୨୩
ଲୋକଙ୍କୁ ବୋଇଲେ ଆହେ ଦେଶବାସୀ ଭାଇ
କଂଗ୍ରେସର ଟେକ ରଖ ତାଙ୍କୁ ମତଦେଇ ।୨୪
କଂଗ୍ରେସ ଛାପା ମାରିଲା ଏହାଙ୍କ ମୁଣ୍ଡରେ
ତାଙ୍କ ନାମ ଗାଅ ଭାଇ ସକଳେ ତୁଣ୍ଡରେ ।୨୫
ଲାଗିଛି ଏହି ପ୍ରଚାର ସକଳ ଠାବରେ
ଲୋକଙ୍କ ସ୍ୱାଧୀନ ମତ ଅଛି କେଉଁଠାରେ ।୨୬
କେତେଜଣ ମିଳିମିଶି କଲେ ବଛାବଛି
ଲୋକଙ୍କ ମତକୁ ଅବା କିଏ ପଚାରୁଛି ।   ୨୭
ଅନୁଗ୍ରହ ନିଗ୍ରହ ବିଚାର ଅଛି ଏଣେ
ଉପର କରତାଙ୍କର ମିତି ଗଲା କେଣେ । ୨୮
ସେମାନେ ଉଦାରମତି ପଥ ଅନୁସରି
ବୋଇଲେ ଗୁଣ ଯୋଗ୍ୟତା ରଜ୍ଜୁ କରେ ଧରି ।

ଉତ୍ତମ ଉତ୍ତମ ଗୁଣୀ ଯୋଗ୍ୟ ଲୋକ ବାଛ
ଶାସନ ଯନ୍ତ୍ରକୁ ଯେହ୍ନେ ହେବେ ସମକକ୍ଷ । ୩୦
ଏ ମତ ସ୍ରୋତ ଉପରୁ ତଳକୁ ଆସିଲା
ନାନା ଅନ୍ଧକନ୍ଧ ସନ୍ଧି ଦେଶରେ ବୁଲିଲା । ୩୧
ନାନା ସ୍ୱାର୍ଥ ଆବର୍ଜନା ମିଶିଲା ତହିଁରେ
ପୁଣି ଦଳାଦଳି ଖେଳ ଖେଳିଲା ଦେଶରେ ।୩୨
କେ ବୋଲେ ମୁହିଁ କେବଳ ଖାଣ୍ଟି ଦେଶ ମିତ୍ର
ମୋ କଥା ମାନିଲେ ଲୋକେ ହୋଇବେ ପବିତ୍ର ।
ସ୍ୱରାଜ୍ୟ ଭଗିରଥୀକି ମୁହିଁ ଆଣିପାରେ
ଆଉ କେହିହେଲେ ଦେଶ ଯିବ ରସାତଳେ ।
ସ୍ୱୟମ୍ଭୂ ନେତାଏ ଏହି ଅହଙ୍କାର ଧରି
ବିଚରଣ କରୁଛନ୍ତି ଦେଶେ ଭୂରି ଭୂରି । ୩୫
ସଚ୍ଚାତ୍ୟାଗୀ ନେତା ପଦେ କୋଟି ନମସ୍କାର
ତାଙ୍କର କହିବାପାଇଁ ଅଛି ଅଧିକାର । ୩୬
ଯେ ଯେଉଁ ମୁଖା ପିନ୍ଧିବ ପିନ୍ଧୁ ଦୋଷନାହିଁ
ହୃଦୟରୁ ସ୍ୱାର୍ଥମଳ ଧୋଇଦିଅ ଭାଇ । ୩୭
ନିର୍ମଳ ପ୍ରାଣରେ ଯାହା କରିପାର କର
ଦେଶକୁ ଏ ପରାଧୀନ ପଙ୍କରୁ ଉଦ୍ଧର । ୩୮
ଜୟଶ୍ରୀ ମଣ୍ଡିତ ହେଉ କଂଗ୍ରେସ ଏଥର
ବାଧା ଦେବାପାଇଁ ଇଚ୍ଛା ନାହିଁଟି କାହାର ।୩୯
ଯେ କେହି ଭାଇ ସ୍ୱରାଜ୍ୟ ଆଣିପାର ଆଣ
ସବୁରି ଭାଗ ରହିବ ଏଥିରେ ସମାନ । ୪୦
ମନେ ଅହଙ୍କାର ଥିଲେ ସବୁ ପଣ୍ଡହେବ
ସମଦରଶୀ ହୋଇଲେ ସମର ଜିଣିବ । ୪୧
ସାମାନ୍ୟ ଶ୍ରେଷ୍ଠ ସମରେ ଯେବେ ଦବା ବଳି
ଭାରତ ଶାସନ ଯନ୍ତ୍ର ନ ଚାଲିବ ଭଲି । ୪୨
ଭୂଆଁ ବୁଲିବ ସେଠାରେ ନ ପାଇଣ ରାହା
ବ୍ରିଟିଶ ବୁଦ୍ଧି ସହଜେ କଳିନେବ ତାହା ।୪୩

"ଭାରତ ଛାଡ଼ ଏସିଆ ଛାଡ଼", ଯେତେ କହ
ବଚନ ବାଣରେ କେବେ ହେବନାହିଁ ଜୟ ।
ଆଚ୍ଛା ଥାଉ ଏହିଠାରେ ଏକଥା ସକଳ
ଦେଖାଯାଉ କିସ ହେବ ନିର୍ବାଚନ ଫଳ ।୪୫

ଗଉର ଉବାଚ

ନିର୍ବାଚନ ଡେଙ୍ଗୁରା ବାଜୁଛି ଘନଘନ
କଂଗ୍ରେସକୁ ଜୟୀକରୁ ଦେଶବାସୀ ଜନ । ୪୬
ପୁଣି ଶୁଣାଯାଏ ଆଜ ଏକ ନୂଆକଥା
କହନ୍ତୁ ବିସ୍ତାରି ମୋତେ ତହିଁର ବ୍ୟବସ୍ଥା ।୪୭
ଭାରତ ଜାତୀୟ ସେନାବାହିନୀ ବିଚାର
ନୂଆ ଦିଲ୍ଲୀଠାରେ ହେବ ମିଳୁଛି ଖବର । ୪୮
ଏ ସେନାବାହିନୀ କିସ କିଏସେ ଗଢ଼ିଲା
କାହିଁକି କେଉଁଠି କିଛି ଜଣା ନ ପଡ଼ିଲା । ୪୯
କି ବିଚାର ହେବ କି କି ଅପରାଧ ତାର
କିଏ ପୁଣି ତାହାଙ୍କର କରିବେ ବିଚାର । ୫୦
ବହୁତ ଲୋକର ହେଉଅଛି ତ ବିଚାର
କେତେ କିଏ ଦଣ୍ଡ ଭୋଗୁଛନ୍ତି ନିରନ୍ତର ।୫୧
ଏ ବିଚାରେ କାହିଁପାଇଁ ପଡ଼ିଛି ଚହଳ
ଧାଇଁଛନ୍ତି ଦିଲ୍ଲୀଠାକୁ କେତେ ବାରିଷ୍ଟର ।୫୨

ଜଗା ଉବାଚ

ଏ ବଡ଼ ବିଷମ କଥା ପୁଚ୍ଛିଲ ଗଉର
କହିବସିଲେ ପୋଥିଏ ହୋଇବ ନିକର । ୫୩
ଖବରକାଗଜେ ସବୁ ହେଉଛି ପ୍ରକାଶ
ତହୁଁ ଅଧିକ ତୁମ୍ଭଙ୍କୁ କହିବି ମୁଁ କିସ । ୫୪
ଶୁଣୁଅଛି ଯାହା ସିନା ତାହାକୁ କହିବି
ତହୁଁ ଅଧିକ କିଛିହିଁ କହି ନ ପାରିବି । ୫୫
ଠିକେ ଠିକେ କେତେ କଥା କହୁଛି ମୁଁ ଶୁଣ
ତହୁଁ ଭଲ ମନ୍ଦ ତୁମ୍ଭେ ବୁଝି ନବ ପୁଣ ।୫୬

ଉତ୍କଳ ପ୍ରଦେଶେ ଅଛି କଟକ ନଗର
ଉତ୍କଳର ରାଜଧାନୀ ମହାନଦୀ ତୀର । ୫୭
ପୁଣ୍ୟଦୁର୍ଗ ବାରବାଟି ପୁରାଣ ପ୍ରଧାନ
ବୀରମାଟି ବୀର ରକ୍ତେ ରଞ୍ଜିତ ନିଧାନ । ୫୮
ଉତ୍କଳର ପୂର୍ବ ଇତିହାସ ଅଛି ତହିଁ
ବଇରୀ ରକଟେ ଶୋଭାପାଏ ବୀରଭୂଇଁ । ୫୯
କେହି ଚିହ୍ନି ପାରୁନାହିଁ ତା ବୀରତ୍ୱ ଯଶ
ଗୁପତେ ଗାଉଛି ଗୀତ ରଜନୀ ଦିବସ । ୬୦
ବାରବାଟି ବୋଲି ସିନା ରହିଅଛି ନାମ
କେହି ଜାଣି ପାରୁନାହିଁ କିବା ତାର କାମ ।୬୧
କେତେ ମଡ଼ା ସାଇତି ରଖିଛି ତା ଗରଭେ
ମୂକ ହୋଇ ପଡ଼ି ତହିଁ ଅଛନ୍ତି ସରବେ । ୬୨
ତାଙ୍କ କଥା ବୁଝିବାକୁ ନାହିଁ କା ଶକତି
ମାଟିବୋଲି ତା ଉପରେ ସକଳେ ଚଳନ୍ତି ।୬୩
ସେହି କଟକ ନଗରେ ବହୁଲୋକ ବାସ
ଓଡ଼ିଆ ବଙ୍ଗାଳି ମରହଟ୍ଟାଙ୍କ ନିବାସ । ୬୪
ଜାନକୀବଲ୍ଲଭ ନାମେ ଓକିଲ ପ୍ରବୀଣ
ବଙ୍ଗଦେଶୁଁ ଆସି କଟକରେ ଅବସ୍ଥାନ । ୬୫
ବହୁତଗୁଡ଼ିଏ ଥିଲେ ତାଙ୍କର ସନ୍ତାନ
ସୁଭାଷ ଶରତ ହେଲେ ସବୁଠୁଁ ପ୍ରଧାନ । ୬୬
ସୁଭାଷ ବହୁତ ବିଦ୍ୟା ଅଧ୍ୟୟନ କଲେ
ମେଜେଷ୍ଟର୍ କାମପାଇଁ ଉପଯୁକ୍ତ ହେଲେ ।୬୭
ମେଜେଷ୍ଟରି କର୍ମରେ ସେ ହୋଇଲେ ନିଯୁକ୍ତ
କେତେଦିନ ଅନ୍ତେ ତେଣେ ନ ବଳିଲା ଚିତ୍ତ ।
ଶରତ ବହୁତ ପଢ଼ି ବାରିଷ୍ଟର ହେଲେ
ବହୁ ପରିମାଣେ ଧନ ଉପାର୍ଜ୍ଜନ କଲେ । ୬୯
ସୁଭାଷ ଚୃକରୀ ଛାଡ଼ି ପାଞ୍ଚିଲେ ମନରେ
ମନ ପ୍ରାଣ ଢାଳିଦେବେ ସ୍ୱଦେଶ ସେବାରେ

ଏହା ଭାବି କଂଗ୍ରେସ ସେବାରେ ଦେଲେ ମନ
ଲକ୍ଷ୍ୟ ଭାରତ କପରି ହୋଇବ ସ୍ୱାଧୀନ । ୭୧
ଗାନ୍ଧିଙ୍କ ଭକ୍ତ ହୋଇଣ କାର୍ଯ୍ୟ ଆରମ୍ଭିଲେ
ଗାନ୍ଧିଙ୍କ କରମ ପନ୍ଥା ପସନ୍ଦ ନ କଲେ । ୭୨
ଅହିଂସା ପନ୍ଥାରେ ସେହୁ ବିଶ୍ୱାସ ନ କଲେ
କଂଗ୍ରେସର ସଭାପତି ଦୁଇଥର ହେଲେ । ୭୩
କାରାଗାରେ ବନ୍ଦୀ କରିଥିଲେ ସରକାର
କେତେଦିନ ପରେ ମୁକ୍ତ ଲଭିଲେ ନିକର ।
ସରକାର ବୋଇଲେ ସେ ହୋଇବେ ମୁକତ
ନିଜ ଘର ଛାଡ଼ି କାହିଁ ନ ଯିବେ ନିଶ୍ଚିତ । ୭୫
ପୁଲିସ ପହରା ରଖାଇଲେ ନିରନ୍ତର
ଘେରଉ କରି ଜଗିଲେ ସୁଭାଷଙ୍କ ଘର । ୭୬
ଘର ଚାରିପଟେ ଘେଟି ରହିଲେ ପ୍ରହରୀ
ସୁଭାଷ ଯୋଗ ସାଧିଲେ ଦ୍ୱାର ବନ୍ଦ କରି । ୭୭
କେହି ସେ ଘରକୁ ପୁଣି ଯାଇ ନ ପାରିଲେ
ସୁଭାଷ ଘର ଭିତରେ କି ସାଧନା କଲେ । ୭୮
କେତେଦିନ ପରେ ଯହୁଁ କବାଟ ଫିଟିଲା
ସୁଭାଷଙ୍କ ରୂପ କେହି ଦେଖି ନ ପାରିଲା । ୭୯
ଦେଖାଗଲା ସୁଭାଷ ହୋଇଲେ ଅନ୍ତର୍ଦ୍ଧାନ
ବହୁ ଖୋଜା ଲୋଡ଼ା କଲେ ନ ଦିଶିଲା ଚିହ୍ନ ।
ସରକାରୀ ଗୁପ୍ତଚର ବହୁତ ଖୋଜିଲେ
ସୁଭାଷ-ପକ୍ଷୀକି କାହିଁ ଧରି ନ ପାରିଲେ । ୮୧
ଏ ବଡ଼ ଅଦ୍ଭୁତ କଥା ଦେଖାତ ନ ଥିଲା
ଏତେ ପ୍ରହରୀ ଆଖିରେ ଧୂଳି ପକାଇଲା । ୮୨
ଭାରତ ଛାଡ଼ି ପଳାଇଯିବ ଯାର ମନ
ତାକୁ ଉପାୟ ଦେଖାଇଦେଲେ ଭଗବାନ । ୮୩
ଏ କର୍ମ କରିବି ବୋଲି କରେ ଯେହୁ ପଣ
ପନ୍ଥାର ଅଭାବ ତାକୁ ନ ହୁଅଇ ପୁଣ । ୮୪

ସ୍ୱାଧୀନତା ପିପାସା ଜଳୁଛି ଅନ୍ତରରେ
କେହି ଆଲୋକ ଦେଖାଏ ତାହାକୁ ଆଗରେ ।
ବୁଦ୍ଧି ବାଟ ତାକୁ ଦେଖାଯାଏ ଜଳଜଳ
ଲଭଇ ସେ ଅସୀମ ସାହସ ମନବଳ । ୮୭
ଆତ୍ମବଳ ଅଛି ଯାର ସବୁ ଅଛି ତାର
ହାରିବା ଜିଣିବା ଚିନ୍ତା କରିଦିଏ ଦୂର । ୮୭
ଭଗବାନ ପାଦପଦ୍ମେ ଅରପେ ସକଳ
ସେ ଏକା ଜାଣନ୍ତି କି ହୋଇବ ଫଳାଫଳ ।
କରିବ ଅବା ମରିବ ପ୍ରତିଜ୍ଞା ଯାହାର
ପ୍ରାଣର ମାୟା ମମତା ନ ଥାଏ ତାହାର ।୮୯
ଏହିପରି ଆତ୍ମବଳ ସୁଭାଷର ଥିଲା
କପରି କେଉଁ ସୂତ୍ରରେ ଭାରତ ଗୁଡ଼ିଲା । ୯୦
କେଉଁପଥେ ଗଲା କେହି ନ ଜାଣେ ଠିକଣା
ସବୁରି ବୁଦ୍ଧି କି ସେହୁ କରିଦେଲା ବଣା । ୯୧
ଜନବିଂଶ ବୟାଳଶ ସେପ୍‌ଟେମ୍ବର ମାସ
ଗୁଡ଼ିଲେ ଭାରତ କେଉଁ ସୂତ୍ରରେ ସୁଭାଷ । ୯୨
କାହିଁଗଲେ କାହିଁଗଲା ପଡ଼ିଲା ଚହଳ
ସବୁ ସରକାର ଚେଷ୍ଟା ହୋଇଲା ବିଫଳ ।୯୩
ଶରତ ଆବର କାରାଗାରେ ବନ୍ଦୀହେଲେ
ଅନିର୍ଦ୍ଦିଷ୍ଟ କାଳପାଇଁ ବନ୍ଦୀ ହୋଇଥିଲେ ।୯୪
ସୁଭାଷ ପଳାଇ ଯାଇ ଜରମାଣି ଗଲେ
ସେଠାରୁ ଯାଇ ଜାପାନେ ପ୍ରବେଶ ହୋଇଲେ ।
ଜାପାନ ଦେଶକୁ ଯାଇ ସାହାଯ୍ୟ ମାଗିଲେ
ଭାରତକୁ ମୁକ୍ତକର ବୋଲିଣ ବୋଇଲେ ।୯୬
ଜାପାନ ଯେକାଳେ ବର୍ମାଦେଶ ନେଇଗଲା
ଅନେକ ଭାରତ ସେନା ବନ୍ଦୀ କରିଥିଲା । ୯୭
ବ୍ରିଟିଶ ସରକାରର ସେନାବାହିନୀରେ
ସେହିମାନେ କର୍ମ କରି ଭତ୍ତା ପାଉଥିଲେ ।୯୮

ଜାପାନ ସରକାରର ଅନୁମତି ନେଇ
ଆଜାଦ ହିନ୍ଦ୍ ଫଉଜ ଗଢ଼ିଲେକ ସେହି । ୯୯
ପଞ୍ଚାଶ ହଜାର ସେନା ଏକକୋଠ କଲେ
ସ୍ୱାଧୀନ ଭାରତ ରାଜ୍ୟ ଶାସନ ଗଢ଼ିଲେ ।୧୦୦
ଶାସନ-ଯନ୍ତ୍ରର ଯାହା ଯାହା ଦରକାର
ସବୁ ଖଞ୍ଜାଖଞ୍ଜି କରି କଲେ ସରକାର ।୧୦୧
ଆଇନ କାନୁନ ଦଣ୍ଡ ନୀତି ଜାରିକଲେ
ସେ ସେନା ନେଇ ଭାରତ ଆକ୍ରମଣ କଲେ ।
ଇମ୍ଫାଲେ ମଣିପୁରରେ ଆସି ଧାଡ଼ିଦେଲେ
ବ୍ରିଟିଶ ସରକାରଙ୍କ ସହିତେ ଲଢ଼ିଲେ ।୧୦୩
ଜାପାନରୁ ଅସ୍ତ୍ର ଶସ୍ତ୍ରମାନ ଆଣିଥିଲେ
ନାନା ପରକାରେ ଧନ ପାଣ୍ଠି ଉଠାଇଲେ ।
ଅବଶେଷେ ସେନାମାନେ ପରାସ୍ତ ହୋଇଲେ
ଇଂରେଜ ସରକାରଙ୍କ ହସ୍ତେ ବନ୍ଦୀହେଲେ ।
ସେହି ବନ୍ଦୀମାନଙ୍କର ହେଉଛି ବିଚାର
ସାମରିକ ଅଦାଲତ ଆଇନ କଠୋର । ୧୦୬
ବିଶ୍ୱାସଘାତକ ହେଲେ ସମ୍ରାଟଙ୍କଠାରେ
ସମର କଲେକ ଯେଣୁ ତାଙ୍କ ବିରୁଦ୍ଧରେ ।
ସମ୍ରାଟଙ୍କ ଅଧୀନରେ ସେନା ହୋଇଥିଲେ
ପୁଣି ତାଙ୍କର ବିରୁଦ୍ଧେ ଅସ୍ତ୍ର ଉଠାଇଲେ ।୧୦୮
ମହା ଗୁରୁତର ଅପରାଧ ଅଟେ ଏହା
ପ୍ରାଣଦଣ୍ଡ ପରିଣାମ ଯେ କରିବ ତାହା ।୧୦୯
ଦିଲ୍ଲୀ ଲାଲଦୁର୍ଗ ମଧ୍ୟେ ହେଉଛି ବିଚାର
ସପ୍ତରଥୀ ମିଳି ସବୁ ଶୁଣିବେ ନିକର । ୧୧୦
ତିନି ଜଣ ଭାରତୀୟ ଚାରି ଇଙ୍ଗରେଜ
ଗଢ଼ା ହୋଇଛି ଏପରି ବିଚାର ଫଉଜ । ୧୧୧
ପାଞ୍ଚଜଣ ଏଥିରୁ ହୋଇଲେ ଏକମତ
ଆସାମୀର ପ୍ରାଣଦଣ୍ଡ ହୋଇବ ନିଶ୍ଚିତ ।୧୧୨

ଇତି ମଧ୍ୟରେ ପ୍ରକାଶ ପାଇଲା ଖବର
ସୁଭାଷ ତେଜିଗଲେଣି ମରକଳେବର । ୧୧୩
ଉଡ଼ାଜାହାଜରେ ଜାପାନକୁ ଯାଉଥିଲେ
ଉଡ଼ାଜାହାଜଟି ଖସି ପଡ଼ିଲାକ ତଳେ । ୧୧୪
ସେହି ଘଟଣାରେ ତାଙ୍କ ପ୍ରାଣଗୁଡ଼ିଗଲା
ଏହିପରି ସମ୍ବାଦ ଯେ ପ୍ରକାଶ ପାଇଲା । ୧୧୫
ଦିଲ୍ଲୀରେ ସଇନଙ୍କର ହୋଇବ ବିଚାର
ଘରଆଡ଼େ ଖେଳିଗଲା ଏମନ୍ତ ଖବର । ୧୧୬
ଭାରତର ମୁଖିଆ ମୁଖିଆ ନେତାଗଣ
ଏକସ୍ୱରେ ମତଦେଲେ ଧରି ବଡ଼ଟାଣ ।୧୧୭
ବଡ଼ଲାଟ ସାହେବଙ୍କୁ କଲେ ନିବେଦନ
ନ କର ଏହି କଠୋର ବିଚାର ବିଧାନ ।୧୧୮
ପରାଜିତ ଲୋକ ପ୍ରତି ହୁଅ ହେ ସଦୟ
ଉଦାର ହୃଦରେ ବୁଝ ନ ହୋଇ ନିର୍ଦ୍ଦୟ ।
ପ୍ରକୃତ ବିଚାର କରି ଦେଖନ୍ତୁ ଆପଣ
ପାରୁଥିଲେ ଭାରତକୁ କରିବେ ସ୍ୱାଧୀନ । ୧୨୦
ଭାରତର ଏହି ଦାବି କଂଗ୍ରେସ ଦୃଷ୍ଟିରେ
ଲକ୍ଷ୍ୟ ଏକ କର୍ମପନ୍ଥା ଭିନ୍ନ ହୋଇପାରେ ।
ଦେଶ କାଳପାତ୍ର ପରିସ୍ଥିତିକ ବୁଝିଲେ
ନାରଙ୍ଗୀ ପାଚଙ୍ଗୀ ସେହୁ ନୁହନ୍ତି ଭଲେ ।
କ୍ଷମା ଦେଇ ଏମାନଙ୍କୁ ହୁଅ ହେ ଉଦାର
ବିଜୟୀ ପକ୍ଷରେ ଏହା ହୋଇବ ସୁନ୍ଦର ।
ସମଗ୍ର ଭାରତ ଏହି ସ୍ୱର ଉଠାଇଲା
ନାନା ସଭାସମିତିରୁ ଏହି ଦାବି ହେଲା । ୧୨୪
ସବୁ ଶୁଣି ବଡ଼ଲାଟ କରିଦେଲେ ନାହିଁ
ଅବଶ୍ୟ ବିଚାର ହେବ ବିଧାନ ଅଛଇ ।·୧୨୫
ତେଣୁ ବିଚାର ହେଉଛି ଦିଲ୍ଲୀ ନଗରରେ
ବଡ଼ ବଡ଼ ବାରିଷ୍ଟର ଆସାମୀ ପକ୍ଷରେ ।୧୨୬

ବୁଲାଭାଇ, ଜବାହର ପ୍ରମୁଖ ଅନେକ
ଆସାମୀଙ୍କ ପକ୍ଷରୁ ସେମାନେ ଲଢ଼ିଲେକ ।
ମୁଦାଲମାନେ ବୋଲନ୍ତି ସେମାନେ ନିର୍ଦ୍ଦୋଷୀ
ଶୁଣୁ ଅଛନ୍ତି ବିଚାର ହୋଇ ମହାଖୁସୀ । ୧୨୯
ସାକ୍ଷୀ ଦଲିଲ ପ୍ରଭୃତି ପ୍ରମାଣ ହୋଇବ
କେଜାଣେ କେତେ ଦିନେ ଏ କାମ ଶେଷହେବ ।
ମୁଦାଲି ପକ୍ଷ ଓକିଲ ଅବସର ନେଲେ
ଦୁଇ ସପ୍ତାହ ସମୟ ବିଚାରକ ଦେଲେ ।୧୩୦
ଏହି ହେତୁ ବିଚାର ସମୟ ଗଡ଼ିଗଲା
ପନ୍ଦର ଦିନ ସମୟ ଆବର ମିଳିଲା । ୧୩୧
ଯାହାହେଉ ଏ ବିଚାରୁ ବହୁଲାଭ ହେଲା
ସୁଭାଷଙ୍କ କର୍ମକୁଶଳତା ଜଣାଗଲା । ୧୩୨
ଜାପାନେ ସୁଭାଷ ଯାହା ଯାହା କରିଥିଲା
ଠିକ ନଥି ସବୁକଥା ପଦାରେ ପଡ଼ିଲା । ୧୩୩
ଜାତୀୟ ବାହିନୀ ନେତା କର୍ମୀଙ୍କର ଛବି
ପ୍ରକାଶ ପାଇଲା ଦେଖି ଯାଏ ହୃଦ ଦ୍ରବି ।୧୩୪
କେଡ଼େ ଧଇର୍ଯ୍ୟ ସାହସ କେଡ଼େ ମନଆଣ୍ଠି
ସ୍ୱଦେଶୁ ଯାଇ ବିଦେଶେ ବାନ୍ଧିଲା ଏ ମେଣ୍ଟ ।
ଗୁଳି ଗୁଳା ବାରୁଦକୁ ନ କଲା ଖାତିର
ଜାଣ ଭାଇ ଏ ଖାରଟି ଉତ୍କଳ ମାଟିର । ୧୩୬
କେଶରୀ ଗୁହାରେ ଆସି ପଶିଲା ଧସାଇ
ଲୋକ ଲୋଚନର ବଳ ଦେଲା ସେ ଖସାଇ ।
କେଶରୀକ ଜିଣିବାର ନୁହଇ ସହଜ
ହାର ପଳାଇଲା ତେଣୁ ଆଜାଦ ଫଉଜ ।୧୩୮
ସେହି ଫଉଜର ସେନାପତି ତିନି ଜଣ
ରାଜଦ୍ରୋହ ଅପରାଧେ ଅଭିଯୁକ୍ତ ଘେନ । ୧୩୯
ସୁଭାଷ ଏକ ପ୍ରକାର ବିଚାର ବାନ୍ଧିଲା
ଆନ ପରକାର ଫଳ ତହିଁ ଉପୁଜିଲା । ୧୪୦

ମଣିଷର ପାଞ୍ଚ ସିନା ଏକ ପରକାର
ଭଗବାନଙ୍କର ପାଞ୍ଚ ଆନ ପରକାର । ୧୪୧
ଏ ମାନବ ଭବିଷ୍ୟତ ଜାଣି ନ ପାରଇ
ନିଜ ବାହୁବଳେ ସବୁ କରିବ ପାଞ୍ଚଇ । ୧୪୨
ପାଞ୍ଚେ ମିଳିବ ଅମୃତ ମିଳେ ଶେଷେ ବିଷ
ସେହି ଦଶା ଭୋଗକଲେ ଶେଷକୁ ସୁଭାଷ ।
ରାଜଲକ୍ଷ୍ମୀ ଥିବାଯାକେ କେ କରିବ କସ
ରାଜ୍ୟଭାର ଦେଇଛନ୍ତି ସ୍ନେହି ଜଗଦୀଶ । ୧୪୪
ଯାବତ ସେ କଳା ନ ହରିବେ ଭଗବାନ
ତାବତ ତାହାଠୁ ରାଜ୍ୟ ନ ହେବ ବିଚ୍ଛିନ୍ନ ।
ଦୁନିଆରେ ଚିହ୍ନି ନାହିଁ କାଲିଆକୁ ବଳି
ମାନବର ଦମ୍ଭ ଦର୍ପ ଦିଏ ସବୁ ଦଳି । ୧୪୬
ହିଟଲର ଏତେ ଦମ୍ଭ ଦର୍ପ ଦେଖାଇଲା
ପଲକ ପିଛାଡ଼ୁ ତାର ଚିହ୍ନ ନ ରହିଲା । ୧୪୭
ଜାପାନ ଦଶା ତ ଏବେ ସକଳେ ଦେଖିଲ
ଭାଙ୍ଗି ଗଲା ଦମ୍ଭ ଦର୍ପ ଗରବ ସକଳ । ୧୪୮
ବ୍ରିଟିଶ ସମ୍ରାଟଠାରୁ ଶିଖ ତ୍ରୁଟି ନାହିଁ
ଏ ମହା ସମରେ ସେହୁ ହୋଇଲେକ ଜୟୀ ।
କେତେ କେତେ ରାଜ୍ୟମାନ ନଷ୍ଟଭ୍ରଷ୍ଟ ହେଲା
ବ୍ରିଟିଶ ସାମ୍ରାଜ୍ୟ କେଶ କେହି ନ ଛୁଇଁଲା ।
ମାନବ ତାହାର ଚେଷ୍ଟା ଅବଶ୍ୟ କରିବ
କାଳବେଳେ ଭାଗ୍ୟବଳେ ଅବଶ୍ୟ ଫଳିବ ।
ପଞ୍ଚାଶ ବରଷ ହେଲା ଲଢ଼ୁଛି କଂଗ୍ରେସ
ଭାରତ ମୁକତି ପାଇଁ କରିଛି ମାନସ । ୧୫୨
ଭାରତରେ ଅଛନ୍ତି ଯେତେକ ନେତାଗଣ
ବିଭିନ୍ନ ଦଳର ମତ ଅଟେ ଭିନ୍ନ ଭିନ୍ନ ।୧୫୩
ଭାରତର ସ୍ୱାଧୀନତା ସବୁଦଳ ମତ
ପନ୍ଥାନେଇ ମତଭେଦ ଲଗିଛି ବହୁତ । ୧୫୪

ସୁଭାଷ ହଂସା ପଥରେ ପଥିକ ହୋଇଲା
ଅଜପ ବନ ମଧ୍ୟରେ ପରାଜିତ ହେଲା । ୧୫୫
କେ ବୋଲେ ପ୍ରାଣରେ ବଞ୍ଚି ଅଛଇ ସୁଭାଷ
କେ ବୋଲଇ ଉଡ଼ିଗଲା ସୁଭାଷର ହଂସ ।୧୫୬
ମରିଛି ବୋଲି ଖବର ବଞ୍ଚିଛି ଅଜଣା
ନାନା ପ୍ରକାର ସଂଶୟ ନମିଳେ ଠିକଣା ।୧୫୭
ଖବରକାଗଜମାନେ ଲେଖୁଛନ୍ତି ଏହା
ସତ୍ୟ ଅବା ମିଥ୍ୟା କଏ କହିପାରେ ତାହା ।

ଗଜର ଉବାଚ

ଦେଖୁଛି ଭାରତେ ଏକ ନୂଆ କଥା ହେଲା
ଏପରି ବିଗ୍ରହ କେବେ ଦେଖା ତ ନ ଥିଲା ।
ଭାରତର ଇତିହାସ ପଢ଼ିଅଛି ମୁହିଁ
ଏପରି ବିଗ୍ରହ କଥା କାହିଁ ପଢ଼ି ନାହିଁ । ୧୬୦
ଭାରତର ଏତେଲୋକ ଆବେଦନ କଲେ
ବଡ଼ଲାଟ କାହିଁ ପାଇଁ ନାହିଁ କରିଦେଲେ ।

ଜଗା ଉବାଚ

ଏ ଯେଉଁ କଥା ଆବର ପୁଚ୍ଛିଲ ଗଜର
କି ଦେଇ ପାରିବ ମୁହିଁ ତହିଁର ଉତ୍ତର ।୧୬୨
ବଡ଼ଲାଟ ମନକଥା କହି ନ ପାରିବ
କାହିଁକି ସେ ନାହିଁ କଲେ କିପରି କହିବ ।
ଏ ତ ରାଜନୀତି କଥା ଅତି ଗୂଢ଼ତର
ଆନଲୋକେ ନ ଜାଣନ୍ତି ଗୁପତ ଖବର ।୧୬୪
ଅନୁମାନ କହିବାର ନୁହଇ ଉଚିତ
ପ୍ରକୃତ ନହୋଇ ପାରେ ଅନୁମାନ ତଥ୍ୟ ।
ସମ୍ରାଟଙ୍କ ବିପକ୍ଷରେ ନିଜ ସେନାଗଣ
ଅସ୍ତ୍ର ଧରିଲେ ବିଷମ ଦୋଷ ଅଟେ ଜାଣ ।
ରାଜଦ୍ରୋହ ଅପରାଧେ ନ ହୋଇଲେ ଦଣ୍ଡ
ଶାସନ ଶୃଙ୍ଖଳାମାନ ହୋଇଯିବ ପଣ୍ଡ । ୧୬୭

ଅପରାଧୀ ପକ୍ଷ ଯେବେ ଦଣ୍ଡ ନ ପାଇବେ
ଆନମାନେ ନିର୍ଭୟରେ ସେପରି କରିବେ ।
ଏହି ମତି ଅନୁସରି ନାହିଁ କରିଥିବେ
ଏପରି ବିଚାର ଅନୁମାନୁଛି ମୁଁ ଏବେ । ୧୬୯
ବିଚାର ଶେଷରେ ଦେବା ଏଥିର ଉତ୍ତର
ଏହିଠାରେ ଆଜ କଥା ଏତିକ ଏଥର ।୧୭୦
ବିଚାରବେଳେ ନାନାଦି କଥା ବାହାରିବ
ତହିଁରୁ ନାନାଦି ତଥ୍ୟ ପ୍ରକାଶ ପାଇବ ।୧୭୧
ଭଣେ ଦୀନ ଜଗବନ୍ଧୁ ଆହେ ଜଗନ୍ନାଥ
କେ ବୁଝିପାରିବ ତବ ସୃଷ୍ଟି କଳାତତ୍ତ୍ୱ ।୧୭୨

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତୀୟ ସେନାବାହିନୀ ବିଚାର ବର୍ଣ୍ଣନେ
ଏକଶତ ଊନବିଂଶ ଅଧ୍ୟାୟଃ ।



## ଏକଶତ ବିଂଶ ଅଧ୍ୟାୟ

ଗଉର ଉବାଚ

ଭାରତ ଜାତୀୟସେନା ବିଚାର ବିଷୟ
କି ହେଲା କିଛିହିଁ ଜଣା ଗଲାନାହିଁ ଥୟ । ୧
ସାରା ଭାରତରେ ଏବେ ପଡ଼ିଅଛି ହୁରି
ଛାଡ଼ିଦିଅ ସେମାନଙ୍କୁ କିଛି ନ ବିଚାରି । ୨
ଏଥିର ବିଶେଷ କଥା କହନ୍ତୁ ଆପଣ
କିଛି ଜାଣିପାରୁନାହିଁ ତହିଁର କାରଣ । ୩

ଜଗା ଉବାଚ

ଦୁଇଟି ପ୍ରଧାନ କଥା ରହିଲାଛି ଭାରତେ
ନିର୍ବାଚନ ସାମରିକ ବିଚାର ସହିତେ । ୪
ବଡ଼ଲାଟ ସଭାକୁ କେ ପ୍ରତିନିଧି ଯିବ
ଏଥିପାଇଁ ବ୍ୟସ୍ତ ହେଉଛନ୍ତି କେତେ ସଭ୍ୟ । ୫

କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ଠିଆ ହୋଇଛନ୍ତି
ତାଙ୍କ ସଙ୍ଗେ ଅନ୍ୟ କେତେ ଦ୍ୱନ୍ଦ୍ୱ କରୁଛନ୍ତି ।୬
ସବୁଠାରେ କଂଗ୍ରେସର ହୁଏ ଜୟପଟ
ଆନ ପ୍ରାର୍ଥୀଙ୍କର ଭାଙ୍ଗି ଯାଉଅଛି ଆଣ୍ଟ । ୭
ଭାରତରେ ଅଛନ୍ତି ଯେତେକ ମୁସଲମାନ
ଦୁଇଦଳ ହୋଇଛନ୍ତି ମତ ଭିନ୍ନ ଭିନ୍ନ । ୮
ଦଳେ କଂଗ୍ରେସ ସହିତ ଏକମତ ହେଲେ
ଅନ୍ୟ ଦଳ ଜିନାଙ୍କ ମତରେ ମତ ଦେଲେ ।୯
ଜିନା ହେଉଛନ୍ତି ସେ ଦଳର ଦଳପତି
ପାକିସ୍ଥାନ କରିବାକୁ ତାଙ୍କ ମନ୍ତଗତି । ୧୦
ତାଙ୍କ ଇଚ୍ଛା ତାଙ୍କ ଦଳ ହୋଇଲେ ଅଧିକ
ମୁସଲମାନ ଜାତିର ରହିବ ଯେ ଟେକ । ୧୧
ଏହି ଲଢାଇ ଲଗିଛି ସାରା ଭାରତରେ
ଜିତୁଛନ୍ତି ଜିନାଦଳ ବହୁତ ସ୍ଥାନରେ । ୧୨
ଜିନା କହୁଛନ୍ତି ବଡ଼ ଦାମ୍ଭିକ ଭାବରେ
ମୁହୂର୍ତ୍ତିକେ ଭାରତ ସ୍ୱାଧୀନ ହୋଇପାରେ ।୧୩
ପାକିସ୍ଥାନ ପାଇଁ ହିନ୍ଦୁ ହୋଇଗଲେ ରାଜି
ହିନ୍ଦୁ ମୁସଲମାନଙ୍କର କଳି ଯିବ ଭାଜି । ୧୪
ହିନ୍ଦୁମାନେ ଏଥେ ଯେବେ ରାଜି ନ ହୋଇବେ
କେନ୍ଦ୍ରସରକାର ସେହି ଗଢ଼ାଇ ନ ଦେବେ ।୧୫
ତାଙ୍କର ଆପତ୍ତି ନ ଶୁଣିଲେ ସରକାର
ମହାଘୋର ଅନର୍ଥ ଯେ ଘଟିବ ନିକର । ୧୬
ଜହରଲାଲ ବୋଲନ୍ତି ସେ କଥା ନ ହେବ
ଭାରତକୁ ଖଣ୍ଡ ଖଣ୍ଡ କେ କରି ପାରିବ । ୧୭
ବୁଲୁଛନ୍ତି ଜବାହର ସାରା ଭାରତରେ
ବୋଲନ୍ତି ହେ ଦେଶବାସୀ କଥା ଶୁଣ ବାରେ ।
କଂଗ୍ରେସକୁ ଭୋଟ ଦେଇ କର ଜୟଯୁକ୍ତ
ତେବେ ଭାରତ କେବଳ ହୋଇପାରେ ମୁକ୍ତ ।

ଆଜାଦ୍‌ହିନ୍ଦ୍ ଫଉଜେ ଯେଉଁମାନେ ଥିଲେ
କେତେକଜଣଙ୍କ ବିଚାର ହେଉଛି ଦିଲ୍ଲୀରେ ।୨୦
ସେହି ବିଚାର ପାଇଁକି ଯେତେ ବ୍ୟୟ ହେବ
ଦେଶବାସୀ ସର୍ବେ ମିଳି ତାହା ତୁଲାଇବ ।୨୧
ଏହି ଦୁଇ କଥା ସେଠୁ କରନ୍ତି ପ୍ରଚାର
ଲକ୍ଷ ଲକ୍ଷ ରୁଣ୍ଡହୋଇ ଶୁଣନ୍ତି ଖବର । ୨୨
ପାଞ୍ଚ ଲକ୍ଷ ସାତ ଲକ୍ଷ ହେଉଛନ୍ତି ରୁଣ୍ଡ
ଶବ୍ଦବର୍ଦ୍ଧ ଯନ୍ତ୍ର ଅଛି ଶୁଭିବାକୁ ତୁଣ୍ଡ । ୨୩
ତେଣେ ଜାତୀୟବାହିନୀ ଲୋକଙ୍କ ବିଚାର
ନୂଆ ନୂଆ କଥାମାନ ହେଉଛି ପ୍ରଚାର । ୨୪
କାହିଁକି କପରି କେବେ ଏ ଫଉଜ ହେଲା
କି କି କାର୍ଯ୍ୟମାନ ଏ ଫଉଜ କରିଥିଲା ।୨୫
ସୁଭାଷଙ୍କ ଗୁଣ କର୍ମ ଥିଲା ଯେତେ ଯେତେ
ଆଜଯାକେ ତାହା ସବୁ ଥିଲକ ଗୁପତେ ।୨୬
ଦିଲ୍ଲୀଠାରେ ସରକାର କରାଇ ବିଚାର
ସବୁ କଥାଯାକ ଦାଣ୍ଡେ ହୋଇଲା ପ୍ରଚାର ।୨୭
ସାରା ଭାରତରେ କଥା ପ୍ରକଟ ହୋଇଲା
ଯେ ଯାହା ଜାଣି ନ ଥିଲା ସକଳ ଜାଣିଲା ।୨୮
ଖବରକାଗଜ ଟିପାଟିପଣୀ ସହିତ
ବିସ୍ତୃତଭାବେ ପ୍ରକାଶ କଲା ସେ ଚରିତ । ୨୯
ଜହର, ପଟେଲ ଆଦି ଯେତେ ନେତାଗଣ
ସଭା ସମିତିରେ କଲେ ସେ ସବୁ ବ୍ୟାଖ୍ୟାନ ।
ଭାରତ ବାହାରେ ନାନା ଦେଶ ଦେଶାନ୍ତରେ
ଖବରକାଗଜ ପଢ଼ି ସକଳ ଜାଣିଲେ । ୩୧
କଂଗ୍ରେସର ମାତି ଗତି ଭବିଷ୍ୟତ କର୍ମ
ଜହରଲାଲ ସକଳ କରନ୍ତି ବଖାଣ । ୩୨
ହୃଦୟ ଖୋଲି କହନ୍ତି ସକଳ ବଚନ
ବଚନବାଣ ପ୍ରୟୋଗ କରି ପୁଣ ପୁଣ । ୩୩

"ଭାରତ ଛାଡ଼" ପ୍ରସ୍ତାବ କରିଛି କଂଗ୍ରେସ
ବୁଲି ବୁଲି ପ୍ରଚାରନ୍ତି ସେ ସବୁ ସନ୍ଦେଶ । ୩୪
କଂଗ୍ରେସକୁ ଭୋଟଦିଅ ଭୋଟଦିଅ ଡ଼ାକ
ଭାଙ୍ଗି ଭାଙ୍ଗି ଜବାହର ବୋଲନ୍ତି ଅନେକ ।
"ଭାରତ ଛାଡ" ଭାବକୁ ନାନା ପରକାରେ
ଜହରଲାଲ ବ୍ୟାଖ୍ୟାନ କରନ୍ତି ଭାଷାରେ । ୩୬
ଅତି ଆତୁର ବ୍ୟାକୁଳ ଭାବେ କହୁଛନ୍ତି
ଦିଅ ଭାରତକୁ ଅତି ଚଞ୍ଚଳ ମୁକତି । ୩୬
ପରାଧୀନ କଥା ଆଉ ସହି ପାରୁନାହୁଁ
ଠକାଠକ ମତ ସହି ନ ପାରିବୁ ଆଉ । ୩୮
ଆମେ ତ ଭାରତବାସୀ ଭାରତ ଆମର
ଆମ୍ଭ ଦାବି ପୂରଣ କର ହେ ସରକାର । ୩୯
ନିର୍ବାଚନ ଶେଷେ କର ସ୍ଥିର ସମାଧାନ
ନ କଲେ ତୁରନ୍ତ ହେବ ଘୋର ଆନ୍ଦୋଳନ ।
ସେ ଆନ୍ଦୋଳନକୁ କେହି ରୋକି ନ ପାରିବ
ଭାରତ ଅବଶ୍ୟ ଶୀଘ୍ର ସ୍ୱାଧୀନ ହୋଇବ । ୪୧
ସକଳ ଭାରତବାସୀ ହେଲେ ଏକମୁଖ
ଅଚିରେ ବିନାଶ ହେବ ଭାରତର ଦୁଃଖ । ୪୨
ଯେଉଁ ଶାସନ ଅମଳେ ଲକ୍ଷ ଲକ୍ଷ ଲୋକ
ଅନାହାରେ ମରୁଛନ୍ତି କାହିଁ ତାର ଠେକ ।୪୩
ମତଗତ ଅଧିକାର ନାହିଁ ତାର ଲେଶ
ବରତି ରହିବ ଆଉ ନ ହୋଇ ବିନାଶ । ୪୪
ସ୍ୱାଧୀନତା ପାଇବାର ପିପାସା ଅନଳ
କୁହୁଳି କୁହୁଳି ଜଳିଉଠୁଛି କେବଳ । ୪୫
ଅହିଂସା କଂଗ୍ରେସ ଧର୍ମ ସହିଂସା ତା ମତ
ହିଂସାରେ ସ୍ୱାଧୀନ ହେଲେ ନାହିଁକି ଆପତ୍ତି ।
ନେତାଜୀ ସୁଭାଷ ଯାହା ଯାହା କରିଥିଲେ
ନମସ୍ୟ ଅଟନ୍ତି ସେହୁ ପୂଜ୍ୟ ଭାରତରେ । ୪୬

ମରିଥିଲେ ଅଥବା ସେ ଜୀଇଥିଲେ ଥାଉ
ଭାରତେ ଜଳାଇଦେଲ୍ ନିଆଁ ଦାଉଦାଉ ।୪୮
ମରିଥିଲେ ସେପରି ମରଣ ତାଙ୍କ ବାଞ୍ଛା
ପରାଧୀନ ଜୀବ ଧରି ନ ରହିବେ ଇଚ୍ଛା । ୪୯
ଏହିପରି କେତେ କେତେ ଆଣ୍ଣ କଥାମାନ
କହୁଛନ୍ତି ଜହରଜୀ ପ୍ରସଙ୍ଗ କ୍ରମେଣ । ୫୦
ଘନାଇଅଛି ତହଲ ସାରା ଭାରତରେ
ଇଂରେଜ ଶାସନ ଘୁଞ୍ଚିଯାଉ ଭାରତରେ । ୫୧
ଯାବତ ଜାତୀୟ ସରକାର ନ ହୋଇବ
ଭାରତର ଦୀନ ହୀନ ଦଶା ନ ଘୁଞ୍ଚିବ । ୫୨
ଜହରଲାଲ, ପଟେଲ, ଶରତ, ପ୍ରମୁଖ
ଏକସ୍ୱରେ ଜନତାକୁ ଦେଉଛନ୍ତି ଡ଼ାକ । ୫୩
ସକଳେ କଂଗ୍ରେସ ପଛେ ହୁଅ ଏକଯୁଟ
ସ୍ୱାଧୀନତା-ଧନ ପ୍ରାପ୍ତି ହୋଇବ ନିକଟ । ୫୪
ଜହରଲାଲଙ୍କ ତୀବ୍ର ବାକ୍ୟମାନ ଶୁଣି
କେତେଲୋକ ହେଉଛନ୍ତି ମନେ ମନେ ଗୁଣି ।
ଜହରଲାଲଙ୍କ କଥା ଶୁଣି ସରକାର
ବୋଲାପାରନ୍ତି ଏ ରାଜଦ୍ରୋହ ତ ନିକର ।୫୬
ଆବର ଗିରଫ କରି କାରାଗାରେ ନେବେ
କି ହୋଇବ ପରିସ୍ଥିତି ତେତେବେଳେ ତେବେ
ବିଲାତରେ ଲାଗିଅଛି ବହୁତ ବିଚାର
ପ୍ରତିନିଧିମାନେ ଯିବେ ଭାରତେ ନିକର । ୫୮
ଦେଖିବେ ଭାରତ ତାର ପରିସ୍ଥିତି କିସ
କି କଲେ ତୁରନ୍ତ ଝଡ଼ିଯିବ ଏହି ବିଷ । ୫୯
ବିଲାତର ବଡ଼ ବଡ଼ ପ୍ରତିନିଧିମାନେ
ତୁରନ୍ତ ଆସିବେ ଉଡ଼ି ଉଡ଼ି ଉଡ଼ାଯାନେ ।୬୦
ଏହିପରି ଗଣ୍ଡଗୋଳ ଲାଗିଛି ଭାରତେ
କେବେ ଶାନ୍ତ ହୋଇବ କେ ଜାଣେ କେମନ୍ତେ ।

ପୁଣି କଲିକତାଠାରେ ହେଲା ଗଣ୍ଡଗୋଳ
ଜାତିପ୍ରିୟବାହ୍ମଣ ସେନା ବିଶ୍ୱରର ଫଳ । ୬୨
ଛାତ୍ରମାନେ ମିଳିକରି ପ୍ରତିବାଦ କଲେ
ବିଶ୍ୱର ନ ହେଉ ବୋଲି ମତ ପ୍ରକାଶିଲେ ।
ଶୋଭାଯାତ୍ରା କରି ବାହାରିଲେ ଦଳ ବାନ୍ଧି
ପୁଲିସମାନଙ୍କ ସଙ୍ଗେ ହେଲେ ପ୍ରତିଦ୍ୱନ୍ଦ୍ୱୀ । ୬୪
ଏହାର ଫଳରେ ବହୁ ଦ୍ୱନ୍ଦ୍ୱ ଜନମିଲା
ପୁଲିସ ସହି ନ ପାରି ଗୁଳି ଫୁଟାଇଲା । ୬୫
ଗୁଳିଚୋଟେ କେତେ ଛାତ୍ର ପ୍ରାଣ ହରାଇଲେ
ହାହାକାର ପଡ଼ିଗଲା ସାରା ଭାରତରେ । ୬୬
ଲୀଳାମୟଙ୍କର ଲୀଳା କେ ବୁଝି ପାରିବ
ଏ ବିଶ୍ୱ ମୂରତି ପ୍ରଭୁ କେବେ ସଂହାରିବ । ୬୭
କେଉଁଠାରେ ଭୂମିକମ୍ପ କରେ ଲୋକ କ୍ଷୟ
କେଉଁଠି ଝଡ଼ ତୋଫାନ କାହିଁ ବନ୍ୟା ଭୟ ।
କେଉଁଠାରେ ଅନାହାରେ ମରୁଛନ୍ତି ଲୋକ
କେଉଁ ସମରେ ଛିଣ୍ଡଇ ଲକ୍ଷ ଲକ୍ଷ ବେକ ।୬୯
ଏ ଖଣ୍ଡ ପ୍ରଳୟ ଲୀଳା ଅତି ଭୟଙ୍କର
କାହାକୁ ନିମିତ୍ତ କରି କର କି ପ୍ରକାର । ୭୦
କାହା କଣ୍ଠେ ବିଜେ କରି ଦିଅ କି ପ୍ରେରଣା
ଚିନ୍ତାକଲେ ବୁଦ୍ଧି ବୃତ୍ତି ହୋଇଯାଏ ବଣା ।୭୧
ଅଦ୍ଭୁତ ସୃଷ୍ଟି ନିୟମ କେ କଳି ପାରିବ
କଳୁ କଳୁ କିଛି ଦୂରେ ବିସ୍ମୟ ଭଜିବ । ୭୨
ବିଜ୍ଞାନ ବିଜ୍ଞାନ ବୋଲି ପଡ଼ିଅଛି ହୁରି
ବିଜ୍ଞାନ ତ କାହିଁ କିଛି ନ ପାରିଲା କଳି । ୭୩
ଆଜିଯାକେ କେହି କିଛି କଳି ନ ପାରିଲେ
ଅଜଣା ରାଇଜ କହି ନିରସ୍ତ ହୋଇଲେ । ୭୪
ଯେଉଁଦିଗକୁ ଚାହିଁଲେ ଦିଶୁଛି ଅନନ୍ତ
କଳି ନ ହୁଅଇ କିଛି ନାହିଁ ଆଦି ଅନ୍ତ । ୭୫

ଏ ବିଶ୍ୱ ପ୍ରଦର୍ଶନୀକ ବସାଇଛି କିଏ
କାହିଁ ଲୁଚିବସି ରଙ୍ଗେ ସକଳ ସଜାଏ । ୭୬
ଧନ୍ୟ ଶିଳ୍ପୀ କାରିଗର ଧନ୍ୟ କଉଶଳ
କାହିଁ ବସି ଚଳାଉଛି ଏ ବିଚିତ୍ର କଳ । ୭୭
ଆକାଶ ପାତାଳ ଚଉଦିଗକୁ ଚାହିଁଲେ
ଅସୀମ ଅନନ୍ତ ସବୁ ଦେଖାଯାଏ ଭଲେ । ୭୮
ଆକାଶରେ ଗ୍ରହ ତାରା ମାଳ ମାଳ ହୋଇ
କିଏ ଧରି ଝୁଲାଇଛି ବୁଝି ନ ପାରଇ । ୭୯
ଖସି ପଡ଼ୁନାହିଁ କେହି କପରି ରଖିଛି
ଧାରମତେ ନିତ୍ୟପ୍ରତି ଗତି କରୁଅଛି । ୮୦
ଚନ୍ଦ୍ର ସୂର୍ଯ୍ୟ ମଧ୍ୟରେ କେ ଥୋଇଛି ପ୍ରଦୀପ
ବିନା ତଇଳେ ଜଳୁଛି ରାତି ଦିନଯାକ । ୮୧
ଜଗତକୁ ଦେଉଛନ୍ତି ଆଲୋକ ଏ ଦୁଇ
ଘୂରୁଛନ୍ତି ଦିବା ରାତି କାହା ଆଜ୍ଞା ପାଇ । ୮୨
ଆକାଶକୁ ଚାହିଁଲେ ନ ଦିଶେ ଆଦିଅନ୍ତ
ତଳେ ନୀଳ ପାରାବାର ଅସୀମ ଅନନ୍ତ । ୮୩
ମହାସତ୍ତ୍ୱରୂପୁ ଉପୁଜେ ଦେଖି ଏ ଜଗତ
କେବେ ଭୀମ ଭୟଙ୍କର କେବେ ମହାଶାନ୍ତ ।
କାହିଁ ମହାଘୋର ରଣ କାହିଁ ନୃତ୍ୟ ଗୀତ
କାନ୍ଦବୋବାଳି କେଉଁଠି କାହିଁ ହାସ୍ୟମତ୍ତ । ୮୫
କେ ରୋଗରେ ଛଟପଟ କେହୁ ମହାଭୋଗୀ
କେହୁ କଠୋର ତପସ୍ୱୀ କେହୁ ମହାଯୋଗୀ ।
କେଉଁଠି ଅନ୍ଧାର ପୁଣି କେଉଁଠି ଆଲୋକ
କେହୁ ସତ୍ୟବାଦୀ କେହୁ ପ୍ରବଳ ବଞ୍ଚକ । ୮୬
ଦେଖି ଏ ବିଚିତ୍ର ଲୀଳା ମନେହୁଏ ଏବେ
ନମସ୍ତେ ନମସ୍ତେ ପ୍ରଭୁ ନମସ୍ତେ ନମସ୍ତେ । ୮୮
ନିମିତ୍ତ ମାତ୍ରକ ହୋଇ ଏ ଜୀବ ସକଳ
କର୍ମକ୍ଷେତ୍ରେ କର୍ମମାନ କରନ୍ତି କେବଳ । ୮୯

ଖେଳାଉଛନ୍ତି ଯେଉଁପରି ଖେଳନ୍ତି ସରବେ
ମୁଁ କରୁଛୁ ବୋଲି କହୁଅଛନ୍ତି ଗରବେ । ୯୦
ମାୟାଯନ୍ତ୍ରରେ ବସାଇ ଖେଳାଉଛି ଖେଳ
'ମୁଁ' କହି ପାପରେ ଭାଗୀ ହୁଅନ୍ତି କେବଳ ।

ଗଉର ଉବାଚ

ପ୍ରଭୁଙ୍କ ବଚନ ଲୀଳା ଶୁଣି ହେଲି ଧନ୍ୟ
ନ ଜାଣଇ କସ ପାପ କସ ଅବା ପୁଣ୍ୟ । ୯୨
ତାଙ୍କ ପ୍ରେରଣାରେ କରେ ଯାବତ କରମ
କଲେ ଯାହା ପ୍ରଭୁପଦେ କରେ ଅରପଣ ।୯୩
ଏମନ୍ତ ବିଶ୍ୱାସେ ଯେହୁ କରଇ କରମ
ନ ଲଗଇ ତାକୁ କିଛିମାତ୍ର ପାପ ପୁଣ୍ୟ । ୯୪
ସେ ଯାହା କରାଉଅଛି କରୁଅଛି ମୁହିଁ
ମୋହର ନିଜତ୍ୱ ଏଥି କିଛିମାତ୍ର ନାହିଁ । ୯୫
ଆପଣଙ୍କ କଥାରୁ ମୁଁ ଏମନ୍ତ ବୁଝୁଛି
ଶୁଣାନ୍ତୁ ଆଉ କଥାଏ ପୁଣି ପଚାରୁଛି । ୯୬
ଅନଶନ କି ଧରମ କସ ତାର ଫଳ
କେଉଁ ଶାସ୍ତ୍ରେ ଏ ବିଧାନ ହୋଇଛି ନିକର ।
ବହୁଲୋକ କରୁଛନ୍ତି ଅନଶନ ଏବେ
ଦେଖା ଶୁଣା ନ ଥିଲା ତ ଏ ବିଷୟ କେବେ ।

ଜଗା ଉବାଚ

କିଛି ନ ଖାଇ ରହିବା ନାମ ଅନଶନ
ଅନାହାର, ଉପବାସ ନାମ ତାର ପୁଣ । ୯୯
ନାନା ବ୍ରତ ଉପବାସ ଅଛଇ ବିଧାନ
କାମ୍ୟକର୍ମ ନାମ ତାର ଅଟଇ ପ୍ରଧାନ ।୧୦୦
କଠୋର ତପସ୍ୟା ଆଦି ଉପବାସ ଯେତେ
ଯେତେ ଦୃଢ଼ମନେ ପାଳି କ୍ଳେଶକର ସେତେ ।
ଭବସିନ୍ଧୁ ତଟେ ଜୀବ ଅଛଇ ଯାବତ
ଆହାର ଲମ୍ପଟ ଭାବ ଅଛଇ ତାବତ । ୧୦୨

ଆହାର ନ କଲେ କେହି ବଞ୍ଚି ନ ପାରିବ
ଆହାର ବିହୁନେ ଆତ୍ମା କ୍ଳେଶ ଭୋଗୀ ହେବ ।
ଗୀତାରେ ଶ୍ରୀଭଗବାନ କହିଲେ ଏମନ୍ତ
ଏ ପ୍ରକାର ଦୂର କର୍ମେ ହୁଏ ଯେହୁ ରତ ।
ଭଗବାନଙ୍କୁ ଦିଅଇ ଅଯଥା କଷଣ
ଶରୀର ଦେଉଳେ ଯହିଁ ଛନ୍ତି ଭଗବାନ ।୧୦୫
ଏହା ଯଦି ହେଲା ଭଗବାନଙ୍କର ମତ
ଅନଶନ ନୁହଇ ତ ଶାସ୍ତ୍ରର ସମ୍ମତ । ୧୦୬
ଶରୀର ଆତ୍ମାକୁ ଯେହୁ ଦିଅଇ କଷଣ
ହିଂସା କରମ ବୋଲିଣ ତାକୁ କର ଜ୍ଞାନ ।୧୦୭
ଅନଶନକୁ ଅହିଂସା କରମେ ନ ଗଣ
ଆପଣା ଆତ୍ମାକୁ ସେହୁ ଦିଅଇ କଷଣ । ୧୦୮
ବାତାମ୍ବୁ ପତର ଫଳ ଯାହା କିଛି ଖାଅ
ଅଶନ କରମ ହେଲା ଜାଣ ହେ ନିଶ୍ଚୟ ।୧୦୯
ଶୁଣାଅଛି ସିଦ୍ଧଯୋଗୀ ଯୋଗବିଧି ବଳେ
ଭୂଗର୍ଭରେ ରହୁଥିଲେ ଛ ଛ ମାସ ହେଲେ ।
ମାଇପେ ପିଲାଏ ଗୁରୁଜନେ ମାନକରି
କିଛି ନ ଖାଇ ଉପାସେ ରହନ୍ତି ଅଧିର ।୧୧୧
ଆଦର ପାଇଲେ ପୁଣି କରନ୍ତି ଆହାର
ଏ ତ ନୁହେଁ ଭଲ ମତ କରେ ମୁଁ ବିଚାର ।
ମହାଜନ ଯେବେ ଋଣ ଆଦାୟ ପାଇଁକି
ଖାତକ ଦୁଆରେ ଜଗିବସଇ ନାହିଁକି । ୧୧୩
ନ ଦେଲେ ମୋ ଋଣଟଙ୍କା କେବେହେଁ ନ ଯିବି
ଧାରଣା ଦେଇ ଦୁଆରେ ଉପାସେ ଶୋଇବି ।
ଏହିପରି କେତେ କଥା ଶୁଣା ଯାଉଥିଲା
ବିଂଶ ଶତାବ୍ଦିରେ ଆନ ଆକାର ଧରିଲା ।୧୧୫
ମହାତ୍ମାଗାନ୍ଧି ପ୍ରଥମେ କଲେ ଅନଶନ
ତାଙ୍କ ଅନୁକରଣରେ କଲେ ଆନ ଜନ ।୧୧୬

ଶ୍ରେଷ୍ଠଲୋକ ସମାଜର ଯେ କଥା କରନ୍ତି
ଇତର ଲୋକେ ସେ କଥା ବଳେ ଆଚରନ୍ତି ।
ଗାନ୍ଧିଜୀ ବୋଲନ୍ତି ଏହି ଅନଶନବଳେ
ଅନ୍ତର ଶୁଦ୍ଧି ହୁଅଇ ପାପତାପ ଗଲେ ।୧୧୮
ଆପଣାର ଦୋଷ ତ୍ରୁଟି ଯାହା କିଛି ଥିବ
ଅନଶନେ କଲେ ସବୁ ଧୋଇ ହୋଇଯିବ ।୧୧୯
ଅନ୍ତର ତପସ୍ୟା ଯେବେ ଅଟେ ଅନଶନ
ଅନ୍ତରର ଶୁଦ୍ଧି ମାତ୍ର ଅଟଇ କାରଣ । ୧୨୦
ଆନ କିଛି ମତଲପ ରଖି ଯେ କରିବ
କି ଫଳ ଅଛି ତହିଁରେ କିଏବା କହିବ ।୧୨୧
କଥା କଥାକେ କରନ୍ତି ଲୋକେ ଅନଶନ
କ୍ରମେ କ୍ରମେ ତାଙ୍କ ସଂଖ୍ୟା ବଢ଼ୁଅଛି ଜାଣ ।
କେ ବୋଲଇ ମୋର କଥା ଯେବେ ନ ରହିଲା
ଅନଶନେ କରି ଦିନ ନେବି ମୁହିଁ ଭଲ । ୧୨୩
କେ ବୋଲେ ତା ନାମେ ମିଛେ ଲଗାଇ ଜଟାଇ
ଲୋକେ କହୁଛନ୍ତି ଲାଞ୍ଚ ନେଇଥିଲା ସେହି ।
ଏକଥା ଯାବତ ନ ହୋଇବ ପରମାଣ
ତାବତ କରିବ ସେହୁ ଭଲେ ଅନଶନ ।୧୨୫
ଅନଶନ ଅସ୍ତ୍ରର ଏପରି ବ୍ୟବହାର
କରିବାର ଦେଖା ଯାଉଅଛି ବାରବାର ।୧୨୬
ଆହୁରି ରହସ୍ୟ ଅଛି ଅନଶନ ବଳେ
ଚହଳ ପଡ଼ଇ ନାନା ସମ୍ବାଦପତ୍ରରେ । ୧୨୭
ଲୁଣପାଣି, ଲେମ୍ବୁରସ, କମଳା, ମଧୁର
ପାନ କରୁଥାନ୍ତି ଦିନକରେ ବହୁବାର । ୧୨୮
ଚିକିତ୍ସକମାନେ ରହିଁ ବସିଥାନ୍ତି ପାଶେ
ନାଡ଼ି ଦେଖି ବାରବାର ଲେଖି ପରକାଶେ ।
ବନ୍ଧୁବର୍ଗ ପତ୍ର ଲେଖି କରେ ନିବେଦନ
ଛାଡ଼ ଆହେ ବନ୍ଧୁ, ଏହି କ୍ରୂର ଅନଶନ ।୧୩୦

ଖବରକାଗଜେ ସବୁ ହୁଏ ପରକାଶ
ଦୁଇ ତିନଦିନେ କାର ଶୁଣିଙ୍କ ଉପବାସ ।୧୩୧
ଆତ୍ମଶୁଦ୍ଧି ପାଇଁ ଯେହୁ ଉପାସ କରିବ
ସାରା ଜଗତକୁ କମ୍ପା ତାହା ଜଣାଇବ ।୧୩୨
ବିଜ୍ଞାପନ ଦେଇ ଯେ କରଇ ଅନଶନ
ନୂତନ କି ଏହା ଏକ ନୂଆ ପ୍ରହସନ । ୧୩୩
ଗାନ୍ଧିଜୀ ପଥିଲେ ଦେଖାଇଲେ ଅନଶନ
ଆଜ କଲେ କହୁଛନ୍ତି ନୁହେଁ ଏ ବିଧାନ ।୧୩୪
ଏଥିର ବିଜ୍ଞାନ କିଛି ଜଣା ଯାଉନାହିଁ
ଏମନ୍ତ ବିଧାନ କେଉଁ ଶାସ୍ତ୍ରରେ ତ ନାହିଁ ।୧୩୫
ନିଜେ ବୁଝି ବିଚାର କଲେକି ଅନଶନ
ଅନୁରୋଧେ ଉପରୋଧ ହେଉଛି କେସନ ।
ନିଜ ପାପ ପ୍ରାୟଶ୍ଚିତ୍ତ ପାଇଁ ଯେବେ କର
ଆନ ଉପରୋଧେ କମ୍ପା ଭାଙ୍ଗିବ ନକର ।୧୩୭
ଆପଣାର ମନକଥା ଆପଣାକୁ ଜଣା
ଆତ୍ମପରୀକ୍ଷା ନ କର ହୁଅ କମ୍ପା ବଣା ।୧୩୮
ନିଶ୍ଚଳ ମନରେ ଯେବେ ନିଜକୁ ପୁଚ୍ଛିବ
ସାଧୁ କି ଅସାଧୁ ବୋଲି ବିବେକ କହିବ ।୧୩୯
ମୋ ଚିତ୍ତ ଯେବେ ନିର୍ମଳ କାକୁ କମ୍ପା ଭୟ
ଅନ୍ତର୍ଯ୍ୟାମୀ ପୁରୁଷଙ୍କୁ ଜଣାଅଛି ଥୟ । ୧୪୦
ସ୍ବାର୍ଥ ନ ପାରି କେ କିସ ମିଥ୍ୟାଦୋଷ ଦେଲେ
ଅନଶନ କରି କମ୍ପା ମରିବ ମୁଁ ବନେ ।୧୪୧
ବୃଥା ଦୂଷଣକୁ ଡରି କଲେ ଅନଶନ
ଅବଧି ରହିବନାହିଁ ଦୂଷଣର ପୁଣି । ୧୪୨
ଦୂଷଣ ଖଣ୍ଡନପାଇଁ କରି ଅନଶନ
ଉପରୋଧେ ଭାଙ୍ଗିଲେ ଅଧିକ ଅପମାନ ।୧୪୩
ଏ ଦାଉରୁ ସେ ଦାଉ ବଳିବ, ବେଶି ନିନ୍ଦା
କଥା କଥାକେ ନ କର ଅନଶନ ଫନ୍ଦା ।୧୪୪

ଆଲୋଚନା ବଡ଼ମ୍ବନା ହୋଇବ ବହୁତ
କାହା ତୁଣ୍ଡେ ବାଡ଼ବନ୍ତା କେ ଦେବ ସଙ୍ଗତ ।
ମୋହର ଏ କ୍ଷୁଦ୍ରମତ କହିଲି ଗଉର
ମନ ନ ମାନିଲେ ବଡ଼ ଜ୍ଞାନୀଙ୍କି ପଚ୍ଛର ।୧୫୬
ଆହେ ପ୍ରଭୁ ଚିତ୍ତ ସଦା କର ନିରିମଳ
ଉଭେଇଯାଉ ଯାବତ ଅନ୍ତରର ମଳ । ୧୫୭
ତବ କୃପାବଳେ ସିନା ଏ ବର ମିଳିବ
ଅଜ୍ଞାନୀ ମାନବ କଷ୍ଟ ଧରି ନ ପାରିବ । ୧୫୮
ପ୍ରାଣ ବିକଳରେ ଯେନେ ଡାକ ପାରୁନାହିଁ
ଚଗଲା ମନ ତ କେବେ ଥୟ ହେଉନାହିଁ ।୧୫୯
ତବ ଉପାସନା ପାଇଁ ବସିବା ସମୟେ
ବାର ବଣବୁଦାକୁ ଚଗଲା ମନ ଧାଏଁ । ୧୬୦
କାହୁଁ କେତେ କଥା ଉପକଥା ଆଣି ଥୁଏ
ମୁହୂର୍ତ୍ତେ ମନକୁ ଥୟ କରାଇ ନ ଦିଏ । ୧୬୧
ତେଣୁ ପ୍ରଭୁ ବାରବାର ମୋର ନିବେଦନ
ଦୟାକରି ଥୟକରିଦିଅ ମୋର ମନ । ୧୬୨
ତୁମ୍ଭେ ପିତା ତୁମ୍ଭେ ଗୁରୁ ହରତା କରତା
ନ ହେବ ମୋ ଦୋଷ ସ୍ଥଳେ ଦଇବ ବିଧାତା ।
ନ ଡାକ ପାରିଲିବୋଲି ସିନା ମୋର ଦୋଷ
ଏଥିପାଇଁ ପିତା କ୍ଷମା ନ କରିବ ରୋଷ ।୧୬୪
ସୁମରିଲେ ନାମ ଯାର ଯାଏ କୋଟି ଦୋଷ
ଏତେ ପାପ କରିବାକୁ ନାହିଁ ମୋ ଆୟୁଷ ।
ଅପରାଧ ବାରିଧିରେ ପହଁରୁଛି ମୁହିଁ
ପଦନାବ ଦେଇ ତାରେ ପ୍ରଭୁ କର ସାହି ।୧୬୬
ସ୍ରଷ୍ଟେ ଧନ ଜଗବନ୍ଧୁ ନୀଳାଚଳ ନାଥ
ଅପରାଧ କ୍ଷମା କର ହେ ପ୍ରଭୁ ଅଚ୍ୟୁତ । ୧୬୭

ଇତି ଶ୍ରୀ ଭରତ-ଚରିତାମୃତେ ଭାରତ ଜାତୀୟ ସେନା ମୁକ୍ତି ଦଳର ଅନଶନ
ତତ୍ତ୍ୱ ବର୍ଣ୍ଣନେ ଏକଶତ ବିଂଶ ଅଧ୍ୟାୟଃ ।

# ଏକଶତ ଏକବିଂଶ ଅଧ୍ୟାୟ

### ଗଉର ଉବାଚ

ବିଲାତରୁ କେତେଜଣ ଲୋକ ଆସିଥିଲେ
ସାରା ଭାରତରେ ନାନା ପ୍ରଦେଶ ଦେଖିଲେ ।୧
ସେମାନେ ଦେଖିଲେ କିସ କିମ୍ପା ଆସିଥିଲେ
ଫେରିଯାଇ ନିଜ ଦେଶେ କିସ ବଖାଣିଲେ ।୨
ଭାରତରେ ନିର୍ବାଚନ ସମର ହେଉଛି
କଂଗ୍ରେସ ଜୟୀ ହେବାକୁ ପ୍ରଚାର ଲାଗିଛି । ୩
ତେଣେ ମୁସଲମାନମାନେ ଭିଡ଼ିଛନ୍ତି ଅଣ୍ଟା
ପାକସ୍ଥାନ ହେଲେ ସେ ହୋଇବେ ଗୋଠଫଟା।
ଜାତୀୟବାହିନୀ ସେନା ହୋଇଲେ ମୁକତ
ତହିଁରୁ କି ଫଳହେବ କହନ୍ତୁ ନିଶ୍ଚିତ । ୫
ଶୁଣି ପଡ଼ୁଅଛି ଦେଶେ ଦୁର୍ଭିକ୍ଷ ହୋଇବ
କି ଉପାୟ କଲେ ଏଥୁଁ ନିସ୍ତାର ମିଳିବ । ୬
ଦୁର୍ମୂଲ୍ୟ ହାଉ ଦେଖିଣ ଲୋକ ଯାଏ ଶଙ୍କି
ଏଥୁଁ ଅଧିକ ଆହୁରି କିସ ହୋଇବକି । ୭
ଲୋକ ପ୍ରତିନିଧିମାନେ କଲେକି ଶାସନ
ଇଂରେଜ ଭାରତ ଛାଡ଼ି ଚାଲିଗଲେ ପୁଣ । ୮
ନୂଆ ପରିସ୍ଥିତି କିସ ହୋଇବ ଦେଶରେ
ବଞ୍ଚିବେ କି ଲୋକ ଆଉ ଅଧିକ ସୁଖରେ । ୯
କେତେଜଣ ଚଳାଇବେ ଏ ଶାସନକଳ
ମନ୍ତ୍ରୀ ପ୍ରାନ୍ତମନ୍ତ୍ରୀ ଦେଶେ ହେବେ ମାନମାନ ।
ଏଥୁଁ ଅଧିକ କି ହେବ କହନ୍ତୁ ଆପଣ
ବୁଝି ପାରୁନାହିଁ କିଛି ମୁଁ ତ ମୂଢ଼ଜନ । ୧୧

### ଜଗା ଉବାଚ

ବହୁତଗୁଡ଼ିଏ କଥା ପୁଛିଲ ଗଉର
ଏତେକଥା କହିବାକୁ ଶକ୍ତି ନାହିଁ ମୋର ।୧୨

ବହୁତ ଜଟିଳକଥା ଅଛଇ ଏଥିରେ
କହିବାକୁ ଭାଷା ନାହିଁ ଅତ ସହଜରେ । ୧୩
ଯଥାଶକ୍ତି କହିବଇଁ ଜଣାଅଛି ଯାହା
ତୁମ୍ଭଙ୍କୁ ସନ୍ତୋଷ ଦେଇ ନ ପାରଇ ତାହା ।୧୪
ବହୁତ ପଣ୍ଡିତ ପଥବଣା ହେଉଛନ୍ତି
ମୁଁ କହିପାରିବି ବୋଲି କହିବି କମିତି । ୧୫
ଅନ୍ଧ ହସ୍ତୀଧରା ନ୍ୟାୟ ସୂତ୍ରରେ କହିବି
ହେଲେ ପଛେ ଜନତାର ଉପହାସ ହେବି ।୧୬
ମୋ ଉତ୍ତର ଯୁକ୍ତିଯୁକ୍ତ ନ ହୋଇବ ଯେବେ
ଅକ୍ଲେଶରେ ପାରିବାରେ ଫିଙ୍ଗିଦିଅ ତେବେ ।
ବିଲାତ ଦେଶରେ ସଭା ଅଛଇଟି ଏକ
ପାର୍ଲିଆମେଣ୍ଟ ତା ନାମ କର ହେ ବିବେକ ।
ସେ ଦେଶରେ ଯେତେ ଯେତେ ଭଦ୍ରବାଡ ଅଛି
ବାଡ଼ ପ୍ରତିନିଧିଙ୍କର ତହିଁ ସ୍ଥାନ ଅଛି । ୧୯
ସେ ସଭାର ମତ ନେଇ ଚଳୁଛି ଶାସନ
ସେ ସଭାରୁ ଆସିଥିଲେ ଲୋକ କେତେଜଣ ।୨୦
ଭାରତର ସବୁ ପ୍ରଦେଶକୁ ଯାଇଥିଲେ
ବୁଲି ବୁଲି ସବୁକଥା ଦେଖିଲେ ଶୁଣିଲେ ।୨୧
ଭାରତ ଲୋକଙ୍କ ନାଡ଼ୀ ଚିପିଲେ ବହୁତ
ଆଶାବାଣୀ ଶୁଣାଇଲେ ବହୁତ ବହୁତ । ୨୨
ବୋଇଲେ ଭାରତବାସୀ ହେଲେଣି ଉନ୍ନତ
ସ୍ୱାଧୀନତା ପାଇବା ତାଙ୍କର ହକ ସତ୍ତ୍ୱ । ୨୩
କାଲି ସେମାନେ ଭାରତରୁଁ ବିଲାତକୁ ଯିବେ
ଯାହା ଦେଖିଲେ ଶୁଣିଲେ ଦେଶରେ କହିବେ ।
ତାଙ୍କ ଦେଶ ସଭା ଯାହା କରିବ ବିଚାର
ସେହିପରି ଭାରତକୁ ଦେବେ ଅଧିକାର । ୨୫
ଏ ଆଶାବାଣୀ ଶୁଣାଇ ଭାରତରୁ ଗଲେ
ଦେଶବାସୀଙ୍କ ଆଗରେ କି କଥା କହିଲେ ।୨୬

ପୁଣି ତିନି ଜଣ ମନ୍ତ୍ରୀ ସଭାର ସଦସ୍ୟ
ଆସୁଛନ୍ତି ଭାରତକୁ ଘେନି କ ସନ୍ଦେଶ । ୨୭
ଆଟେଲି ସାହେବ ପାଠମନ୍ତ୍ରୀ ବିଲାତର
ଶ୍ରମିକ ଦଳର ନେତା ଅଟନ୍ତି ଏଥର । ୨୮
ଯେଉଁମାନେ ଭାରତକୁ ଆସି ଫେରିଗଲେ
ସକଳ ବୃତ୍ତାନ୍ତ ସେହୁ ତାଙ୍କଠୁ ଶୁଣିଲେ । ୨୯
ପାର୍ଲିଆମେଣ୍ଟ ସଭାରେ ଦେଲେକ ଭାଷଣ
ମାନିଗଲା ଭାଷଣରୁ ନେତାଙ୍କର ମନ । ୩୦
ଧନ୍ୟ ଧନ୍ୟ କହି ସର୍ବେ ପରଶଂସା କଲେ
ବଡ଼ ଆଶାପ୍ରଦବାଣୀ ମନ୍ତ୍ର ଶୁଣାଇଲେ । ୩୧
ତିନି ମନ୍ତ୍ରୀ ଭାରତକୁ ଉଡ଼ି ଆସିଛନ୍ତି
ପେଥିକ ଲରେନ୍ସ ପୁଣି ଭାରତର ମନ୍ତ୍ରୀ । ୩୨
ଉଡ଼ିଆସି ଭାରତରେ ହୋଇଲେ ଉପଗତ
ମଧୁମୟ ବଚନ ସେ କହନ୍ତି ବହୁତ । ୩୩
"ମୁସଲମାନଙ୍କୁ କେହି ମଣନାହିଁ ହାନ
ସେ ଏକ ବିରାଟ ସମ୍ପ୍ରଦାୟ ବୋଲି ଘେନ ।
ସଂଖ୍ୟାରେ ପୁଣି ଅଧିକ ଅଟନ୍ତି ସେମାନେ
ଊଣା ମଣନାହିଁ କେହି ତାଙ୍କୁ ମନେ ମନେ । ୩୪
ଭାରତ ସ୍ୱାଧୀନ ହେଉ କାମନା ଆମ୍ଭର
ଏ ମାତ୍ର ଦୃଷ୍ଟିରୁ କରୁଅଛୁଁ ସିଉକାର । ୩୫
ଏ ମାତ୍ର ପଥରେ ଅଛି ଯେତେ ବାଧାବିଘ୍ନ
ଭାରତବାସୀଏ ନିଜେ କର ସମାଧାନ । ୩୬
ଯଥାଶକ୍ତି ସାହାଯ୍ୟ କରିବୁଁ ଆମ୍ଭେ ସିନା
କିନ୍ତୁ ଘଟଣା ନ ହେବ ତବ କାର୍ଯ୍ୟ ବିନା । ୩୭
ମିଳିମିଶି ସବୁକଥା ନ କରିବା ଯେବେ
ହୁକୁମ ଦେଇ ଏ କାର୍ଯ୍ୟ ନ କରିବୁଁ ଆମ୍ଭେ ।
ସବୁ ସମ୍ପ୍ରଦାୟ ମିଳି ନ କଲେ ବିଚାର
ଭାରତ କପରି ମୁକ୍ତି ପାଇବ ନିକର । ୪୦

ଜଣ ଜଣ କରି ତାଙ୍କ କଥା ପଚାରିବୁଁ
କାହାର କେମନ୍ତ ମତ ଆମ୍ଭେ ବୁଝିନେବୁଁ ।
ଏଥିପାଇଁ ଦିଲ୍ଲୀଠାକୁ ଡ଼କରା ପଡ଼ିଛି
କଥାବାରତା ସରିଲେ ହେବ ବନ୍ଦୋବସ୍ତି । ୪୨
ମହାତ୍ମାଗାନ୍ଧି ପ୍ରଭୃତି ଲୁଗାପଟା ବାନ୍ଧି
ଦିଲ୍ଲୀଠାକୁ ଯିବାପାଇଁ ହେଉଛନ୍ତି ଧନ୍ଦି । ୪୩
ଡ଼କରା ହକରା କଥାବାରତା ସରିଲେ
କ ହୋଇବ ସାରକଥା ଜଣାଯିବ ଭଲେ ।୪୪

ଗଜର ଉବାଚ

ଆଜ୍ଞାର କଥାଏ ପୁଛିବାକୁ ମୋର ମନ
କଥାଟି ଲାଗୁଛି ମୋତେ ବଡ଼ଇ ବିଷମ । ୪୫
ଗାନ୍ଧି ଏବେ କହୁଛନ୍ତି ବଡ଼ ବିପରୀତ
ସକଳକୁ ମେହେନ୍ତର ହୋଇବା ଉଚିତ ।୪୬
ଯେଉଁ ଅଞ୍ଚଳକୁ ଗାନ୍ଧି ଯିବେ ଯେତେବେଳେ
ମେହେନ୍ତର ବସ୍ତିରେ ରହିବେ ତାଙ୍କ ସେନେ ।
ବଚନେ କହିବ ଯାହା କାର୍ଯ୍ୟରେ କରିବ
ଯଥାଦୂର ସମ୍ଭବ ଏ ମନ୍ତ୍ରକୁ ପାଳିବ । ୪୯
ଏହିହେତୁ ମେହେନ୍ତର ସାହିରେ ରହିବେ
କହୁଥିଲେ ଭୃତ୍ୟେ ଯାହା କାମରେ କରିବେ ।
ଏହାର ଗୂଢ଼ ରହସ୍ୟ ବୁଝି ପାରୁନାହିଁ
ମେହେନ୍ତର ବସ୍ତିରେ ରହିବେ କାହିଁପାଇଁ ।୫୦
ରହିଲେ ଏଥିରୁ କସ ଫଳ ଉପୁଜିବ
ମେହେନ୍ତରଙ୍କର କିବା ଉପକାର ହେବ । ୫୧
ସମାଜର କି କି ଉପକାର ହେବ କହ
ଏକଥା ଶୁଣି ମନରେ ଉପୁଜେ ସଂଶୟ । ୫୨

ଜଗା ଉବାଚ

ଆଚ୍ଛା କଥାଏ ବିଚାରି ପୁଛିଲ ଗଜର
ମହାତ୍ମା ମହାପୁରୁଷ ବଚନ ସୁନ୍ଦର । ୫୩

ଏ ଯୁଗରେ ଗାନ୍ଧି ହୋଇଲେ ଜଗତ ବିଖ୍ୟାତ
ତାଙ୍କ ଆଗେ ସକଳ ଲୋକଙ୍କ ଶିର ନତ ।୫୪
ବଡ଼ଲୋକଙ୍କର ମତ ଯିନା ଅଟେ ଶ୍ରେଷ୍ଠ
ଅଳପ ଲୋକ କହିଲେ ଉପୁଜେ ବିଭ୍ରାଟ ।୫୫
ଗାନ୍ଧି କହୁଛନ୍ତି ବୋଲି ମାନିନେବେ ଲୋକେ
ନ ମାନିବା ଲୋକ ଅବା ଥିବେ କେହି ଥୋକେ ।
ମୋପରି ଅଳପ ବୁଦ୍ଧି ଲୋକ ଭିନ୍ନ ମତ
କହିଲେ ହସିବେ ଅବା ନିନ୍ଦିବେ ବହୁତ । ୫୭
ବୋଲିବେ ମହାତ୍ମାଗାନ୍ଧି କହୁଛନ୍ତି ଯାହା
ଏହାର ଏଡ଼େ ସାହସ ଆନ କରେ ତାହା ।୫୮
ଅଥବା ବୋଲିବେ ଗାନ୍ଧି ଜଗତ ବରେଣ୍ୟ
କହୁଛନ୍ତି ସତକଥା କେ କରିବ ଆନ ।   ୫୯
କେତେକେତେ ଲୋକ ଗାନ୍ଧି କଥାରେ ମାତିବେ
ମୋ କଥା ଶୁଣି ହସରେ ଉଡ଼ାଇଣ ଦେବେ ।
ତେଣୁ ଦୋ ଦୋ ପାଞ୍ଚ ହୋଇ କହୁଛି ଏମନ୍ତ
ଚୁପହୋଇ ରହିବାଟା ଅଟେ ଯୁକ୍ତିଯୁକ୍ତ । ୬୧
ପୁଣି ବିଚାରୁଛି ତୁମ୍ଭେ ପାଞ୍ଚବ ଏମନ୍ତ
ଏ ଲୋକ ଏଡ଼େ ଦୁର୍ବଳ ନାହିଁ ନିଜ ମତ ।୬୨
କାହାକୁ ରୁଚୁ ନ ରୁଚୁ କିଛି ଚିନ୍ତାନାହିଁ
ନିଜ ବିବେକ ଯା କହେ କହିଦେବା ତାଇ ।
ପାଠକମାନେ ସେ କଥା ବିଚାର କରିବେ
ନିଜ ନିଜ ରାହା ଲୋକେ ଆପେ ବାଛିନେବେ ।
ଶୁଣାଥିଲେ ଭଲକାଳେ ବେଦର ବିଚାର
ନ କରି ସକଳେ ହୋଇଯିବେ ଏକାକାର ।୬୪
ଏ ତ ଭଗବତ ବାଣୀ କେ କରିବ ଆନ
ଆଖି ତ ଦେଖିଲା ଯାହା ଶୁଣିଥିଲା କାନ । ୬୫
ଅନୁସରି ଗୁଣକର୍ମ ବର୍ଣ୍ଣାଶ୍ରମ ବିଧି
ଶ୍ରୀମୁଖ ବଚନ ଶାସ୍ତ୍ର ରଚିଛି ସମାଧି । ୬୬

ସକଳ ଶାସ୍ତ୍ରରେ ଏହା ଅଛଇ ପ୍ରମାଣ
ଗୀତାରେ ଯେକଥା କହିଥିଲେ ଭଗବାନ । ୬୮
ଶ୍ରୁତି, ସ୍ମୃତି, ପୁରାଣ ତ କହିଅଛୁ ଏହା
ମାନିଲେ ମାନ ନ ମାନ ଆର୍ଯ୍ୟଗଣ ତାହା । ୬୯
ସତ୍ତ୍ୱ, ରଜ, ତମ ତିନ ଗୁଣ ଅନୁସାର
କର୍ମ କରୁଛନ୍ତି ଲୋକେ ଦିବସ ଶର୍ବରୀ । ୭୦
ସତ୍ତ୍ୱଗୁଣ ଶ୍ରେଷ୍ଠ, ତମ ଅଟଇ ନିକୃଷ୍ଟ
ରଜ ଯେ ମଧ୍ୟମ ଗୁଣ ଅଟଇ ନିଶ୍ଚିତ । ୭୧
ପ୍ରତ୍ୟେକ ପ୍ରାଣୀର ଅଛୁ ଏହି ତିନିଗୁଣ
କାହାଠି କେଉଁ ଗୁଣଟି ଅଟଇ ପ୍ରଧାନ । ୭୨
ବ୍ରାହ୍ମଣର ସତ୍ତ୍ୱ ଗୁଣ ଅଟଇ ପ୍ରଧାନ
ଶୂଦ୍ରର ପ୍ରଧାନ ଅଟଇ ଯେ ତମଗୁଣ । ୭୩
ବ୍ରହ୍ମଜ୍ଞାନ ହୁଏ ଯାର ସେ ଅଟେ ବ୍ରାହ୍ମଣ
ସମଦରଶୀ ନ ଥାଏ ପରାପର ଜ୍ଞାନ । ୭୪
ସତ୍ୟବାଦୀ ଜିତେନ୍ଦ୍ରିୟ ଅହିଂସ ଦୟାଳୁ
ଭଗବତ ଭକ୍ତ ନିର୍ଭୟ ବାଳକାଳୁ । ୭୫
ଏତେ ଗୁଣେ ଗୁଣୀ ଲୋକ ଅଟଇ ବ୍ରାହ୍ମଣ
ଉପବୀତ ଜନ୍ମଗତ ନୁହଇ ଲକ୍ଷଣ । ୭୬
ତେଣୁ ବର୍ଣ୍ଣମାନଙ୍କରେ ଅଟେ ସେହୁ ଶ୍ରେଷ୍ଠ
ସମାଜର ଗୁରୁ ସେହୁ ଅଟଇ ନିଶ୍ଚିତ । ୭୭
ଏମନ୍ତ ବ୍ରାହ୍ମଣ ସମାଜର ଆଦରଣ
ସକଳେ ବ୍ରାହ୍ମଣ ହେବେ କର ହେ ମାନସ ।
ସମାଜେ ଉଚ୍ଚ ଆସନ ଅଟେ ବ୍ରାହ୍ମଣର
ସକଳେ ବ୍ରାହ୍ମଣ ହେବାପାଇଁ ଯତ୍ନ କର । ୭୯
ବ୍ରହ୍ମା ସୃଷ୍ଟି କର୍ତ୍ତା ସର୍ବେ ତାହାଙ୍କ ସନ୍ତାନ
ତେଣୁ ନାମରେ ସକଳେ ଅଟନ୍ତି ବ୍ରାହ୍ମଣ । ୮୦
ମାତ୍ର ବ୍ରହ୍ମଜ୍ଞାନ ବର୍ତ୍ତନରୁ ଅବ୍ରାହ୍ମଣ
ପତିତ ବୋଲନ୍ତି ସେହୁ ହେଲେ ଭିନ୍ନ ଭିନ୍ନ ।

ନାନାବୃତ୍ତି ଧରି ନିଜ ଉଦର ପୋଷିଲେ
ଭିନ୍ନ ଭିନ୍ନ ନାମ ଧରି ଜାତି ବୋଲାଇଲେ ।
କ୍ଷତ୍ରିଆଦି ତିନିବର୍ଣ୍ଣ ଅରଜିଲେ ଗୁଣ
ଗୁଣ କର୍ମହେତୁ ବୋଲାଇଲେ ସେ ବ୍ରାହ୍ମଣ
ଜନମରୁ ବିଶ୍ୱାମିତ୍ର ନ ଥିଲେ ବ୍ରାହ୍ମଣ
ତପସ୍ୟା ବଳରେ ଅରଜିଲେ ବହୁଗୁଣ । ୮୪
ବ୍ରହ୍ମର୍ଷି ବୋଲାଇଲେ ନିଜ ଗୁଣବଳେ
ଏହି ପ୍ରଥା ପ୍ରଚଳିତ ଥିଲା ଭାରତରେ । ୮୫
ବ୍ରାହ୍ମଣ ଅଟନ୍ତି ତେଣୁ ଦଶ ପରକାର
ଚଣ୍ଡାଳ ତହିଁରୁ ଯେକ ଏକ ପରକାର । ୮୬
ଗୁଣବଳେ ଚଣ୍ଡାଳ ଯେ ହୋଇବ ବ୍ରାହ୍ମଣ
ଶାସ୍ତ୍ରବିଧି ଅନୁସାରେ ଦୋଷ ନାହିଁ ଜାଣ । ୮୭
ଚଣ୍ଡାଳ ହୋଇ ଭକତି ପରାୟଣ ହେଲେ
ଦ୍ୱିଜଠାରୁ ଶ୍ରେଷ୍ଠ ସେହୁ ହୋଇପାରେ ବଳେ ।
ସଂସର୍ଗରୁ ଦୋଷ ଗୁଣ ହୁଅଇ ଜନମ
ତେଣୁ ସଦା ସାଧୁସଙ୍ଗ କରିବା ବିଧାନ । ୮୯
ଉଚ୍ଚସ୍ତରକୁ ଯିବାର ମାନବର ଲକ୍ଷ୍ୟ
ଲକ୍ଷ୍ୟଭ୍ରଷ୍ଟହେଲେ ଲୋକେ ବୋଲିବେ ମୂରୁଖ ।
ନୀଚ ଯାଇ ଉଚ୍ଚ ହେଲେ ଅବିଧି ନୁହଇ
ଉଚ୍ଚ ଆସି ନୀଚ ହେଲେ ଅନୀତି ବୋଲାଇ । ୯୧
ଅନୁଲୋମେ ଦୋଷ ନାହିଁ ପ୍ରତିଲୋମେ ପାପ
ମନୁଶାସ୍ତ୍ରରେ ବଖାଣ ହୋଇଛି ଅମାପ । ୯୨
ମେହେନ୍ତର ବ୍ରାହ୍ମଣ ହୋଇଲେ ଦୋଷନାହିଁ
ପ୍ରତିଲୋମେ ମହାପାପ କରି ନ ହୋଇ । ୯୩
ଗାନ୍ଧୀଙ୍କ ପୁଅ ରାଜଗୋପାଳଙ୍କ ଝିଅ
ପ୍ରତିଲୋମେ ହୋଇଗଲା ଏ ଶୁଭ ବିବାହ । ୯୪
ଗାନ୍ଧୀଙ୍କି ବ୍ରାହ୍ମଣ [illegible] ଧର୍ମକଲେ
[illegible] ଭାରତ [illegible] କ୍ରିୟା [illegible] । [illegible]

ଗାନ୍ଧି କହୁଛନ୍ତି ସର୍ବେ ହେବା ମେହେନ୍ତର
ଏ କେଉଁ ଶାସ୍ତ୍ରର ନୀତି ନ ଆସେ ବିସ୍ତର ।୯୬
ନୀଚକୁ ଉଚ୍ଚକୁ ନେଲେ ନାହିଁ କିଛି ଦୋଷ
ଉଚ୍ଚ ନୀଚରେ ଆସିବା ନୁହେଁ ଯୁକ୍ତି ଲେଶ ।୯୭
ନୀଚ ଉଚ୍ଚ ସଂସର୍ଗରେ ହୋଇବ ଉନ୍ନତ
ଉଚ୍ଚ ନୀଚ ସଂସର୍ଗରେ ହୋଇବ ପତିତ । ୯୮
ଏ ତ ପ୍ରକୃତି ନିୟମ ଦେଖୁଥାଇଁ ନିତି
ପ୍ରାଣୀର ଧରମ ଉଚ୍ଚଆଡ଼େ କରେ ଗତି । ୯୯
ଗାନ୍ଧି ଯେବେ ହାଡ଼ିସାହି ବାସେ କଲେ ମନ
ମେହେନ୍ତର ଗୃହେ ବାସ କରିବା ଧରମ ।୧୦୦
ମେହେନ୍ତର ଗୃହରେ ଅତିଥି ହୋଇଥିଲେ
ଏ ନୀତିର ସାରତତ୍ତ୍ୱ ମିଳିଥାନ୍ତା ଭଲେ ।୧୦୧
ସେ କଥା ନହୋଇ ଏକ ନୂଆ କଥା ହେଲା
ନୂତନ ଗୃହ ଗୋଟିଏ ନିକଟରେ କଲା । ୧୦୨
ସେଠ ବିରଳା ବହୁତ ଧନ ବ୍ୟୟ କଲେ
ଗାନ୍ଧିଙ୍କ ରହିବା ଭଳି ଗୃହ କରାଇଲେ । ୧୦୩
ସେ ଗୃହରେ ଗାନ୍ଧି ଆସି କଲେ ଅବସ୍ଥାନ
ଆପଣା ଅଧି ସକଳ ଯେସନ ତେସନ । ୧୦୪
ବିଜୁଳି ଆଲୁଅ ଖଞ୍ଜାହେଲା ସେ ଗୃହରେ
ଯାବତ ବନ୍ଧୁ ବରଗ ଯୁଟିଲେ ସେଠାରେ ।୧୦୫
ବିଧିବିଧାନ ପୂର୍ବକ ସେଠାରେ ରହିଲେ
ସେହି ମେହେନ୍ତରମାନେ ଅପମାନ ହେଲେ ।
ଇଟକା ପଥର ବୋଲୁଅମାନ ପକାଇଲେ
ପବନ ଦେବତା କୁଟୀରକୁ ଉଡ଼ାଇଲେ ।୧୦୬
ଏହିପରି ଏ ନାଟକ ହେଲା ସମାପତ
ବୁଝ ହେ ସୁଜ୍ଞାନୀଜନ ହୋଇ ସ୍ଥିରଚିତ୍ତ ।୧୦୮

ଗଉର ଉବାଚ

ବିଲାତ ମନ୍ତ୍ରୀଦଳରୁ ତିନି ପ୍ରତିନିଧି
କାହିଁପାଇଁ ଭାରତକୁ ଆସିଛନ୍ତି ଖେଦ । ୧୦୯

କେତେଜଣ ଆସି ଦେଖି ଶୁଣି ଫେରିଗଲେ
ପୁଣି କାହିଁପାଇଁ ଶୀଘ୍ର ଏମାନେ ଆସିଲେ ।୧୧୦
ବୁଝିପାରୁନାହିଁ କିଛି ଏଥିର ରହସ୍ୟ
ଘନଘନ ଆସୁଛନ୍ତି ଘେନି କି ଉଦ୍ଦେଶ ।୧୧୧

ଜଗା ଉବାଚ

ଶୁଣ ହେ ଗଜୁର ମୋତେ ପୁଚ୍ଛାକଲ ଯାହା
କି ଉଦ୍ଦେଶ୍ୟ ତାହାଙ୍କର ନ ଜାଣଇ ତାହା ।
ଉଡ଼ାଜାହାଜରେ ଆସିବା ହୋଇଛି ସହଜ
ତିନ ଦିନେ ଆସୁଅଛି ଆକାଶ ଜାହାଜ ।୧୧୩
ତିରିଶ ଦିନର ପଥ ତିନ ଦିନେ ଚଳେ
ତେଣୁ ଯିବା ଆସିବା ହେଉଛି ଅବହେଳେ ।
ଏ ତିନ ଜଣ ଆସିଣ ଭାରତେ ପ୍ରବେଶ
ଆଣିଛନ୍ତି ଭାରତକୁ ସ୍ୱରାଜ୍ୟ ସନ୍ଦେଶ । ୧୧୫
ଭାରତକୁ ସ୍ୱାଧୀନତା ଦେବା ଆମ୍ଭ ମତ
ଭାରତବାସୀଏ ଯେବେ ହେବେ ଏକମତ ।୧୧୬
ହିନ୍ଦୁ ମୁସଲମାନ ମିଳି ଏକମତ ହେଲେ
ସ୍ୱାଧୀନତା ଦାନ ଆମ୍ଭେ ଦେଇଯିବୁ ବଳେ ।
ତୁମ୍ଭେମାନେ ହୋଇ ନ ପାରିଲେ ଏକମତ
ଫେରିଯିବୁ ଲଣ୍ଡନରେ ନାହିଁକି ଆୟତ୍ତ ।୧୧୮
ହିନ୍ଦୁ ମୁସଲମାନଙ୍କ ମୁଖିଆ ଯେ ଲୋକ
ସେମାନଙ୍କୁ ପଡ଼ିଗଲା ଡ଼ାକରା ଅନେକ ।୧୧୯
ଗାନ୍ଧିଜୀ ମୁଖିଆ ପରାମର୍ଶଦାତା ହେଲେ
କଂଗ୍ରେସ ପକ୍ଷର ସଭାପତି ଯୋଗଦେଲେ ।୧୨୦
ମୁସଲମାନ ପକ୍ଷରୁ ଜିନା ଯୋଗଦେଲେ
ତାଙ୍କ ସମିତିର ଯେ ଆପତ୍ତି ଜଣାଇଲେ ।୧୨୧
ସେ ବୋଇଲେ ପାକିସ୍ଥାନ ହେବନାହିଁ ଯେବେ
ଏସବୁ କଥାରେ ଯୋଗ ଦେବେନାହିଁ ତେବେ ।

ମାସାଧିକ କାଳ ଧରି ଲାଗିଲା ବିଚାର
ଏ କଥା ସେ କଥା ଆଲୋଚନା ବାରବାର ।
ଦିଲ୍ଲୀଠାରେ ବହୁବାର ବଇଠକ ହେଲା
ଏକମତ ହୋଇବାର ଆଶା ନ ଦିଶିଲା ।୧୨୫
ବଡ଼ଲାଟ ମନ୍ତ୍ରୀଦଳ ବହୁଚେଷ୍ଟା କଲେ
ବୁଝାଇ ସୁଝାଇ ବହୁ ଆଲୋଚନା କଲେ ।୧୨୬
ଦିଲ୍ଲୀଠୁ ସିମଳାକୁ ପୁଣି ଚାଲିଗଲେ
ସେଠାରେ ପୁଣି ଏ ତିନି ଦଳ ମେଳ ହେଲେ ।
ତିନି ଦଳ ସମ୍ମିଳନୀର ହେଲା ବଇଠକ
ସେହି କଥାର ବିଚାର ଲାଗିଲା ଅନେକ ।୧୨୭
ସେହି କଥା ଘଷାମଜା ହେଲା ବହୁବାର
ମିଳାମିଶା ବାଟ କିଛି ନ ମିଳିଲା ସ୍ଥିର ।୧୨୮
ପେଥିକ ଲରେନ୍ସ ଆଦି ଥଣ୍ଡାଦେଶ ଲୋକ
ଭାରତ ନାନା ଅଞ୍ଚଳେ ବୁଲିଲେ ଅନେକ ।
ବହୁଲୋକ ସଙ୍ଗେ ବହୁବାର କଥାହେଲେ
ଦୌଡ଼ଧାପଡ଼ ବହୁ ଅଞ୍ଚଳକୁ କଲେ । ୧୩୦
ସିମଳା ସମ୍ମିଳନୀରେ ସବୁ ଆଲୋଚନା
ନାସ୍ତି ଜିନ୍ନା ସାହେବ କରିଦେଲେ ଚୂନା ।
ସିମଳାରୁ ମନ୍ତ୍ରୀଦଳ କାଶ୍ମୀରକୁ ଗଲେ
ଶୀତଳ ଅଞ୍ଚଳେ ମସ୍ତିଷ୍କକୁ ଥଣ୍ଡା କଲେ ।୧୩୧
ରହି କେତେଦିନ ସେଠି କଲେକ ବିଚାର
ବିଲାତକୁ ସକଳ ଘଟଣା କଲେ ତାର । ୧୩୨
ବହୁତ ବିଚାର କରି ସେଠାରୁ ଫେରିଲେ
ରାଜଧାନୀ ଦିଲ୍ଲୀ ନଗରୀରେ ପ୍ରବେଶିଲେ ।୧୩୩
ଊନବିଂଶ ଛୟାଳିଶ ସନ ମଇମାସ
[illegible] ଘୋଷଣା ଷୋଳ ତାରିଖ ଦିବସ । ୧୩୪
[illegible] ଭାରତରେ ଏକ ସମୟରେ
[illegible] କଳସନ୍ଧ ଆଶ୍ରୟରେ । ୧୩୫

ବନ୍ଧୁ ଚର୍ଚ୍ଚିଲ ପୂର୍ବକ କଲେକ ଘୋଷଣା
ଛାଡ଼ିଲେ ଲୋକର ବୁଦ୍ଧି ହୋଇଯିବ ବଣା ।
ମନ ଧ୍ୟାନ ଦେଇ ସଯତନେ ପାଠକଲେ
ଏ ଘୋଷଣା ମର୍ମ ବୁଝିପାରିବେ ଭଲେ ।୧୩୮
ଘୋଷଣାରେ ଯାହା ଯାହା ସବୁ କୁହାଗଲା
ସଂକ୍ଷେପରେ କହୁଅଛି ଶୁଣ ଜନେ ଭଲା । ୧୩୯

## ଭାରତ ମନ୍ତ୍ରୀ ବିଲାତ ମନ୍ତ୍ରୀ ଉବାଚ

ଭାରତର ଭବିଷ୍ୟତ ଶାସନ ବିଧାନ
କି ହେବ ବୋଲି ବିଚାର ହେଲା ଏତେଦିନ ।
ବହୁଚିନ୍ତା ବହୁତ ବିଚାର କରାଗଲା
ସବୁଦଳ ଆପତ୍ତି ଯା ସବୁ ଶୁଣାଗଲା । ୧୪୧
କପରି ବିଧାନ କଲେ ହେବ ଯୁକ୍ତିଯୁକ୍ତ
ସେ ବିଧାନେ ପୁଣି ସର୍ବେ ହେବେ ଏକମତ ।
ବିଲାତର ରାଜସରକାର ମତଦେଲେ
ତାଙ୍କର ପସନ୍ଦ ହେଲାବୋଲି ଜଣାଇଲେ ।
ତାଙ୍କ ସମର୍ଥନ ପାଇ କଲୁଁ ଏ ଘୋଷଣା
ସ୍ଥିରଚିତ୍ତେ ଭାରତୀୟେ କର ବିଚାରଣା । ୧୪୪
"ଭାରତୀୟ ଯୁକ୍ତରାଷ୍ଟ୍ର" ବୋଲି ନାମ ହେବ
ଭାରତ ଦେଶୀୟ ରାଜ୍ୟ ଭାରତେ ମିଶିବ ।୧୪୫
ଯୁକ୍ତରାଷ୍ଟ୍ର ସରକାର କେନ୍ଦ୍ରରେ ରହିବ
ତିନିଗୋଟି ବିଭାଗ ତା ହାତରେ ରହିବ ।୧୪୬
ରାଜ୍ୟରକ୍ଷା, ଯାତାୟତ, ବିଦେଶୀ ବିଭାଗ
ଏ ତିନି ବିଭାଗ ଏ ଶାସନେ ହେବ ଯୋଗ ।
ଆଉ ସକଳ କ୍ଷମତା ପ୍ରଦେଶ ହାତରେ
ରହିବ ଏଥି ସଂଶୟ ନ କର ମନରେ । ୧୪୭
ଯେଉଁ ଏଗାର ପ୍ରଦେଶ ଅଛି ଭାରତରେ
ବିଭକ୍ତ ହୋଇବ ସେନ ତିନୋଟି ପୁଞ୍ଜରେ ।

ମୁସଲମାନ ସମିତି ପାକିସ୍ଥାନ ଦାବି
ଗ୍ରହଣ ନ କଲେ ମନ୍ତ୍ରୀଦଳ କେତେ ଭାବି ।୧୫୦
ଭାରତରେ ଅଛି ଯେତେ ରାଜନୀତି ଦଳ
ସେ ସବୁର ନେତାମାନେ ହୋଇ ଏକମେଳ ।
ଅସ୍ଥାୟୀ ଶାସନ ସରକାର ସେ ଗଢ଼ିବେ
ମଧ୍ୟକାଳର ଶାସନ ସେହୁ ଚଳାଇବେ । ୧୫୨
ଯୁଦ୍ଧ ବିଭାଗ ସହିତ କ୍ଷମତା ସକଳ
ଲଭିକରି ଚଳାଇବେ ଏ ଶାସନ କଳ । ୧୫୩
ଯୁକ୍ତ ସରକାରର ଯେ ସବୁ ବ୍ୟୟ ହେବ
ସେହି ସରକାର ତାହା ସଂଗ୍ରହ କରିବ । ୧୫୪
ଯୁକ୍ତରାଷ୍ଟ୍ର ଶାସନର କାମ କାର୍ଯ୍ୟମାନ
ଚଳାଇବା ପାଇଁ ହେବ ଏମନ୍ତ ବିଧାନ ।୧୫୫
ବ୍ୟବସ୍ଥା ସଭା ଗୋଟିଏ ରହିବ କେନ୍ଦ୍ରରେ
କାର୍ଯ୍ୟକାରୀ ପରିଷଦ ରହିବ ବିଧିରେ । ୧୫୬
ଭାରତ ଦେଶୀୟରାଜ୍ୟ ଭାରତ ସହିତ
ଉଭୟରୁ ପ୍ରତିନିଧି ରହିବେ ନିୟତ । ୧୫୭
ସାମ୍ପ୍ରଦାୟିକ ବିବାଦ ଯେବେ ଉପୁଜିବ
କେମନ୍ତ ବିଧିରେ ତାହା ମୀମାଂସା ହୋଇବ ।
ଦୁଇ ସମ୍ପ୍ରଦାୟର ଯେତେକ ପ୍ରତିନିଧି
ଅର୍ଦ୍ଧକରୁ ଅଧିକ ସଂଖ୍ୟାରେ ଶ୍ରେଷ୍ଠ ବିଧି ।୧୫୯
ବ୍ୟବସ୍ଥାସଭାରେ ଯେତେ ପ୍ରତିନିଧି ଥିବେ
ଅଧକରୁ ଅଧିକ ସଂଖ୍ୟାରେ ମତଦେବେ ।୧୬୦
ଏମନ୍ତ ବିଧିରେ ସପକ୍ଷରେ ମତ ହେବ
ତେବେ ସେ ବିଷୟ ଯାଇ ନିଷ୍ପତ୍ତି ହୋଇବ ।
ଏଥୁଁ ବିପରୀତ ହେଲେ ନିଷ୍ପତ୍ତି ନ ହେବ
ବ୍ୟବସ୍ଥା ସଭା କିଛିହିଁ କରି ନ ପାରିବ ।୧୬୨
ଯୁକ୍ତରାଷ୍ଟ୍ର ହାତେ ଯାହା କ୍ଷମତା ରହିବ
ତାହାଛଡ଼ା ଆଉସବୁ କ୍ଷମତା ଯା ଥିବ ।୧୬୩

ଭାରତ ଦେଶୀୟ ରାଜ୍ୟ ହାତରେ ରହିବ
ସେ ରାଜ୍ୟ ତାର ଶାସନ କଳ ଚଳାଇବ ।୧୬୪
ଭିନ୍ନ ଭିନ୍ନ ପ୍ରଦେଶମାନଙ୍କୁ ଅଧିକାର
ମିଳିମିଶି ନିଜ ପୁଞ୍ଜ ଗଢ଼ିବେ ନିକର । ୧୬୫
ପ୍ରାଦେଶିକ ପୁଞ୍ଜ ନିଜ ନିଜ ସରକାର
ଗଢ଼ିପାରିବେ ତାଙ୍କର ଥିବ ଅଧିକାର । ୧୬୬
କାର୍ଯ୍ୟକାରୀ, ବ୍ୟବସ୍ଥା, ଦୁଇଟି ପରିଷଦ
ସେ ପୁଞ୍ଜର ସେ ଦୁଇଟି ରହିବ ସମ୍ପଦ । ୧୬୭
କେଉଁ କେଉଁ ବିଭାଗ ସେ ପରିଷଦ ନେବ
ସମ୍ପୂର୍ଣ୍ଣଭାବରେ ସେ ଶାସନ ଚଳାଇବ । ୧୬୮
ସେହି ପୁଞ୍ଜ ସେ ବିଷୟ ଠିକଣା କରିବ
ତହିଁର ବିଧିବିଧାନ ବ୍ୟବସ୍ଥା ଗଢ଼ିବ । ୧୬୯
ଯୁକ୍ତରାଷ୍ଟ୍ର ତା ଅଧୀନ ପୁଞ୍ଜ ସରକାର
ପ୍ରଥମ ଦଶ ବରଷ ହୋଇଗଲେ ପାର । ୧୭୦
ପ୍ରତି ଦଶ ବରଷ ଅନ୍ତରେ ଏ ସରତ
ବଦଳାଇ ପାରିବା ପାଇଁକି ଯେବେ ମତ ।୧୭୧
ପ୍ରାଦେଶିକ ବ୍ୟବସ୍ଥାସଭାର ବହୁ ମତ
ଏକାଠିହେଲେ ପୁନଶ୍ଚ ବିଚାର ନିଶ୍ଚିତ । ୧୭୨
ଭାରତର ଭବିଷ୍ୟତ ଶାସନ ବିଧାନ
କିଏ କିପରି କରିବ କହିଲେକ ପୁଣ । ୧୭୩
ଶାସନ ବିଧାନ ଧାତା ସମିତିଏ ହେବ
ସେ ସଭା ସକଳ ବିଧିବିଧାନ ଗଢ଼ିବ । ୧୭୪
ସବୁ ସାବାଳକ ଅଧିବାସୀ ମତନେଇ
ଏ ସଭା ଗଢ଼ିବା ଯୁକ୍ତିଯୁକ୍ତ ଅଟଇ । ୧୭୫
ମାତ୍ର ଏଥିପାଇଁ ବହୁ ସମୟ ଲାଗିବ
ଏ କାର୍ଯ୍ୟପାଇଁ ଅଯଥା ବିଳମ୍ବ ଘଟିବ । ୧୭୬
ତେଣୁ ଏକ ସହଜ ଉପାୟ କଲୁଁ ସ୍ଥିର
ନୂଆ ନିର୍ବାଚନ ଏବେ ହୋଇଛି ନିକର ।୧୭୭

ପ୍ରତି ବ୍ୟବସ୍ଥାସଭାର ସଭ୍ୟ ଯେତେ ଜଣ
ସେମାନେ ବାଛନ୍ତି ନିଜ ପ୍ରତିନିଧି ପୁଣ ।୧୭୮
ସେହି ପ୍ରତିନିଧିମାନେ ସଭାରେ ରହିବେ
ଭାରତର ଭବିଷ୍ୟତ ବିଧାନ ଗଢ଼ିବେ । ୧୭୯
କିନ୍ତୁ ଦୁଇଗୋଟି ବାଧା ଅଛଇ ଏଥିରେ
ଯେତେଜଣ ସଭ୍ୟ ଛନ୍ତି ବ୍ୟବସ୍ଥା ସଭାରେ ।
ପ୍ରଦେଶର ଲୋକ ସଂଖ୍ୟା ଅଟଇଟି ଯେତେ
ପ୍ରତିନିଧି ସଂଖ୍ୟା ନୁହେଁ ସେହି ଅନୁପାତେ ।୧୮୧
ଆସାମର ଲୋକ ସଂଖ୍ୟା ଅଟଇ କୋଟିଏ
ଏକଶତ ଆଠଜଣ ସଭ୍ୟ ବସୁହୁଏ । ୧୮୨
ବଙ୍ଗଳାର ଲୋକ ସଂଖ୍ୟା ଅଟେ ଛଅ କୋଟି
ସଭ୍ୟ ସଂଖ୍ୟା ମାତ୍ର ଦୁଇଶତ ପଞ୍ଚାଶଟି ।
ସମ୍ପ୍ରଦାୟ ଭାଗ ବଣ୍ଟା ହୋଇଅଛି ଯାହା
ଜନସଂଖ୍ୟା ଅନୁପାତେ ହୋଇନାହିଁ ତାହା ।
ଅତିରିକ୍ତ ସ୍ଥାନ ପାଇଛନ୍ତି ସେହିମାନେ
ଅସମାନ ଦେଖାଯାଏ ତେଣୁ ସ୍ଥାନେ ସ୍ଥାନେ ।
ବଙ୍ଗଳାର ଲୋକ ସଂଖ୍ୟା ଅଟଇଟି ଯାହା
ଶତକଡ଼ା ପଞ୍ଚାବନ ମୁସଲମାନ ତାହା ।୧୮୬
ସଭାରେ ଶହକେ ଅଠଚାଳିଶ ଅଛନ୍ତି
ଏହିକଥା ଦେଖି ମନେ ମନେ ବହୁଚନ୍ତି ।୧୮୭
କିପରି ଏ ବିଷମତା ହୋଇପାରେ ଦୂର
କଲୁଁ ଆମ୍ଭେମାନେ ବସି ବହୁତ ବିଚାର ।୧୮୮
ବର୍ତ୍ତମାନ ପରିସ୍ଥିତି ପ୍ରତି ଦୃଷ୍ଟି ଦେଲୁଁ
ବହୁତ ବିଚାର କରି ଏମନ୍ତ ପାଇଲୁଁ । ୧୮୯
ଦଶ ଲକ୍ଷକରେ ଜଣେ ପ୍ରତିନିଧି ହେବେ
ପ୍ରତି ସମ୍ପ୍ରଦାୟ ଏହି ମତରେ ବାଛିବେ ।୧୯୦
ବ୍ୟବସ୍ଥାସଭାରେ ଯେଉଁ ସମ୍ପ୍ରଦାୟ [illegible]
ସେହିମାନେ [illegible]

ତିନିଗୋଟି ସମ୍ପ୍ରଦାୟ କଲୁଁ ଆମ୍ଭେ ସ୍ଥିର
ସାଧାରଣ, ମୁସଲମାନ, ଶିଖ ପରକାର । ୧୯୨
କାଳେ ଶ୍ରେଷ୍ଠ ସମ୍ପ୍ରଦାୟ ନ ପାଇବ ସ୍ଥାନ
ତେଣୁ କରାଯାଉଅଛି ସ୍ୱତନ୍ତ୍ର ବିଧାନ । ୧୯୩
ମୁସଲମାନ ସମିତି ବିନୁ ଆନ କେହି
ଭାରତକୁ ଭାଗ କରିବାକୁ ଚାହୁଁ ନାହିଁ । ୧୯୪
ଅଖଣ୍ଡ ଭାରତ ରହୁ ଇଚ୍ଛା ସକଳର
ପାକିସ୍ଥାନ କଥା କେହି ନ କରେ ଆଦର ।
ହିନ୍ଦୁସ୍ଥାନ ପାକିସ୍ଥାନ ଏ ଦୁଇ ବିଷୟର
ନିରପେକ୍ଷଭାବେ ଚିନ୍ତା କଲୁଁ ବାରମ୍ବାର । ୧୯୬
ହିନ୍ଦୁମାନେ ହୋଇଛନ୍ତି ସଂଖ୍ୟାରେ ଅଧିକ
ମୁସଲମାନମାନେ ସେ ସଂଖ୍ୟା ଊଣା ଲୋକ ।
ମୁସଲମାନଙ୍କ ଉପ୍ରୁ ସଂଖ୍ୟା ବେଶି ଲୋକ
ସେମାନଙ୍କୁ ଅତ୍ୟାଚାର କରିବେ ଅନେକ । ୧୯୮
ଏ ଆଶଙ୍କା ବିଷୟରେ ବହୁତ ଆପତ୍ତି
ଶୁଣାଗଲା ବହୁବାର ଆମ୍ଭ ଆଗେ ନିତି । ୧୯୯
ମୁସଲମାନ ସମିତି ହୃଦୟେ ଏ ଭାବ
ଅତି ଶୁଦ୍ଧତର ଭାବେ ପାଇଅଛି ଠାବ । ୨୦୦
ସେମାନଙ୍କ ଧରମ ସଂସ୍କୃତି ସ୍ୱାର୍ଥ ଯେତେ
ଅକ୍ଷୁଣ୍ଣ ରହିବ ଖର୍ବ ନ ହୋଇ କଦାପିତେ । ୨୦୧
ଏପରି ଯୋଜନା କରା ଯାଇପାରେ ଯେବେ
ଭାରତ ଭିତରେ ଶାନ୍ତି ରହିପାରେ ତେବେ ।
ଏପରି ଯୋଜନା ପାଇଁ ପାକିସ୍ଥାନ ଦାବି
ମୁସଲମାନ ସମିତି କଲେ ଭାବି ଭାବି । ୨୦୩
ପ୍ରତି ପ୍ରଦେଶରେ ମୁସଲମାନ ସଂଖ୍ୟା ଯେତେ
ବିଚାର କରିଲୁଁ ଦେଖି ଜନସଂଖ୍ୟା ମତେ । ୨୦୪
ପାକିସ୍ଥାନ ଦାବି କେବେ ନୁହେଁ ଯୁକ୍ତିଯୁକ୍ତ
ସମ୍ପ୍ରଦାୟ ସମସ୍ୟା ନୋହିବ କେବେ ହତ ।

ଭାରତକୁ ଖଣ୍ଡ ଖଣ୍ଡ ଯେବେ କରାଯିବ
ବହୁତ ବିପଦ ତହୁଁ ଉପୁଜି ପାରିବ । ୨୦୬
ସାମରିକ ଅର୍ଥନୀତିଗତ ନାନା ଯୁକ୍ତି
ଶାସନ ତାନ୍ତ୍ରିକ ଯୁକ୍ତି ଦେଖାଦେବ ନିତି ।୨୦୭
ରାଜ୍ୟରକ୍ଷା ଦିଗରୁ ଏ ନୁହେଁ ଯୁକ୍ତିଯୁକ୍ତ
ଆକ୍ରମଣ ଭୟ ବେଶି ରହିବ ନିୟତ । ୨୦୮
ଭୌଗଳିକ କାରଣରୁ ନୁହେଁ ଯୁକ୍ତିଯୁକ୍ତ
ପାକିସ୍ଥାନ କଳପନା ଅଟେ ଅନୁଚିତ । ୨୦୯
ଏଥିଁ ନାନା ଅସୁବିଧା ବଳେ ଉପୁଜିବ
ରାଷ୍ଟ୍ରଶକ୍ତି କ୍ରମେ ବଡ଼ ଦୁରୁବଳ ହେବ । ୨୧୦
ମୁସଲମାନଙ୍କ ଦାବି ପାଇନାହିଁ ଭୂଲ
ବିଶ୍ୱାସୁଁ ସେ ଆଶଙ୍କା ଦୂରହେବ ବୋଲି ।
କଂଗ୍ରେସ ଏଥିପାଇଁକି କରିଛି ବିଚାର
ଦେଇଛି ଯୋଜନା ଏକ ଶଙ୍କା ଯିବ ଦୂର ।୨୧୨
କେନ୍ଦ୍ର ସରକାରେ ଅଳ୍ପ ବିଷୟ ରହିବ
ପ୍ରଦେଶ ଆନ ବିଷୟେ ସ୍ୱତନ୍ତ୍ର ରହିବ । ୨୧୩
ପ୍ରଦେଶ ଯେବେଟି ବୃହତ୍ତର ବିଷୟରେ
ଶାସନ କରିବାପାଇଁ ଫଇସଲା ମନରେ । ୨୧୪
କେନ୍ଦ୍ର ସରକାର ହାତେ ଦେବେ ସେ ବିଷୟ
ଇଚ୍ଛାକଲେ ଏମନ୍ତ ହୋଇବ ନିଫଇସଲ । ୨୧୫
ଆମ୍ଭମାନଙ୍କ ମତରେ ନୁହେଁ ଏ ଉଚିତ
ଏଥିରୁ ବହୁଆପତ୍ତି ହେବ ଉପଜାତ । ୨୧୬
ବିଶୃଙ୍ଖଳା ଘଟିପାରେ ନାନା ପରକାର
କାର୍ଯ୍ୟକାରୀ ହେବନାହିଁ ପ୍ରସ୍ତାବ ନିକର ।୨୧୭
ପୁଣି ଭାରତ ଦେଶୀୟ ରାଜ୍ୟ କଥା ଭାବ
ସେ କଥାର ବିଚାର କିପରି କରାଯିବ । ୨୧୮
ବ୍ରିଟିଶ ରାଜ୍ୟ ବାହାରେ ଅଥବା ଭିତରେ
ଭାରତ ରହିବନାହିଁ ଫଇସଲା ଏଥିରେ । ୨୧୯

ବ୍ରିଟିଶ-ଭାରତ ଯେବେ ସ୍ୱାଧୀନ ହୋଇବ
ଦେଶୀୟ ରାଜ୍ୟ ସମ୍ପର୍କ ନିଶ୍ଚେ ବଦଳିବ । ୨୨୦
ଇଂଲଣ୍ଡେଶ୍ୱରଙ୍କ ସଙ୍ଗେ ଯେ ସମ୍ପର୍କ ଅଛି
ସେପରି ସମ୍ପର୍କ ରହି ନ ପାରିବ କିଛି । ୨୨୧
ସେପରି ରହିବା ଆଜି ନ ହେବ ସମ୍ଭବ
ସାର୍ବଭୌମ କ୍ଷମତା ବା କିପରି ରହିବ ।୨୨୨
ନୂଆ ଭାରତ ଶାସନ ହାତରେ ନ ଦେବେ
ଏ କଥାକୁ କେହି ତ ପସନ୍ଦ ନ କରିବେ ।୨୨୩
ଦେଶୀୟ ରାଜ୍ୟର ପ୍ରତିନିଧି ଆସିଥିଲେ
ଏ କଥାରେ ସେମାନେ ଯେ ଏକମତ ହେଲେ ।
ରାଜନ୍ୟମଣ୍ଡଳ ଇଚ୍ଛା କରନ୍ତି ଏମନ୍ତ
ନବଜାଗରଣେ ସେହି ହୋଇବେ ଜାଗ୍ରତ ।
ଭାରତର ନବ ଅଗ୍ରଗତି ହେବ ଯେତେ
ସେମାନେ ଜଡ଼ିତ ହେବେ ସେ ଗତି ସହିତେ ।
ସବୁ ରାଜ୍ୟ ବିଷୟରେ ଏକଇ ବ୍ୟବସ୍ଥା
ହେବବୋଲି ଭାବିବାର ନାହିଁ କିଛି କଥା ।୨୨୭
ଭାରତ ବିଷୟେ ଯାହା ବିସ୍ତୃତ ଭାବରେ
ଆଲୋଚନା କରିଅଛୁଁ ସକଳ ପ୍ରକାରେ ।୨୨୮
ଦେଶୀୟ ରାଜ୍ୟ ବିଷୟ ସେପରି ଭାବରେ
ବିସ୍ତର ନ କଲୁଁ ଭିନ୍ନଭିନ୍ନ ପରକାରେ ।୨୨୯
ଯେଉଁ ଯେଉଁ ଦଳଗୋଷ୍ଠି ଯେଉଁ ଦାବିକଲେ
ନ୍ୟାୟ କି ଅନ୍ୟାୟ ସବୁ ଆଣିଲୁ ଅମଳେ ।
ଯେଉଁ ବ୍ୟବସ୍ଥାଟି ନ୍ୟାୟସଙ୍ଗତ ହୋଇବ
ଶାସନ ବିଧି ଗଠନେ ଉପଯୁକ୍ତ ହେବ । ୨୩୧
ସ୍ଥାୟୀଭାବେ କାର୍ଯ୍ୟକାରୀ ହୋଇବ ନିଯୁତ
ବିସ୍ତର କରିଛୁଁ ଭାରତର ହିତାହିତ । ୨୩୨
ସକଳ ବୁଝି ବିଚାରିଅଛୁଁ ମୂଳମାତ୍ର
ଆଗରେ ଯାହା କହିଛୁଁ କଲୁଁ ଉପସ୍ଥିତ ।୨୩୩

ଭାରତବାସୀ ଗଢ଼ିବେ ଶାସନ ବିଧାନ
ଆମ୍ଭମାନଙ୍କର ହାତ ନ ରହିବ ଜାଣ । ୨୩୪
ଯେତେ ଯାହା ଆଲୋଚନା ଆଳାପ ହୋଇଲା
ସେଥିରୁ ଆମ୍ଭମାନଙ୍କୁ ଏହା ଜଣାଗଲା । ୨୩୫
କେତେଗୋଟି ମୂଳନୀତି ନ କଲେ ପ୍ରସ୍ତାବ
ଶାସନବିଧି ଖସଡ଼ା ଯଥାଶୀଘ୍ର ହେବ । ୨୩୬
ପ୍ରତି ଦଶ ଲକ୍ଷ ଲୋକେ ଜଣେ ପ୍ରତିନିଧି
ବାଛିନେଲେ ଗଢ଼ିବେ ସେମାନେ ନୂଆବିଧି ।
ସର୍ବୋତ୍ତମ ପନ୍ଥା ହୋଇଥାନ୍ତା ଏ ପ୍ରକାର
ସବୁ ସାବାଳକ ପାଇଁ ଭୋଟ ଅଧିକାର ।୨୩୮
ବାଛି ଦେଇଥାନ୍ତେ ଯେବେ ପ୍ରତିନିଧିଗଣ
ସେମାନେ ଶାସନ ବିଧି କରନ୍ତେ ଗଠନ ।୨୩୯
ଏଥିରେ କାଳବିଳମ୍ବ ହୋଇବ ବହୁତ
ନୂଆବିଧି ଗଢ଼ା ହୋଇ ନ ପାରେ ତୁରନ୍ତ ।
ତେଣୁ ବ୍ୟବସ୍ଥାସଭାକୁ ମୂଳଦୁଆ କଲେ
ପ୍ରତିନିଧି ବଛା ଯାଇପାରେ ଅବହେଳେ ।୨୪୧
ପ୍ରାଦେଶିକ ବ୍ୟବସ୍ଥାସଭାରେ ମୁସଲମାନ
ଶିଖ ସଭ୍ୟ ରହିଛନ୍ତି ହୋଇ ନିର୍ବାଚନ ।୨୪୨
ଆପଣା ଆପଣା ପ୍ରତିନିଧି ସେ ବାଛିବେ
ଯେତେ ସଂଖ୍ୟା ହେବ ଶୁଣ କହୁଅଛୁଁ ଏବେ ।
'କ'ପୁଞ୍ଜରେ ବିହାର, ଓଡ଼ିଶା, ଯୁକ୍ତପ୍ରଦେଶ,
ମାନ୍ଦ୍ରାଜ, ବୋମ୍ବାଇ, ମଧ୍ୟପ୍ରଦେଶ ବିଶେଷ ।
ଏକଶତ ସତାଅଶୀ ହେବେ ପ୍ରତିନିଧି
ବିଂଶ ମୁସଲମାନ ବାକି ସାଧାରଣ ସିଦ୍ଧି ।୨୪୫
ପଞ୍ଚାଳିଶ ମାନ୍ଦ୍ରାଜେ ସାଧାରଣ ଜାଣ
ଆଉ ଚାରିଟି ବଛାଯିବେ ମୁସଲମାନ । ୨୪୬
ବୋମ୍ବାଇରେ ସାଧାରଣ ସ୍ଥାନ ଊନବିଂଶ
ଦୁଇଗୋଟି ମୁସଲମାନ ରହିବେ ଅବଶ୍ୟ ।୨୪୭

ଯୁକ୍ତପ୍ରଦେଶରେ ମୁସଲମାନ ସ୍ଥାନ ଆଠ
ସାଧାରଣ ସଭାଳିଶ କୁହୁଁ ହେ ନିଗୂଢ଼ । ୨୪୮
ବମ୍ବାଇରେ ଏକତିରିଶ ସ୍ଥାନ ସାଧାରଣ
ପାଞ୍ଚ ଜଣ ମୁସଲମାନ ହେବେ ନିର୍ବାଚନ ।୨୪୯
ମଧ୍ୟପ୍ରଦେଶରେ ସାଧାରଣ ଷୋଳ ଜଣ
ଜଣେମାତ୍ର ଏ ପ୍ରଦେଶୁ ଯିବ ମୁସଲମାନ ।୨୫୦
ଓଡ଼ିଶାର ସାଧାରଣ ନଅଜଣ ଯିବେ
ମୁସଲମାନ ଏଠାରେ ଥାନ ନ ପାଇବେ ।୨୫୧
'ଖ' ପୁଞ୍ଜରେ ଉତ୍ତର ପଶ୍ଚିମ ସୀମାଦେଶ
ଆବର ମିଶିବ ସିନ୍ଧୁ ପଞ୍ଜାବ ପ୍ରଦେଶ । ୨୫୨
ଏ ପୁଞ୍ଜର ପ୍ରତିନିଧି ସଂଖ୍ୟା ପଞ୍ଚତିରିଶ
ଚାରିଜଣ ଶିଖ ମୁସଲମାନ ଦୁଇବିଂଶ । ୨୫୩
ସାଧାରଣ ନଅଜଣ ପ୍ରତିନିଧି ହେବେ
'ଗ' ପୁଞ୍ଜର ପ୍ରତିନିଧି ସଂଖ୍ୟା ଶୁଣ ଏବେ ।୨୫୪
ବଙ୍ଗଳା ପ୍ରଦେଶେ ସାଧାରଣ ସପ୍ତବିଂଶ
ମୁସଲମାନଙ୍କ ସଂଖ୍ୟା ଅଟଇ ତେତିରିଶ । ୨୫୫
ଆସାମରେ ସାଧାରଣ ସଂଖ୍ୟା ତିନ ଜଣ
ତିନିଜଣଙ୍କର ସ୍ଥାନ ଅଟେ ମୁସଲମାନ । ୨୫୬
ଦେଶୀୟ ରାଜ୍ୟର ପ୍ରତିନିଧି ସଂଖ୍ୟା ଶୁଣ
ମୋଟରେ ରହିବେ ଜାଣ ତେସ୍ତାନବେ ଜଣ ।
ଦିଲ୍ଲୀ, ଆଜମିର, ମାରବାଡ଼ ପ୍ରତିନିଧି
କେନ୍ଦ୍ର ସରକାର ସଭ୍ୟ ଦୁଇଜଣ ସିଦ୍ଧି ।୨୫୮
କୂର୍ଗ ବ୍ୟବସ୍ଥାପକରୁ ଜଣେକ ଆସିବେ
ଏ ତିନିଜଣ ପ୍ରଥମ ପୁଞ୍ଜେ ଯୋଗଦେବେ ।୨୫୯
ବ୍ରିଟିଶ ବେଲୁଚିସ୍ଥାନୁ ଆସିବେକ ଜଣେ
'ଖ' ପୁଞ୍ଜରେ ଯୋଗଦେବ ଘେନ ଏହା ମନେ
ଦେଶୀୟ ରାଜ୍ୟରୁ ଯେଉଁ ସଭ୍ୟ ବଛାଯିବେ
ଆପୋଷ ଆଲୋଚନା ସେ ନିଶ୍ଚୟ କରିବେ ।

ପ୍ରଥମେ ଏକ ସାଲିସ ସମିତି ଗଢ଼ିବ
ଦେଶୀୟରାଜ୍ୟ ପକ୍ଷର ପ୍ରତିନିଧି ହେବ । ୨୬୨
ଏହି ପ୍ରତିନିଧିମାନେ ହେବେ ନିର୍ବାଚିତ
ଦିଲ୍ଲୀ ନଗରୀରେ ଶୀଘ୍ର ହେବେ ଉପଗତ । ୨୬୩
ପ୍ରଥମ ବଇଠକରେ ଏମାନେ ବସିବେ
ସଭାପତି ଆଦି କର୍ମଗୁରୁଙ୍କି ବାଛିବେ । ୨୬୪
ପରାମର୍ଶଦାତା ଗୋଷ୍ଠି ବାଛିବେ ଆବର
କାର୍ଯ୍ୟ ନିର୍ଘଣ୍ଟ ବିଶେଷ କରିବେକ ସ୍ଥିର । ୨୬୫
ଏହାପରେ ପ୍ରତିନିଧିମାନେ ଯେ ଯାହାର
ପୁଞ୍ଜରେ ବିଭକ୍ତ ହୋଇଯିବେଟି ନିକର । ୨୬୬
ପ୍ରତିପୁଞ୍ଜରେ ରହିବ ଯେତେକ ପ୍ରଦେଶ
ତା ପାଇଁ ଶାସନ ବିଧି ଖଞ୍ଜିବେ ଅବଶ୍ୟ । ୨୬୭
କେଉଁ ପ୍ରଦେଶ ଆପଣା ଇଚ୍ଛା ଅନୁସାରେ
ନ ମିଶି ପୁଞ୍ଜରେ ରହିପାରିବ ବାହାରେ । ୨୬୮
ପ୍ରତି ବିଭାଗ, ଦେଶୀୟରାଜ୍ୟ, ପ୍ରତିନିଧି
ମିଳି ଗଢ଼ିବେ ଏ ଯୁକ୍ତରାଷ୍ଟ୍ର ପାଇଁ ବିଧି । ୨୬୯
ନାଗରିକ ଅଧିକାର ହେବ କି ପ୍ରକାର
ସଂଖ୍ୟା ଲଘିଷ୍ଠ ଜାତିର କିବା ଅଧିକାର । ୨୭୦
ଉପଜାତି, ସଂରକ୍ଷିତ ଅଞ୍ଚଳର ସ୍ୱାର୍ଥ
ରକ୍ଷା ହୋଇବ କିପରି ନ ହୋଇଣ ବ୍ୟର୍ଥ ।
ପରାମର୍ଶଦାତା ସଭା ପରାମର୍ଶ ଦେବ
ସେହି ଅନୁସାରେ ସବୁ ବିଧାନ ହୋଇବ । ୨୭୨
ଯଥାଶୀଘ୍ର ଶାସନ ବିଧାନ ଗଢ଼ାଯିବ
ବଡ଼ଲାଟ ଯତ୍ନକଲେ ବିଳମ୍ବ ନ ହେବ । ୨୭୩
ପ୍ରତିନିଧି ନିର୍ବାଚନ ପାଇଁକି ଆଦେଶ
ଦେବେ ବଡ଼ଲାଟ ଯେତେ ଚଞ୍ଚଳ ଅବଶ୍ୟ । ୨୭୪
ଯଥା ଶୀଘ୍ର ସବୁକାର୍ଯ୍ୟମାନ ଆଗେଇବ
ଆଶାକରୁଁ ଏଥିରେ ବିଳମ୍ବ ନ ଘଟିବ । ୨୭୫

ଭାରତ-ସ୍ୱାଧୀନ ରାଷ୍ଟ୍ରର ନୂଆ ସରକାର
ଆଜଠୁ ଦେଖ ଚଳାଉ ରାଷ୍ଟ୍ର ସରକାର । ୨୭୬
ବ୍ରିଟିଶ ସରକାର କ୍ଷମତା ଛାଡ଼ିବେ,
ଭାରତ ସରକାରକୁ ସେ କ୍ଷମତା ଦେବେ ।୨୭୭
ସନ୍ଧିପତ୍ର ସ୍ୱାକ୍ଷର କରିବେ ଦୁଇପକ୍ଷ
ଓ ମାନଙ୍କ ହସ୍ତପାଣେ ସେ କଥାକୁ ଦେଖ ।
ନୂତନ ଶାସନ ବିଧି ଗଢ଼ାହେବା କାଳେ
ଭାରତର ଶାସନ କିପରି ଚଳିପାରେ । ୨୭୯
ଅସ୍ଥାୟୀ ମଧ୍ୟକାଳୀନ ସରକାର ହେବ
ପ୍ରତିନିଧିମୂଳକ ସେ ଶାସନ ହୋଇବ । ୨୮୦
ଏ ବିଧାନ କରିବେ ତ୍ରିଶଙ୍କୁ ସରକାର
ପ୍ରତିନିଧି କହୁଥିବେ ଏଥିକି ନିକର । ୨୮୧
ସବୁ ବିଭାଗ ଭାଇଙ୍କ ସଭ୍ୟ କହୁଥିବେ
ସବୁ ରାଜନୀତି ଦଳ ସଭ୍ୟ ଯୋଗାଇବେ ।୨୮୨
ଏମାନେ ଏ ଶାସନକଳ ଚଳାଇବେ
ନବବିଧାନ ଗଠନେ ସାହାଯ୍ୟ କରିବେ ।୨୮୩
ହେ ଭାରତବାସୀ ଏବେ ସୁଯୋଗ ପଡ଼ିଛି
ସ୍ୱାଧୀନତା ଲାଭ ପନ୍ଥା ସହଜ ହେଉଛି । ୨୮୪
ଆମେ ଆମ ଦେଶବାସୀ ଆମ ସରକାର
ଆଶା କରିଥିଲୁଁ ତୁମ୍ଭେ ହୋଇ ଏକମେଳ ।
କିପରି ହେବ ତାହାଙ୍କ ଶାସନ ବିଧାନ
ସର୍ବେ ଏକମତ ହୋଇ କରିବେ ଗଠନ ।୨୮୬
ଏପରି ହେବ ସମ୍ଭବ ବୋଲି ଆଶାଥିଲା
ଯଥାସାଧ୍ୟ ଶ୍ରମ କରି ସେ କଥା ନ ହେଲା ।୨୮୭
ସବୁ ଶୁଣି ବୁଝି ବିବରଣୀ କଲୁଁ ସ୍ଥିର
ଏ ଯୋଜନା ସ୍ୱାଧୀନତା ଆଣିବ ନିକର ।୨୮୮
ଆମ୍ଭ ମତ କାହାକୁ ରୁଚିବ ନ ରୁଚିବ
କାହା ମନକୁ ପାଇବ ଅବା ନ ପାଇବ ।୨୮୯

ସକଳ ଦଳଙ୍କୁ ସୁଖୀ କରାଇ ନ ପାରେ
କିନ୍ତୁ ଆମ୍ଭ ନିବେଦନ ଶୁଣ ଶୁଣ ବାରେ ।୨୯୦।
ରାଜନୀତି କ୍ଷେତ୍ରେ ବିଚକ୍ଷଣ ବୁଦ୍ଧି ନେତା
ସହଯୋଗେ ସବୁକଥା ହୋଇବ ସଜଡ଼ା ।୨୯
ଭାରତ ଇତିହାସର ଏ ଶୁଭବେଳରେ
ଆପୋଷ ସହଯୋଗରେ କାର୍ଯ୍ୟ କର ବାରେ ।
ଯେବେ ଆମ୍ଭ ପ୍ରସ୍ତାବ ଗ୍ରହଣ ନ କରିବ
ବୁଝ, ବିଚାର ଏଥିରୁ କି ଫଳ ଫଳିବ । ୨୯୩
ଆମ୍ଭେମାନେ ଯେତେ ଶ୍ରମ କଲୁଁ ଏଥିପାଇଁ
ଏକମତ ଏକମନ ନ ହୋଇଲେ କେହି ।୨୯୪
ଆମ୍ଭ ପ୍ରସ୍ତାବ ଗ୍ରହଣ ନ କଲେ ଏ ଫଳ
ହିଂସା ବିପ୍ଳବ ବିବାଦ ବଢ଼ିବ କେବଳ ।୨୯୫
ଦାରୁଣ ସଙ୍କଟ ଗୃହବିବାଦ ହୋଇବ
କିଏ ଜାଣେ କିସ ଅବା ପରିଣତି ହେବ ।୨୯୬
କିଏ ଜାଣେ କେତେକାଳ ହେବ ଗଣ୍ଡଗୋଳ
କୋଟି କୋଟି ନର ନାରୀ ଦୁଃଖଦ ନିକର ।
ଦଳପତିମାନେ ନ ହୋଇଲେ ଏକମତ
ଜନସାଧାରଣ କଷ୍ଟ ଭୋଗିବେ ନିୟତ । ୨୯
ଆମ ଦେଶ ଆବର ସାହାଯ୍ୟକାରୀ ଲୋକ
ଭାରତୀୟ ଲୋକେ ପଛେ ନିନ୍ଦିବେ ଅନେକ ।
ଘୃଣା କରିବେ ସକଳେ ସମାନ ଭାବରେ
ତେଣୁ ନିବେଦନ କରୁଅଛୁଁ ଯେନ ଧୀରେ ।
ସଦିଚ୍ଛା ସହଯୋଗର ଭାବଧାରା ବଳେ
ଏ ପ୍ରସ୍ତାବ ଆଗତ କରୁଛୁଁ ଅବହେଳେ ।୩୦୧
କର ଗ୍ରହଣ ପ୍ରସ୍ତାବ କାର୍ଯ୍ୟରେ ଲଗାଅ
ଶାନ୍ତିଭୋଗକରି ସୁଖେ ଭବିଷ୍ୟତେ ରହ ।୩୦୨
ଭାରତର ଭବିଷ୍ୟତ ମଙ୍ଗଳକୁ ଦେଖି
ନିଜ ନିଜ ସମ୍ପ୍ରଦାୟ ସ୍ୱାର୍ଥକୁ ନ ଦେଖି ।୩୦୩

ଚାଳିଶ କୋଟି ଭାରତବାସୀ ସ୍ୱାର୍ଥମୂଳ
ସ୍ୱାର୍ଥ ଛାଡ଼ି ସେହି ମୂଳ ଘରେ ପାଣି ଢାଳ ।୩୦୪
ଆମ୍ଭେ ଆଶା କରୁଅଛୁଁ ନୂତନ ଭାରତ
ବ୍ରିଟିଶ ରାଜ୍ୟଗୋଷ୍ଠିରେ ରହିବ ନିପୂତ ।୩୦୫
ନିବିଡ଼ ବନ୍ଧୁତା ସୂତ୍ରେ ଆବଦ୍ଧ ରହିବ
ଆଶାକରୁଁ ଏ ବନ୍ଧନ କେବେ ନ ତୁଟିବ ।୩୦୬
ଅବଶ୍ୟ ଏକଥା ତବ ଇଚ୍ଛାର ଅଧୀନ
ଆମ୍ଭ ଇଚ୍ଛା ଭାରତର ଉନ୍ନତି ବିଧାନ । ୩୦୭
ପୃଥିବୀର ବଡ଼ ବଡ଼ ଜାତି ସମାନରେ
ଉନ୍ନତ ହେଉ ଭାରତ ପ୍ରଗତି ବିଧିରେ । ୩୦୮
ଭାରତର ଭବିଷ୍ୟତ ଉଜ୍ଜ୍ୱଳ ହୋଇବ
ଆମ୍ଭର କାମନା ସଦା ଦ୍ୱିଧା ନ ମଣିବ ।୩୦୯
ବିଲାତଠାରୁ ଭାରତପାଙ୍କେ ଏ ଘୋଷଣା
ପ୍ରଚୁର ହୋଇଲା ଉଚ୍ଚେ ବାଜିଲା ବାଜଣା ।୩୧୦
ଆମେରିକାପାଙ୍କେ କଥା ଚଳିଗଲା ଖରେ
ଦେଶେ ଦେଶେ ପ୍ରସରିଲା ବିଜୁଳି ବେଗରେ ।
କେତେକ ବୋଇଲେ ଏ ଯୋଜନା ଭଲହେଲା
ବିଲାତ ମନ୍ତ୍ରୀମଣ୍ଡଳ ଆଜ୍ଞା ବିତରିଲା । ୩୧୧
ଗାନ୍ଧିଜୀ ଏ ଯୋଜନାକୁ ନ କଲେ ପସନ୍ଦ
ବୋଇଲେ ଏଥିରେ ଅଛି ଅନେକ ବିପଦ ।୩୧୩
କୁତ୍ସିତ ଅଟଇ ଏହି ଯୋଜନା ନିକର
ତ୍ୟାଗକରନ୍ତା ଭାରତ ବଳଥିଲେ ତାର ।୩୧୪
କରନ୍ତା ନୂଆ ଯୋଜନା ଆପଣା ଇଚ୍ଛାରେ
କରି ନ ପାରୁଛନ୍ତି ତାହା ଏ ପରିସ୍ଥିତିରେ ।୩୧୫
ଗ୍ରହଣ କରି ପରୀକ୍ଷା କରିବ ଅବଶ୍ୟ
ଦୀର୍ଘକାଳ ଉଣା ନୁହେଁ ଦଶୋଟି ବରଷ ।୩୧୬
ଯାହା ଯାହା ସଂଶୟ ହେଉଛି ଯୋଜନାରେ
ଶାନ୍ତ ତାହା ହୁଅନ୍ତୁ କଥାବାରତାରେ ।୩୧୭

ମନ୍ତ୍ରୀମଣ୍ଡଳ ସହିତ କରନ୍ତି ବିଚାର
ଯାହା ସଂଶୟ ସକଳ କର ବାରେ ଦୂର ।୩୧୮
ମହାଘୋର ଆନ୍ଦୋଳନ ଲାଗିଛି ଏପର
ଘାଠ କରୁଛନ୍ତି ଲୋକେ ନଖାଇ ନଗାଇ ।୩୧୯
ଯୋଜନାଟି ହୋଇଅଛି ବିଷମ ଜଟିଳ
ସହଜେ ଏଥିରୁ ମିଳୁନାହିଁ ଅନୁକୂଳ । ୩୨୦
ଯୁକ୍ତ ଭାରତ ହୋଇଲା ଅଖଣ୍ଡ ଭାରତ
ନୂତନ ଶାସନ ବିଧି ଅତୀବ ବିରାଟ । ୩୨୧
ନାନା ଚିତ୍ରରେ ରଞ୍ଜିତ ହୋଇଛି ସେ ବିଧି
ମନୋହର ଭାଷାରେ ହୋଇଛି ତାହା ସିଦ୍ଧି ।
ପାକସ୍ଥାନ ଦାବି ସିନା ହେଲା ନାମଞ୍ଜୁର
ଅନ୍ୟ ପରକାରେ ପୁଣି ବିଧାନ ନକର ।୩୨୩
ଅଖଣ୍ଡ ଭାରତ କମା ତିନ ପୁଞ୍ଜ ହେଲା
ଦେଶୀୟ ରାଜ୍ୟ ଆବର ତା ସଙ୍ଗେ ମିଶିଲା ।୩୨୪
କେତେ ଲହଡ଼ିରେ ମୁଦା ହେଲା ଏ ଦେଉଳ
ବିହାଣି ନ ହେଲେ ନ ବୁଝିବ କଉଶଳ ।୩୨୫
ସ୍ୱାଧୀନତା ଦେଉଳ ଏ ବୋଲି ବୋଲୁଉଛି
ମାତ୍ରକ ଏ ଦେଉଳର ମୁଣ୍ଡି ନ ମରିଛି । ୩୨୬
ସ୍ୱାଧୀନତା କଳସ ଏଥିରେ ବସିନାହିଁ
ଚକ୍ରପତାକା ଏଥିରେ ଖଞ୍ଜା ହୋଇନାହିଁ ।୩୨୭
ଉପରକୁ ଉଠିବାକୁ ଲାଗିଛି ଶିକୁଳି
ଧରି ଧରି ଧୀରେ ଧୀରେ ଯିବ ଯେବେ ଚଳି ।
ଅଣହୁସିଆର ହୋଇ ଯେବେ ବା ଚଢ଼ିବ
ପଡ଼ିଗଲେ କେହି ସାହାଭରସା ନ ଥିବ ।୩୨୯
ଉପରେ ଉଠିବ ଅବା ପ୍ରାଣ ଯିବ ଗୁଡ଼ି
ଏମନ୍ତ କଉଶଳରେ ଖଞ୍ଜିଛନ୍ତି ଦଉଡ଼ି । ୩୩୦
ଏଥିକୁ ସାହା କେବଳ ପ୍ରଭୁ ଭଗବାନ
ତାହାଙ୍କ ମନ୍ଦିରେ ସବୁଙ୍କ ଦିଅ ମନଧ୍ୟାନ ।୩୩୧

ଯେଉଁଠି ଯାହା ସଂଶୟ ହେଉଛି ଯାହାର
ଗାନ୍ଧି ପ୍ରମୁଖ ପୁଛନ୍ତି ତାହା ବାରବାର । ୩୩୨
ଜିନା ମନ ମରିଗଲା ନାହିଁ ପାକିସ୍ଥାନ
କରିବେ କି ନ କରିବେ ଏହାକୁ ଗ୍ରହଣ ।୩୩୩
ଏପରି ଘଣ୍ଟାଚକଟା ଲାଗିଛି ଭାରତେ
ଲୋକମାନେ ଘୂରୁଛନ୍ତି ବିଷମ ଆରତେ ।୩୩୪
କି ହେବ କି ହେବ ବୋଲି ହେଉଛନ୍ତି ଭାବି
ବକ୍ତୃତାରେ ଶୁଣୁଛନ୍ତି ସ୍ୱରାଜ୍ୟର ଛବି । ୩୩୫
ଏହିଠାରେ ଏ ଅଧ୍ୟାୟ ହେଲା ସମାପତ
ମନ ଧ୍ୟାନ ଦେଇ ଲୋକେ ବୁଝ ଏ ଚରିତ ।
ଭାବେ ଦୀନ ଜଗବନ୍ଧୁ ହେ ପରମେଶ୍ୱର
ଏ ବିଷମ ସଙ୍କଟରୁ ବେଗେ ପାରିକର । ୩୩୬

ଇତି ଶ୍ରୀ ଭାରତ-ଚରିତାମୃତେ ବିଲାତ ମନ୍ତ୍ରୀମଣ୍ଡଳ ସମାଧାନ ପ୍ରସ୍ତାବ ବର୍ଣ୍ଣନେ
ଏକଶତ ଏକତ୍ରିଂଶ ଅଧ୍ୟାୟଃ ।



# ଏକଶତ ଦ୍ୱାତ୍ରିଂଶ ଅଧ୍ୟାୟ

## ରାଜାର ଉବାଚ

ପୁଣି ପଚାରେ ରାଜାର ଯୋଡ଼ି ବେନିକର
ମୋ ମନେ ସଂଶୟ କଥା ଉପୁଜେ ନିକର । ୧
ଧର୍ମ ବଡ଼ ଅବା କର୍ମ ବଡ଼ ଏ ସଂସାରେ
ବୁଝି ନ ପାରଇ କେତେ ଯେତେ ଚିନ୍ତାକଲେ ।୨
କେ ବୋଲେ କରମ ବଡ଼ କେ ବୋଲେ ଧରମ
କହିବା ହେଉ ଆପଣ ପ୍ରକୃତ ମରମ । ୩
ଆଉ କଥାଏ ସଂଶୟ ହେଉଛି ମୋହର
କଂଗ୍ରେସ ଶାସନେ ହେବ କିବା ଶୁଭଫଳ । ୪

କଂଗ୍ରେସର ବାନା ଧରି କେତେ ନର ନାରୀ
ବନ୍ଦୀ ହୋଇଅଛନ୍ତି ଦେଶେ ସ୍ୱରାଜ୍ୟ ମନ୍ତ୍ରଧାରୀ । ୫
ପୂର୍ବେ କହୁଥିଲେ ଗାନ୍ଧି ଅଳପ ବ୍ୟୟରେ
ଭାରତ ଶାସନ ସୁରୁଖୁରେ ଚଳିପାରେ । ୬
ଗଲାଥର କଂଗ୍ରେସ ଶାସନ ଚଳାଇଲା
କମ ଦରମା ବ୍ୟବସ୍ଥାମାନ କରିଥିଲା । ୭
ଏଥର କଂଗ୍ରେସ ବ୍ୟୟ ଭାର ବଢ଼ାଇଲା
ଏଥିର ଅସଲ ତତ୍ତ୍ୱ ବୁଝା ତ ନ ଗଲା । ୮
ଲୋକ ପ୍ରତିନିଧିମାନେ କମ୍ପା ଏହା କଲେ
ଶ୍ରେଷ୍ଠ ଦାତାମାନଙ୍କୁ ତ ପଦେ ନ ଭାବିଲେ । ୯
ମନ୍ତ୍ରୀମାନଙ୍କ ଦରମା ପାଞ୍ଚଶୁଁ ହଜାର
କାହିଁକି ବଢ଼ିଲା କହ କାରଣ ଏଥିର । ୧୦
ଏହି ଅନୁକ୍ରମେ ଯେବେ ସବୁରି ବଢ଼ିବ
ଦରମାକୁ ଏ ଦେଶର ଆୟ ନ ଅଣ୍ଟିବ । ୧୧
ବ୍ୟୟ ବେଶିହେଲେ ଆୟ କେଉଁଠୁ ଆସିବ
ବୋଝ ଉପରେ ନଳିତା ଲଦା କି ହୋଇବ । ୧୨
ଏହିପରି କେତେକଥା ଉପୁଜଇ ମନେ
ବୁଝି ନ ପାରଇ କିଛି ଭାବି ମନେ ମନେ । ୧୩
ଆପଣଙ୍କୁ ଜଣାଥିବ ଏ କଥା ବହୁତ
ଦେଶ କାର୍ଯ୍ୟେ ଥାଏ ସଦା ଆପଣଙ୍କ ଚିତ୍ତ । ୧୪
ଆପଣ ପୂର୍ବେ ଏହି ଶାସନକଳେ ଥିଲେ
ଆପଣ କେତେକ କହିପାରନ୍ତି ବା ଭଲେ । ୧୫

ଜଗା ଉବାଚ

ଏ ବଡ଼ ବିଷମ କଥା ପୁଚ୍ଛିଲ ଗଉର
କି କହିବି ତୁମ୍ଭଙ୍କୁ ମୁଁ ଏଥିର ଉତ୍ତର । ୧୬
ଇଂରେଜ ଶାସନକଳ ବଡ଼ଇ ଜଟିଳ
ତାକୁ ବୁଝିବାକୁ କାର ନାହିଁ ବୁଦ୍ଧି ବଳ । ୧୭

ବୃଦ୍ଧିଆଣୀ ଜାଲ ପରି ହୋଇଅଛି ଛନ୍ଦା
ଯେ ପଶିବ ଏଥି ତାକୁ ଲାଗିଯିବ ଧନ୍ଦା । ୧୮
ଅନ୍ଧ ହୋଇ କଛୁମାତ୍ର କରି ନ ପାରିବ
ସେହି ଯନ୍ତ୍ରେ ପଶି ଘୂରି ଫେରି ବୁଲୁଥିବ । ୧୯
ଇଂରେଜ ଶିକ୍ଷାର ଅଟେ ଏସନ ମହତ୍ତ୍ୱ
ହରିନେଇ ଯାଇଛି ସେ ନିଜର ନିଜତ୍ୱ । ୨୦
ସେ ଘୁଙ୍ଗୁଚେ ଡ଼ାଳଦେଇଛି ଶିକ୍ଷିତବାବୁଙ୍କୁ
ଚିହ୍ନପିଲା ସମାନ ଦିଶନ୍ତି ଦୂରକୁ । ୨୧
ସେହି ହାବଭାବ ସେହି କଥା ଡ଼ାକ୍ତାମାନ
ଅହରହ ଦେଖୁଅଛି ସେ ସବୁ ସ୍ୱପନ । ୨୨
ନିଜ ଦେଶ ଜାତିକଥା ଯାଇଅଛି ଭୁଲି
ରୁଚି ବିକାର ଲଭିଛି ବିଦ୍ୟାଳୟେ ଖାଲି । ୨୩
ଶାସନକଳ ଚଳିବାପାଇଁ ଉପଯୁକ୍ତ
ଆନ କଥା କରି ତାଙ୍କୁ ନ ମିଳିବ ଭାତ । ୨୪
ସେହି ଅଶନ ବସନ ଭୂଷଣେ ତା ରୁଚି
ସ୍ୱଦେଶ ସ୍ୱଜାତିଠାରେ ହୋଇଛି ଅରୁଚି । ୨୫
ସ୍ୱଭାଷା, ସ୍ୱଦେଶ ଶାସ୍ତ୍ରେ ନାହିଁ ଟିକେ ପ୍ରୀତି
ଘୋର ଅବିଶ୍ୱାସ କରି ନାକକୁ ଟେକନ୍ତି । ୨୬
ପୁଅ ମାଇପଙ୍କୁ ସେହି ଇଂରେଜ ଭାଷାରେ
ପତ୍ର ଆଦାନ ପ୍ରଦାନ କଥାଭାଷା ହେଲେ । ୨୭
ଏ ପରିସ୍ଥିତିରେ ଦେଶ ପଡ଼ିଅଛି ଏବେ
ଇଂରେଜ ଡ଼ାକ୍ତଆବାବୁ ଅଟନ୍ତି ସରବେ । ୨୮
ଯେ ପାଠପଢ଼ିଲେ ସେହୁ ତାଙ୍କଠୁ ଶିଖିଲେ
ସକଳ ସ୍ୱଦେଶ ଧ୍ୱଂସୀସ୍ରୋତରେ ଭାସିଲେ ।୨୯
ଶିଖିଣିଖୁ ସବୁ ସାଇପଢ଼ଶାରୁ ଶିଖି
ସକଳେ ସେହି ଅଠାରେ ଯାଇଛନ୍ତି ଲାଗି ।୩୦
ଦୁଇଶ ବରଷକାଳ ଏ ସ୍ରୋତରେ ଭାସି
ଅଛୁ କ ଶକତି ଛନ୍ଦୁଁ ଯିବେ ବୋଲି ଖସି ।୩୧

ଗାନ୍ଧି ପ୍ରମୁଖ ଏବକୁ ବୋଲନ୍ତି ଏମନ୍ତ
ଭାସିଯାଇ ସମୁଦ୍ରରେ ପଡ଼ିବ ନଯୁଚ । ୩୨
ପଛକୁ ଲେଉଟ ନିଜ ଜାତି ଦେଶ ଦେଖ
କେଉଁଠୁ ଆସି କେଉଁଠି ହେଲେଣି ମୂରୁଖ । ୩୩
ଊଣା ଅଧିକେ ଅଛନ୍ତି ଶିକ୍ଷିତ ଯୁବକ
କଂଗ୍ରେସର ଗ୍ରୁପମାରି କଂଗ୍ରେସ ସେବକ । ୩୪
ଶାସନ କଳକା ସଙ୍ଗେ ବସିଛନ୍ତି ସେହି
ସେହି ଯନ୍ତ୍ରରେ ପଶିଣ ମାରୁଛନ୍ତି ହାଇ । ୩୫
ଭେଳକି ଲାଗିଲାପରି ହସିବ ଯେ ଯନ୍ତ୍ର
ଶିଖିଛନ୍ତି କି ଏମାନେ ତା ଲେଉଟ ମନ୍ତ୍ର । ୩୬
ସେହି ମାୟା ଗ୍ରୁପ୍ ଦିଶୁଅଛି ଚଉଦିଗେ
କସ ବଦଳାଇ କସ କରିପାରିବେ ସେ । ୩୭
ଶାସନ ଆଇନ ଅଟେ ଅତ୍ୟନ୍ତ ଜବର
ଥିବାଯାକେ ସେ ଆଇନ ନାହିଁକି ନିସ୍ତାର । ୩୮
ଭୋଟର ଲାଟସାହେବ ଦୁଇଗୋଟି ନାବ
ମନ୍ତ୍ରୀଙ୍କର ଦୁଇ ଗୋଡ଼ ଦୁଇ ନାବେ ଠାବ । ୩୯
ଇଂରେଜ ବୋଲନ୍ତି ଆମ୍ଭେ ସବୁ ଶକ୍ତି ଦେବୁଁ
ଶକ୍ତି ସମ୍ବରଣ ମନ୍ତ୍ର ନିଜେ ରଖିଥିବୁଁ । ୪୦
ଦେଶୀ ବିଦେଶୀ କରମକରତା ଯେ ହେବ
ଶାସନଯନ୍ତ୍ର ରାକ୍ଷସୀ ତାହାକୁ ଗ୍ରାସିବ । ୪୧
ବ୍ୟକ୍ତିଠାରେ ନାହିଁ କିଛି ଶକ୍ତି କଦାଚିତ
ସେହି ଶକ୍ତିବଳେ ରାଜା କରଇ ରାଜତ୍ୱ । ୪୨
ରାଜଶକ୍ତି ଈଶଶକ୍ତି ଅଟଇ ନିଶ୍ଚୟ
ଯାହାକୁ ଯେପରି ଦେଇଛନ୍ତି ଦୟାମୟ । ୪୩
କଂଗ୍ରେସ ମନ୍ତ୍ରୀମଣ୍ଡଳ ସେ କଳ ଚଳାଇବେ
କଳୁକଳୁ ସେ କଳକୁ କେତେକାଳ ନେବେ ।
କଳ ସାରିଲାବେଳକୁ ପୂରିବ ମିଆଦ
କିଛି କରି ନ ପାରିବେ ଦେବେ କି ସମ୍ବାଦ । ୪୫

ଦେଲେ ଯେବେ ଭଲକଥା ଦେଶ ସୁଖୀହେବ
ଧନ ଜନ ଗୋପ ଲକ୍ଷ୍ମୀ ଦେଶରେ ପୂରିବ ।୪୭
ଖାଦ୍ୟ ଦ୍ରବ୍ୟ ଅନାଟନ ହୋଇଛି ଦେଶରେ
ଲୋକେ ହୋଇଛନ୍ତି ଦରିଦ୍ର ଅତି ଦୁର୍ମୂଲ୍ୟରେ । ୪୮
କାହାର ଗୁହାଳ ଧୋଇ କାର ପୁଷମାସ
କାହା ଘରେ କୁଳଦେଇ ଓଷା କରେ ବାସ ।
କାହା ଘରେ ଚିନିବସ୍ତା ପାଣି ଫାଟିଯାଏ
କାହା ଘରେ ଗହମ ବସ୍ତାକୁ ପୋକ ଖାଏ ।୪୯
କଏସେ ଚୋରା ବଜାରେ କଳାପୋତା ନଏ
ଦରଦାମ ପରିମାଣ କିଛିହିଁ ନ ଥାଏ । ୫୦
ଅନ୍ଧାରିଆ ହାଟ ପୁଣି ହୋଇଛି ତା ନାମ
ଅନ୍ଧାରେ ଚାଲୁଛି ସବୁ କଣା ବିକା କାମ ।୫୧
କେ ଅନ୍ଧାର ହାଟେ ବିକ ହୁଏ କୋଟିପତି
କାହା ନେଇ ନ ଦେଖଇ ଖାଇବାକୁ ରତି ।୫୨
ସରକାର ଦର ନିୟନ୍ତ୍ରଣ କରିଅଛି
କାମରେ ସେ କଥା କେହି ତିଳେ ନ ମାନୁଛନ୍ତି ।
ରକ୍ଷକ ଭକ୍ଷକ ହେଲେ କାହାର ଆୟତ୍ତ
ମାଙ୍କ ଗୋଳପରି ସବୁ ବେପାର ନିଯୁତ । ୫୪
ଖାଇବାକୁ ତେଲ ଘିଅ ନ ମିଳେ ଠୋପାଏ
କା ବିଷ ମିଶା ଦରବ ବଜାରେ କେ ଦିଏ ।୫୫
ଶସ୍ତା ମହଙ୍ଗ ଯାହା ହୋଇଛି ହୋଇଛି
ବିଶୁଦ୍ଧ ଜିନିଷ ବଜାରରେ ନ ମିଳୁଛି । ୫୬
ସବୁ ଦରବ ଏପରି ହେଲା କଟକଣା
ଲୋକଙ୍କର ବୁଦ୍ଧି ବୃତ୍ତି ହୋଇଯାଏ ବଣା ।୫୭
ଜୀବନ ବିକଳେ ଯାଇ ଅନ୍ଧାର ବଜାରେ
କିଣନ୍ତି ଜିନିଷ ଚୁରି ପାଞ୍ଚଗୁଣ ଦରେ । ୫୮
ବଡ଼ହେଲେ ଯେଉଁମାନେ ଖାଇଲେ ସେ ଭକ୍ଷିତ
ଲୋକମାନେ ଗୁହିଁଛନ୍ତି ହୋଇ ନାହୁଁଛନ୍ତି ।୫୯

ବକ୍ତୃତା ବିବୃତ୍ତି ମାନ ହେଉଅଛି ନିତି
ଶୁଣି ଶୁଣି ହଜଲିଣି ଲୋକଙ୍କ ଶକତି । ୬୧
ମାଛଗୋଳ ହେଲାପରି ହୋଇଛି ବଜାର
ଯେ ଯେତେ ପାରିଲା ତେତେ ଲାଭହେଲା ତାର ।
ଏ ବିଷମ ପରିସ୍ଥିତି ଚଳୁଛି ଦେଶରେ
କେଉଁଠି ଏ ପହଞ୍ଚିବ କେ ଜାଣେ ଶେଷରେ ।
ଅତ୍ୟଧିକ ଦରେ ଲୋକେ ଯାଉଛନ୍ତି ସରି
ଏଥିପାଇଁ ନାହିଁ କିଛି ହାରି ବା ଗୁହାରି । ୬୩
ଦେଖି ଶୁଣି ଲୋକମାନେ ହୋଇଲେ ଜକଜା
କରୁଥିବା ଲୋକଙ୍କର ନାହିଁ ଦକା ଶଙ୍କା । ୬୪
ଜଗୁଆଳି ସଂଖ୍ୟା ଊଣା ନାହିଁ ଏ ଦେଶରେ
ଯେତେ ବେଶି ଜଗା ତେତେ ପଦା ଫିଟାହେଲେ
ଲାଞ୍ଚ ମିଛ ଅନ୍ଧାର ବଜାର ବେଶି ହେଲା
କେହି ଏ ପରିସ୍ଥିତିକ ରୋକ ନ ପାରିଲା ।୬୬
ପୁରପଲ୍ଲୀ ନଗରରେ ଚଳେ ଏକ ସୂତ୍ର
ଅନ୍ଧାରବଜାର ଯୋଗୁଁ ଦିନ ହେଲା ରାତ୍ର ।୬୭
ପାନଠାରୁ ବଡ଼ଯାଏ ଜାଣନ୍ତି ସକଳ
ଘଟୁଛି ଏମାନ ଗୁହ୍ନିଁଛନ୍ତି ଜଳଜଳ । ୬୮
ଏ ଦେଶରେ ପୁଅ ଯେତ୍କ ମନ୍ତ୍ରୀ ହୋଇଛନ୍ତି
ଛିନ୍ନଭିନ୍ନ କରି କଥା ସକଳ ଜାଣନ୍ତି । ୬୯
ସେହିମାନେ ଗଢ଼ିଛନ୍ତି ଏ ମନ୍ତ୍ରୀମଣ୍ଡଳ
ତୁଟାଇପାରିବେ ଯେବେ ଏହି ଗଣ୍ଡଗୋଳ ।୭୦
ଜନସାଧାରଣ ତେବେ ବୁଝିବେ ତୁରନ୍ତ
ମନ୍ତ୍ରୀମାନେ ଘଉଡ଼ାଇବେଲେ କାଳଭୂତ । ୭୧
ମନ୍ତ୍ରୀମାନଙ୍କ ଦରମା କାହିଁକି ବଢ଼ିଲା
ଏ କଥା ତୁମ୍ଭଙ୍କୁ କିଛି ଜଣା ନ ପଡ଼ିଲା । ୭୨
ଯାଉଛନ୍ତି ହଜାରେ ହୋଇବ ମନ୍ତ୍ରୀଙ୍କର
ଛଅ ସ୍ଥଳେ ପାଞ୍ଚ ମନ୍ତ୍ରୀ ହୋଇଲେ ମୁକର ।୭୩

ପାଞ୍ଚମନ୍ତ୍ରୀଙ୍କ ଦରମା ହୋଇବ ସମାନ
ପାଟମନ୍ତ୍ରୀଙ୍କର ଦୁଇଶତ ବେଶି ପୁଣ । ୭୪
ଯିବାଆସିବା ପାଇଁକି ଖରଚ ପାଇବେ
ଆବଶ୍ୟକ ବେଳେ ଉଡ଼ାଯାନରେ ବୁଲିବେ ।
ସଭା ସଭାପତି ପାଉଥିଲେକ ଚଉରିଶ
ତାଙ୍କର ଏବେ ହୋଇବ ହଜାରେ ଅବଶ୍ୟ ।୭୬
ବ୍ୟବସ୍ଥାସଭାର ସଭ୍ୟ ଶହେଂ ପାଉଥିଲେ
ତାଙ୍କର ଦେଢ଼ଶ ଟଙ୍କା ହେବ ଅବହେଳେ ।୭୭
ଆମ ଓଡ଼ିଶା ଭିତରେ ଏ ସ୍ଥିତି ଚଳିବ
ଆଉ କେଉଁ ପ୍ରଦେଶରେ ଅଧିକ ହୋଇବ ।୭୮
ଦେଢ଼ହଜାରେ ସରିକି ମନ୍ତ୍ରୀଏ ପାଇବେ
ସେହି ଅନୁପାତେ ଆଉମାନେ ବେଶି ନେବେ ।
ମନ୍ତ୍ରୀଏ ବିଚାର କଲେ କାଳ ଦୁର୍ଗତିରେ
ଚଳି ନ ପାରିବେ ସେହୁ ପାଞ୍ଚଶ ଟଙ୍କାରେ ।୮୦
ଗାନ୍ଧିଜୀଙ୍କୁ ଜଣେ କେହି ଥିଲେକ ପଚାରି
କାହିଁକି ବେଶି ଦରମା କଲେ କି ବିଚାର ।୮୧
ପିଆଦା ଯେବେ ବା ବାରଟଙ୍କାରେ ଚଳିବ
ମନ୍ତ୍ରୀ ଜଣେ କାହିଁପାଇଁ ହଜାରେ ପାଇବ ।୮୨
ହାତୀ ପିମ୍ପୁଡ଼ି ଉପମା ଦେଇ ବୋଧକଲେ
ଧନ ଥିବା ମନ୍ତ୍ରୀ କଷ୍ଟ ନେଇବା ନ ପାରେ ।୮୩
ପିମ୍ପୁଡ଼ି ଟିକିଏ ଚିନି ଖାଇଲେ ସନ୍ତୋଷ
ହାତୀ ପାଇଁ ବରଡ଼ାଳ ଶଗଡ଼ ବିଶେଷ । ୮୪
ଆଉ କଥାଏ ଏମନ୍ତ ଦିଶୁଅଛି ମତେ
ନ ଜାଣଇ କା ମନକୁ ଲାଗିବ କେମନ୍ତେ । ୮୫
ପିମ୍ପୁଡ଼ିକି ନେଇ ହାତୀଶାଳରେ ରଖିଲେ
ହାତୀ ପରି ବରଡ଼ାଳ ଖାଇବ କି ଭଲେ । ୮୬
ଏ ସଂଶୟ ମନୁ ମୋର ହେଉନାହିଁ ଦୂର
ତେଣୁ ମନକୁ ନ ଆସେ ଗାନ୍ଧିଙ୍କ ବିଚାର । ୮୭

ଓଡ଼ିଶା ପ୍ରଦେଶ ଅଟେ ନିଅଣ୍ଟିଆ ଦେଶ
ବ୍ୟୟଠାରୁ ଆୟ ପୁଣି ନୁହଇ ବିଶ୍ୱାସ । ୮୮
ଲୋକେ ନିଶା ନ ଖାଇଲେ ପ୍ରଦେଶ ନ ଚଳେ
ଏ ବିଭାଗ ଆୟ ପୁଣି ସବୁଠାରୁ ବଳେ । ୮୯
କଂଗ୍ରେସର ନୀତି ପୁଣି ନିଶା ନିବାରଣ
ଏ କଥା ବାରଣ କଲେ ଆୟ କାହିଁ ପୁଣ ।୯୦
ମନ୍ତ୍ରୀମାନଙ୍କ ଦରମା ଯେବେ ବୃଦ୍ଧି ହେବ
ଆନ କର୍ମଚାରୀଙ୍କର କମ୍ପା ନ ବଢ଼ିବ । ୯୧
ମହଙ୍ଗର ପରିସ୍ଥିତି ବାଧକ ସବୁରି
ଅଳପ ବେତନ ଭୋଗୀ ଭୋଗନ୍ତି ଆହୁରି ।୯୨
ତେଲିଆ ମୁଣ୍ଡରେ ତେଲ ସଂସାରର ନୀତି
ଏ ନୀତିକି ନାହିଁ କାର କିଛିହିଁ ଶକତି । ୯୩
ଯାହାର ଶକତି ଅଛି ବେଶି ନେଇଯିବ
ଶକତିହୀନର କଥା କେହି ନ ଶୁଣିବ । ୯୪
ଯେଉଁମାନେ ନେବେ ସେହିମାନେ ଭୋଟଦେବେ
ସାଧାରଣ ଭୋଟରଙ୍କୁ କମାଇଁ ଖୋଜିବେ ।୯୫
ଏହି ଭାବମାନ ଖେଳୁଅଛି ଲୋକ ମନେ
ବିଚାର ଲାଗିଛି କଥା ବସି ଥାନେ ଥାନେ । ୯୬
ନୂଆ ଟିକସ କରିବେ ମନ୍ତ୍ରୀଙ୍କ ବିଚାର
ସମ୍ବାଦପତ୍ରରେ ଏହା ହେଉଛି ପ୍ରଚାର । ୯୭
ବଡ଼ ବଡ଼ ଦେଶମାନେ ଯୁଦ୍ଧ ଆରମ୍ଭିଲେ
ଆପଣା ରାଜ୍ୟ ବିସ୍ତାର କରିବେକ ଭଲେ ।୯୮
ଗରିବ ଭାରତ ମୁଣ୍ଡେ ପଡ଼ିଲା ଚଡ଼କ
ଫଳରେ ଭୋଗୁଛି ଏବେ ଦୁର୍ଭିକ୍ଷ ମଡ଼କ । ୯୯
ଭାରତ ଧାନ ଚାଉଳ କେଉଁଆଡ଼େ ଗଲା
କେହି ତାର ଗତିଗୋଣ କିଛି ନ ଜାଣିଲା ।୧୦୦
ସରକାରଙ୍କର ହେଲା ଏମନ୍ତ ବିଚାର
କିପରି ପୂରଣ ହେବ ନିଅଣ୍ଟ ବେଭାର । ୧୦୧

ଯେଉଁଠି ଦଣ୍ଡାଗୁପତ ଅଛଇ ଯାବତ
ତାକୁ ଚୃଷକଲେ ଫଳ ଫଳିବ ବହୁତ । ୧୦୨
"ଗ୍ରୋମୋର" ବିଭାଗ ନାମେ ବିଭାଗ ଖୋଲିଲି
କାହିଁଛି ଦଣ୍ଡାଗୁପତ ବୋଲି ଖୋଜାହେଲି ।
ଗ୍ରାମେ ଗ୍ରାମେ ବୁଲିଗଲେ କର୍ମଚାରୀମାନ
ଗ୍ରାମବାସୀଙ୍କ ଉପରେ ପଡ଼ିଲାକ କାଳ । ୧୦୪
ଗୋଚର ବା ଅନାବାଦୀ ସର୍ବସାଧାରଣ
ସକଳ ପ୍ରକାର ଜମି କଲେ ନିରୀକ୍ଷଣ । ୧୦୫
ଗ୍ରୋମୋର ବୁଝଇ ଏହା ଗୋରୁମରା କଥା
ଏ କାଳକୁ ଚାହିଁ ଉପୁଜିଲା ଏ ବ୍ୟବସ୍ଥା ।୧୦୬
ଫଳିଲାଜମି କାହିଁକି ଫଳ ହୁଏ ଊଣା
ଏ କଥା କଲ୍ପନାହିଁକି କେହି ବୁଦ୍ଧିମଣା ।୧୦୭
ଜଳ ମଡ଼ାଣ ବ୍ୟବସ୍ଥା କେହି କରୁନାହିଁ
ଯାହା ଯେଉଁଠାରେ ଥିଲା ଗଲା ପୋତିହୋଇ ।
ବରଷକେ ଛଅ ମାସ ଜମି ସେ ପଡ଼ିଆ
ଶ୍ରାବଣ ମାସରେ ତହିଁ ଲାଙ୍ଗଇ ନଡ଼ିଆ । ୧୦୯
ଖଟମାଟି ଚୃଷ ନାହିଁ ବଳଦ ଦୁର୍ବଳ
ହଳୁଆ ତହୁଁ ବଳେ ଫଳିବ କି ଫଳ ।୧୧୦
ଏ ନିଦାନ କେହି କିଛି ନ କରେ ବିଚାର
"ଗ୍ରୋମୋର" ବିଭାଗେ ଲାଗିଅଛଇ ପ୍ରଚାର ।
ଫଳାଅ ବହୁତ ଫଳ ନ ହେବ ନିଅଣ୍ଟ
ଏହିକଥା ପ୍ରଚାର ଲାଗିଛି କରି ଆଣ୍ଟ । ୧୧୨
ଏଥିରେ ଯେତେକ ଧନ ହେଉଅଛି ବ୍ୟୟ
କର୍ମଚାରୀଙ୍କର ଭାଗ ଅଧିକ ନିଶ୍ଚୟ । ୧୧୩
ଏ ସବୁ ଜଟିଳକଥା କେବଳ ପ୍ରଚାରେ
କିଛି ଫଳ ହେବନାହିଁ ମନେ ମୁଁ ବିଚାରେ ।
ଏ ସବୁ ବିଚାର କଲେ ପୋଥିଟାଏ ହେବ
ଅରଣ୍ୟ ରୋଦନ ପରି କେ ଅବା ଶୁଣିବ ।୧୧୫

ଆଜ ଏକ ପାଳି ଆସି ଯୁଟିଗଲା ଜାଣ
ଠିକେ ଠିକେ କହିଦେବା ମନଦେଇ ଶୁଣ ।୧୧୭
ଶୁଣିଛ ତ ବିଲାତର ଆସି ମନ୍ତ୍ରୀଦଳ
ଭାରତରେ ରହି ଖେଳଗଲେ ନାନା ଖେଳ ।
ମାୟା ମାରୀଚର ଖେଳ ଶୁଣିଛ ପୁରାଣେ
ସେହି ପରକାର ହୋଇପାରେ ଅନୁମାନେ ।
ତିନମାସ କାଳ ଲାଗିଥିଲା ସେହି ଧନ୍ଦା
ଗୋଲକଧନ୍ଦାରେ ପଶି ଲୋକେ ହେଲେ ଅନ୍ଧା ।
ସାମୟିକ ସରକାର ତୁରନ୍ତ ବସିବ
ସକଳ କ୍ଷମତା ତାଙ୍କ ହାତେ ହିଁ ଆସିବ । ୧୨୦
ଯେବେ ବା ଭାରତ ପୁଣି ହୋଇବ ସ୍ୱାଧୀନ
କପର ବ୍ୟବସ୍ଥା ତହିଁ ପାଇଁ କି ବିଧାନ ।୧୨୧
ଭାରତ ମୁଖିଆ ଲୋକେ ବଇଠକ କରି
ତୁରନ୍ତ ବ୍ୟବସ୍ଥାମାନ କରନ୍ତୁ ବିଚାରି । ୧୨୨
ଏ ଦୁଇ ବିଷୟନେଇ ପଡ଼ିଲା ଚହଳ
ଲାଗିଲା ବହୁତ ବାଦାନୁବାଦ ମାଡ଼ଗୋଳ । ୧୨୩
ଫଳରେ ଅସ୍ଥାୟୀ ସରକାର ନ ହୋଇଲା
ଏଡେବଡ଼ ଆଡ଼ମ୍ବରେ ଲଘୁକ୍ରିୟା ହେଲା ।୧୨୪
କଂଗ୍ରେସ ଅମଙ୍ଗ ହେଲା ସବୁ ଭାଙ୍ଗିଗଲା
ହିନ୍ଦୁ ମୁସଲମାନ ହନ୍ଦ ତୁଟି ନ ପାରିଲା । ୧୨୫
ମନ୍ତ୍ରୀମାନେ ଭାରତରୁ ବିଲାତେ ଫେରିଲେ
ସ୍ୱଦେଶବାସୀଙ୍କୁ ଯାଇ ସକଳ କହିଲେ । ୧୨୬
କାଳମାତା ଜାଣେ ସିନା କାଳପୃଷ୍ଠ ଠାର
ଆନ ଲୋକମାନଙ୍କୁ ସେ ଠାର ଅଗୋଚର ।
ମନ୍ତ୍ରୀଦଳ ଫେରିଯାଇ କହିଲେ ଏସନ
ଭାରତେ ପୋତିଆସିଲୁଁ ବନ୍ଧୁତା ନିଶାଣ ।୧୨୮
ଭାରତେ କରିଆସିଲୁଁ ଯେଉଁ କର୍ମମାନ
ଇତିହାସେ କାଳକୁ ତା କରିବ ସ୍ମରଣ । ୧୨୯

ଶାସନ ବିଧାନ ଯାହା ଯାହା ସବୁ ହେବ
ଚିଠା କରିବାକୁ ଏକ ବଇଠକ ହେବ । ୧୩୦
ଲୋକ ପ୍ରତିନିଧିମାନେ ସେ ସଭାକୁ ଯିବେ
ଦୁଇଶ ପଞ୍ଚାଶ ଜଣ ବଚ୍ଛବଚ୍ଛି ହେବେ । ୧୩୧
ପ୍ରତି ଲକ୍ଷେ ଲୋକପାଇଁ ଜଣେ ପ୍ରତିନିଧି
ସେ ସଭାକୁ ଯିବାପାଇଁ ହେଲା ବିଧିସିଦ୍ଧି । ୧୩୨
ଓଡ଼ିଶା ଭାଗରେ ନଅ ଜଣ ବଣ୍ଟାହେଲା
ବ୍ୟବସ୍ଥାସଭା ଏହାକୁ ବାଛିବାର ହେଲା । ୧୩୩
ଗାନ୍ଧି କଂଗ୍ରେସ କରମକର୍ତ୍ତା ଆଦେଶିଲେ
ଭଲ ଭଲ ଲୋକ ବାଛି ପଠାଅ ବୋଇଲେ ।
ବିଜ୍ଞ ବିଶାରଦ ଆଇନଜ୍ଞ ଲୋକ ଦେଖି
ବାଛି ପଠାଅ ସଭାକୁ ଉକ୍ତ ମାତ ଦେଖି । ୧୩୫
କଂଗ୍ରେସ ବା ବେକଂଗ୍ରେସ ଭେଦାଭେଦ ନାହିଁ
ଗୁଣ ଦେଖି ଲୋକ ବାଛିଦେବ ପଠିଆଇ । ୧୩୬
ଆଉ ଏକ ଥୋପ ଏଥିପାଇଁ ଖଞ୍ଜାହେଲା
ସେ ଥୋପ ବଡ଼ ବିଷମ ଲୋଭ ଦେଖାଇଲା ।
ଯେଉଁମାନେ ଏ ସଭାକୁ ସଭ୍ୟ ହୋଇଯିବେ
ଚୃରିଠା ପ୍ରଥମଶ୍ରେଣୀ ଭଡ଼ା ସେ ପାଇବେ । ୧୩୮
ପଞ୍ଚସ୍ତରି ଟଙ୍କା ଭତ୍ତା ଦିନକୁ ମିଳିବ
ଦିଲ୍ଲୀଠାରେ ଯାଇ ସଭା ବଇଠକ ହେବ । ୧୩୯
ଭାରତ ଯେଉଁ ଅଞ୍ଚଳୁ ଯେଉଁମାନେ ଯିବେ
ଦିଲ୍ଲୀଠାରେ ଯାଇ ଯେଉଁମାନେ ଉତୁରିବେ ।
ରେଳଗାଡ଼ି ପ୍ରଥମଶ୍ରେଣୀର ଭଡ଼ା ଯେତେ
ତାର ଚୃରିଗୁଣ ଭଡ଼ା ପାଇବେ ସମସ୍ତେ । ୧୪୧
ପ୍ରାୟ ଦଶଲକ୍ଷ ଟଙ୍କା ମାସକୁ ଲାଗିବ
କେତେ ବରଷକେ କାମ ପରିପୂର୍ଣ୍ଣ ହେବ । ୧୪୨
ଶିଖମାନେ ଏ କାମରେ ଯୋଗ ଦେଲେନାହିଁ
ମୁସଲମାନଙ୍କ ଗୋଠ ଅଲଗା ଅଛଇ । ୧୪୩

ହେବ କି ନ ହେବ କଥା ନାହିଁ କିଛି ଜଣା
ବିବାଦ ବିସମ୍ବାଦର ନାହିଁକ କଳନା । ୧୪୪
ଏହି ଥୋପ ଗିଳି ଲୋକେ ପାଗଳ ହୋଇଲେ
ମହାଘୋର ନିର୍ବାଚନ ସମର ସାଜିଲେ । ୧୪୫
ସବୁ ପ୍ରଦେଶରେ ହେଲା ଏ ଘୋର ସମର
ଲାଗିଲା ବହୁତ ପାଣ୍ଠି ବୃଥା ଆଡ଼ମ୍ବର । ୧୪୬
ଉପରମୁଣ୍ଡ କଂଗ୍ରେସ କର୍ମକର୍ତ୍ତାମାନେ
ଯାକୁ ନେବ ତାକୁ ନେବ ଆଜ୍ଞାପରମାଣେ ।
ପ୍ରଦେଶ କର୍ମକର୍ତ୍ତାଙ୍କୁ ଏ ଆଦେଶ ଦେଲେ
ପ୍ରଦେଶ ମୁରବିମାନେ କେତେକ ପାଳିଲେ ।
ପ୍ରଦେଶ କଂଗ୍ରେସଦଳ ବ୍ୟବସ୍ଥାସଭାର
ଘରୋଇ ବଇଠକରେ କଲେକ ବିଚାର । ୧୪୯
ବ୍ୟବସ୍ଥାସଭା ବାହାରୁ ବହୁ ପ୍ରାର୍ଥୀ ଥିଲେ
କିଏ କିଏ ଯିବେ ସେ ସଭାରେ ସ୍ଥିରକଲେ ।
ମିଛେ ମିଛେ ବ୍ୟବସ୍ଥାସଭାରେ ଭୋଟହେଲା
ଠିକଣା ଯା ହୋଇଥିଲା ଫଳେ ତାହା ହେଲା ।
ସବୁ ପ୍ରଦେଶରେ ହେଲା ଏପରି ବିଚାର
ସରିଗଲା ନିର୍ବାଚନ ଭୋଟ କାରବାର । ୧୫୨
ନିର୍ବାଚନ ପ୍ରହସନ ଏପରି ସରିଲା
ଚଇଁଦଗ କୋଳାହଳ ଥଣ୍ଡା ପଡ଼ିଗଲା । ୧୫୩
ଯେ ଗଲେ ଯାଅ ପଛକେ ନାହିଁକ ଶୋଚନା
ଦେଖାଅ ବେଗକରି ସ୍ୱରାଜ୍ୟ ନମୁନା । ୧୫୪
ସ୍ୱାଧୀନତା ବାନା ଆଣି ଦେଶରେ ଉଡ଼ାଅ
ଏ ଜନସାଧାରଣଙ୍କୁ ଦିଅ ହେ ଅଭୟ । ୧୫୫
ଜହରଲାଲ କଂଗ୍ରେସ ସଭାପତି ହେଲେ
ଆଜାଦ ଆଜ ପର୍ଯ୍ୟନ୍ତ ସଭାପତି ଥିଲେ । ୧୫୬
ଶାସନବିଧାନ ସଭା କି ମତରେ ହେବ
ବିଲାତ ମନ୍ତ୍ରୀମଣ୍ଡଳ କହିଲେ ଯେ ଭାବ । ୧୫୭

ତାର ଅର୍ଥନେଇ ଟଣାଓଟରା ଲାଗିଛି
କିଏ କେତେ ପରକାରରେ ଟିକା କରୁଅଛି ।୧୬୮
ସ୍ୱାଧୀନଭାବରେ ଆମ୍ଭେ ବିଧାନ କରିବା
ପ୍ରତି ପ୍ରଦେଶ ସୁବିଧା ସୁଯୋଗ ଦେଖିବା ।୧୬୯
ଭାରତରୁ ସେ ମନ୍ତ୍ରୀମଣ୍ଡଳ ଫେରିଗଲେ
ବିଲାତରେ ଯାଇ ସବୁ ବିଷୟ କହିଲେ ।୧୭୦
ବିଲାତର ପାଟମନ୍ତ୍ରୀ ସକଳ ଶୁଣିଲେ
ଭାରତବାସୀଙ୍କ ପାଇଁ ଉତ୍ତର କହିଲେ । ୧୭୧
ହେ ଭାରତବାସୀ ଏବେ ଶୁଣ ଦେଇ ମନ
କି ମତରେ କରିବ ଏ ଶାସନ ବିଧାନ । ୧୭୨
ଯେଉଁ ମନ୍ତ୍ରୀମାନେ ଭାରତକୁ ଯାଇଥିଲେ
କି ବିଧିରେ ଖସଡ଼ା କରିବ କହିଥିଲେ । ୧୭୩
ପରିଷ୍କାରଭାବେ ସବୁ କୁହା ଯାଇଅଛି
ସେଥିରେ ସଂଶୟ ଲେଶମାତ୍ର ନାହିଁ କିଛି ।୧୭୪
ସେଥିପାଇଁ ଯେଉଁ ସଭା ବଇଠକ ହେବ
ଆମ୍ଭ କହିବା କଥାକୁ ମନ ଧ୍ୟାନ ଦେବ ।୧୭୫
ସେ କଥାକୁ ଅନୁସରି କଲେକି ବିଧାନ
ବାଧାବିଘ୍ନ କିଛିମାତ୍ର ନ ହୋଇବ ଜାଣ । ୧୭୬
ସେ ନିଷ୍ପତ୍ତି ପରେ କେ ଆପତ୍ତି ନ କରିବ
ଆପତ୍ତି ହେବ ଆଶଙ୍କା ମନେ ନ କରିବ ।୧୭୭
ସଭା ତାହାଙ୍କର କାର୍ଯ୍ୟମାନ ଶେଷକଲେ
ସମ୍ରାଟ ସରକାରରେ ପଡ଼ିବ ତା ଭଲେ ।୧୭୮
ସମ୍ରାଟଙ୍କ ସରକାର କରିବେ ବିଚାର
ଭାରତ ପାଇପାରିବ କି କି ଅଧିକାର । ୧୭୯
ବିଚାର ଆଲୋଚନାରେ ଯାହା ସ୍ଥିରହେବ
ସେ ନିଷ୍ପତ୍ତି ପାର୍ଲିଆମେଣ୍ଟକୁ ପଠାଯିବ । ୧୮୦
ପାର୍ଲିଆମେଣ୍ଟ ସଭାରେ ସେ କଥା ପଡ଼ିବ
ଉତ୍ତମଭାବେ ସେ କଥା ଆଲୋଚନା ହେବ ।

ସମ୍ରାଟ ସରକାରଙ୍କ ସୁପାରିଶମାନ
ପାର୍ଲିଆମେଣ୍ଟରେ ହେବ ସବୁ ବିବରଣ ।୧୭୨
ଭାରତକୁ କି କି ଅଧିକାର ଦିଆଯିବ
ପାର୍ଲିଆମେଣ୍ଟରେ ତାହା ସବୁ ସ୍ଥିରହେବ ।
ଭାରତ ସହିତ ସନ୍ଧିହେବ ତାହାପର
ସନ୍ଧିପତ୍ର ଏକ ପୁଣି ହୋଇବ ସ୍ୱାକ୍ଷର । ୧୭୪
ଏତେକଥା ହେବାପାଇଁ ବହୁବାଟ ଅଛି
ଆଜି କେତେକଥା ମନେରଖ ହେ କହୁଛି ।୧୭୫
ସଂଖ୍ୟାଲଘୁ ଗୋଷ୍ଠିଙ୍କର ସ୍ୱାର୍ଥ ରକ୍ଷାହେବ
ପ୍ରଦେଶ ଗୋଷ୍ଠି ବିଷୟ ପ୍ରତି ଲକ୍ଷ୍ୟଦେବ ।୧୭୬
ଏ ସବୁ ନ ହେବାଯାକେ ସ୍ୱାଧୀନତା କଥା
ଉଠାଇବା ପ୍ରାସଙ୍ଗିକ ନ ହେବ ବ୍ୟବସ୍ଥା ।୧୭୭
ଏ ବାଣୀ ଶୁଣି ମନକୁ ଏମନ୍ତ ଆସୁଛି
ଆଗରେ ବହୁତ ବାଧାବିଘ୍ନ ରହିଅଛି । ୧୭୮
ମୂଳମାତ୍ର ଅର୍ଥଲାଗି ସଂଘର୍ଷ ହୋଇବ
ଏପରି ନ ହେଲେ କିଛି ଠିକଣା ନ ହେବ ।
ଏହି ଅବସ୍ଥାରେ ଅଛି ଏ ସବୁ ବିଷୟ
ଦେଖାଯାଉ ଅବଶେଷେ କସ ହେବ ଥୟ ।୧୮୦
ଏହିଠାରେ ଏ ଅଧ୍ୟାୟ ହୋଇଲାକ ଶେଷ
ତବ ଇଚ୍ଛା ପୂରଣ ହେଉ ହେ ଜଗଦୀଶ ।୧୮୧
ଦୀନ ଜଗବନ୍ଧୁ ନମେ ତବ ଶ୍ରୀଚରଣେ
ଦିଅ କୃପା ମହାପ୍ରଭୁ ତବ ନିଜ ଗୁଣେ । ୧୮୨

ଇତି ଶ୍ରୀ ଭାରତ-ଚରିତାମୃତେ ନିର୍ବାଚନ ସମର ବିଷୟ ବର୍ଣ୍ଣନେ
ଏକଶତ ଦ୍ୱାବିଂଶ ଅଧ୍ୟାୟଃ ।



# ଏକଶତ ତ୍ରୟୋତ୍ରିଂଶ ଅଧ୍ୟାୟ

ଗଜର ଉବାଚ

ଶାସନବିଧାନ ସଭାପାଇଁ ସଭ୍ୟମାନେ
ବାଛିବାଛି ହୋଇଗଲେ ପରା ନିର୍ବାଚନେ । ୧
ଶାସନବିଧାନ କେବେ ହେବ ଯାଇ ସ୍ଥିର
ଏ ମଧ୍ୟକାଳରେ ହେବପରା ସରକାର । ୨
ଭାରତର ଲୋକମାନେ ସେ ସରକାରରେ
ରହି ପରା ଶାସନ କରିବେ ଭାରତରେ । ୩
କି ହେଲା ସେ କଥାମାନ ଜଣାଗଲାନାହିଁ
ବିସ୍ତାରି କହିଲେ ସବୁ ଜାଣିପାରିବଇଁ । ୪

ଜଗା ଉବାଚ

ଶୁଣ ହେ ଗଜର ଏବେ ପଚାରିଲ ଯାହା
ଠିକେ ଠିକେ କହିଦେବା ଘଟିଲାକ ଯାହା । ୫
ଶାସନ ବିଧାନସଭା ଗଢ଼ା ଶେଷହେଲା
ଦୁଇଶତ ପଞ୍ଚାଶ ସଂଖ୍ୟକ ସଭ୍ୟ ଗଲା । ୬
ମୁସଲମାନ ଲୋକଙ୍କ ମଧ୍ୟେ ଦୁଇବାଡ଼
ଗୋଟିଏ ଦଳର ଦଳପତି ଜିନା ଗାଡ଼ । ୭
ଜିନାଦଳ 'ମୁସଲମ୍‌ଲିଗ୍‌' ନାମେ ଖ୍ୟାତ
ପାକିସ୍ଥାନ ଦାବି ଅଟେ ସେ ଦଳର ମତ । ୮
ସେ ବୋଲନ୍ତି ପାକିସ୍ଥାନ ନ ହେଲେ ମଞ୍ଜୁର
କଛି କରାଇ ନ ଦେବେ ପ୍ରତିଜ୍ଞା ତାଙ୍କର । ୯
ଶାସନ ବିଧାନସଭା କରାଇ ନ ଦେବେ
ମଧ୍ୟକାଳ ସରକାରେ ସେ ଯୋଗ ନ ଦେବେ ।
ତାଙ୍କ ମତ ବିରୁଦ୍ଧରେ ଯେବେ କାମହେବ
ସାକ୍ଷାତ କରମକରି କରିବେ କର୍ତ୍ତବ୍ୟ । ୧୧
ତରାଟି ନୟନ ଦେଇ ଧମକ ଚମକ
ବଚନବାଣ ପ୍ରୟୋଗ କଲେ ସେ ଅନେକ ।୧୨

ବଡ଼ଲାଟ ଜହରଲାଲଙ୍କୁ ଡ଼କାଇଲେ
ମଧ୍ୟକାଳ ସରକାର ଗଢ଼ ହେ ବୋଇଲେ ।୧୩
ଜିନା ଦଳ ଯେବେ ଯୋଗଦେବେ ତେବେ ଭଲ
ନ ଦେଲେ ଆନକୁ ନେଇ କର ସରକାର ।୧୪
ଜହରଲାଲ ଏଥିରେ ଦେଲେକ ସମ୍ମତି
ଯାହାହେବ ହେଉପଛେ ଦେଖାଇଲେ ଧୃତି ।୧୫
ଜହରଲାଲ ଜିନାଙ୍କୁ ପୁଣି ପଚାରିଲେ
ଆସ ମିଳମିଶି କାମ କରିନେବା ଭଲେ । ୧୬
ଜିନା ଏକଜିଦ୍ ଧରି କରିଦେଲେ ନାହିଁ
ଏ ସରକାରରେ ସେହୁ ଯୋଗଦେବେ ନାହିଁ ।
ଊନବିଂଶ ଛୟାଳିଶ ଅଗଷ୍ଟ ମାସରେ
ଅଦ୍ଭୁତ କାଣ୍ଡ ଘଟିଲା ଷୋଳତାରିଖରେ । ୧୮
କଲିକତା ନଗରୀରେ ହେଲା ଗଣ୍ଡଗୋଳ
ମୁସଲମାନ ଉତ୍ପାତ କଲେକ ବହୁଳ । ୧୯
ହାଣକାଟ ମାରଧର ଲୁଟପାଟ କଲେ
ହିନ୍ଦୁମାନେ ଏଥିପାଇଁ ପ୍ରସ୍ତୁତ ନ ଥିଲେ । ୨୦
ଶତଶତ ହଜାରହଜାର ହିନ୍ଦୁ ମଲେ
କୋଟି କୋଟି ଟଙ୍କା ଲୁଟପାଟ କରିନେଲେ ।
କେତେ ବୃଦ୍ଧ ଯୁବକ ବାଳକ ହତ୍ୟାକଲେ
କେତେ କେତେ ରମଣୀ ଯେ ଯମାଳୟେ ଗଲେ
ଦିଓ୍ୱାଦିବନକୁ ହିନ୍ଦୁ କମର କଷିଲେ
ଆତ୍ମରକ୍ଷା ପାଇଁ ସେହି ଧର୍ମ ଆଚରିଲେ । ୨୩
ଡନିବନଯାକେ ହେଲା ତୁମୁଳ ସମର
କେତେ ହିନ୍ଦୁ ମୁସଲମାନ ଗଲେ ଯମପୁର ।୨୪
ଆହୁେ କ୍ଷତ ପ୍ରାଣେ ପୀଡ଼ା ହୋଇଲା ବହୁତ
ପ୍ରାଣଭୟେ ଲୋକମାନେ ହେଲେ ସନ୍ତ୍ରାସିତ ।୨୫
ଛତ୍ରଭଙ୍ଗ ଦେଇ କେତେ ପଳାୟନ କଲେ
ଅସ୍ତବ୍ୟସ୍ତ ହୋଇଗଲେ ପରାଣ ବିକଳେ । ୨୬

ବାଟ ଅବାଟ ନ ମାନ କାହିଁ ପଳାଇଲେ
ବିନା ଟିକଟରେ କେତେ ରେଳ ଆଶ୍ରାକଲେ ।୨୭
ନିରସ୍ତ୍ର ଲୋକ କେବଳ ଆବାକାବା ହେଲେ
ଆତ୍ମରକ୍ଷା କରିବାରେ ଅସମର୍ଥ ହେଲେ । ୨୮
ଛୁରି ଛୁରୀ ଧରିଣ ସେ ପଠାଣେ ଆସିଲେ
ହିନ୍ଦୁସାକ ଦେଖୁଁ ଦେଖୁଁ ଥରହର ହେଲେ ।
ପଠାଣେ ନିର୍ମମଭାବେ ହିନ୍ଦୁଙ୍କୁ କାଟିଲେ
ପ୍ରଥମଦିନ ହିନ୍ଦୁଏ ପ୍ରସ୍ତୁତ ନି ଥିଲେ । ୩୦
ପରଦିନ ହିନ୍ଦୁମାନେ ହେଲେ ତତପର
ଶଠେଶାଠ୍ୟ ନୀତି ଧରି କଲେ କାରବାର ।୩୧
ବଙ୍ଗଳା ଦେଶରେ ଅଛି ଯେଉଁ ସରକାର
ମୁସଲମାନ ମନ୍ତ୍ରୀ ସେ ଅଛନ୍ତି ନକର । ୩୨
ସରକାର ପୁଲିସଙ୍କୁ ଆଦେଶ ନ ଦେଲେ
ପୁଲିସ ଏକାଳେ କିଛି କରି ନ ପ ରିଲେ ।୩୩
ବଙ୍ଗଦେଶ ଲାଟ ଛନ୍ତି କଲକତାଠାରେ
ସେ ପୁଣି ତାଙ୍କ କର୍ତ୍ତବ୍ୟ କରି ନ ପାରିଲେ ।୩୪
ଅରାଜକତା ପରିଏ ସବୁ ଦେଖାଗଲା
ଦୁଇଦିନ ପରେ ପୁଣି ସେନା ପଠାଗଲା । ୩୫
ସଇନ ଆସନ୍ତେ କ୍ରମେ ଥଣ୍ଡା ପଡ଼ିଗଲା
ବିସ୍ତୃତଭାବେ ନ ହୋଇ ସ୍ଥାନେ ସ୍ଥାନେ ହେଲା ।
ଢ଼ାକା, ଗୟା, ବୋମ୍ବାଇରେ ଏ କାଣ୍ଡ ଲଗିଛି
ଜିନାଙ୍କ ସାକ୍ଷାତ କର୍ମଫଳ ଏ ଫଳୁଛି । ୩୭
ତେଣେ ବଡ଼ଲାଟଙ୍କର ଶୁଭଇଚ୍ଛା ବଳେ
ତୁରନ୍ତ ଜହରଲାଲ ନାମ ଜଣାଇଲେ । ୩୮
କିଏ କିଏ ଏ ସରକାରର ସଭ୍ୟ ହେବେ
ଜହରଲାଲ ବାଛିଣ ନାମ ଜଣାଇବେ । ୩୯
କଂଗ୍ରେସର ମତନେଇ ନାମ ଜଣାଇଲେ
ଜହରଲାଲ ଭାରତ ପାଟମନ୍ତ୍ରୀ ହେଲେ । ୪୦

ତାଙ୍କ ସାଥିରେ ରହିଲେ ଯେଉଁ ସଭ୍ୟଗଣ
ଶୁଣ ହେ ସୁଜନ ଜନେ ସେମାନଙ୍କ ନାମ । ୪୧
ବିହାରରୁ ରାଜେନ୍ଦ୍ର ପ୍ରସାଦ ବସିଗଲେ
ଶରତ ବୋଷ ବଙ୍ଗଳା ପ୍ରଦେଶୁଁ ଭହିଲେ । ୪୨
ମାନ୍ଦ୍ରାଜ ପ୍ରଦେଶୁଁ ରାଜଗୋପାଳଆଚାରୀ
ପଟେଲ ବମ୍ବେଇ ପ୍ରଦେଶରୁ ଗଲେ ଚଳି । ୪୩
ପଞ୍ଜାବରୁ ବଳଦେବ ସିଂହ ବସିଗଲେ
ଜଗଜୀବନ ରାମ ନାମେ ଆଉ ଜଣେ ଗଲେ । ୪୪
ଭାବା, ମାଥାଇ ଦି'ଜଣ ପୁଣି ନିଆଗଲେ
ଜାତୀୟବାଦୀ ମୁସଲମାନ ତିନି ହେଲେ । ୪୫
ମୁସଲମାନଙ୍କ ଏହି ଦଳ ଯୋଗଦେଲା
ରକତ ଗୁଡ଼ଳ ଖାଇ ଜିନା ବଗିଡ଼ିଲା । ୪୬
ସଫାଇତ ମହମ୍ମଦ ଜହିର ଦି'ଜଣ
ଆସଫ ଅଲି ସହିତ ହେଲେ ତିନିଜଣ । ୪୭
ଏହିପରି ବାରଜଣ ସଭ୍ୟପଦେ ଗଲେ
ମଧ୍ୟକାଳ ସରକାରେ ଏମାନେ ରହିଲେ । ୪୮
ଆଉ ଦୁଇ ତିନି ଜଣ ପରେ ବସିଯିବ
ଏହି ସରକାରରେ ସେ ପାଇବେକ ଠାବ । ୪୯
ଊନବିଂଶ ଛୟାଳିଶ ସନ ସେପ୍ଟେମ୍ବର
ଦୁଇ ତାରିଖ ଦିବସ ଶୁଭଲଗ୍ନ ବେଳ । ୫୦
ତେରଶ ତେପନ ସାଲ ଭାଦ୍ରବମାସରେ
ସପ୍ତମି ତିଥି ଶୁକଳପକ୍ଷ ସୋମବାରେ । ୫୧
ପୂର୍ବାହ୍ଣ ଏଗାରଘଣ୍ଟା ବେଳେ ଦିଲ୍ଲୀଠାରେ
ଜହରଲାଲ ଶାସନ ଭାର ମୁଣ୍ଡାଇଲେ । ୫୨
ଶାସନ ବିଭାଗମାନ ବାଣ୍ଟି ନେଇଗଲେ
ଜବାହରଲାଲ ଦଳପତି ମନ୍ତ୍ରୀ ହେଲେ । ୫୩
ଭାରତ ପକ୍ଷରେ ଏହା ବଡ଼ ଶୁଭଦିନ
ଇତିହାସ କରୁଥିବ ଏ ଦିନ ସ୍ମରଣ । ୫୪

କେତେକାଳ ପରେ ଏହା ଆଜ ଦେଖାଗଲା
ଭାରତ ଜାତୀୟ ସରକାର ଗଢ଼ାହେଲା । ୫୫
ଏହି ଦିଲ୍ଲୀଠାରେ ଥିଲା ହିନ୍ଦୁ ରାଜଧାନୀ
ଥିଲାକ ମୟୂର ସିଂହାସନ ତହିଁ ପୁଣି । ୫୬
ଭାରତ ହରାଇଥିଲା ଏଥୁଁ ଅଧିକାର
ମୁସଲମାନ ରାଜତ୍ୱ କଲେ ବହୁକାଳ । ୫୭
ସେମାନଙ୍କ ପରେ ହେଲା ଇଂରେଜ ଶାସନ
ପ୍ରାୟ ଦୁଇଶ ବରଷ ହେଲା ଅବସାନ । ୫୮
ଏତେକାଳ ପରେ କେତେ ଆନ୍ଦୋଳନ ହୋଇ
ଭାରତବାସୀଙ୍କ ଭାଗ୍ୟ ପୁଣି ଲେଉଟଇ । ୫୯
ଭାଗ୍ୟ ଅଟେ ସବୁଠାରୁ ବଳଷ୍ଠ ଦେବତା
ହରତା କରତା ପୁଣି ଦଇବ ବିଧାତା । ୬୦
ତେଣୁ ଏ ଦିନ ଅଟଇ ସ୍ମରଣୀୟ ଦିନ
ଭାରତ ହାତକୁ ପୁଣି ଫେରିଲା ଶାସନ । ୬୧
ନିରସ୍ତ୍ର ଦୁର୍ବଳ ଜାତି ଆଉ କି କରିବ
ସନେଇ ପନ୍ଥା ସନେଇ କନ୍ଥା ପନ୍ଥା ଆଦରିବ । ୬୨
ଆଜ ଭାରତ ଯୁବକ ଭାରତ ଗାଦିରେ
ବସିବା ସୁଖ ଭୋଗିଲା କେତେକାଳ ପରେ । ୬୩
କେତେକାଳ ପରେ ଦୟାମୟ ଦୟାକଲେ
ସିଂହାସନେ ବସିବା ପୀୟୂଷ ଢ଼ାଳଦେଲେ । ୬୪
ସ୍ୱାଧୀନତା ପାଇବାର ଏ ମୂଳପାହାଚ
କେତେକାଳେ ଦେବ ପ୍ରଭୁ ଉପର ପାହାଚ ।
କେତେ ଭାରତ ସନ୍ତାନ କେତେ କଷ୍ଟ ସହି
ଯାଉଛନ୍ତି ଯମାଳୟେ ଆଶାପାଣି ପିଇ । ୬୬
ଯେ କେତେଜଣ ଅଛନ୍ତି ତାଙ୍କ ବୁକୁ କୁଣ୍ଢେ
ଆଜ ସଳଖରେ ମୁଣ୍ଡ ଟେକିଲେକ ଦାଣ୍ଡେ । ୬୭
ଯେଉଁମାନେ କାରାଦଣ୍ଡ ଭୋଗ କରିଥିଲେ
ଯାହାଙ୍କୁ ଏହି ଇଂରେଜ ବନ୍ଦୀ କରିଥିଲେ । ୬୮

ସେ ଇଂରେଜମାନେ ଆଜି କଲେ ସନମାନ
ଯାଚି ତାହାଙ୍କ ହସ୍ତରେ ଦେଲେ ତ ଶାସନ ।
ଭାରତର ଭାଗ୍ୟରବି ଆସିଲେ କି ଉଇଁ
ତହିଁର ପୂର୍ବଆଭାଷ ଏମାନ ଦିଶଇ । ୭୦
କାଲି ଯେ ଜହରଲାଲ ବନ୍ଦୀଶାଳେ ଥିଲେ
ଆଜି ଦିଲ୍ଲୀ ଦରବାରେ ପାଟମନ୍ତ୍ରୀ ହେଲେ ।୭୧
ଏ ଅଭିନବ ବ୍ୟାପାର କେତେକାଳ ପରେ
ଦେଖିଲା ଭାରତ ଆଜି ନିଜ ଭାଗ୍ୟଫଳେ । ୭୨
ଦେଖାଯାଉ ଭବିଷ୍ୟତେ ଫଳିବ କି ଫଳ
ଏ ପରିସ୍ଥିତିରେ କିସ କିସ ଉପୁଜିବ । ୭୩
ଗାନ୍ଧିଜୀ ଏ କଥା ଦେଖି ଆଶୀର୍ବାଦ କଲେ
ଉତ୍ତମଭାବେ ଶାସନ କରି ହେ ବୋଇଲେ ।୭୪
ଦେଶରେ ଦୁଃଖ ଦାରିଦ୍ର୍ୟ କିଛି ନ ରହିବ
ଏ ଲକ୍ଷ୍ୟ ରଖି ଶାସନକଳ ଚଳାଇବ । ୭୫
ଦୀର୍ଘନିଶ୍ୱାସ ପକାଇ ଜଣେ କେ ନ କାନ୍ଦେ
ଜାଣିବା ଭାରତ ଲୋକେ ରହିଲେ ଆନନ୍ଦେ ।
କହିବା ସହଜ କିନ୍ତୁ କରିବା କଠିଣ
କରି କାମେ ଦେଖାଇଲେ ଖୁସିହେବେ ଜନ ।
ଶାସନ ମୁକୁଟ ବୁଢେ ଶାନ୍ତିର ଆସ୍ଥାନ
କଣ୍ଟକମୟ ସନ୍ତତ ଜାଣ ବାବୁ ପୁଣ । ୭୮
ଇଂରେଜ ତୁମ୍ଭ ହସ୍ତରେ ଦେଲେ ଅଧିକାର
ଉପଯୁକ୍ତ ଭାବେ ଏବେ କର କାରବାର । ୭୯
ଲବଣ ଟିକସ ଉଠାଇବ ହେ ତୁରିତ
ଖଦୀ ପ୍ରଚାର ଦିଗକୁ ଦିଅ ସଦା ଚିତ୍ତ । ୮୦
ଅସ୍ପୃଶ୍ୟତା ନିବାରଣ କଂଗ୍ରେସର କାମ
ଏସବୁ ଦିଗକୁ ଆଗେ ଦିଅ ମନଧ୍ୟାନ । ୮୧
ହିନ୍ଦୁ ମୁସଲମାନ ମେଳ କରାଇବ ଯେବେ
ସୁଖେ ଭାରତବାସୀଏ ରହିବେକ ତେବେ ।୮୨

ମୁସଲମାନଙ୍କୁ ଲକ୍ଷ୍ୟକରି ସେ କହିଲେ
ଲଢ଼ିବାକୁ ଯୁହିଁ ଯେବେ ଆଗ ଆସ ଭଲେ ।
ମୁହାଁମୁହିଁ ଲଢ଼ାଲଢ଼ି ବୀରର ଧରମ
ପଛରୁ ଛୁରୀ ମାରିବା ଅତି ନୀଚ କାମ । ୮୪
ଜିନା ବୋଇଲେ କଂଗ୍ରେସ ଗାନ୍ଧି ବଡ଼ଲାଟ
କଲିକତା ଘଟଣାର କାରଣ ନସାଠ । ୮୫
ଏ ତିନହେଁ ଏଥିପାଇଁ ଅଟନ୍ତି ସେ ଦାୟୀ
ଖସି ନ ପାରିବେ ଦୋଷ ଆନେ ଢ଼ାଳିଦେଇ ।
ଜହରଲାଲ ଗଢ଼ିଲେ ଚେତଣେ ସରକାର
ଜିନା ଏଣେ ଲଗାଇଲେ ହାଣ କାଟ ମାର । ୮୭
ଅଦ୍ୟାପି ବିଶ୍ରାମ ନାହିଁ ମାସେ ବିତିଗଲା
ଠାବେ ଠାବେ ଲାଗିଅଛି ହାଣକାଟ ପାଲା । ୮୮
ବିସ୍ତୃତ ଆକାରେ ନୋହି ଠାବେ ଠାବେ ହୁଏ
ଦଙ୍ଗନାହିଁ ଗଣ୍ଡଗୋଳ ଦେଖାଇଣ ହୁଏ । ୮୯
ଜିନା ବସି ବାକ୍ୟବାଣ କରନ୍ତି ପ୍ରହାର
ଜହରଲାଲଙ୍କୁ କରୁଛନ୍ତି ତିରସ୍କାର । ୯୦
ବୋଲନ୍ତି ଆଗ ମୋ ପଛେଁ ଛୁରୀ ମାରିଦେଇ
ପଛନ୍ତେ ଡ଼ାକୁଛ କମା କଥା ରଖାପାଇଁ । ୯୧
ମୋହର ସରତ ସବୁ ପାଳନ କରିଲେ
ସରକାରେ ତୁମ୍ଭ ସଙ୍ଗେ ଯୋଗଦେବି ଭଲେ ।
ହିନ୍ଦୁ ମୁସଲମାନ ସଭ୍ୟ ସଂଖ୍ୟା ହେବ ସମ
ଜାଣିପୁ ମୁସଲମାନ ନ ପାଇବେ ସ୍ଥାନ । ୯୩
କେବଳ ତାଙ୍କ ଦଳର ମୁସଲମାନ ଯିବେ
ଯେ ଯାହାର କଥା ସେହି ବିଚାର କରିବେ । ୯୪
ମୁସଲମାନଙ୍କ କଥା ସେମାନେ ବୁଝିବେ
ହିନ୍ଦୁମାନେ ସେ କଥାରେ କିଛି ନ କହିବେ ।
ହିନ୍ଦୁମାନେ ତାଙ୍କ କଥା ବିଚାର କରିବେ
ମୁସଲମାନ ତହିଁରେ କଥା ନ କହିବେ । ୯୬

ଏହି କଥାମାନଙ୍କରେ ହିନ୍ଦୁ ରାଜିହେଲେ
ମୁସଲମାନ ଏ ସରକାରେ ଯୋଗଦେଲେ ।୯୭
ଆଉ ଏକ ଖବର ଯାଉଛି ଏବେ ଶୁଣ
ସୁଭାଷ ଆସିବେବୋଲି ବାଜୁଛି ବାଜଣା । ୯୮
ମନେଥିବ ପାଠକର ସୁଭାଷ ଚରିତ
ଏତେକାଳ ଧରି କାହିଁ ଅଛନ୍ତି ଗୁପତ । ୯୯
ସରକାର ପ୍ରହରୀଙ୍କ ନେତ୍ରେ ଧୂଳିଦେଇ
ଭାରତରୁ ଯାଇଥିଲେ ଗୁପତେ ପଳାଇ ।୧୦୦
ଭାରତରୁ ଯାଇଣ ସେ ଜାପାନେ ଉଠିଲେ
ଜରମାନୀ ଦେଶକୁ ସେ ପୁଣି ଯାଇଥିଲେ ।୧୦୧
ସେ ଦେଶେ ସଇନ ସାଜି କଲେକ ଲଢ଼ାଇ
ଜାପାନ ସହିତ ଯୋଗ ଦେଇଥିଲେ ସେହି ।
ଭାରତ ଜାତୀୟ ସେନାବାହିନୀ ଗଢ଼ିଲେ
ସେନାପତି ହୋଇ ଭାରତକୁ ଆସିଥିଲେ ।୧୦୩
ଜାପାନ ହାରିବା ଦେଖି ହେଲେ ଅନ୍ତର୍ଦ୍ଧାନ
ପ୍ରଚାର ହେଲା ସୁଭାଷ ଭଜିଲେ ମରଣ । ୧୦୪
କେ କହିଲା ମଲେ, କେ କହିଲା ବଞ୍ଚିଛନ୍ତି
କେ କହିଲା କେଉଁଠାରେ ଗୁପତେ ଅଛନ୍ତି ।
ଭାରତ ଜାତୀୟ ସୈନ୍ୟ ବିଚାରକାଳରେ
ଜଣାପଡ଼ିଲା ସକଳ ଚରିତ ଦେଶରେ । ୧୦୬
ସେନାମାନେ ଅବଶେଷେ ହୋଇଲେ ମୁକତ
ସୁଭାଷ କାହିଁ ଅଛନ୍ତି ରହିଲା ଗୁପତ । ୧୦୭
ତାଙ୍କ ବିରୁଦ୍ଧରେ ଚଳୁଥିଲାକ ମାମଲା
ଗିରଫଦାରି ଓ୍ୟାରଣ୍ଟ ତାଙ୍କ ନାମେ ଥିଲା ।୧୦୮
ଯେଉଁଠାରେ ଯେ କାଳରେ ହୋଇବେ ପ୍ରକଟ
ସଙ୍ଗେ ସଙ୍ଗେ ଧରାହେବେ ଥିଲାକ ଓ୍ୟାରଣ୍ଟ ।
ଏବେ ଯେଉଁ ସରକାର ନୂଆ ଗଢ଼ାହେଲା
ସେ ସରକାର ସକଳ ବାଧା ଉଠାଇଲା ।୧୧୦

ତେଣୁ ନୂତନ ସମ୍ବାଦ ହେଉଛି ପ୍ରକାଶ
ଅଳପଦିନେ ଆସିବେ ଭାରତେ ସୁଭାଷ ।୧୧୧
ଜହରଲାଲ ଶାସନଭାର ମୁଣ୍ଡାଇଲେ
ତାଙ୍କ ଶାସନ ମତର ପରିଚୟ ଦେଲେ ।୧୧୨
ସକଳ ଦେଶ ବିଦେଶ ଏ ବସୁଧାପରେ
ଚଳିବା ଉଚିତ ଏକ ବନ୍ଧୁତା ସୂତ୍ରରେ ।୧୧୩
ବସୁଧା ଗୋଟିଏ ଘର ସର୍ବେ ପରିବାର
ଏହି ମନୋବୃତ୍ତି ଧରି ଚଳିବେ ସକଳ ।୧୧୪
ସବୁଜାତିର ବସୁଧା ସାଧାରଣ ଘର
ଧରାବାସୀ ମାନେ ଏକ କୁଟୁମ୍ବ ପ୍ରକାର ।୧୧୫
ବସୁଧୈବ କୁଟୁମ୍ବକ ମତ ଏହା ନାମ
ହିନ୍ଦୁର ଥିଲା ଏ ମତ ପ୍ରଧାନ ଧରମ । ୧୧୬
ଆଜି ଜହରଲାଲ ପୁଣି ତାହା ବଖାଣିଲେ
ଦେଶ ବିଦେଶରେ ଏହା ପସନ୍ଦେ ଆଣିଲେ ।
ସବୁଦେଶ ମିଶି ଏକା ପରିବାର ସମ
ସବୁରି ସମାନ ଅଧିକାର ଅଛି ଜାଣ । ୧୧୮
କେଉଁଦେଶ କାହିଁପାଇଁ ହେବ କା ଅଧୀନ
ସବୁଦେଶ ନିଜ ନିଜ ଦେଶରେ ସ୍ୱାଧୀନ ।୧୧୯
ଶାନ୍ତି ସୁଖରେ ଯେ ଯାହା ଦେଶରେ ରହିବ
ଆପଣା ଦେଶ ଶାସନ ଆପେ ଚଳାଇବ ।୧୨୦
ଏକଦେଶ ଆନପରେ ନ ହୋଇବ ରାଜା
ମିଳିମିଶି ଦେଶକଥା ବୁଝିବେ ପରଜା ।୧୨୧
ଗଣତନ୍ତ୍ର ଶାସନ ବୋଲିଣ ତାର ନାମ
ଏହି ମତରେ ଚଳିବ ଶାସନ ବିଧାନ । ୧୨୨
ସବୁଦେଶ ମଧ୍ୟରେ ରହିବ ମିତ୍ରଭାବ
ଅନର୍ଥକ କେ କାହାର ବଇରୀ ନ ହେବ ।୧୨୩
ଲଣ୍ଡନର ପ୍ରତିନିଧି ଦେଲେକ ଖବର
ଭାରତ ସ୍ୱାଧୀନ ହେବ ଏ କଥା ନିକର ।୧୨୪

ଭାରତରେ ଭାରତୀୟ ଶାସକ ହୋଇବେ
ଇଂରେଜମାନେ କେବଳ ଥିବେ ବନ୍ଧୁ ଭାବେ ।
ନେହେରୁଙ୍କ ସରକାର ଅବଶ୍ୟ ଚଳିବ
ଜନା ଦେଶ ପ୍ରଗତିକୁ ରୋକି ନ ପାରିବ ।୧୨୬
ଇଂରେଜ ସରକାରର ଏହା ଅଟେ ମତ
ଏଥିରୁ କେବେହେଁ ନ ହୋଇବେ ବିଚଳିତ ।
ଶ୍ରମିକ ସରକାର ଏ ମତକୁ ପାଳିବେ
ଭାରତ ଶାସନେ ସବୁ ସହାୟ ହୋଇବେ ।
ଦେଖାଯାଉ କି ହୋଇବ ଭାରତ ଶାସନ
ଫଳ ଦେଖି ପରିଚୟ କରିବା ବଚନ । ୧୨୯
ଜିନା ମାଗୁଛନ୍ତି ନେବାପାଇଁ ପାକିସ୍ଥାନ
ସ୍ୱରଗେ କି ନରକରେ ଅଟେ ଏ ଆସ୍ଥାନ ।
ଇସଲାମ ଧର୍ମବୃକ୍ଷ ଅଛି କି ସେଠାରେ
କି ପ୍ରକାର ଫଳମାନ ସେ ବୃକ୍ଷରେ ଧରେ ।
ସୁଖ ଦୁଃଖ ବିହୀନ କି ଅଟେ ସେ ଆସ୍ଥାନ
ଅଥବା କେବଳ ସୁଖସ୍ରୋତ ବହମାନ । ୧୩୨
ନାହିଁକି ସେଠାରେ ଅନ୍ନ ବସ୍ତ୍ର ଚିନ୍ତା ଲେଶ
ମକ୍କା ମଦିନାବ ଦାଉ ନ ଜାଣେ ସେ ଦେଶ ।
ନାଚୁଛି ଚର୍ଚ୍ଚିଲ ଗାଉଅଛନ୍ତି ଆମେରି
ଲାଗିଅଛି କି ଏ ଲୀଳା ଦିବସ ଶର୍ବରୀ ।   ୧୩୪
ପାକିସ୍ଥାନ ପାକିସ୍ଥାନ ପଡ଼ିଅଛି ହୁରି
ବାଜୁଅଛି ଶୁଭଶଙ୍ଖ ମଙ୍ଗଳ ମହୁରୀ ।   ୧୩୫
ପାକିସ୍ଥାନର ଆକାର ପ୍ରକାର ନ କହି
କେବଳ ଦାବିକରନ୍ତି ତାର ନାମ କହି ।୧୩୬
ହିନ୍ଦୁର କେତେ କି ତାକୁ ଧୋଇ ସୁଖାଇବେ
ତାପରେ ତହିଁ ଆସ୍ଥାନ ଜମାଇ ବସିବେ ।୧୩୭
ଶୁଦ୍ଧ ପୂତ ମନୋବୃତ୍ତି ନୁହେଁ କଦାଚିତ
ବଡ଼ ବିଷମ ଅଟଇ ହିନ୍ଦୁର ରକତ ।   ୧୩

ଏ ଅଧ୍ୟାୟ ଏହିଠାରେ ହୋଇଲାକ ଶେଷ
ଚୂଳରେ ଭଣିଲେ ବନ୍ଧୁ ପ୍ରଭୁଙ୍କର ଦାସ ।୧୬୩୪

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ଶାସନ ବିଧାନସଭା ଗଠନ ବର୍ଣ୍ଣନେ
ଏକଶତ ତ୍ରୟୋବିଂଶ ଅଧ୍ୟାୟଃ ।



# ଏକଶତ ଚତୁର୍ବିଂଶ ଅଧ୍ୟାୟ

ଗଜର ଉବାଚ

ଭାରତ ଶାସନ ବିଧିବିଧାନ ଗଢ଼ିବେ
ବସ୍ତୁହୋଇ ଯାଇଥିଲେ ଯେଉଁମାନେ ଏବେ ।୧
ଊନବିଂଶ ଛୟାଳିଶ ଡିସେମ୍ବର ମାସ
ନବମଦିନରେ ସଭା ଆରମ୍ଭ ଦିବସ । ୨
ଇତିମଧ୍ୟରେ କି ହେଲା ଜଣାଗଲା ନାହିଁ
ବିସ୍ତାରି ସକଳ କଥା କହନ୍ତୁ ଗୋସାଇଁ । ୩

ଜଗା ଉବାଚ

ଦେବଭୂମି ଭାରତର ଦିଲ୍ଲୀ ରାଜଧାନୀ
ହସ୍ତିନା ତାହାର ନାମ ଥିଲା ଥିବ ଜାଣି । ୪
ଯମୁନାକୂଳରେ ଏ ନଗର ବିରାଜିତ
ପୂର୍ବକାଳୁ ରାଜଧାନୀ ଥିଲାକ ନିଯୁତ । ୫
ଏଠାରେ ମୟୂର ସିଂହାସନ କାଳେ ଥିଲା
କେତେ ରାଜାଙ୍କର ଲୀଳାଖେଳା ସେ ଦେଖିଲା ।
ମହାରାଜା ଯୁଧିଷ୍ଠିର ଧର୍ମ ଅବତାର
ଏହି ପୀଠେ ଚକ୍ରବର୍ତ୍ତୀ ଥିଲେକ ନିକର । ୭
ମୋଗଲ ବାଦସାମାନେ ବସି ଏ ପୀଠରେ
ଭାରତ ଶାସନ କଲେ ତାହାଙ୍କ ଇଚ୍ଛାରେ । ୮
ମରହଟ୍ଟାମାନେ ପୁଣି କେତେକ ବରଷ
ଏହି ପୀଠେ ଭାରତକୁ ଶାସିଲେ ଅବଶ୍ୟ । ୯

ତତ୍ପରେ ଭାରତକୁ ଇଂରେଜ ଆସିଲେ
କଲିକତାଠାରେ ତାଙ୍କ ଲୀଳାଖେଳା କଲେ ।
ବଡ଼ଲାଟ କଲିକତାଠାରେ ରହୁଥିଲେ
ବହୁକାଳ ସେହିଠାରେ କାମ ଚଳାଇଲେ ।୧୧
ବିଧିବିଧାନକୁ କେହି ନ କରିବ ଆନ
କଲିକତାଠାରୁ ପୁଣି ବଦଳିଲା ଥାନ । ୧୨
ଦିଲ୍ଲୀଠାରେ ପୁଣି ଯାଇ ଗାଦିରେ ବସିଲେ
ପୁଣି ସେ ପୁରୁଣା ନଗରୀରୁ ଉଠିଗଲେ । ୧୩
ନୂଆଦିଲ୍ଲୀଠାରେ ରାଜପୁର ତୋଳାହେଲା
ଦେଢ଼ଶତ କୋଟି ଟଙ୍କା ଖରଚ ହୋଇଲା ।୧୪
ଯେଉଁ ଯୋଗଲଗ୍ନ ଧରି ସେ ଗାଦିକି ଗଲେ
ଗଲାଦିନୁ ଅଶୁଭ ଶକୁନ ଦେଖାଦେଲେ । ୧୫
କେତେ କେତେ ରାଜଚକ୍ରବର୍ତ୍ତୀମାନେ ଗଲେ
ଚିରଦିନ କେହି ଜଣେ ରହି ନ ପାରିଲେ ।୧୬
ଧର୍ମଦଣ୍ଡୀ ଧରିଣ ଯେ ଶାସନ କରିବ
ଦିଲ୍ଲୀ ରାଜଧାନୀ କେବେ ତାକୁ ନ ସହିବ ।୧୭
ଏ ପ୍ରମାଣ ସାକ୍ଷୀ ଦେଉଅଛି ଇତିହାସ
ଧର୍ମେ ଜୟ ପାପେ କ୍ଷୟ ଏ କଥା ଅବଶ୍ୟ ।୧୮
ଶାସନ ବିଧାନସଭା ବସୁଛି ଏଠାରେ
କେଜାଣି କି ହେବ ଫଳ ତା କହି ନ ପାରେ ।
ଘରେ ନ ପଶୁଣୁ ଗ୍ରୀଳ ବାଜିବା ପ୍ରକାର
ସଭା ନ ବସୁଣୁ ଦେଖ ହୁଏ ହାହାକାର । ୨୦
ନୂଆଖାଲି ପୂର୍ବବଙ୍ଗେ ହେଲା ଘୁରଖାର
କହି ନ ପାରିବି ମୁସଲମାନ ଅତ୍ୟାଚାର । ୨୧
ହାଣ କାଟ ମାର ଧର ଘରପୋଡ଼ି ହେଲା
ଘରୁ ସକଳ ସମ୍ପତ୍ତି ବୋହି ନିଆଗଲା । ୨୨
ବଳାତ୍କାରେ ଧର୍ମାନ୍ତର ଦୀକ୍ଷା ଦିଆଇଲେ
ନାରୀମାନଙ୍କ ସତୀତ୍ୱ ବଳେ ହରିନେଲେ । ୨୩

ଶରହାର ସ୍ତୁଢ଼ ଲୋକେ ଆନ ଦେଶେ ଗଲେ
ପ୍ରାଣ ବିକଳରେ ଦେଶ ସ୍ତୁଢ଼ ପଳାଇଲେ ।୨୪
ବର୍ତ୍ତି ନ ପାରିବ ମୁସଲମାନ ଅତ୍ୟାଚ୍ଚର
ପଠାଣେ ରାକ୍ଷସ ଭୂଲ୍ୟ କରନ୍ତ ବେହାର । ୨୫
ବଙ୍ଗଳାରେ ମୁସଲମାନ ମନ୍ତ୍ରୀମାନେ ଥିଲେ
ସେମାନେ କିଛିହିଁ ପ୍ରତିକାର ନ ଚହିଲେ ।୨୬
ବଙ୍ଗଳାର ଲାଟ କିଛି କରି ନ ପାରିଲେ
ଏମାନେ ପଛରେ ରହି ନଖ ଘଷୁଥିଲେ । ୨୭
ବିହାର ପ୍ରଦେଶେ ସେହିପରି କାମହେଲା
ଚତୁର୍ଦ୍ଦିଗେ ଏହିପରି ଅତ୍ୟାଚ୍ଚର ହେଲା । ୨୮
ମାର ମାର ଧର ଧର ଶବ୍ଦ ଶୁଭିଲା
ହିନ୍ଦୁମାନଙ୍କୁ କେ ପଦେ ଆହା ନ ବୋଇଲା ।୨୯
ହଜାର ହଜାର ହିନ୍ଦୁ ଏ କନ୍ଦଳେ ମଲେ
ଯାନ ବାହାନ ରାସ୍ତାରେ ଚଳି ନ ପାରିଲେ ।
ଥରହର ହୋଇ ଭୟେ ହାରିଲେ ଜୀବନ
ଡାକପକାଇଲେ ରକ୍ଷାକର ଭଗବାନ । ୩୧
ବିହାର ପ୍ରଦେଶେ ସରକାର ଆଦେଶରେ
ଗୁଳିକରି ମାରିଦେଲେ ହଜାରେ ହଜାରେ ।୩୨
ଜହରଲାଲ ବିହାରେ ପ୍ରବେଶ ହୋଇଲେ
ନିଜେ ଥାଇ ଏହି ଗୁଳିକାଣ୍ଡ କରାଇଲେ । ୩୩
ହିନ୍ଦୁମାନେ ଏ କାଣ୍ଡରେ ହୋଇଲେ ନିହତ
ମହାଘୋର ଚିନ୍ତା ଆସି ହେଲା ଉପସ୍ଥିତ ।୩୪
ଲାଗିଛି ଏ ଭୟାବହ କାଣ୍ଡ ଭାରତରେ
ଅରାଜକ ଭୂମି ଏ କି ମଣୁଛି ଚିତ୍ତରେ ! ୩୫
ଶାସନ ବିଧାନସଭା ସମସ୍ତ ନିକଟ
ହେଲା ଆସି କି ହୋଇବ ଏଥିକି ଆକଟ ।୩୬
ଇଂରେଜମାନେ କୌତୁକ ଦେଖୁଛନ୍ତି ବସି
ମନେ ମନେ ହେଉଛନ୍ତି ବାଢ଼ସଧା ଖୁସି । ୩୭

ଆମକୁ ଭାରତ ଛାଡ଼ି ବୋଲୁଛ ନିଶ୍ଚିତ
ଦେଖିବା କିପରି ଶାସି ପାରିବ ଭାରତ । ୩୮
ଏହିକାଳେ ଭାରତକୁ ଆସିଲା ଖବର
ବିଲାତକୁ ଯିବାପାଇଁ ଡ଼କରା ଜବର । ୩୯
ଜିନା ବଳଦେବ ସିଂହ ବଡ଼ଲାଟ ସହ
ଜହରଲାଲ ସହିତ ଯିବେକ ନିଶ୍ଚୟ । ୪୦
ଜହରଲାଲ ପ୍ରଥମେ ନାହିଁ କରିଦେଲେ
କି କାମ ବିଲାତେ ଅଛି ନ ଯିବୁଁ ବୋଇଲେ ।
ଜିନା ଜଣାଇଲେ ସେହୁ ଯିବେକ ନିଶ୍ଚୟ
ଜହରଲାଲ ନ ଯିବେ କରିଦେଲେ ଥୟ । ୪୨
ପୁଣି ବିଲାତରୁ ଆସିଗଲାକ ଖବର
ଆସ ଆସ ଜହରଲାଲ ଆସ ହେ ସତ୍ୱର । ୪୩
ଯାହା କହିଥିଲୁଁ ଆଗେ ସେ କଥା ରହିବ
ସେଥିରୁ ଅକ୍ଷର ହେଲେ ବଦଳ ନ ହେବ ।
ଠିକଣାଦିନେ ଅବଶ୍ୟ ବଇଠକ ହେବ
ସେ ଦିନକୁ ନିଶ୍ଚୟ ବିଲାତୁ ଫେରିଯିବ । ୪୫
ଏହି ପ୍ରତିଶ୍ରୁତି ପାଇ ଜହରଲାଲ ଗଲେ
ବଳଦେବ ସିଂହ ଶିଖ ସଙ୍ଗତେ ଚଳିଲେ । ୪୬
ଉଡ଼ାଯାନେ ଉଡ଼ିଗଲେ ଏହି ଦୁଇଜଣ
ଓ୍ୟାଭେଲ ସହିତେ ଜିନା ଚଳିଲେକ ପୁଣ । ୪୭
ଭାରତରୁ ବିଲାତକୁ ଉଡ଼ାଯାନ ଗଲା
ଦୁଇଦିନେ ବିଲାତରେ ପ୍ରବେଶ ହୋଇଲା । ୪୮
ପୁରାଣରେ ଶୁଣାଥିଲା ପୁଷ୍ପକ ବିମାନ
ସ୍ୱଚକ୍ଷୁରେ ଦେଖାଗଲା ଏବେ ଉଡ଼ାଯାନ । ୪୯
ସାତ ସମୁଦର ତେର ନଦୀ ପାରହୋଇ
ଷାଠିହଜାର ମାଇଲ ବେଗେ ଉଡ଼ିଯାଇ । ୫୦
ଲଣ୍ଡନ ନଗରେ ପ୍ରବେଶିଲା ଯେତେବେଳେ
ମୁଖିଆ ମୁଖିଆ ଲୋକ ସେଠାରେ ମିଳିଲେ । ୫୧

ଭାରତ ନେତାମାନଙ୍କୁ ସମ୍ବର୍ଦ୍ଧନା କଲେ
ଭୋଜଭାତ ଦେଇ ତାଙ୍କୁ ସାଦରେ ରଖିଲେ ।
ଦିନକ ପରେ ସକଳ ହେଲା ଆୟୋଜନ
ଗୋଲମେଜ ବଇଠକ ବସିବ ନିଦାନ । ୫୩
ପ୍ରଥମେ ଜହରଲାଲ ସ୍ୱୀକାର ନ କଲେ
କି ସମାଧାନ ପାଇଁକି ତାହାଙ୍କୁ ଡାକିଲେ ।୫୪
ହିନ୍ଦୁ ମୁସଲମାନର ଯାହା ଭେଦଥିବ
ଭାରତ କଥା ଭାରତେ ସମାଧାନ ହେବ । ୫୫
ବିଲାତେ ସେ କଥା କିଛି ନହେବ ବିଚାର
ଯାହା ହେବାର ହୋଇଛି ତାହା ଏକା ସାର ।
ଯାହା କହିଛଁ ସେ କଥା ମାନିବୁ କେବଳ
ନ ହେବ ତହିଁ କିଞ୍ଚିତ ଅଦଳ ବଦଳ । ୫୭
ଗୋଲମେଜ ବଇଠକ କାମ କିଛି ନାହିଁ
ଦିଲ୍ଲୀ ବଇଠକେ ଯୋଗଦେବୁଁ ଫେରିଯାଇ ।
ଟେକଟୋକ କଥା କହିଦେଲେକ ଜହର
ଗୋଲମେଜ ବଇଠକ ଭାଙ୍ଗିଲା ନିକର । ୫୯
ନ ହେବାର ହେଲା ପୁଣି ଶେଷରେ ହୋଇଲା
ସେଠାରେ ବହୁତ କଥା ଆଲୋଚନା ହେଲା ।
ସବୁ ଆଲୋଚନା ପରେ ରାଜସରକାର
ପ୍ରକାଶ କଲେ ତୁରନ୍ତ ଏକ ଇସ୍ତାହାର । ୬୧
କଂଗ୍ରେସ ଜିନା ଦଳର ଯାହା ଯାହା ମତ
ଦୁହେଁ ଦେଉଛ ତହିଁର ଭିନ୍ନ ଭିନ୍ନ ଅର୍ଥ ।୬୨
ଜିନାଙ୍କର ମତ ଯାହା ଅଟଇ ଯଥାର୍ଥ
ଇଂରେଜ ସରକାରର ତାଙ୍କ ସଙ୍ଗେ ମତ ।୬୩
ଶାସନ ବିଧାନ ଯେଉଁ ସଭାରେ ଗଢ଼ିବ
ସେ ସଭାରେ ଯେଉଁ ବିଧି ବିଧାନ ହୋଇବ ।
ସବୁ ଦଳଯାକ ଯେବେ ଯୋଗ ଦେବେ ନାହିଁ
ସେ ସଭା ନିଷ୍ପତ୍ତି କେବେହେଁ ସ୍ଥିର ହେବ ନାହିଁ ।

ଅନିଚ୍ଛୁକ ଦଳପରେ ଶାସନ ବିଧାନ
ଲଦି ନ ପାରିବ କେହି ନୁହେଁ ଏ ବିଧାନ ।୬୬
ତେଣୁ ଇଂରେଜ ସରକାରଙ୍କ ମତ ଏହା
ହିନ୍ଦୁ ମୁସଲମାନ ମିଳିମିଶି କର ଯାହା । ୬୭
ଗୋଲମେଜ ବଇଠକ ଆଲୋଚନା ଶେଷେ
ସରକାର ଏହି କଥା କଲେ ଅବଶେଷେ । ୬୮
ଏ କଥା ଶୁଣି ଜହରଲାଲ ବାହୁଡ଼ିଲେ
ମୁହିଁ ପାଣି ମୁହେଁମାରି ଦିଲ୍ଲୀ ପ୍ରବେଶିଲେ ।୬୯
ଯେଉଁ ଯାନେ ଗଲେ ସେହି ଯାନେ ବାହୁଡ଼ିଲେ
ଜୀବନ ମୁହୂର୍ତ୍ତ ଏତେ ପଥ ଯାଇଥିଲେ । ୭୦
ଉଡ଼ନ୍ତା ବୁଡ଼ନ୍ତା ଜୀବ ନୁହେଁ ଏ ମଣିଷ
ଜଡ଼ବିଜ୍ଞାନ ପ୍ରସାଦୁଁ କରେ ଏ ସାହସ । ୭୧
ବୁଦ୍ଧି ବଳ ଖଟାଇ ବିଜ୍ଞାନ ସାହାଯ୍ୟରେ
ମଣିଷ ଆକାଶ ପଥେ ବିଚରଣ କରେ । ୭୨
ଖଗ ନୋହି ଖଗ ପରି କରେ ଆଚରଣ
ଦୁଃସାହସ କାମକୁ ସେ କରଇ ବରଣ । ୭୩
ଫେରିଆସି ଜହରଲାଲ ଦିଲ୍ଲୀ ପ୍ରବେଶିଲେ
ଶାସନ ବିଧାନସଭା କାମ ଆରମ୍ଭିଲେ । ୭୪
ଜିନା ରହିଲେ ବିଲାତେ ଫେରି ନ ଆସିଲେ
ଚର୍ଚ୍ଚିଲଙ୍କ ସଙ୍ଗେ ବସି ବିମ୍ରଣା କଲେ । ୭୫
ବିଲାତ ପାର୍ଲିଆମେଣ୍ଟ ସଭା ଡକା ହେଲା
ସେ ସଭାରେ ଏ ସମସ୍ୟା ବିଚାର ଲାଗିଲା ।୭୬
ନାନା ଯୁକ୍ତିତର୍କମାନ ଲାଗିଲା ସେଠାରେ
କେ ସପକ୍ଷ କେ ବିପକ୍ଷ ମତ ପ୍ରକାଶିଲେ ।୭୭
ଚର୍ଚ୍ଚିଲ ଜିନାଙ୍କ ପକ୍ଷ ଧରି ମତ ଦେଲେ
ଜିନା ଯାହା କହୁଛନ୍ତି ଉଚିତ ବୋଇଲେ ।୭୮
ସେ କଥା ନହେଲେ ନାନା ଦ୍ୱନ୍ଦ ଉପୁଜିବ
ଭାରତରେ ସମ୍ପ୍ରଦାୟ ବିବାଦ ବଢ଼ିବ । ୭୯

ହାଣକାଟ ରକ୍ତପାତ ହେବ ଭାରତରେ
ଉପୁଜିବ ଗୁରୁତର ଗଣ୍ଡଗୋଳ ବଳେ । ୮୦
ଦର୍ଶକ ମଞ୍ଚାରେ ବସି ଜିନା ଶୁଣୁଥିଲେ
ତାଙ୍କ ପକ୍ଷେ କେତେଛନ୍ତି ସେ କଳନା କଲେ ।
ଶ୍ରମିକ ସରକାରର ପକ୍ଷ ଲୋକମାନେ
କଂଗ୍ରେସର ପକ୍ଷଧରି କହିଲେ ବଚନେ । ୮୨
ପ୍ରଦେଶ ପୁଞ୍ଜିବିଭାଗ ତା ବିଧିବିଧାନ
ଏ ମରମ ତାର କିସ ଅର୍ଥ ଅଟେ ପୁଣ । ୮୩
କଂଗ୍ରେସ ଯା ଅର୍ଥ କଲେ ଜିନା କଲେ ଭିନ୍ନ
ଏଥିଯୋଗୁ ମତାନ୍ତର ମନାନ୍ତର ପୁଣ । ୮୪
ଜିନା ବୋଲେ ପାକିସ୍ଥାନ ନହେଲେ ନହେବ
କଂଗ୍ରେସ ବୋଲେ ଅଖଣ୍ଡ ଭାରତ ରହିବ ।୮୫
ଏହି ବିବାଦରୁ ଉପୁଜୁଛି ନାନା ଦ୍ୱନ୍ଦ
ଭିଆଣ କରୁଅଛନ୍ତି ବହୁତର ଛନ୍ଦ । ୮୬
ଜିନା ଦଳ ଶାସନ ବିଧାନସଭା ବେଳେ
ଯୋଗ ନଦେଇ ଅଲଗା ରହିଛନ୍ତି ହେଲେ ।
ପୁଣି କହି ଦେଇଛନ୍ତି ରାଜସରକାର
ଅର୍ଥ ବୁଝିବାକୁ ହେଲେ ସଂଶୟ ନ କର ।୮୮
ଫେଡ଼୍‌ରଲ ଅଦାଲତେ ଯାଅ ହେ ସତ୍ୱର
ସେ ବିଚାରପତି ଅର୍ଥ କରିବେ ଆବର । ୮୯
ଦୁଇଦଳଯାକ ସେହି ଅର୍ଥକୁ ମାନିବେ
କଉଣସି ଦଳ ତହୁଁ ଆନ ନ କରିବେ । ୯୦
ଜିନା ବୋଲୁଛନ୍ତି ଅଦାଲତେ ଯିବେ ନାହିଁ
ନିଷ୍ପତ୍ତି ବିପକ୍ଷ ହେଲେ ସେ ମାନିବେ ନାହିଁ ।
ଜବାହରଲାଲ ବୋଲନ୍ତି ଯାହା ହେବ ହେଉ
ଲଣ୍ଡନ ଆଡ଼କୁ ମୁଖ ନ ଫେରିବ ଆଉ । ୯୨
ସାର୍ବଭୌମ ଶାସନବିଧାନ ଗଢ଼ା ହେବ
ସ୍ୱାଧୀନ ଭାରତ ସେହି ବିଧାନେ ଚଳିବ । ୯୩

ସବୁର ସୁବିଧା ସେ ବିଧାନେ ଖଞ୍ଜାହେବ
କାହାର ଆପତ୍ତିପାଇଁ ସନ୍ଧ ନ ରହିବ । ୯୪
ସାଦରେ ଜିନା ଦଳଙ୍କୁ ଆମ୍ଭ ନିମନ୍ତ୍ରଣ
ଯୋଗଦେଇ କରନ୍ତୁ ବିଧାନ ପ୍ରଣୟନ । ୯୫
ଆନ ଦେଶର ସାଲିସ ଭଲଲୋକ ପଣ
ଲୋଡ଼ାନାହିଁ କରିବୁଁ ସକଳ ସମାଧାନ । ୯୬
ଘର କଳି ଘରେ ଭାଙ୍ଗି ସ୍ୱଚ୍ଛନ୍ଦେ ଚଳିବୁଁ
ଇଂରେଜଙ୍କ ଭଲଲୋକି ଆଉ ନ ଖୋଜିବୁ।୯୭
ଯେତେକାଳଯାଏ ସେମ୍ଭ ମଧ୍ୟସ୍ଥ ରହିବେ
ନ ଭାଙ୍ଗି କଳିକଜିଆ ବୃଦ୍ଧି କରୁଥିବେ । ୯୮
ଆସ ଜିନା ଭାରତକୁ ସ୍ୱାଧୀନ କରିବା
ଘରେ ବସି ନିଜ କଥା ଆପୋଷେ ଭାଙ୍ଗିବା ।
ତୁମ୍ଭେ ଆମ୍ଭେ ରାଜିହେଲେ ମାମଲା ତୁଟିବ
କାହାଙ୍କ ବିଚାର କିଛି ଲୋଡ଼ା ନ ହୋଇବ ।
ଏକଥା ସିନା ଜହରଲାଲ ଶୁଣାଇଲେ
ଜିନା ସେ କଥାକୁ ଟିକେ ଗ୍ରହଣ ନ କଲେ।୧୦୧
ସେହି ଏକା ଜିଦ ଧରିଛନ୍ତି ପାକିସ୍ଥାନ
ନହେଲେ ଦିଲ୍ଲୀ ସଭାରେ ଆମ୍ଭର କି ସ୍ଥାନ ।
କଂଗ୍ରେସ କମିଟି ବଇଠକ ପୁଣି ହେଲା
ପ୍ରଦେଶପୁଞ୍ଜି ମରମ ବିଲତେ ଯେହେଲା । ୧୦୩
ଫେଡ୍‌ରଲ ଅଦାଲତେ ତାର ଟୀକାପାଇଁ
ଯିବା କି ନଯିବା ବିଚାରିବା ସବେ ଥାଇ ।୧୦୪
ବିଚାରେ ସିଦ୍ଧାନ୍ତ ହେଲା ଅଦାଲତେ ଯିବା
କି ଅର୍ଥ କରିବେ ତାହା ବାରେ ଦେଖିନେବା ।
ଜିନାଙ୍କ ମତରେ କିମ୍ପା ଅଦାଲତେ ଯିବା
ବିପକ୍ଷରେ ଅର୍ଥ ହେଲେ କେମନ୍ତ କରିବା ।
ବିଲାତ ସରକାର ତ ଟୀକା କରିଦେଲେ
ସେହି ଅନୁସାରେ କାର୍ଯ୍ୟ କରିବାକ ଭଲେ ।

କଂଗ୍ରେସ ସେହ୍ନି ଟୀକାରେ ହେଲେ ଏକମତ
ସେମାନେ ସଭାରେ ଯୋଗଦେବେକ ନିଶ୍ଚିତ ।
ଏ ଘଟଣା ଓଟରୁ ଶୁଣି ରାଜ ସରକାର
ପୁଣି ବୋଇଲେ ତାଙ୍କର ଟୀକା ଅଟେ ସାର ।
ଅଦାଲତେ ଯାଅ ଅବା ନ ଯାଅ ଯେ ଇଚ୍ଛା
ଆମ୍ଭ ଅର୍ଥ ସାର ଅଟେ ଏହା ଆମ୍ଭ ବାଞ୍ଛା ୧୧୦
ଶାସନ ବିଧାନସଭା ବସିଛି ଦିଲ୍ଲୀରେ
ଯାହା ଯାହା କାମ ହେବ ହେଉଛି ବିଧିରେ ।
ନିର୍ଦ୍ଦିଷ୍ଟ ବେଳକାଳରେ ବଇଠକ ହେଲା
ଜିନା ଦଳ ଏ ସଭାରେ ଯୋଗ ନ ହୋଇଲା ।
ସମ୍ପ୍ରଦାୟ ଗଣ୍ଡଗୋଳ ବନ୍ଦ ହୋଇନାହିଁ
କାମ କରୁଅଛି ସ୍ଥାନେସ୍ଥାନେ ଦେଖାଦେଇ ।
ପ୍ରଦେଶପୁଞ୍ଜ ପାଇଁ କ ସମିତି ହୋଇବ
ସେ ସମିତି ସେ ପୁଞ୍ଜର ବିଧାନ ବାନ୍ଧିବ ।୧୧୪
ପୁଣି କଂଗ୍ରେସ ସମିତି କଲା ଶେଷେ ସ୍ଥିର
ଅଦାଲତେ ଯିବେନାହିଁ କଲେକ ବିଗ୍ଭର ।୧୧୫
ସରକାର ବାର ବାର କରନ୍ତି ଘୋଷଣା
ଆମ୍ଭେ ଯେଉଁ ଅର୍ଥକଲୁ ସେ ଏକା ଠିକଣା ।
ଏ ଗ୍ଭଲିମାଲି ଦେଖିଣ ସରକାରଙ୍କର
କେତେ ପ୍ରତିନିଧିଙ୍କର ଏମନ୍ତ ବିଗ୍ଭର । ୧୧୭
ଅଦାଲତ ଆଶ୍ରୟରେ ନାହିଁ କିଛିଫଳ
ସରକାରଙ୍କର ଅର୍ଥ ହେବ କି ବଦଳ । ୧୧୮
କେ ବୋଲେ ଏ ସଭା ଏବେ ମୁଲତବି ରହୁ
ଜିନାଦଳ ଆସି ଯୋଗ ଦେବାଯାଏ ଯାଉ ।
ସଭାରେ ଏପରି ଲାଗିଅଛି ଆଲୋଚନା
କିଏ କେତେ ପରକାରେ କରନ୍ତି ଭାବନା ।
କଂଗ୍ରେସର କାର୍ଯ୍ୟକାରୀ ସମିତି ବସିଲା
ଏହିସବୁ କଥା ବହୁ ଆଲୋଚନା କଲା । ୧୨୧

ବହୁ ଆଲୋଚନା ପରେ କହିଲେ ଏମନ୍ତ
ବୃଥାରେ କମ୍ପାଇ ନେବା ଅଦାଲତ ମତ ।
ଇଂରେଜ ସରକାରଙ୍କ ଘୋଷଣା ଯା ହେଲା
ସରକାର ତା ମରମ ଟିପଣୀ କହିଲା । ୧୨୩
ତା ଉପରେ ଆଉ କଏ ଟୀକା କଲେହେଲେ ।
ସରକାର ତ ମାନିବେ ନାହିଁ ତାହା ଭଲେ ।
ସରକାରଙ୍କର ଏହି ଘୋଷଣା ବଳରେ
ନୂଆ ପରିସ୍ଥିତି ଏକ ଉପୁଜିଲା ଭଲେ । ୧୨୫
କଂଗ୍ରେସର କାର୍ଯ୍ୟକାରୀ ସମିତିର ମତ
ବିଷମ ସଙ୍କଟ ଉପୁଜିବା ସୁନିଶ୍ଚିତ । ୧୨୬
ତେଣୁ ନିଖିଳଭାରତ କଂଗ୍ରେସ ସମିତି
ବଇଠକ ମତ ନେଇ କରିବେ ନିଷ୍ପତ୍ତି । ୧୨୭
ତୁରନ୍ତ ଏ ବଇଠକ ଦିଲ୍ଲୀରେ ବସିବ
ଏ ନୂଆ ପରିସ୍ଥିତିର ବିଚାର କରିବ । ୧୨୮
ଶାସନ ବିଧାନ ହଣ୍ଡ ଲକ୍ଷ୍ୟ ଅଟେ କିସ
କି ନୀତି ନିୟମ ତାର କିସ ବା ଉଦ୍ଦେଶ୍ୟ ।
ନେହେରୁ ଆରମ୍ଭ କରିଥିଲେ ବିଚାରଣା
ଲାଗିଅଛି ଘମାଘୋଟ ବିଚାର ତର୍କଣା । ୧୩୦
ସେ ବିଚାର ବର୍ତ୍ତମାନପାଇଁ ବନ୍ଦ ହେଲା
ପୁଣି କେତେଦିନପରେ ହେବା ସ୍ଥିର ହେଲା ।
ଛୋଟ ଛୋଟ କମିଟିଗୁଡ଼ିଏ ଗଢ଼ାଗଲା
କିଏ କି କାମ କରିବ ଠିକଣା ହୋଇଲା ।୧୩୨
ସାଲସ ସମିତି ଏକ ଗଢ଼ା ହୋଇଗଲା
ଦେଶୀୟ ରାଜାଙ୍କ କଥା ହେବ ଫଇସଲା ।
ଏହିଠାରେ ଏ ଅଧ୍ୟାୟ ହୋଇଲାକ ଶେଷ
ଦେଖାଯାଉ କି କରିବେ ପ୍ରଭୁ ଜଗଦୀଶ ।୧୩
କରିକରାଉଛ ସବୁ ଫସାରେ ଆପଣ
ଯାହା ଯାହା ହେଉଅଛି ତୁମ୍ଭର ଭିଆଣ ।

ବିବାଦ କଳହ ଅଗ୍ନି ଜଳେ ଧାଉ ଧାଉ
କେତେ ଘର ପୋଡ଼ି ଭସ୍ମ କରୁଅଛି ସେହୁ ।
ଗାନ୍ଧିବୁଢ଼ା ବସି ଶୁଣାଉଛନ୍ତି ଶାନ୍ତି ମନ୍ତ୍ର
ହିଂସା ଛାଡ଼ି ଅହିଂସକ ହୁଅନ୍ତେ ସର୍ବତ୍ର ।୧୩୭
ଯେତେ ଯେତେ ଅହିଂସା ମନ୍ତ୍ରର ପଢ଼ାଗଲା
ତେତେ ତେତେ ହିଂସା ଅଗ୍ନି ପ୍ରଜ୍ୱଳିତ ହେଲା ।
ଗାନ୍ଧି ବଚନକୁ କେହି କାନେ ନ ପାଳନ୍ତି
ଭଲକଥା ବୋଲି ସର୍ବେ ତୁଣ୍ଡିରେ କହନ୍ତି ।
ଗାନ୍ଧି ଏବେ ଯାଇ ନୂଆଖାଲିରେ ଅଛନ୍ତି
ଗ୍ରାମେ ଗ୍ରାମେ ଘରେ ଘରେ ଯାଇ ବୁଲୁଛନ୍ତି ।
ଏକାକେ ସେଠାରେ ରହି କରନ୍ତି ପ୍ରଚାର
ହିନ୍ଦୁ ମୁସଲମାନ ମନୁ ହିଂସା କର ଦୂର ।
ନିର୍ମଳ ମନରେ ଭାଇ ଭାଇ ହୋଇ ରୁହ
ଆପଣା ମଧ୍ୟରେ ବୃଥା ନ କର କଳହ ।୧୪୨
ଯାବତ ଏ ଗଣ୍ଡଗୋଳ ନିଆଁ ନ ଲିଭିବ
ଗାନ୍ଧି ଗ୍ରାମେ ଗ୍ରାମେ ପଦବ୍ରଜେ ବୁଲୁଥିବ ।
ଗଲେ ଯାଉପଛେ ପ୍ରାଣ ରହିବେ ସେଠାରେ
ଯାବତ ଶାନ୍ତି ନପଶେ ସକଳ ଗ୍ରାମରେ ।୧୪୪
ସ୍ଥାନେସ୍ଥାନେ ପ୍ରାର୍ଥନା ସଭାରେ ବୋଲେ ବୁଢ଼ା
କଳହ କରି ନହୁଅ ଭାଇ ଲକ୍ଷ୍ମୀଛଡ଼ା । ୧୪୫
ହିନ୍ଦୁ ମୁସଲମାନ ଯେବେ ଏକାଠି ନ ହେବ
ଭାରତ କେବେ ସ୍ୱାଧୀନ ହୋଇ ନ ପାରିବ ।
ଶାନ୍ତ ହୁଅ ଶାନ୍ତ ହୋଇକର ଭାଇ ଭାଇ
ଡାକ ପକାଉଛି ବୁଢ଼ା ତୁହାଇ ତୁହାଇ । ୧୪୭
ଭଗବାନ ଏକମାତ୍ର ରକ୍ଷକ ସବୁରି
ହିତକର କଥାକୁ କମ୍ପା ଯାଉଅଛି ଡରି । ୧୪୮
ବିଶ୍ୱାସ ଭକତିଥିଲେ ଭଗବାନଠାରେ
କାହାକୁ କି ଡରଅଛି କହ ଏ ସଂସାରେ ।

ହିନ୍ଦୁ ଏ କଥା ବୁଝିଲେ ହୋଇବେ ସାହସୀ
ମନରୁ ସକଳ ଭୟ ପକାଇବେ ନାଶି । ୧୫୦
ମୁସଲମାନ ବୁଝିଲେ ହୋଇବେ ସନ୍ତୁଷ୍ଟ
ପୂର୍ବ କର୍ମପାଇଁ ଶୋକ କରିବେ ନଶ୍ଚିତ ।
ବେଦ କୋରାନେ ଅଛନ୍ତି ଏକ ଭଗବାନ
ନାନାଶାଖା ଧରମରେ ନାମ ଭିନ୍ନ ଭିନ୍ନ ।
ଏକ ଭଗବାନଙ୍କର ସକଳ ସନ୍ତାନ
ଆଗୃର ବେଭାର ପନ୍ଥା ସିନା ଆନ ଆନ ।
ହୁଡ଼ିଣ ଧରମ ପଥ ହେଉଛ ବାଉଳା
ବୃଥା ଦମ୍ଭ ଅହଂକାରେ ହୁଅ ମେଳା ମେଳା ।
ତାଙ୍କ ଲୀଳା ବୁଝିବାର ଅଟଇ ଦୁସ୍ତର
ତାହାଙ୍କ ଚରଣେ କୋଟି କୋଟି ନମସ୍କାର ।
ଭଣେ ଦୀନ ଜଗବନ୍ଧୁ ନୀଳାଚଳ ନାଥ
ପୂରାଅ ଭାରତବାସୀଙ୍କର ମନୋରଥ । ୧୫୬

ଇତି ଶ୍ରୀ ଭାରତ-ଚରିତାମୃତେ ଶାସନ ବିଧାନସଭା ଚରିତ ବର୍ଣ୍ଣନେ
ଏକଶତ ଚତୁର୍ବିଂଶ ଅଧ୍ୟାୟଃ ।



## ଏକଶତ ପଞ୍ଚବିଂଶ ଅଧ୍ୟାୟ

ସ୍ମୃତିଭଣ୍ଡାର ଉବାଚ

ଚହଳ ପଡ଼ିଛି ଏବେ ସାରା ଭାରତରେ
ଭାରତ ସ୍ୱାଧୀନ ହେବ ଅତି ନିକଟରେ । ୧
ସତେ କି ଇଂରେଜ ଛାଡ଼ି ଯିବେ ଏ ଭାରତ
ଏ କଥା ମନକୁ ମୋର ଲାଗୁନାହିଁ ସତ । ୨
ଆମେ ପଲ୍ଲୀବାସୀ ଗ୍ରାମ ଗହଳରେ ଥାଉଁ
ଭିତିରି ମନ୍ତ୍ରଣା କଥା ଜାଣିବୁ ବା କାହୁଁ । ୩

ନଗରବାସୀ ଆପଣ ସହରେ ନିବାସ
ଜାଣି ପାରୁଥିବ ତେଣୁ ଖବର ବିଶେଷ । ୪
ସମାଜ ସମ୍ବାଦପତ୍ର ଲେଖୁଅଛି ଯାହା
ସେଥିରୁ ନ ପାଉଁ ଆମେ ଠିକ ଠିକ ରାହା । ୫
ସବୁଠି ସବୁ ସମୟେ ତାହା ଅପ୍ରାପତ
ମିଳିଲେ ନିରକ୍ଷରଙ୍କୁ ବାହା ଅବିଦିତ । ୬
ଶୁଣୁଛୁଁ ସିନା ଇଂରେଜ ଭାରତ ଛାଡ଼ିବେ
କାହିଁକି କିପରି କେଉଁ ସରତରେ କେବେ ।
ଆପଣଙ୍କୁ ଜଣାଥିବ ନିଗମ ବଚନ
ତଥ୍ୟକଥା ଜଣାଯିବ କହନ୍ତୁ ଆପଣ । ୮
ଏଥିପାଇଁ ଦଉଡ଼ି ଆସିଛୁ ଏତେ ବାଟ
ଫିଟାଇ କହନ୍ତୁ ସବୁ ନରଖି କପଟ । ୯

ଗଙ୍ଗା ଉବାଚ

ଆଚ୍ଛା କଥାଏ ପୁଚ୍ଛିଲ ଏଥର ଗଉର
ପାଞ୍ଚୁଛି ଦେବ ଏଥିକୁ କିଅବା ଉତ୍ତର । ୧୦
କାହିଁ ଇଂରେଜଙ୍କ ଦେଶ କାହିଁ ଏ ଭାରତ
ସେ ଦେଶରେ କ ବିଗ୍ଭର ହେଉଛି ନିୟତ ।
ରାଜନୀତି ବିଶାରଦ ବଡ ବଡ଼ ମୁଣ୍ଡ
ବିଲାତ ଦରବାରରେ ହୋଇ ଏକ ଝୁଣ୍ଡ ।୧୨
ହମାଘୋଟ ତର୍କରରେ ଯାହା କଲେ ସ୍ଥିର
ବିଭୁର କୂଟ ଭାଷାରେ କଲେକ ପ୍ରଗ୍ଭର । ୧୩
ସେ ସିଦ୍ଧାନ୍ତମାନ ଆସି ଭାରତେ ପ୍ରବେଶ
ଖବରକାଗଜ ତାକୁ କରଇ ପ୍ରକାଶ । ୧୪
ସେହି ଖବରରୁ ଆମେ ଯାହା ବା ବୁଝିବା
ମନ ମରମ କଥା ତ ଜାଣି ନ ପାରିବା । ୧୫
ସବ ଶେଷରେ ବିଲାତେ ହେଲାକ ପ୍ରକାଶ
ଆଟଲି ପ୍ରଧାନମନ୍ତ୍ରୀ ପେଶିଲେ ସନ୍ଦେଶ । ୧୬

ହେ ଭାରତବାସୀ ଏବେ ଧୀର ଚିତ୍ତେ ଶୁଣ
ସ୍ଥିର ଗତିରେ ସକଳ କର ବିସ୍ତରଣ । ୧୭
ଊନବିଂଶ ଅଷ୍ଟୋତ୍ତର ଚାଳିଶ ସାଲରେ
ଜୁନମାସ ଶେଷ ହେବା ସମୟ ମଧ୍ୟରେ । ୧୮
ସକଳ କ୍ଷମତାମାନ ଭାରତକୁ ଦେଇ
ବାହୁଡିବେ ଭାରତରୁ ବିଚାରନ୍ତି ସେହି । ୧୯
ଇତି ମଧ୍ୟରେ ସକଳ ସମ୍ପ୍ରଦାୟ ଭେଦ
ମେଣ୍ଟାଅ ସୁରୁଖୁରୁରେ ନକର ବିବାଦ । ୨୦
ସକଳେ ମିଳଣି ଗଢ଼ ଶାସନ ବିଧାନ
ଟେକି ଦେବୁ ତବ ହସ୍ତେ ଭାରତ ଶାସନ ।୨୧
ଯଦି ବିବାଦ ମେଣ୍ଟାଇ ନ ପାରିବ ପୁଣ
କାହା ହସ୍ତେ ଟେକି ଦେବୁ ବିଚାରିବୁ ଜାଣ ।
କେନ୍ଦ୍ର ସରକାର ପ୍ରାଦେଶିକ ସରକାର
ଅବା ଯେଉଁ ଦଳହେବ ବେଶି ବଳୀୟାର ।
କାହା ହସ୍ତେ ଏ ଶାସନ ଭାର ଅରପିବୁଁ
ତେତେବେଳେ ସେକଥାକୁ ବିଚାର କରିବୁଁ ।
ଯେଉଁ ସରକାର ଅବା ଦଳ ଏ ଶାସନ
ଆମ୍ଭଠାରୁ ନେବେ ସେହୁ କ କରିବେ ପୁଣ ।
ସନ୍ଧି ଚୁକ୍ତିପତ୍ର ସେ ଆମ୍ଭଙ୍କୁ ଲେଖିଦେବେ
ବିଲାତର ବନ୍ଧୁ ହୋଇ ସଦା ରହିଥିବେ ।୨୬
ବିଲାତ ବାଣିଜ୍ୟ ବିନା ବାଧା ବିରୋଧରେ,
ଚଳିବ ଭାରତେ ପୂର୍ବ ବିଧି ପରକାରେ । ୨୭
ଦେଶୀୟ ରାଜ୍ୟଙ୍କ ସଙ୍ଗେ ଭିନ୍ନ ସନ୍ଧି ହେବ
ସାର୍ବଭୌମ ଅଧିକାର ତାଙ୍କର ରହିବ । ୨୮
ଏହି ସର୍ତ୍ତରେ ଭାରତକୁ ଅଧିକାର
ଛାଡ଼ିଦେଇ ବାହୁଡ଼ିବୁ କରୁଛୁ ବିଚାର । ୨୯
ଶାସନ ବିଧି ବିଧାନ ଖଞ୍ଜିବା କର୍ମରେ
ଯଥାଶକ୍ତି ସାହାଯ୍ୟ କରିବୁ ନିରନ୍ତରେ । ୩୦

ଏହି ସଦଇଚ୍ଛା ଆମ୍ଭେ ପୋଷିଛୁଁ ମନରେ
ଭାରତକୁ ସ୍ୱାଧୀନତା ଅର୍ପଣ କର୍ମରେ । ୩୧
ଇଂରେଜ ସରକାରର ଏହି ସଦଇଚ୍ଛା
ସନ୍ଦେହ ନକର ହେବ ଥିଲେ ପ୍ରଭୁବାଞ୍ଛା । ୩୨
ବିଲାତ ଶ୍ରମିକ ସରକାର ଘୋଷଣାରେ
ଜାତଦଳ ଏକମତ ହୋଇ ନ ପାରିଲେ ।୩୩
ସେଠାରେ ଲାଗିଛି ଘନ ଘନ ଆଲୋଚନା
ଲର୍ଡଙ୍କ ସଭାରେ ପଡ଼ି ହେଲା ବିଚାରଣା । ୩୪
ସାଧାରଣ ସଭାଆଗେ ସେକଥା ପଡ଼ିବ
ଆଉ ଥରେ ସେ କଥାରେ ଭୋଟ ନିଆଯିବ ।
ଚର୍ଚିଲଆଦି ଯେତେକ ଜାତ ଦଳଗଣ
ଆଟଲିଙ୍କ ଘୋଷଣାରେ ନାହିଁ ତାଙ୍କ ମନ ।୩୬
ଚର୍ଚିଲ ବିଚାରୁଛନ୍ତି ଏକ ଅଦଭୁତ
ଏଡ଼େ ଚଞ୍ଚଳ କିପରି ଛାଡ଼ିବୁଁ ଭାରତ । ୩୭
ସଂଖ୍ୟା ଲଘିଷ୍ଟଙ୍କ ପାଇଁ ନକରି ବ୍ୟବସ୍ଥା
ଛାଡ଼ିଲେ ଭାରତ ତାର ହେବ କି ଅବସ୍ଥା ।୩୮
ଭାରତ ସ୍ୱାଧୀନ ହେଉ ଶୁଭେଚ୍ଛା ଆମର
ନିର୍ଦ୍ଦିଷ୍ଟ ଦିନରେ ବାହୁଡ଼ିବା ଅମଙ୍ଗଳ । ୩୯
ଏପରି ଚହଳ ପଡ଼ିଅଛି ଭାରତରେ
ଶେଷଫଳ ଦେଖାଯିବ ଭୋଟ ହେବା ପରେ ।
ଭାରତରେ ଏ ସନ୍ଦେଶ ହେବାରୁ ପ୍ରକାଶ
କେ ବୋଲେ ଆଶାଜନକ କେବୋଲେ ନିରାଶ
ମୁସଲମାନଗଙ୍କର ମତି ଗତି ଯାହା
ଥିଲା ଅଛି କଞ୍ଚିତରେ ନ ଟଳିଲା ତାହା । ୪୨
ଜିନାଙ୍କର ଜିଦ ପାକିସ୍ଥାନ ନ ହୋଇଲେ
ବିବାଦ ମେଣ୍ଟିବ ନାହିଁ ଜାଣିରଖ ଭଲେ ।୪୩
ଶାସନ ବିଧାନ ଗଢ଼ା ସଭାକୁ ନଗଲେ
ଯଥା ତଥା ରହିଛନ୍ତି ନିଜ ବୁଦ୍ଧିବଳେ । ୪୪

ପଞ୍ଜାବରେ ଲାଗିଅଛି ମହା ଗଣ୍ଡଗୋଳ
ଫଳରେ ଶାସନ କଳ ହେଲାଣି ଅଚଳ । ୪୫
ମନ୍ତ୍ରୀମଣ୍ଡଳ ଭାଙ୍ଗିଣ ଛାରଖାର ହେଲା
ତେଣୁଆନବେ ଧାରାବନ୍ଧ ପୁଣି ଜାରିହେଲା । ୪୬
ନାନା ପ୍ରଦେଶରେ ଲାଗିଅଛି ଗଣ୍ଡଗୋଳ
ହେଲେନାହିଁ ହିନ୍ଦୁ ମୁସଲମାନ କେବେମେଳ ।
ଶାସନ ବିଧାନସଭା କରେ ଅଗ୍ରଗତି
ମୁସଲିମ୍ ଲିଗ୍ ସଭ୍ୟ ସେଠାକୁ ନ ଯାନ୍ତି । ୪୮
ଏହି ପରିସ୍ଥିତି ଲାଗି ରହିଛି ଭାରତେ
କେବେ ସ୍ୱାଧୀନ ହୋଇବା କହିବା କେମନ୍ତେ ।
କେତେ ପରକାର ଆଶା ପୋଷେ କେ ମନରେ
ପହଞ୍ଚିଲାଣି ଭାରତ ସ୍ୱାଧୀନତା ଦ୍ୱାରେ । ୫୦
ଅଟକାଇ ନ ପାରିବ କେହି ଏ ପ୍ରଗତି
ଅଳ୍ପକାଳ ବିଳମ୍ବରେ ନାହିଁ କିଛି କ୍ଷତି । ୫୧
ଏହିପରି ଲାଗିଅଛି କଳ୍ପନା ଜଳ୍ପନା
କେହି କହି ନ ପାରିବ କି ହେବ ଘଟଣା ।
ତେଣେ ଗାନ୍ଧିଜୀ ପାଦରେ ଗ୍ରାମେ ଗ୍ରାମେ ବୁଲି
ପ୍ରଚାର କରନ୍ତି ଭେଦାଭେଦ ଯାଅ ଭୁଲି । ୫୩
ପୂର୍ବବଙ୍ଗ ଗ୍ରାମମାନଙ୍କରେ ବୁଲୁଛନ୍ତି
ପ୍ରାର୍ଥନା ସଭାରେ ରାମଧୂନ କରୁଛନ୍ତି । ୫୪
ରାମନାମ ଶୁଣାଉ ଅଛନ୍ତି ଘରେ ଘରେ
ହିନ୍ଦୁ ମୁସଲମାନ ଭେଦ ଭୁଲିଯାଅ ବାରେ । ୫୫
ଯାହା ଯାହା ହୋଇ ଯାଇଅଛି ଅତ୍ୟାଚାର
ସେ ସବୁକଥାକୁ ବେଗେ ମନରୁ ପାଶୋର ।
ଯାହା ତ ହେବାର ସବୁ ହୋଇ ଯାଇଅଛି
ସକଳ ବେଦନା ଏବେ ମନୁ ଦିଅ ପୋଛି । ୫୬
ଏକା ମାଟିରୁ ଜନମି ଅଛ ଦୁଇ ଭାଇ
କଳି ଦନ୍ଦ କରିବାର କେବେ ନ ଯୋଗାଇ ।

ଅହିଂସା ଭାବରେ ଚଳ ଏକମେଳ ହୋଇ
ପ୍ରେମେ କୋଳାକୋଳି ହୁଅ ଯେହ୍ନେ ଦୁଇ ଭାଇ
ବଳ କଷାକଷି ହୋଇ ନ ହୁଅ ନିର୍ମୂଳ
ଏପରି ହେଲେ ଶେଷକୁ ଭାଙ୍ଗିଯିବ ବଳ । ୭୦
ସ୍ୱାଧୀନତା ବହୁଦୂର ପଛକୁ ହଟିବ
ଏପରି ହେଲେ ଭାରତ ସ୍ୱାଧୀନ ନ ହେବ ।୭୧
ଆସିଛି ମୁଁ ଏ ମେଳକ କରିବାର ପାଇଁ
ନ ହେଲେ ଏ କଥା ଏଠି ପ୍ରାଣ ଛାଡ଼ିବଇଁ ।୭୨
ପ୍ରାର୍ଥନାସଭାକୁ ଆସୁଛନ୍ତି ମୁସଲମାନ
ଭକ୍ତିମାନ ହୋଇ ସବୁ କରନ୍ତି ଶ୍ରବଣ । ୭୩
ମାସେ ଦେଢ଼ମାସ ହେଲା ଏ ଗ୍ରାମେ ସେ ଗ୍ରାମେ
ବୁଲିବୁଲି ବୁଢ଼ା ଲାଗିଅଛି ଏହି କାମେ । ୭୪
ସେ ଅଞ୍ଚଳୁ ବିହାର ଅଞ୍ଚଳେ ବୁଢ଼ାଗଲେ
ସେଠାରେ ଏସବୁ କଥା କହିବେକ ଭଲେ ।
ହିନ୍ଦୁ ମୁସଲମାନ ମିଳାମିଶ କାମଲାଗି
ବୁଢ଼ାର ବଳବୟସ ଯାଉଅଛି ଭାଗି । ୭୬
କି ଫଳ ଫଳିବ କିଛି ଜଣାଯାଉ ନାହିଁ
ନାଗ ଥିଲେ ଫଳହେବ ପଦ୍ମତୋଳା ଗାଇ ।
ସତ୍ୟଯୁଗ କଥା କହୁଛନ୍ତି ସିନା ବୁଢ଼ା
କଳିକାଳରେ ଏ ସବୁ ହେଉନାହିଁ ଲୋଡ଼ା ।
ନୋହିଲେ କି ଏତେକାଳ ବୁଢ଼ା ମତିମାନ
ଏ ଭାରତବାସୀ କରି ନ ଥାନ୍ତେ ପାଳନ ।୬୯
ଶ୍ରୁତିକି ସୁଆଦ ସିନା କରଣେ କଠିନ
ଶୁଣି ଉଡ଼ିଯାଏ ତେଣୁ ଏ ସାଧୁ ବଚନ । ୭୦
ଅସାଧୁ ଭାବରେ ପୂରିଅଛି ଏ ଭାରତ
ସାଧୁ ବଚନ ପାଳିଲେ କେଉଁଣ ବହୁତ । ୭୧
ଶୁଣୁଛନ୍ତି ଶତଶତ ସାଧେ କେତେ ଜଣ
ସିଦ୍ଧି ମିଳିବ କିପରି ନକଲେ ସାଧନ । ୭୨

ଯୁଗେ ଯୁଗେ ହେଉଅଛି ଏ ମତ ପ୍ରଚାର
ଜାଣି ଶୁଣି ଲୋକେ କରୁନାହାନ୍ତି ଖାତର । ୭୩
ପାପେ ବୁଡ଼ି ମରୁଛନ୍ତି ହୋଇ ଅଳ୍ପାୟୁଷ
ତଥାପି ପାଳୁ ନାହାନ୍ତି ସାଧୁଙ୍କ ସନ୍ଦେଶ । ୭୪
ଗାନ୍ଧି ତ କହୁ ନାହାନ୍ତି ନୂଆ କଥା କିଛି
ଶାସ୍ତ୍ର ପୁରାଣ ଗୀତାରେ ସବୁକଥା ଅଛି । ୭୫
ଶ୍ରବଣ ମନନ ଧ୍ୟାନ ଧାରଣା ସମାଧି
ଏତେ ପାହାଚ ଉଠିଲେ ଲଭ ହେବ ସିଦ୍ଧି ।
କେତେ ବରଷ ହେଲାଣି ଗାନ୍ଧି ଡାକଶୁଣି
ଲୋକଏ ହେଲେ ଚେତନା ନ ଜାଗିଲା ପୁଣି । ୭୭
ଅସତ୍ୟ ନିଶା ସେବନ ଲାଞ୍ଚ କଳାପୋତା
ଅଧିକୁଁ ଅଧିକ ହେଲା ଏ ଦେଶରେ ପୋତା ।
କଂଗ୍ରେସ ସରକାର ତ ଏ ଦେଶେ ବସିଲା
ଲୋକଙ୍କ ଶାସନଭାର ମୁଣ୍ଡେ ମୁଣ୍ଡାଇଲା । ୭୯
ଖାଦ୍ୟ ସଙ୍କଟ ବଢ଼ିଲା ଦିନୁଦିନ ଅତି
ଖାଦ୍ୟ ଅଭାବେ ଲୋକଙ୍କ ପେଟ ଗଲା ଫାଟି ।
ଚୋରାବଜାର ବଢ଼ିଲା ଦେଶରେ ପ୍ରବଳ
ସରକାରୀ କଟକଣା ହୋଇଲା ନିଷ୍ଫଳ । ୮୧
ହାଟ ବଜାରେ ଯେ ଦ୍ରବ୍ୟ ଖୋଜିଲେ ନମିଳେ
କଳାପୋତା ଦେଲେ ଅନ୍ଧାରରେ ସବୁ ମିଳେ ।
ତେଲ ଘିଅ ଆଦି ଯାହା ବଜାରରେ ମିଳେ
ବିଷପାନ କରାଯାଏ ଏ ପେଟ ଭକଲେ । ୮୩
ଗାନ୍ଧିଜୀଙ୍କ ପ୍ରଚାରର ଏବେ ପରିଣତି
କେଉଁଠି ରଖିଲେ ଲୋକେ ଗାନ୍ଧିଜୀଙ୍କ ମତି ।
ତେଣୁ କହେ ଗାନ୍ଧିକଥା ନ ପାଳିଲେ କେହି
ମିଥ୍ୟା ତଥା ରହିଲେ କେବଳ ଭେକ ନେଇ ।
ଖଦଡ଼ ଭେକ ହୋଇଲା ଗାନ୍ଧି ଶିଷ୍ୟଙ୍କର
ତ୍ରଭକ ଅନୁରୂପ କାମ ନ କଲେ ନକର । ୮୬

ଶଙ୍କରଙ୍କ ଦଣ୍ଡନାମୀ ଶିଷ୍ୟପରି ହେଲେ
ନାମେ ଶିଷ୍ୟ କାମେ ରଙ୍ଗ ପିଇ ନ ପାରିଲେ ।
ବୁଢ଼ାକାଳେ ଗାନ୍ଧି ମରୁଅଛି ହୋଇ ଧନ୍ଦ
ଧନ ସରୁନାହିଁ ଛାରି ବୁଲେ କାନ୍ଦ କାନ୍ଦ ।
ଭାଙ୍ଗି ଗଲେ ଦରପଣ ଯୋଡ଼ି ନ ହୋଇବ
ମନ ଦଶା ସେହିପରି ଯେବେ ଫାଟିଯିବ ।୮୯
ମନ ଦରପଣ ଦୁଇ ଅଟନ୍ତି ସମାନ
କାଦୁଅ ଲେପିଲେ ଯୋଡ଼ି ନ ହୋଇବ ପୁଣ ।
ହିନ୍ଦୁ ମୁସଲମାନଙ୍କ ମନ ମିଳାଇଲେ
ଅମର ହୋଇବେ ଗାନ୍ଧି ଏ ମହା ମନ୍ତ୍ରଳେ ।

ଗଜର ଉବାଚ

ପାର୍ଲିଆମେଣ୍ଟ ସଭାରେ କଥା ପଡ଼ିଥିଲା
ଆଟେଲଙ୍କ ଘୋଷଣାର କି ଦଶା ହୋଇଲା ।
ଚର୍ଚ୍ଚିଲ ସାହେବ କସ ମତାମତ ଦେଲେ
କି ସିଦ୍ଧାନ୍ତ ହେଲା ଜଣା ନଗଲାକ ଭଲେ ।୯୩

ଜଗା ଉବାଚ

ଚର୍ଚ୍ଚିଲ ବହୁତ କଥା ସଭାରେ ବାଢ଼ିଲେ
ଜହରଲାଲ ଶାସନ ପସନ୍ଦ ନ କଲେ । ୯୪
ବର୍ଣ୍ଣ ହିନ୍ଦୁ ନେତା ଜହରଲାଲ ଯେଉଁପରି
ଗଢ଼ିଛନ୍ତି ସରକାର ବର୍ଣ୍ଣର ବର୍ଣ୍ଣର । ୯୫
ନୁହେଁ ଏ ପ୍ରକୃତ ସରକାର ଭାରତର
ଏହାଙ୍କ ହାତେ ଶାସନ ନୁହଇ ଦେବାର ।୯୬
ଭାରତର ଭିନ୍ନ ଭିନ୍ନ ରାଜନୀତି ଦଳ
ଲୋକଙ୍କର ପ୍ରତିନିଧି ନୁହନ୍ତି ନକର । ୯୮
ବାଛିବାଛି କରି ସେହି ପ୍ରତିନିଧି ଗଣ
ଥୋଇଲେ ତାହାଙ୍କ ହସ୍ତେ ଭାରତ ଶାସନ ।
କାହାର ହୋଇବ ସେହୁ କହୁଅଛି ଶୁଣ
ମେରୁ ବିହୀନ ଲୋକଙ୍କ ମୁଣ୍ଡେ ବୋଝ ଟାଣ ।

ଅନଶନ ଦ୍ୱନେ ଏହାଙ୍କ ଅସ୍ତିତ୍ୱ ବିନାଶ
ହୋଇବ ଏଥି ସଂଶୟ ନାହିଁ କିଛି ଲେଶ ।
ଏହିପରି ନାନା ବିଷ ଉଦ୍‌ଗୀରଣ କଲେ
ଚମ୍ପ ପରି ଫଁ ଫଁ ହୋଇ ଗରଜିଲେ ।
ଫଳରେ ତାଙ୍କ ପ୍ରସ୍ତାବ କାଠ ଖାଇଗଲା
ଅଧିକ ସଂଖ୍ୟକ ଭୋଟ ନ ପାଇ ହାରିଲା ।୧୦୨
ସରକାର ଯେଉଁ ପ୍ରସ୍ତାବଟି ଦେଇଥିଲେ
ସେହି ପ୍ରସ୍ତାବ ଜିଣିଲା ବେଶି ଭୋଟ ବଳେ ।
ଆଟେଲି ଯେଉଁ ସମୟ କଥା କହିଥିଲେ
ସେ ସମୟ ଠିକଣା ରହିଲା ସେ ସଭାରେ ।
ଭାରତ ଶାସନ ଭାର କରିଣ ଅର୍ପଣ
ଚାଲିଯିବେ ଭାରତରୁ ଏହା ଦୃଢ଼େ ପଣ ।
ଓ୍ୟାଭେଲ ସାହେବ ଯେହୁ ବଡ଼ଲାଟ ଥିଲେ
ଭାରତ ଛାଡ଼ି ସେ ବିଲାତକୁ ଚାଲିଗଲେ ।୧୦୬
ମାଉଣ୍ଟବାଟେନ ନାମେ ଆରେକ ଆସିଲେ
ଭାରତର ନୂଆ ବଡ଼ଲାଟ ସେହୁ ହେଲେ ।
ସେ ବୋଇଲେ ଆସିଛି ମୁଁ ରହିବ ଭାରତେ
ସକଳ କ୍ଷମତା ଦେଇଦେବା ପରଯନ୍ତେ ।୧୦୮
କାହାହାତେ କେଉଁପରି କ୍ଷମତା ମୁଁ ଦେବି
ସେ କଥା ଠିକଣା କରି ଭାରତୁଁ ଫେରିବି ।
ଗାନ୍ଧି ଜିନାଙ୍କୁ ଡ଼କାଇ ହେଉଛନ୍ତି ଭେଟ
ହପ୍ତାର ଲଗିଛି ଦିଲ୍ଲୀଠାରେ ସମାଘୋଟ ।
ତେଣେ ସାରା ଭାରତର ନାନା ଅଞ୍ଚଳରେ
ହାଣକାଟ ଗୋଳମାଳ ହେଉଛି ବଧିରେ ।
ସମ୍ପ୍ରଦାୟ ଗଣ୍ଡଗୋଳ ବଢ଼ୁଅଛି ନିତି
ସେ ସବୁ ଘଟଣା ଶୁଣି ବଢ଼ୁଅଛି ଭୀତି ।୧୧୨
ଦେଖାଯାଉ ନୂଆ ବଡ଼ଲାଟ କି କରିବେ
କେବେ ବା କ୍ଷମତା ଦେଇ ଭାରତୁଁ ଫେରିବେ

ସାରା ଭାରତରେ ଶାନ୍ତି ନାହିଁ କେଉଁଠାରେ
ଲୋକେ ସଡ଼ୁଛନ୍ତି ଦାନା କନା ଅଭାବରେ ।
ଦାନା କନା ପଡ଼ି ବଣ୍ଟା ହେଉଛି ବହୁତ
ଦରଦାମ ନିୟନ୍ତ୍ରଣ ଚାଲିଛି ନିୟତ । ୧୧୫
ଯେତେଯେତେ ଦରଦାମ ନିୟନ୍ତ୍ରଣ ହେଲା
କଳାବଜାରର ଦାଉ ତେତେ ବୃଦ୍ଧି ହେଲା ।
ମହଣ ଦରରେ ଜାଳକାଠ ବିକାହେଲା
ସେର ଚକଡ଼ରେ କାଠ ଓଜନ ହୋଇଲା ।
ଯେଉଁ ଦେଶେ ଗବ୍ୟଘୃତେ ହେଉଥିଲା ହୋମ
ବନସ୍ପତି ଘୃତେ ଏବେ ଚଳିଲା ସେ କାମ ।
ଆୟୁ ସ୍ୱାସ୍ଥ୍ୟ ହାନିକର ଅଟଇ ଏ ଘୃତ
ବିଷାକ୍ତ ବୋଲି ପଣ୍ଡିତେ ଦେଉଛନ୍ତି ମତ ।
ଯାବତ ମିଷ୍ଟାନ୍ନ ବିକାହୁଏ ବଜାରରେ
ବନସ୍ପତି ଘୃତେ ସବୁ ହେଉଛି ବିଧିରେ । ୧୨୦
ଦେବ ମନ୍ଦିରମାନଙ୍କେ ହୋଇଛି ପ୍ରବେଶ
ଧୂପ ଦୀପେ ନଇବେଦ୍ୟେ ପାଇଲା ବିକାଶ ।୧୨୧
ଖାଣ୍ଟି ଘିଅ ସେର ମୂଲ୍ୟ ଆଠ ଦଶ ଟଙ୍କା
କେତେ କେ କିଣି ଖାଇବ ଶୁଣି ମନ ଫିକା ।
ସୋରିଷ ତେଲ ଅଭାବେ ବାଦାମ ତଇଳ
ପ୍ରଚୁର ହୋଇଲା ଏବେ ବଜାରେ ବହୁଳ ।
ଜିନିଷ ଦୁର୍ମୂଲ୍ୟ ଭୂତ ପଶିଛି ଭାରତେ
ହାହା ହାହା ଡାକ ପଡ଼ି ଅଛଇ ଆରତେ ।
କେବେ ଏ ଭୂତ ଭାରତ ମୁଣ୍ଡୁ ଓହ୍ଲାଇବ
ସୁଲଭ ମୂଲ୍ୟରେ ସବୁ ଦରବ ମିଳିବ । ୧୨୫
କି ହେବ ସ୍ୱାଧୀନ ହୋଇ ପେଟ ନ ପୂରିଲେ
ଲୋକେ ଯାତନା ଭୋଗିଲେ ପେଟ କଲବଲେ
ଆହେ ଚକ୍ରଧାରୀ ଚକ୍ର ଧରିଅଛ କରେ
ଛେଦ ଏ ଦୁର୍ମୂଲ୍ୟ ଭୂତ ଶିର ପଡ଼ୁ ତଳେ ।

ଏହିଠାରେ ଏ ଅଧ୍ୟାୟ ହେଲା ଏବେ ଶେଷ
ଭାଷେ ଜଗବନ୍ଧୁ ପ୍ରଭୁ ନକର ନିରାଶ । ୧୨୮

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ଶାସନ ଭାର ଅର୍ପଣ ବିଷୟର ବର୍ଣ୍ଣନେ
ଏକଶତ ପଞ୍ଚବିଂଶ ଅଧ୍ୟାୟଃ ।



# ଏକଶତ ଷଡ଼୍‌ବିଂଶ ଅଧ୍ୟାୟ

ଜଗା ଉବାଚ

ମାଉଣ୍ଟବାଟେନ ନୂଆ ବଡ଼ଲାଟ ହେଲେ
ଉଡ଼ିଆସି ଭାରତରେ ପ୍ରବେଶ ହୋଇଲେ । ୧
ନେତା ଜହରଲାଲ ଗାନ୍ଧିମାନଙ୍କୁ ଡ଼ାକିଲେ
ପୁଣି ନାନା କଥାମାନ ଆଲୋଚନା କଲେ । ୨
ପୁଣି ଦଉଡ଼ ଧାପଡ଼ ଲାଗିଲା ବହୁତ
ଆଲୋଚନା କଲେ ପୁଣି ନାନାବିଧ ଚରିତ । ୩
ଗୁପତେ ଗୁପତେ ସବୁ କଥାଭାଷା ହେଲା
ପଦାକୁ ସେ କଥାମାନ ଜଣା ନ ପଡ଼ିଲା । ୪
ସବୁ ଦଳପତି ସଙ୍ଗେ ଆଲୋଚନା କଲେ
ବିଲାତକୁ ବଡ଼ଲାଟ ସମ୍ବାଦ ପେଶିଲେ । ୫
ପୁଣି ଟିକେ ଦିନପରେ ବଡ଼ଲାଟ ଗଲେ
ବିଲାତ ମନ୍ତ୍ରୀମଣ୍ଡଳ ସଙ୍ଗେ କଥା ହେଲେ । ୬
ସେଠାରେ ପୁଣି ବହୁତ ଆଲୋଚନା ହେଲା
ପାର୍ଲିଆମେଣ୍ଟ ସଭାରେ ସେକଥା ପଡ଼ିଲା । ୭
ବିଲାତର ସବୁଦଳ ଆଲୋଚନା କଲେ
ଚର୍ଚ୍ଚିଲ ସାହେବ ସେ କଥାରେ ମତଦେଲେ ।
ଉନବିଂଶ ସପତ ଚ୍ଚାଳିଶ ସାଲ ଏହି
ଜୁନମାସ ପାଞ୍ଚ ତାରିଖରେ ଦେଲେ କହି । ୯

ପାର୍ଲିଆମେଣ୍ଟ ସଭାରେ ଘୋଷଣା ହୋଇଲା
ସେହିଦିନ ଭାରତରେ ପ୍ରକାଶ ପାଇଲା । ୧୦
ଇତିହାସ ପ୍ରସିଦ୍ଧ ଏ ଘୋଷଣାକୁ ଯେଣ
ଇଂରେଜ ସରକାରର ଏହା ମହାଦାନ । ୧୧
ପାଟମନ୍ତ୍ରୀ ଆଟେଲି ଏ ବାଣୀ ଶୁଣାଇଲେ
ଭାରତ ପରିସ୍ଥିତିରେ ଆନନ୍ଦିତ ହେଲେ । ୧୨
କ୍ଷମତା ଛାଡ଼ିବା ଯୋଜନାକୁ ମୁସଲମାନ
ହିନ୍ଦୁ ଶିଖ ନେତାମାନେ କଲେକ ଗ୍ରହଣ । ୧୩
ହିନ୍ଦୁସ୍ଥାନ ପାକସ୍ଥାନ ଦୁଇ ଅନୁଷ୍ଠାନ
ତହିଁପାଇଁ ଗଢ଼ା ହେବ ଶାସନ ବିଧାନ । ୧୪
ସେଥିରେ ଇଂରେଜଙ୍କର ହାତ ନ ରହିବ
ଭାରତୀୟ ସେନା ନିଜେ ନିଷ୍ପତ୍ତି କରିବ । ୧୫
ନିଷ୍ପତ୍ତି କରିବା ସଙ୍ଗେ ସଙ୍ଗେ ସରକାର
ସକଳ କ୍ଷମତା କରିଦେବେ ହସ୍ତାନ୍ତର । ୧୬
ସକଳ କ୍ଷମତା ଦେଇ ଭାରତରୁ ଯିବେ
ସେହିଦିନ ଭାରତ ସମ୍ପର୍କ ତୁଟାଇବେ । ୧୭
ଉପନିବେଶ ଶାସନ ଭାରତ ପାଇବ
ତୁରନ୍ତ ସେହି କ୍ଷମତା ତାଙ୍କୁ ମିଳିଯିବ । ୧୮
ମୁସଲମାନ ପ୍ରଧାନ ଅଞ୍ଚଳ ଯେତେକ
ଇଚ୍ଛାକଲେ ଭିନ୍ନ ରାଷ୍ଟ୍ର ଗଢ଼ି ପାରିବେକ ।
ପାକସ୍ଥାନ ହିନ୍ଦୁସ୍ଥାନ ବିଭାଗ ହୋଇଲେ
ବଙ୍ଗଳା ପଞ୍ଜାବ ଭାଗ ଭାଗ ହେବ ବଳେ ।୨୦
ଉତ୍ତର ପଶ୍ଚିମ ସୀମାଅନ୍ତ ପରଦେଶ
ଆସାମର ସିଲଟ ବେଲୁଚିସ୍ଥାନ ଦେଶ । ୨୧
ହିନ୍ଦୁସ୍ଥାନରେ ରହିବେ ଅବା ପାକସ୍ଥାନେ
ଲୋକମତ ନିଆଯିବ ସେହି ସେହି ସ୍ଥାନେ ।୨୨
ସର୍ବଶେଷ ଜନ ସୁମାରି ଯା ହୋଇଥିଲା
ଊନବିଂଶ ଏକଚାଳିଶ ସାଲ ଧରିଗଲା । ୨୩

ସେହି ଜନ ସୁମାରି ଗଣନା ଧରାଯିବ
ହିନ୍ଦୁ ଅବା ମୁସଲମାନ ବହୁଳ କେ ହେବ ।
ସେହି ସେହି ଜିଲ୍ଲାମାନ ଠିକଣା ହୋଇବ ;
ହିନ୍ଦୁ ବହୁଳ ବା ମୁସଲମାନ ବେଶିହେବ । ୨୫
ଦେଶୀୟ ରାଜ୍ୟ ବିଷୟେ ଯେଉଁ ମତ ଥିଲା
ସେହି ମତ ବର୍ତ୍ତମାନ କାଏମ ରହିଲା । ୨୬
ଊନବିଂଶ ଶତ ଅଠଚାଳିଶ ସାଲର
ଜୁନମାସ ବହୁକାଳ ପୂର୍ବରୁ ନକର । ୨୭
ସମସ୍ତ କ୍ଷମତା କରିବାକୁ ହସ୍ତାନ୍ତର
ପୂର୍ଣ୍ଣ ରାଜିଅଛନ୍ତି ଇଂରେଜ ସରକାର । ୨୮
ଆସନ୍ତା ଅଳ୍ପ କେତେକ ମାସର ଭିତରେ
ସବୁ କାର୍ଯ୍ୟମାନ ସମାପତ ହୋଇପାରେ । ୨୯
ସେଥିପାଇଁ ତୁରନ୍ତ ବ୍ୟବସ୍ଥା ହେଉଅଛି
ଏଥିରେ ସଂଶୟ ମନେ ନ କରିବ କିଛି । ୩୦
ଏମନ୍ତ ଶେଷ ଘୋଷଣା ସେହୁ ଶୁଣାଇଲେ
ଉପନିବେଶ କ୍ଷମତା ମିଳିଯିବ ହେଲେ । ୩୧
ଅଖଣ୍ଡ ଭାରତ ଯେବେ ଖଣ୍ଡ ଖଣ୍ଡ ହେବ
ଏ କଥା କାହା ମନକୁ ସୁଖ ନ ଲାଗିବ । ୩୨
କଂଗ୍ରେସ ମୂଳରୁ ପ୍ରତିବାଦ କରୁଥିଲା
ଅବଶେଷେ ଯେଉଁପରି ପରିସ୍ଥିତି ହେଲା । ୩୩
ବାଧ୍ୟ ହୋଇ ଏ ପ୍ରସ୍ତାବ କଲା ସିଉକାର
ଅନ୍ତରେ ଦ'ଭାଗ ଇଚ୍ଛା ନୁହଇ ତାହାର । ୩୪
ଇଂରେଜଙ୍କ ରାଜନୀତିଜାଲ ବଡଟାଣ
ସେ ଜାଲରୁ ମୁକୁଳିବା ଅତ୍ୟନ୍ତ କଠିଣ । ୩୫
ଯେତେ ଯେତେ ସୂକ୍ଷ୍ମ ଲେଡା ହେବାକୁ ମୁକତ
ଖଣ୍ଡୁ କ୍ଳାନ୍ତ ନେତାମାନେ ବିଗୁରି ନପୂରୁ । ୩୬
ଆଖର ପର୍ଯ୍ୟନ୍ତ ଦେଖାଯାଉ କସ ହେବ
ସ୍ୱରାଜ୍ୟର ରୂପ ରେଖ କେମନ୍ତ ହୋଇବ । ୩୭

ପାକିସ୍ଥାନ ହିନ୍ଦୁସ୍ଥାନ ସିଦ୍ଧ ହେବ ଯେବେ
କଳଙ୍କି ଭାରତରେ ପୋଛାହେବ ତେବେ ।
ଶାସନ ବିଧାନ ରୂପରେଖ କିସ ହେବ
କପଟ ଆକାରେ ଦେଶ ଶାସନ ଚଳିବ । ୩୯
ଖଣ୍ଡ ଶାସନ କେବେହେଁ ନୁହଇ ମଙ୍ଗଳ
ଦେଶରେ ବୁଲିବ ସଦା କଳହ ଲଙ୍ଗଳ । ୪୦
ଜିନାଙ୍କ ସାକ୍ଷାତ କର୍ମମାନ ଯେତେ ଯେତେ
ଭୋଗ କରୁଛନ୍ତି ଦେଶ ନିବାସୀ ନିତ୍ୟତେ । ୪୧
ପାକିସ୍ଥାନ ରାଜଧାନୀ କରାଚୀ ହୋଇବ
ପାକିସ୍ଥାନ ପାଇଁ ଜଣେ ଶାସକ ରହିବ । ୪୨
ଶାସନ ବିଧାନସଭା ଦୁଇଟା ବସିବ
ଦୁଇଟା ଶାସନ ବିଧାନ ଯେ ଗଢ଼ା ହେବ । ୪୩
ଅସ୍ତ୍ରଶସ୍ତ୍ର ସେନା ସେନାପତି ଯାହାଥିବ
ଦୁଇ ଭାଗରେ ସକଳ ବଣ୍ଟନ ହୋଇବ । ୪୪
ପାକିସ୍ଥାନ ସୀମା ସରହଦ ସ୍ଥିର ହେବ
କମିଟି ବସିଛି ସବୁ ସିଦ୍ଧାନ୍ତ କରିବ । ୪୫
ହାଣକାଟ ଗଣ୍ଡଗୋଳ ଲାଗି ରହିଅଛି
ପ୍ରତିଦିନ ଉତପାତ ମାନ ଘଟୁଅଛି । ୪୬
ରାଜାମାନେ ବିଚାରନ୍ତି ହୋଇବେ ସ୍ୱାଧୀନ
ଲୋଡ଼ା ନାହିଁ ପାକିସ୍ଥାନ ଅବା ହିନ୍ଦୁସ୍ଥାନ । ୪୭
ନିଜାମ ଘୋଷଣା କଲେ ରହିବେ ସ୍ୱାଧୀନ
ବେରାର ତାଙ୍କର ରାଜ୍ୟ ନେଇଯିବେ ପୁଣ ।
ତ୍ରିବାଙ୍କୁଡ଼, ଭୋପାଳ ଯେ ସ୍ୱାଧୀନ ହୋଇବ
ହିନ୍ଦୁସ୍ଥାନ ଅବା ପାକିସ୍ଥାନେ ନ ରହିବ । ୪୯
କେତେ ରାଜା ପାଞ୍ଚୁଛନ୍ତି ଏମନ୍ତ କରିବା
ଶାସନ ବିଧାନ ବଇଠକେ ଯୋଗ ଦେବା । ୫୦
ଦେଖିବା ବିଧିବିଧାନ କପଟ ହୋଇବ
ତାକୁ ଦେଖି ଶୁଣିଣ ବିଚାର କରାଯିବ । ୫୧

ଭାରତ ଯୁକ୍ତଗୋଷ୍ଠିରେ ପଶିବା କ ନାହିଁ
ତେତେବେଳେ ବିଚାର କରିବା ଦେଖି ବୁଝି ।
ପଶିଲେ ପଶିବା, ନ ପଶିଲେ ନ ପଶିବା
ଯେ ଯାହା ରାଜ୍ୟରେ ସେହୁ ସ୍ୱାଧୀନ ରହିବା ।
କଂଗ୍ରେସ ବୋଲେ, ଦେଶୀୟ ରାଜାମାନେ ଆସ
ଭାରତ ରାଜ୍ୟ ଗୋଷ୍ଠିରେ ନିଃସଂଶୟେ ମିଶ ।
କେତେକ ବିଷୟ ନେଇ ସମ୍ପର୍କ ତୁମ୍ଭର
ରାଜ୍ୟ ଗୋଷ୍ଠି ସଙ୍ଗତରେ ରହିବ ନିକର । ୫୫
ଆନ ଆନ ବିଷୟରେ ରହିବ ସ୍ୱାଧୀନ
ଏଥେ ସଂଶୟ କିଛିହିଁ ମନରେ ନ ଘେନ । ୫୬
ଏହିପରି ଆନ୍ଦୋଳନ ଚଳନ୍ତୁ ନିୟତ
ଠିକଣା କିଛିହିଁ ହୋଇ ନାହିଁ ଏପର୍ଯ୍ୟନ୍ତ । ୫୭
ତେଣେ ଭାଗବଣ୍ଟା କାମ ଲାଗିଛି ଆଗରେ
ଭାରତ ପାଇଁ ଆଇନ ହେବ ନିକଟରେ । ୫୮
ଦୁଇଟି ଉପନିବେଶ ରାଜ୍ୟ ଗଢ଼ାଯିବ
ହିନ୍ଦୁସ୍ଥାନ ପାକିସ୍ଥାନ ବୋଲି ନାମ ହେବ ।୫୯
ଆଟଲି ଭାରତ ମନ୍ତ୍ରୀ ଇତିଅବସରେ
ପାର୍ଲିଆମେଣ୍ଟ ସଭାରେ ବିବୃତ୍ତି ପଢ଼ିଲେ । ୬୦
ଶୁଣ ହେ ଭାରତବାସୀ ମନଦେଇ ଏବେ
ପାକିସ୍ଥାନେ ଜିନା ପୁଣି ବଡ଼ଲାଟ ହେବେ ।୬୧
ହିନ୍ଦୁସ୍ଥାନ ବଡଲାଟ ମାଉଣ୍ଟବାଟେନ
ଏ ଦୁଇ ଭାଗକୁ ଦୁହେଁ କରିବେ ଶାସନ ।୬୨
କଂଗ୍ରେସ ନେତାଙ୍କ ସମ୍ମତିରେ ଏହା ହେଲା
ଏହିପରି ଫଇସଲ ହେଲା ଏ ମାମଲା । ୬୩
ଦୁଇଟା ଶାସନଗଢ଼ା ସମିତି ବସିବ
ଦୁଇ ଉପନିବେଶର ବିଧାନ ଗଢ଼ିବ । ୬୪
ଶାସନ ମାତ ନିୟମ ପଦ୍ଧତି ସକଳ
କେଉଁ ସୂତ୍ରେ ଚଳିବ ଏ ଶାସନର କଳ । ୬୫

ବିଲାତ ରାଜ୍ୟରେ ସବୁ ଚଳା ଯାଉଅଛି
ସେହି ରାଜ୍ୟମାନ ଆଖିଆଗରେ ନାଚୁଛି । ୬୬
ଭାରତ ଯୁକ୍ତରାଷ୍ଟ୍ରର ସଙ୍ଗେ ଯେ ରହିବ
ରାଷ୍ଟ୍ରପତି ବୋଲି ତାର ଉପାଧି ହୋଇବ ।୬୭
ପାଞ୍ଚବର୍ଷ ପରମାୟୁ ହୋଇବ ତାଙ୍କର
ନିର୍ବାଚନ କଲେଜ କରିବ ମୁକରର । ୬୮
ପ୍ରତି ପ୍ରଦେଶରେ ଜଣେ ଜଣେ ସଭାପତି
ହେଲେ ହୋଇପାରେ ତାଙ୍କ ନାମ ଛତ୍ରପତି ।
ବ୍ୟବସ୍ଥାସଭା ରହିବ ପ୍ରତି ପ୍ରଦେଶରେ
ଲୋକ ପ୍ରତିନିଧି ସଭ୍ୟ ହୋଇବେ ତହିଁରେ ।
ପ୍ରଦେଶର ସାବାଳକ ନରନାରୀ ଗଣ
ଭୋଟ ଦେବାର କ୍ଷମତା ପାଇବେ ବିଧାନ ।
ଏକୋଇଶ ବରଷ ବା ତହିଁରୁ ଅଧିକ
ବୟସ ଯାର ତାହାର ଭୋଟ ସଂଖ୍ୟା ଏକ ।୭୨
ସେହିମାନେ ନିର୍ବାଚନ ବେଳେ ଭୋଟ ଦେବେ
ପ୍ରାଦେଶିକ ସଭାପତି ସେମାନେ ବାଛିବେ ।୭୩
ପ୍ରାଦେଶିକ ସଭାପାଇଁ ପ୍ରତିନିଧି ଗଣ
ସେହିମାନେ ବାଛିବେ ହୋଇଲେ ନିର୍ବାଚନ ।
ବ୍ୟବସ୍ଥାସଭା ବାଛିବ ସଚିବ ସକଳ
ସେହିମାନେ ଚଳାଇବେ ଏ ଶାସନ କଳ ।୭୫
କେନ୍ଦ୍ରରେ ବ୍ୟବସ୍ଥା ସଭା ଦୁଇଟା ରହିବ
ପାର୍ଲିଆମେଣ୍ଟ ରାଜ୍ୟରେ ତାହା ଗଢ଼ାଯିବ । ୭୬
ଲୋକସଭା, ରାଜ୍ୟସଭା ନାମ ହେବ ତାର
ଦୁଇଥାନେ ସବୁକଥା ହୋଇବ ବିଚାର । ୭୭
ବିଧିବିଧାନରେ ଉଣା ହେଉନାହିଁ କିଛି
ବିଲାତ ରାଜ୍ୟରୁ ସବୁ ନକଲ ହେଉଛି । ୭୮
ବିଧାନ ବଇଠକ ଯେ ବିଧାନ କରିବ
ସେହି ଅନୁକ୍ରମେ ଦେଶ ଶାସିତ ହୋଇବ ।୭୯

ତେତେଣେ ବିଲାତ ସଭାରେ ବିଚାର ସଙ୍ଗଲା
ଭାରତର ସ୍ୱାଧୀନତା ଆଇନ ହୋଇଲା । ୮୦
ସନ ଊନବିଂଶ ଶତ ସପତ ଚଳିଶ
ଅଗଷ୍ଟ ମାସ ପନ୍ଦର ତାରିଖ ଦିବସ । ୮୧
ଆରମ୍ଭ କାଳ ଅଟଇ ଚଉଦ ତାରିଖ
ରାତ୍ର ବାରଘଣ୍ଟା କାଳ ହୋଇଗଲେ ଶେଷ ।
ତହୁଁ ପରେ ପନ୍ଦର ତାରିଖ ପ୍ରବେଶିବ
ଯେତେବେଳେ ଭାରତକୁଁ କ୍ଷମତା ମିଳିବ ।
ସେ କାଳେ ବ୍ରିଟିଶ ସରକାର ଭାରତକୁ
କ୍ଷମତା ଦେଇ ଚଳିବେ ଆପଣା ଦେଶକୁ ।୮୪
ଭାରତର ସ୍ୱାଧୀନତା ଆଇନ ବିଧାନ
ଅନୁକ୍ରମରେ ଚଳିବ ଭାରତ ଶାସନ । ୮୫
ପନ୍ଦର ତାରିଖଠାରୁ ସ୍ୱଦେଶୀ ଶାସନ
ଚଳିବ ଭାରତେ ଏହା ନିଶ୍ଚୟରେ ଘେନ ।୮୬
ସେଦିନ ଭାରତେ ହେବ ଆନନ୍ଦ ଉତ୍ସବ
କଇଦିମାନଙ୍କୁ କାରାମୁକ୍ତ କରାଯିବ । ୮୭
ସେଦିନୁ ନୂଆ ଜାତୀୟପତାକା ଉଡ଼ିବ
ତିରଙ୍ଗ କେତନ ଚକ୍ର ମଧ୍ୟରେ ରହିବ । ୮୮
ପୁର ନଗର ପଲ୍ଲୀରେ ପତାକା ଉଡ଼ିବ
ଘରେ ଘରେ ଗ୍ରାମେ ଗ୍ରାମେ ପତାକା ଉତ୍ସବ ।
ଦରିଦ୍ରନାରାୟଣଙ୍କ ସେବା କରାଯିବ
ସ୍ଥାନେସ୍ଥାନେ ନୃତ୍ୟ ଗୀତ ତାମସା ହୋଇବ ।
ଗୋରାଲାଟମାନେ ସବୁ ପ୍ରଦେଶରେ ଥିଲେ
କେତେ ପ୍ରଦେଶରୁ ସେହୁ ପୁନରପି ହେଲେ ।
କେତେ ପ୍ରଦେଶରେ ଭାରତୀୟ ଲାଟ ହେବେ
ପନ୍ଦର ତାରିଖଠାରୁ କାର୍ଯ୍ୟଭାର ନେବେ ।୯୨
କୈଳାଶଚନ୍ଦ୍ର କାଟଜୁ ଓଡ଼ିଶାକୁ ଆସି
ଓଡ଼ିଶା ଲାଟ ଗାଦିରେ ଆନନ୍ଦରେ ବସି । ୯୩

ଓଡ଼ିଶା ପ୍ରଦେଶ ଲାଟ କର୍ତ୍ତବ୍ୟ କରିବେ
ଓଡ଼ିଶାର ଛତ୍ରପତି ସେହୁ ବୋଲାଇବେ । ୯୪
ଯୁକ୍ତପ୍ରଦେଶ ନିବାସୀ କାଟଜୁ ଅଟନ୍ତି
ପୂର୍ବ ସମୁଦ୍ର କୂଳରେ ଅଛଇ ବସତି । ୯୫
ଭାରତ ସ୍ୱାଧୀନ ହେଲା ଓଡ଼ିଶା ସ୍ୱାଧୀନ
ଲାଟ ଗାଦିରେ ଓଡ଼ିଆ ନ ପାଇଲା ସ୍ଥାନ । ୯୬
ରାଜଗୋପାଳଆଚ୍ଚର ପଶ୍ଚିମ ବଙ୍ଗରେ
ଲାଟ ଗାଦିରେ ବସିବେଁ ବଡ଼ ଆନନ୍ଦରେ । ୯୭
ଚନ୍ଦୁଲାଲ ଓଡ଼ିଶାର ଲାଟ ହୋଇଥିଲେ
ପୂର୍ବପଞ୍ଜାବ ପ୍ରଦେଶ ଛତ୍ରପତି ହେଲେ । ୯୮
ମଧ୍ୟପ୍ରଦେଶ ବେରାର ଲାଟ ଶାସନରେ
ମଙ୍ଗଳଦାସ ପକ୍ୱାସା ଛତ୍ରପତି ହେଲେ । ୯୯
ବିହାର ପ୍ରଦେଶ ଲାଟ ଜୟରାମ ଦାସ
ଦଉଲତରାମ ହେଲେ ହୋଇଲା ପ୍ରକାଶ । ୧୦୦
ଯୁକ୍ତପ୍ରଦେଶର ଲାଟ ଗାଦି ଆସନରେ
ବିଧାନଚନ୍ଦ୍ର ନିଯୁକ୍ତ ହେଲେକ ବଧିରେ । ୧୦୧
ବିଧାନଚନ୍ଦ୍ର ନାହାନ୍ତି ଏବେ ଭାରତରେ
ସରୋଜିନୀ ଲାଟ ହେବେ ଅସ୍ଥାୟୀ ଭାବରେ ।
ଆସାମର ଛତ୍ରପତି ସର ଆକବର
ହାଇଦର ବି ନିଯୁକ୍ତ ହୋଇଲେ ନିକର । ୧୦୩
ମାନ୍ଦ୍ରାଜ ବମ୍ବେଇ ପ୍ରଦେଶର ଛତ୍ରପତି
ଭୋରା ଦୁଇଜଣହେଲେ ସେପରି ଅଛନ୍ତି । ୧୦୪
ହିନ୍ଦୁସ୍ଥାନ ଉପନିବେଶର ଲାଟ ନାମ
ଜଗତରେ ପ୍ରକାଶ ହେଲା ଜନେ ମନେ ଘେନ ।
ପାକିସ୍ଥାନ ପଶ୍ଚିମପଞ୍ଜାବ ଛତ୍ରପତି
ଫ୍ରାନ୍‌ସିସ ମୁଡ଼ିଙ୍କର ହୋଇଲା ନିଯୁକ୍ତି । ୧୦୬
ସିନ୍ଧୁ ପ୍ରଦେଶର ଲାଟ ଗୁଲାମହୁସେନ
ବିଧିରେ ନିଯୁକ୍ତ ହେଲେ ଜନେ ମନେ ଘେନ ।

ସୀମାନ୍ତ ପ୍ରଦେଶ ଲାଟ ଗୋରା ଲୋକ ହେଲେ
କାଇଦ୍‌ଆଜମ ଆଗରୁ ଯେଉଁପରି ଥିଲେ । ୧୦୮
ପୂର୍ବ ବଙ୍ଗପାଇଁ ହେବ ସ୍ୱତନ୍ତ୍ର ଆଦେଶ
ରାଜଚକ୍ରବର୍ତ୍ତୀ କହି ଦେଲେ ଏ ସନ୍ଦେଶ ।୧୦୯
ଆବହମାନକାଳର ଅଖଣ୍ଡ ଭାରତ
କେତେ ଚକ୍ରବର୍ତ୍ତୀ କରି ଗଲେଣି ରାଜତ୍ୱ ।୧୧୦
ଥିଲା ସ୍ୱାଧୀନ ଭାରତ ପରାଧୀନ ହେଲା
ପୁଣି ସ୍ୱାଧୀନ ହେବାକୁ ହେଲା କେତେ ପାଲା ।
ଭାରତ ସ୍ୱାଧୀନ ହେବ ଡିଣ୍ଡିମ ବାଜିଲା
କ୍ଷତବିକ୍ଷତ ହୋଇଲା ଖଣ୍ଡ ଖଣ୍ଡ ହେଲା । ୧୧୨
ଭିତର ବାହାରେ ଖଣ୍ଡ ଖଣ୍ଡ ହୋଇଗଲା
ଏ ଭୋଷଡ଼ା ଯାହା ସବୁଠାରୁ ବଳିଗଲା ।୧୧୩
ଭାରତୀୟ ଯୁକ୍ତରାଷ୍ଟ୍ର ନାମେ ହିନ୍ଦୁସ୍ଥାନ
ଯେଉଁ ଯେଉଁ ପ୍ରଦେଶରେ ବେଶି ସନମାନ ।
ସେ ଅଞ୍ଚଳମାନ ଯୋଡ଼ିହେଲା ପାକସ୍ଥାନ
ଭାଇ ବିବାଦରେ ଦେଶ ହେଲା ଛିନ୍ନଭିନ୍ନ ।୧୧୫
ହିନ୍ଦୁସ୍ଥାନେ ଯେତେଜଣ ଛତ୍ରପତି ହେଲେ
ଅଧିକାଂଶ ଓକିଲାତି କାମ କରୁଥିଲେ । ୧୧୬
କେବଳ ବିଧାନସଭା ଥିଲେ ଡାକ୍ତର
ତିନିଜଣ ଗୋରା ଲୋକ ରହିଲେ ମାତର ।୧୧୭
ବ୍ରିଟିଶ ଚକ୍ରବର୍ତ୍ତୀଙ୍କ ଅନୁମୋଦନରେ
ଏସବୁ ଛତ୍ରପତିଏ ନିଯୁକ୍ତ ହୋଇଲେ । ୧୧୮
ଭାରତ ଦେଶୀୟ ରାଜ୍ୟ ନରପତିମାନେ
ରାଜିହେଲେଣି ମିଶିବେ ଭାରତ ଶାସନେ ।୧୧୯
ନିଜାମ ବେରାର ଦାବି ପରିତ୍ୟାଗ କଲେ
ବେରାର ରହିଲା ମଧ୍ୟପ୍ରଦେଶ ସାଥିରେ । ୧୨୦
ନିଜାମ କାଶ୍ମୀର ଭୂପାଳର ନରପତି
ହେବେ କେଉଁ ଉପନିବେଶର ସେହ୍ନ ସାଥି ।

ଏମାନଙ୍କ ମତ କଛି ଜଣାଯାଉ ନାହିଁ
ଘମାଘୋଟ ବଗ୍ରର ଲାଗିଛି ଏଥିପାଇଁ । ୧୨୨
ଚଉଦ ତାରିଖଯାକେ କ ହେଉଛି ଦେଖ
ଜଣାଯିବ ସ୍ୱରାଜ୍ୟର ସବୁ ରୂପରେଖ । ୧୨୩
ତେରଶତ ଚଉବନସାଲ ତେର ଧର
ମଳ ଶ୍ରାବଣ ମାସର ତିଥି ଅଟେ ତେର ।୧୨୪
ଗୁରୁବାର ଅର୍ଦ୍ଧନିଶି ଗତେ ବନ୍ଦବେଳ
କାଳରାତ୍ରି ପଞ୍ଚଗ୍ରହକୂଟ ଯେ ମକର । ୧୨୫
ଏମନ୍ତବେଳେ ବ୍ରିଟିଶ ରାଷ୍ଟ୍ର ଭଙ୍ଗହେବ
ଭାରତହାତେ କ୍ଷମତାକୁର ଟେକ ଦେବ । ୧୨୬
ଘୋର ନଶା ଅନ୍ଧକାରେ ସ୍ୱରାଜ୍ୟ ଆସିବ
କୃତ୍ରିମ ଆଲୋକ ଥିବ ସବତା ନଥିବ । ୧୨୭
ଅନ୍ଧାରେ ଆସୁଛି ନୋହୁ ଅନ୍ଧାରି ମୂଳକ
ଉଡୁଦେଶେ ନ୍ୟାୟ ଧର୍ମ ସତ୍ୟ ବଇରଖ ।୧୨୮
କଳାପୋତା ଲାଞ୍ଚ ମିଛ ପଳାଉ ଏ ଦେଶୁଁ
ପ୍ରଚୁର ଖଣ୍ଡଖିଆ ଯେ ଉପରେ ବରଷୁ । ୧୨୯
ସ୍ୱଚ୍ଛନ୍ଦରେ ଖାଇପିଇ ପୂରିଉଠୁ ପେଟ
କାହାରି ମନେ ସ୍ୱରାଜ୍ୟ ନଦେଉଟି କଷ୍ଟ ।୧୩୦
ଇର୍ଷା, ହିଂସା, ଦ୍ୱେଷ, ରାଗ ହାତଗୋଡ଼ ଛିଡ଼ୁ
ପରମଶାନ୍ତ ସନ୍ତୋଷ ବାନା ଦେଶେ ଉଡୁ ।
ସବୁକଷ୍ଟ ନାଶି ପ୍ରଭୁ ଇଷ୍ଟବାରି ଢାଳ
ଅଚିରେ ପଳାଉ ଦେଶୁଁ ଏ ମହାଅକାଳ ।୧୩୨
ଆଣିଦେବା ସ୍ୱରାଜ୍ୟକୁ ପ୍ରଭୁ ରକ୍ଷାକର,
ତବ କରୁଣା ବିହୁନେ ନାହିଁଟି ଉଦ୍ଧାର । ୧୩୩
ଯାହାଙ୍କ ହାତେ କ୍ଷମତାକୁର ଟେକଦେଲ
ସୁପ୍ରେରଣା ବଳେ ତାଙ୍କୁ କରାଅ ସବଳ ।୧୩୪
ଦକ୍ଷାକ୍ତ ଧାରଆ ଛୁର ଧରିବା ଶକତି
ଦିଅ ମହାପ୍ରଭୁ ଯେବେ ଦେବ ହେ ମୁକତି ।

ତେଣେ ବ୍ରହ୍ମଦେଶ କଥା ଅତି ଚମତ୍କାର
ସ୍ୱାଧୀନତା ପାଇବାକୁ ସମସ୍ତେ ତତ୍ପର । ୧୩୬
ଶାସନ ବିଧାନସଭା ବସିଛି ସେଠାରେ
ସାମୟିକ ସରକାର ହୋଇଛି ବିଧିରେ । ୧୩୭
ମନ୍ତ୍ରୀମଣ୍ଡଳର ବଇଠକ ହେଉଥିଲା
କେଉଁ ଦୁଷ୍ଟ ପଶି ତହିଁ ଗୁଳି କରିଦେଲା ।୧୩୮
ଛଅଜଣ ମନ୍ତ୍ରୀ ଯେଠି ପ୍ରାଣ ହରାଇଲେ
ଅଙ୍ଗସାନ ପ୍ରଧାନ ସଚିବ ତହିଁଥିଲେ । ୧୩୯
ସ୍ୱାଧୀନତା ସମରରେ ସେ ଥିଲେ ନାୟକ
ସ୍ୱାଧୀନ ନହେଉଁ ଛାଡ଼ିଗଲେ ଇହଲୋକ ।୧୪୦
ପତି ବିୟୋଗ ଖବର ପାଇ ତାଙ୍କ ପତ୍ନୀ
ସଂସାର ସମ୍ପର୍କ ତେଜି ହେଲେ ପାଗଳମି ।
ପତିଙ୍କ ଶ୍ମଶାନେ ବସି ହେଲେ ଧ୍ୟାନମଗ୍ନ
ପତିଙ୍କ ନିର୍ବାଣଲାଗି କରିବେ ସାଧନ । ୧୪୨
ଆଉଜଣେ ମନ୍ତ୍ରୀପତ୍ନୀ ଖବର ପାଇଲେ
ପତି ମୃତ୍ୟୁ ଶୁଣି ସେହୁ ପ୍ରାଣ ହରାଇଲେ । ୧୪୩
'ସତୀଦାହ' କଥା ପୂରୁବରେ ଶୁଣାଥିଲା
ଏକାଳକୁ ବ୍ରହ୍ମଦେଶେ ଏହା ଶୁଣାଗଲା । ୧୪୪
ଉତ୍ତ୍ୟକ୍ତ ହୋଇଲେ ଲୋକ କି ନକରିପାରେ
ଛ'ଛଅଟା ମନ୍ତ୍ରୀ ସଙ୍ଗେ ସଙ୍ଗେ ମାରିଦେଲେ ।
ବ୍ରହ୍ମଦେଶ ଦିନେ ଭାରତର ସଙ୍ଗେଥିଲା
କେତେ ବରଷ ପୂରୁବେ ଭିନ୍ନ ହୋଇଥିଲା ।
ଭାରତ ଯୁକ୍ତରାଷ୍ଟ୍ରରେ ଯେ ଶାସକ ହେବେ
ମାସକୁ ଛଅ ହଜାର ଦରମା ପାଇବେ । ୧୪୭
ଆୟକର ଦେବାରୁ ସେ ହୋଇବେ ମୁକତ
ସବୁ ପ୍ରଦେଶେ ଦରମା ହୋଇବ ଏମନ୍ତ ।୧୪୮
ପ୍ରଦେଶର ଆୟ ଅନୁସାରେ ହେଲାନାହିଁ
ପୂରୁବ ବିଧିବିଧାନ ଗଲାକ ଗାଧୋଇ । ୧୪୯

ଓଡ଼ିଶା ପ୍ରଦେଶ ଥିଲା ଛଷଠି ହଜାର
ଛହଜାର ବରଷକୁ ବଢ଼ିଲା ନିକର । ୧୫୦
ଯେଉଁ ପ୍ରଦେଶର ଆୟ ବେଶି ତାର ଲାଭ
ଗରିବ ଓଡ଼ିଶା ବେଶି ଦେବାକୁ ପଡ଼ିବ । ୧୫୧
କେନ୍ଦ୍ର ସରକାରେ ଯେତେଜଣ ସଭ୍ୟ ହେବେ
ଜଣପିଚ୍ଛା ସାଢ଼େ ପାଞ୍ଚ ହଜାର ପାଇବେ ।୧୫୨
ବରଷକୁ ଛଅଷଠି ହଜାର ହୋଇଲା
ମନ୍ତ୍ରୀମାନଙ୍କ ଦରମା ପୁଣି ବୃଦ୍ଧି ହେଲା । ୧୫୩
ପାଞ୍ଚଶରୁ ପନ୍ଦରଶ ମାସକୁ ହୋଇଲା
ମହଙ୍ଗାଭତ୍ତା ଦରମା କେତେ ବୃଦ୍ଧି ହେଲା ।
ଏ ସ୍ୱରାଜ୍ୟର ଜନମ ଲଗ୍ନ ହେବ ବୃଷ
ନିକଟରେ ପଞ୍ଚଗ୍ରହ ଜୁଟିବେ ଅବଶ୍ୟ । ୧୫୫
ରବି, ଶଶୀ, ବୁଧ, ଶନି, ଶୁକ୍ରଗ୍ରହ ପଞ୍ଚ
ଏକରାଶିଗତ ହେବେ ମନେ ଏହା ପାଞ୍ଚ ।୧୫୬
ପୁଷ୍ୟାନକ୍ଷତ୍ର କର୍କଟ ଚନ୍ଦ୍ର ଜନ୍ମବେଳେ
ଫଳାଫଳ ବିଚାର କରିବା କାଳବେଳେ ।
ଏହିଠାରେ ଏ ଅଧ୍ୟାୟ ଶେଷ ଯେ ହୋଇଲା
ଦୀନ ଜଗବନ୍ଧୁ ଏହା ଗୀତରେ ଭଣିଲା ।୧୫୮

ଇତି ଶ୍ରୀ ଭାରତ-ଚରିତାମୃତେ ଭାରତ ଶାସନ ବିଧାନସଭା ବୈଠକ ବିଷୟ
ବର୍ଣ୍ଣନେ ଏକଶତ ଷଡ଼ବଂଶ ଅଧ୍ୟାୟଃ ।



## ଏକଶତ ସପ୍ତତ୍ରିଂଶ ଅଧ୍ୟାୟ

ଗଜର ଉବାଚ

ଆଜ କାହିଁକି ପତାକା ଉଡ଼େ ଘରେ ଘରେ
ଆନନ୍ଦ ଉତ୍ସବ କିମ୍ପା ହେଉଛି ଦେଶରେ । ୧

ଠାବେ ଠାବେ ହେଉଅଛି କି ସଭା ସମିତି
ଶୋଭାଯାତ୍ରାରେ କମ୍ପାଇ ଲୋକେ ଛନ୍ତି ମାତି ।
ପୁରପଲ୍ଲୀ ନଗରରେ ହେଉଛି ଉତ୍ସବ
କହିବା ହେବେ ଏଥିର କାରଣ ସରବ । ୩
ଜଣା ପଡ଼ୁ ନାହିଁ ଆଜ ଅଟେ କି ପରବ
ସ୍ଥାନେ ସ୍ଥାନେ ନୃତ୍ୟ ଗୀତ ନାନା ମହୋତ୍ସବ ।
କେ ବୋଲେ ଆଜ ସ୍ୱାଧୀନ ହୋଇଲା ଭାରତ
କେ ବୋଲେ ଆଜ ବନ୍ଧନ ହୋଇଲାକ ମୁକ୍ତ
କେ ବୋଲେ ଆଜ ଗୋଡ଼ରୁ ଶାଙ୍କୋଳି ଫିଟିଲା
କେ ବୋଲେ ପିଞ୍ଜରା ଛେଜ ମୁଦାକୁ ଆସିଲା ।୬
ସ୍ୱାଧୀନତା ମର୍ମକଥା କହନ୍ତୁ ବୁଝାଇ
କର ଭୟ ଭାରତରୁ ଯିବ କି ପଳାଇ । ୭
ବ୍ୟଯୁଭାର ଲାଘବ ହେବ କି ନ ହୋଇବ
ଖଜଣା ରାଜସ୍ୱ ଚିନ୍ତା ଆଉ ନ ରହିବ । ୮
କଳାପୋଡ଼ାଇ ଅସୁର ଏ ଦେଶୁଁ କି ଗଲା
ଲାଞ୍ଛମିଛ ବଂଶ କିବା ବିନାଶ ଭଜିଲା । ୯
ମିଳିବ କି ଶାଳିଅନ୍ନ ଫଳଙ୍କ ସୁପାତି
ତେଣୁ ଆନନ୍ଦ ଉତ୍ସବେ ଅଛନ୍ତି ବା ମାତି ।୧୦
ଶସ୍ତାରେ ସବୁ ଦରବ କିଣିଲେ ମିଳିବ
ଏ ସବୁ ନହେଲେ ସ୍ୱରାଜ୍ୟରୁ କି ମିଳିବ । ୧୧

ଜଗା ଉବାଚ

ତୁମ୍ଭେ ସବେ ଏ ଦେଶର ଲୋକ ହେ ଗଉର
ଜାଣି ନ ଜାଣିଲା ପରି ଏକଥା ପଚାର । ୧୨
ଦୁଇଶ ବରଷ ବ୍ୟାପୀ ଇଂରେଜ ରାଜତ୍ୱ
କବଳରେ ଆଜଯାକେ ଥିଲା ଏ ଭାରତ । ୧୩
ସାରାଂଶ ଚୂପୁଡ଼ା ହୋଇ ରସ ଯାଇଥିଲା
କଙ୍କାଳମାଳ ଭାରତ ଦାହି ଡାକୁଥିଲା । ୧୪

ପୁରା ଷାଠିଏ ବରଷ କଂଗ୍ରେସ ଲଢ଼ିଲା
ଶାରୀରିକ ମାନସିକ କଷଣ ଭୋଗିଲା । ୧୫
ଯେତେ ଚିନ୍ତାଶୀଳ ଲୋକ ଏ ଭାରତେ ଥିଲେ
ଯେହୁ ଭାରତ ଦୁର୍ଦ୍ଦଶା ଅଙ୍ଗେ ଲଗାଇଲେ ।୧୬
କେ ହୃଦେ ଭାବିଲା ଭୟେ ମୁଖେ ନ କହିଲା
ଯାହାର ସାହାସ ଥିଲା ପ୍ରକାଶ୍ୟେ କହିଲା । ୧୭
ଯେ କହିଲା ତାକୁ ନେଇ ବନ୍ଦୀ କରିଦେଲେ
ଇଂରେଜମାନେ ଦମନ ଲୀଳା ଚଳାଇଲେ ।
ଏହିପରି କେତେକାଳ ଗଣ୍ଡଗୋଳ ହେଲା
ଅସହଯୋଗ ଆଇନ ଅମାନ୍ୟ ଚଳିଲା । ୧୯
ହୁହୁଁ ହୁହୁଁ ପୃଥିବୀରେ ଲାଗିଲା ସମର
କେତେ କେତେ ଦେଶମାନେ ହେଲେ ଛାରଖାର
ଯେ ହାରିଲେ ନାଶଗଲେ ଭାଙ୍ଗିଗଲା ବଳ
ରୁଷିଆ ଦେଶ ହୋଇଲା ସବୁଠୁଁ ପ୍ରବଳ । ୨୧
ଆମେରିକା ଛାୟାତଳେ ଇଂରେଜ ରହିଲେ
ମାନେମାନେ ସେ ଯୁଦ୍ଧରୁ ରକ୍ଷା ପାଇଗଲେ ।୨୨
ଇଂଲଣ୍ଡ ରୁଷିଆ ଆମେରିକା ତିନି ଦେଶ
ରକ୍ଷା ପାଇଲେ ସମରୁ ନୋହିଣ ବିନାଶ । ୨୩
ଯୁଦ୍ଧଶେଷେ ଇଉରୋପେ ହେଲା ପରିସ୍ଥିତି
ଇଂଲଣ୍ଡ ମନରେ ଉପୁଜିଲା ଭୟ ଭ୍ରାନ୍ତି । ୨୪
ତେଣୁ ସେ ଦେଶରେ କଲେ ଏମନ୍ତ ବିଚାର
ଭାରତ ସଙ୍ଗେ କେମନ୍ତେ କରିବେ ବେଭାର ।
ନାନା ଆଲୋଚନା ପରେ କଲେ ଏହା ସ୍ଥିର
ଭାରତକୁ ବନ୍ଦୀ ଭାବେ ରଖିବା ନକର । ୨୬
ଭାରତ ଗୋଡ଼ରୁ ଦେବା ଫିଟାଇ ଶାଙ୍କୋଳ
ସ୍ୱାଧୀନ ଭାବରେ ରହୁ ଆମ୍ଭସଙ୍ଗେ ମିଳି । ୨୭
ଇଂରେଜ ସାମ୍ରାଜ୍ୟ ରାଜ୍ୟଗୋଷ୍ଠି ମଧ୍ୟେ ଥାଉ
ଆଉ ସକଳ କ୍ଷମତା ତାକୁ ଦିଆଯାଉ । ୨୮

ଆଜ ସେ କ୍ଷମତାଭାର ହସ୍ତାନ୍ତର କଲେ
ଭାରତ ସ୍ୱାଧୀନ ହେଲା ବୋଲଣ ବୋଇଲେ ।
ଯେଉଁ ଯେଉଁ ସରତରେ ଛାଡ଼ିଲେ ଭାରତ
ଉପରେ କୁହାଯାଇଛି ସକଳ ଚରିତ । ୩୦
ଏଣିକ ଭାରତ ନୁହେଁ ଇଂରେଜ ଅଧୀନ
ଆପଣା ଭାଗ୍ୟ ବିଧାତା ହୋଇବ ଆପଣ ।୩୧
କେତେ କାଳର ଶାଙ୍କୋଳ ଗୋଡ଼ରୁ ଫିଟିଲା
ଭାରତ ଇତିହାସରେ ନୂଆକଥା ହେଲା । ୩୨
କେଶରୀ ଗୁହା ଭିତରୁ ଆସିଲା ଭାରତ
ଦେଇନାହିଁ ବଳଦାନ ଟୋପାଏ ରକତ ।୩୩
କେତେଲୋକ ସ୍ୱାଧୀନତା ପାଇବା ଆଶାରେ
କେତେକେତେ ଚିନ୍ତା କେତେ କର୍ମକରିଥିଲେ ।
କେତେଲୋକ ଯାଉଛନ୍ତି ଇହଲୋକ ତେଜି
ସ୍ୱାଧୀନତା ମହୋତ୍ସବ ନଦେଖିଲେ ଆଜ ।୩୫
ଯେ ଅଛି ସେ ଧନ୍ୟ ତାର ଜନମ ସଫଳ
ସ୍ୱାଧୀନ ଭାରତ ପଦେ ଦେବ ଅର୍ଘ୍ୟଜଳ ।୩୬
ମାତୃଭୂମି ଶ୍ରୀପଦରେ ଶିର କରି ନତ
ଗାଅ ହେ ଆନନ୍ଦେ ଜୟ ସ୍ୱାଧୀନ ଭାରତ ।
ମଣିବ ନିଜକୁ ଆଜ ସ୍ୱାଧୀନ ସନ୍ତାନ
ଛାତିକ ଫୁଲାଇ ଆଜ କରିବ ଗମନ । ୩୮
ସ୍ୱାଧୀନ ଭାଷାରେ କଥା କହିବ ନିକର
ଲେଖିବ ସ୍ୱାଧୀନ ଲେଖା ଛାଡ଼ି ଭୟ ଡର ।୩୯
ସ୍ୱାଧୀନ ପବନ ଆଜ ବାଜିବ ଦେହରେ
ବାଜିବ ସ୍ୱାଧୀନ ବୀଣା ଆଜ ଭାରତରେ । ୪୦
ବଡ଼ ଗଛ ତଳେ ସାନଗଛ ନ ଉଧାଏ
ସେହିପରି ଆମ୍ଭ ଦଶା ଥିଲା ଆଜଯାଏ । ୪୧
ଆଜିଠାରୁ ବଡ଼ଗଛ ଅପସରି ଗଲା
ସ୍ୱାଧୀନ ଭାବେ ବଢ଼ିବ ହେଲା ଫଇସଲା ।୪୨

ସ୍ୱାଧୀନତା ଅର୍ଥ ନୁହେଁ ହେବା ଉଚ୍ଛୃଙ୍ଖଳ
ଅମାନିଆ ହୋଇ ଦାଣ୍ଡେ ବୁଲିବା କେବଳ ।
ଲଗାମହିଁ ପଘାମହିଁ ବୁଲିବା ଲଙ୍ଗଳା
ଅଜ୍ଞାନିଆ ହୋଇଦାଣ୍ଡେ ହେବା ମେଳାମେଳା ।
ସ୍ୱାଧୀନତା ଅର୍ଥ ଯେବେ ଏପରି କରିବ
ଅଳପଦିନେ ବିଷମ ସଙ୍କଟ ପଡ଼ିବ । ୪୫
ପଣ୍ଡିତେ କହିବା ସ୍ୱାଧୀନତାର ମରମ
ଆଜ ସାଙ୍ଗକର ମହୋତ୍ସବର କରମ । ୪୬
ତ୍ରିରଙ୍ଗ କେତନ ଉଡ଼ୁଅଛି ଫରଫର
ଜାତୀୟପତାକା ମହାଭାରତ ଜାତିର । ୪୭
ସବୁ ଦଳାଦଳି ଭେଦ ଭୁଲି ତାକୁ ପୂଜ
ମହାଭାରତ ଜାତୀୟ ଜୀବନରେ ମଜ । ୪୮
ହିନ୍ଦୁ ଅବା ମୁସଲମାନ, ଜଇନ, ଖ୍ରୀଷ୍ଟାନ
ସେହୋ ତଳେ ପତାକା ସର୍ବେ ଅଟନ୍ତି ସମାନ ।
ଏକତା ମନ୍ତ୍ରର ଗୁରୁ ଅଟୁ ତୁ ପତାକା
ଏକତା ଧରମ ବେଗେ ଏ ଜାତିକି ଶିଖା ।୫୦
ତୋତେ ଦେଖି ହିଂସା, ଦ୍ୱେଷ, ଇର୍ଷା ଯାନ୍ତୁ ଭୁଲି
ଏକମନେ ଏକପ୍ରାଣେ ଉଠିଉଠୁ ଫୁଲି । ୫୧
ଜାତୀୟ ଉନ୍ମାଦେ ନାଚିଉଠୁ ପ୍ରତି ପ୍ରାଣ
ଶିଖନ୍ତୁ ଜାତି ହିତରେ ଦେବାକୁ ଜୀବନ । ୫୨
ରେ ପତାକା ତେଣୁ ତୋତେ କରେ ନମସ୍କାର
ତୁହି ତ ଜାତୀୟ ଧନ ଜୀବନ ଆକର । ୫୩
ବିଜୟୀ ଜାତିର ବାନା ଶିର ଉଚ୍ଚେ ଉଡେ
ଖଣ୍ଡିତ ହୋଇଲେ ଖସିଆସେ ସେହୁ ତଳେ ୫୪
ସ୍ୱାଧୀନ ଭାରତ ଉଠ, ଜାଗିଉଠ ବାରେ
ହୋଇବ ଜଗତଗୁରୁ ଅଳପ ଦିନରେ । ୫୫
ଛାଡ଼ିଦିଅ ନୀଚଭାବ ନୀଚ ମନବୃତ୍ତି
ନ କାଟ ଭାଇର ଗଳା ନୀଚସ୍ୱାର୍ଥେ ମାତି । ୫୬

ଯେତେ ଭାରତ ସନ୍ତାନ ସକଳେ ତ ଭାଇ
ତାହାଙ୍କୁ ମଣିବ ପର ମାତ ସ୍ୱାର୍ଥପାଇଁ । ୫୭
ଜାତୀୟପତାକା ତଳେ ହୋଇଅଛ ମେଳ
କର ପ୍ରତିଜ୍ଞା ଛାଡ଼ିବ ମାତ ସ୍ୱାର୍ଥଖେଳ । ୫୮
ଲାଞ୍ଚ ମିଛ କଳାପୋତା ଆଦି ମହାପାପ
କର ପ୍ରତିଜ୍ଞା ଦେଶରୁ କରିଦେବ ଲୋପ । ୫୯
ବାପହେଲେ ଏ ପାପରେ ଯେହୁହେବ ପାପୀ
ନ ଲାଗିବ ଦୋଷ ଦେଲେ ତାର ଗଳାଚିପି ।
ରାମରାଜ୍ୟ ହେବ ତେବେ ସ୍ୱାଧୀନ ଭାରତ
ଏହି ଦେଶ ରାମରାଜ୍ୟ ଥିଲା କାଳେ ସତ ।୬୧
ପରପଦାନତ ହୋଇ ଛାଡ଼ିଲେ ସ୍ୱଧର୍ମ
ପାଶ୍ଚାତ୍ୟ ସଭ୍ୟତା ମୁଖେ କଲ ଅପକର୍ମ ।୬୨
ଇଂରେଜ ଜାତିର ଯେତେ ମନ୍ଦ ଗୁଣମାନ
ଅର୍ଜନ କରି ତାକୁ ହେଲୁଁ ଧନ୍ୟଧନ୍ୟ ।୬୩
ଇଂରେଜ ରାଜତ୍ୱ ଭାରତରୁ ଯିବ ଚଳି
ରହିଛି ସେ ଦୋଷମାନ ଦେହେ ହୋଇମଳି ।
ସେ ମଳି ଛଡ଼ାଇ ଦେହୁଁ ହୁଅ ନିରମଳ
ଧର ପ୍ରାଚୀନ ଭାରତ ଆଦରଶ ବଳ । ୬୫
ଭାରତେ ଇଂରେଜମାନେ ହୋଇଥିଲେ ରାଜା
ଭାରତବାସୀ ସକଳେ ଥିଲେକ ପରଜା । ୬୬
ଇଂରେଜ ଏବେ ତାହାଙ୍କ ରାଜତ୍ୱ ଛାଡ଼ିଲେ
ସବୁ ଭାରତ ବାସୀଏ ମାଲିକ ହୋଇଲେ ।୬୭
ତ୍ରିଂଶ କୋଟି ପରଜା ମାଲିକ ହୋଇବେ
ସକଳେ କିପରି ଏ ଶାସନ ଚଳାଇବେ । ୬୮
ଅନାୟକ ବହୁତ ନାୟକ ଯେଉଁଠାରେ
ରମଣୀ ଅଥବା ଶିଶୁ ନାୟକ ହୋଇଲେ ।୬୯
ବିନାଶ ହୋଇ ସମାଜ ଘର ଭାଙ୍ଗିଯିବ
ଏ ନୀତି ବଚନ ନ ମାନିଲେ ନ ଚଳିବ । ୭୦

ଏପରି ହୋଇଲେ ଗଣତନ୍ତ୍ରର ବିଧାନ
ଅନୁସାରେ ଚଳିବ ଏ ଭାରତ ଶାସନ । ୭୧
ସେ ବିଧିବିଧାନ ପରେ କହିବା ସକଳ
ସରିଯାଉ ସ୍ୱାଧୀନତା ମହୋତ୍ସବବେଳ । ୭୨
ଚକ୍ରପତାକା ଉଡୁଛି ଆଜି ଘରେ ଘରେ
ଲାଟ ବଡ଼ଲାଟ ଘରେ ଆନ ପରକାରେ । ୭୩
ଇଂରେଜ ରାଜମୁକୁଟ ସିଂହଚିହ୍ନ ତହିଁ
ଏଥିର ମରମ ବୁଝି ପାରିଲ କି ଭାଇ । ୭୪
ସୁନେଲି ରଙ୍ଗରେ ସିଂହ ମୁକୁଟ ରହିବ
ସବୁଜ ଲାଲବର୍ଣ୍ଣରେ ରଞ୍ଜିତ ହୋଇବ । ୭୫
ପ୍ରଦେଶ ଲାଟଭବନେ ଯେ ବାନା ଉଡ଼ିବ
ବସନ୍ତ ବର୍ଣ୍ଣରେ ତାହା ରଞ୍ଜିତ ହୋଇବ ।୭୬
ପ୍ରଦେଶର ନାମ ଲେଖା ରହିବ ତହିଁରେ
ଜାତି ନାମ ନ ରହିବ ସେହି ପତାକାରେ ।୭୭
ରାଷ୍ଟ୍ରପତି ଅବା ବଡ଼ଲାଟଙ୍କ ବାନାରେ
ଉପନିବେଶର ନାମ ରହିବ ଲେଖାରେ । ୭୮
ଇଂରେଜ ରାଜ୍ୟଗୋଷ୍ଠିର ଯେ ଉପନିବେଶ
ଏପରି ପତାକା ତହିଁ ହୋଇଛି ନିର୍ଦ୍ଦେଶ ।୭୯
ସେହି ବିଧି ଅନୁସରି ଏ ପତାକା ହେବ
ଜାତୀୟ ପତାକା ତହିଁ ଉଡ଼ି ନପାରିବ । ୮୦
ପାକିସ୍ଥାନ ପ୍ରଦେଶରେ ସବୁଜ ରଙ୍ଗର
ପତାକା ଉଡ଼ିବ ଲାଟ ଭବନେ ନିକର । ୮୧
"ହାଇକମିସନ" ନାମେ ଜଣେ କର୍ମଚାରୀ
ବିଲାତର ହିନ୍ଦୁସ୍ଥାନେ ରହିବେ ଆସ୍ଥିତ । ୮୨
ଅଚିନଲେକ ନାମରେ ଯେହୁ ଚମୂପତି
ଭାରତେ ରହିବେ ଯେହୁ ହୋଇ ସେନାପତି ।
"ଫିଲ୍ଡ଼ ମାର୍ଶାଲ" ଉପାଧି ଅଛି ତାହାଙ୍କର
ବ୍ରିଟିଶ ବାନା ଉଡ଼ିବ ମଠର ଉପର । ୮୩

ବ୍ରିଟିଶ ପତାକା ଏ ଦିନଠାରୁ ଉଡ଼ାଇବେ
ଆଉ କେହି ସେ ପତାକା ଧରି ନ ପାରିବେ ।
ବ୍ରିଟିଶ ରାଜ୍ୟ ଗୋଷ୍ଠିରେ ଯାବତ ଭାରତ
ଥିବ ପତାକା ଆକାର ପ୍ରକାର ଏମନ୍ତ ।  ୮୬
ଜହରଲାଲ ପ୍ରଭୃତି ଚତୁର୍ଦ୍ଦଶ ଜନ
କେନ୍ଦ୍ର ସରକାର ସେହୁ କରିବେ ଗଠନ ।୮୭
ଜହରଲାଲ ହୋଇବେ ପ୍ରଧାନମନ୍ତ୍ରୀ ଜାଣ
ବିଧାନସଭା ଗଢ଼ିବ ସମସ୍ତ ବିଧାନ ।  ୮୮
ଭାରତେ ପାର୍ଲିଆମେଣ୍ଟ ଏହି ସଭା ନାମ
ଶାସନ କଳ ଚାଳିବେ ଏହିମାନେ ପୁଣ ।  ୮୯
ପୃଥିବୀ ଇତିହାସରେ ଏ ନୂଆ ବ୍ୟାପାର
ଇଂରେଜ ସ୍ୱେଚ୍ଛାରେ ଛାଡ଼ିଦେଲେ ରାଜ୍ୟଭାର ।
ଯେଉଁ କାରଣରୁ ହେଉ ଘଟିଲା ଏମନ୍ତ
ଅହିଂସ ଭାବେ ମୁକୁଳିଗଲା ଏ ଭାରତ ।  ୯୧
ଗୁଳିଗୁଳା ତୋପ ଆଜ ଲୋଡ଼ା ହେଲାନାହିଁ
କ୍ଷମତା ହାସଲ କଲା ରକତ ନଦେଇ ।  ୯୨
ମହାମାନବ ଗାନ୍ଧିଙ୍କ ତପସ୍ୟା ବଳରେ
ବିଭୁଙ୍କ ଅପାର କୃପା ପ୍ରେରଣା ବଳରେ ।୯୩
ଏକଥା ଘଟିଲା ଆଜ ଦେଖିଲା ନୟନ
ଧନ୍ୟ ଆହେ ମହାପ୍ରଭୁ ତୁମ୍ଭେ ଧନ୍ୟ ଧନ୍ୟ ।
ଜାତୀୟପତାକା ଉଡ଼ାଇଲ ଭାରତରେ
ସାରଥି ହୋଇ ଚାଳିଲ ଗାନ୍ଧିରଥ ଧୀରେ ।
ମହାତ୍ମା ଗାନ୍ଧି ଇଙ୍ଗିତେ ସ୍ୱରାଜ୍ୟ ସମରେ
ଊଣା ଅଧିକେ ଯେତେକ କର୍ମକରୁଥିଲେ ।୯୬
କେ ଗୁଣ୍ଡିଚ ମୂଷାପରି ଧୂଳି ଝାଡ଼ିଥିଲା
କିଏ ଦଧୀଚି ସମାନ ଆତ୍ମବଳିଦେଲା ।  ୯୭
କାୟମନବାକ୍ୟେ କିଏ କେତେ ପରକାରେ
ସ୍ୱରାଜ୍ୟ ପାଇବା ଆଶେ କଷଣ ଭୋଗିଲେ ।

ସେମାନେ ସକଳେ ପୂଜ୍ୟ ନମସ୍ୟ ଆମର
କିଏ ଯାଇଛି କେ ପ୍ରାଣେ ବଞ୍ଚିଛି ନକର । ୯୯
ସମସ୍ତଙ୍କୁ ପୁଷ୍ପାଞ୍ଜଳି ଦେଇ ପୂଜାକର'
ଜାତୀୟପତାକା ତଳେ ସର୍ବେ ହୁଅ ଠୁଳ ।
ବିଜୟ ନିଶାଣ ତଳେ ସକଳେ ସମାନ
ସାନ ବଡ଼ ଦଳଗତ ଘୃଣା ତେଜ ପୁଣ । ୧୦୧
ପବିତ୍ର ନିର୍ମଳ ହୃଦେ କର ନମସ୍କାର
ସମାନ କର ବାହାର ଭିତର ନକର । ୧୦୨
କଥାରେ ଯାହା କହିବ କାମରେ କରିବ
ନକଲେ ଏ ସ୍ୱରାଜ୍ୟରୁ ମଧୁ ନ ପାଇବ ।୧୦୩
ପତାକା ଉତ୍ସବ ନୁହେଁ ପିଲା ଧୂଳିଖେଳା
ଅଥବା ଯାତ୍ରା ସୁଆଙ୍ଗ ଅବା ବାଘାପାଲା ।୧୦୪
ପତାକାକୁ ଚାହିଁଦେଲେ ଆସୁଛି ମନକୁ
କେତେବଡ଼ ଗୁରୁଭାର ଆସିଲା ମୁଣ୍ଡକୁ । ୧୦୫
ତାକୁ ତୁଲାଇବାପାଇଁ ଦିଅ ମନଧ୍ୟାନ
ମନରୁ ତେଜ ସକଳ ମାନ ଅଭିମାନ । ୧୦୬
ସକଳଙ୍କୁ ସମାନ ଭାବରେ ସ୍ନେହକର
ନ ମଣ କାହାକୁ ଜଣେ ପର ଆପଣାର ।୧୦୭
ସମଦରଶୀ ହୋଇବ ଯେବେ ସବୁଠାରେ
ନିପୁର କିଣି ପାରିବ ଅତି ସହଜରେ । ୧୦୮
ହୃଦରେ ପତାକା ଏହି ମନ୍ତ୍ର କାନେ କାନେ
ନ ଖସନ୍ତୁ ଦେଶବାସୀ ସେ ପଥରୁ ଧାନେ ।
ଏହିଠାରେ ଏ ଅଧ୍ୟାୟ ଶେଷ ହୋଇଗଲା
ସ୍ୱାଧୀନ ପତାକା ଆଜ ଉଚ୍ଚରେ ଉଡ଼ିଲା ।୧୧୦
ଭକ୍ତେ ଜଗବନ୍ଧୁ ଆହେ ନୀଳାଦ୍ରୀ ବିହାରୀ
ରଖ ଏ ଦେଶକୁ ଚନ୍ଦେ ଆଡୁଆଳ କରି ।

ଇତି ଶ୍ରୀ ଭାରତ-ଚରିତାମୃତେ ପତାକା ବିଷୟ ବର୍ଣ୍ଣନେ
ଏକଶତ ସପ୍ତବିଂଶ ଅଧ୍ୟାୟଃ ।

# ଏକଶତ ଅଷ୍ଟବିଂଶ ଅଧ୍ୟାୟ

ଗଉର ଉବାଚ

ଭାରତରେ ସ୍ୱାଧୀନତା ପତାକା ଉଡ଼ିଲା
ଭାରତରେ ସ୍ୱାଧୀନତା ପବନ ବହିଲା । ୧
ଗାନ୍ଧି କହିଥିଲେ ରାମରାଜ୍ୟ କରାଇବେ
ପରଜାମାନେ ଅଧିକ ସୁଖରେ ଚଳିବେ । ୨
ଦାନା କନା ଭାରତରେ ମିଳିବ ପ୍ରଚୁର
ଊଣା ହେବ ପର ।ର ନାନା କରଭାର । ୩
ଇଂରେଜ ଶାସନେ ଲୋକେ ପେଷି ହେଉଥିଲେ
ସ୍ୱରାଜ୍ୟ ହେଲେ ସକଳେ ଚଳିବେକ ଭଲେ ।
ଇଂରେଜ ସବୁ କ୍ଷମତା ଭାରତକୁ ଦେଲେ
ଛ'ମାସ ହେଲା ସେମାନେ ଅଲଗା ରହିଲେ ।
କି ହେଲା ଦେଶ ଅବସ୍ଥା ଜଣାଗଲା ନାହିଁ
ଶୁଣିବାକୁ ଇଚ୍ଛା ମୋର କହନ୍ତୁ ବୁଝାଇ । ୬

ଜଗା ଉବାଚ

ଆଚ୍ଛା କଥାଏ ଆବର ପୁଚ୍ଛିଲ ଗଉର
କି କହିବ ତୁମ୍ଭଙ୍କୁ ହେ ଦେଶର ଖବର । ୭
ଗଲା ଇଂରେଜ ଶାସନ ଅଛି ସେହି କଳ
ଧଳା ଯାଇ କଳା ହେଲା ଅଦଳ ବଦଳ । ୮
ଅଛି ସେହି ଗ୍ରନ୍ଥ ସେହି ନାମ ସେହି କାମ
ରହିଛି ଇଂରେଜ ଭାଷା ଇଂରେଜ ଭୂଷଣ । ୯
ଇଂରେଜ ଅମଳ ପାଗ ପଟୁକା ରହିଛି
ବଦଳି ନାହିଁ ପୋଷାକ ପରିଚ୍ଛଦ କଛି । ୧୦
ଭିତର ବାହାର ରହିଅଛି ଯଥାତଥା
ନଥିପତ୍ର ଦପ୍ତରେ ନାହିଁ ତ ଅନ୍ୟଥା । ୧୧
ଜଣେ ତ ଇଂରେଜ ବସିଅଛି ମୁଣ୍ଡପରେ
ଶାସନକଳ ଚାଲୁଛି ପୂର୍ବ ପରକାରେ । ୧୨

ଗଣତନ୍ତ୍ର ଶାସନ ବସିଛି ଜାମମାନ
ଲୋଡ଼ା ହେଉନାହିଁ ଜନଙ୍କର ମତାମତ । ୧୩
ସ୍ୱପ୍ନସ୍ତୁ ନାୟକ ହୋଇଛନ୍ତି କେତେଜଣ
ତାଙ୍କ ମନଇଚ୍ଛା ସେହି ଚଳାନ୍ତି ଶାସନ । ୧୪
ସେମାନଙ୍କ ଅନୁଗ୍ରହ ଯାହାଠି ହୋଇଲା
ସେ ଯାଇ ଶାସନକଳ ଉପ୍ରରେ ଗୁଳିଲା । ୧୫
ଗୁଣାଗୁଣ ବିଚାରର ଅବସର ନାହିଁ
ଅନୁଗ୍ରହ ନିଗ୍ରହରେ ଏ କାମ ଚଳଇ । ୧୬
କର୍ମକର୍ତ୍ତାମାନଙ୍କର ଯାହାକୁ ସହାୟ
ଜ୍ଞାନ ଗୁଣ ତା ହୃଦରୁ ହେଉଛି ଉଦୟ । ୧୭
କେନ୍ଦ୍ର ସରକାରଠାରୁ ପ୍ରଦେଶ ପର୍ଯ୍ୟନ୍ତ
ଏ ମାତକ ଅନୁସରି ଚଳୁଅଛି ଯନ୍ତ୍ର । ୧୮
ନାନା ବିଦେଶକୁ ପଠାଯାଉଛନ୍ତି ଦୂତ
ପୁରୁଷ ରମଣୀ କେତେ ହେଲେଣି ଅଗୁଡ଼ । ୧୯
ହଜାର ହଜାର ଟଙ୍କା ବରତନ ନେବେ
ଯାବତୀୟ ବ୍ୟୟମାନ ପୁଣି ଭୁଲାଇବେ । ୨୦
ଅଛନ୍ତି ମନ୍ତ୍ରୀମଣ୍ଡଳ ପୁଣି ଗଭର୍ଣ୍ଣର
ପୂରୁବଠୁଁ ଦରମା ବଢ଼ିଛି ତାହାଙ୍କର । ୨୧
ସବୁବଗେ ବୃଦ୍ଧି ହାରେ ଚଳୁଛି ଶାସନ
ବ୍ୟବସ୍ଥାସବୁ ଅଛଇ ଯଥା ତଥା ପୁଣ । ୨୨
ଧାନ ଚାଉଳର ଦର ହେଉଅଛି ବୃଦ୍ଧି
ଦେଖି ଲୋକଙ୍କର ହଜି ଯାଉଅଛି ବୁଦ୍ଧି । ୨୩
ସବୁ ଦରବର ମୂଲ୍ୟ ବଢ଼ୁଅଛି ନିତି
ଦେଖି ଲୋକଙ୍କର ହଜି ଯାଉଅଛି ଧୃତି । ୨୪
ଲାଞ୍ଚ ମିଛ କଳାପୋତା ବଢ଼ୁଛି ଦେଶରେ
ହଂସାଉଡ଼ିଯାଏ ଲୋକଙ୍କର ଏ ଦଶାରେ । ୨୫
କଳକୋଳ ହାଣକାଟ କରେ ଲାଠି ଖେଳା
ଗ୍ରାମେଗ୍ରାମେ ଦଳାଦଳି ଲୋକ ମେଳାମେଳା ।

ହିନ୍ଦୁସ୍ଥାନ ପାକସ୍ଥାନ ଦୁଇଭାଗ ହେଲା
ହିନ୍ଦୁ ପଠାଣ ବିବାଦ ପ୍ରବଳ ହୋଇଲା । ୨୭
ଧନ ଜୀବନ ବିପଦ ସଙ୍କୁଳ ହୋଇଛି
ସ୍ୱାଧୀନତା ନାମେ ଉଚ୍ଛୃଙ୍ଖଳତା ବଢ଼ୁଛି ।୨୮
ଗଣ୍ଡାଗଣ୍ଡା ଆଇନ୍ ହେଉଛି ଏକାଦିନେ
ଲୋକଙ୍କର ମତାମତ ଲୋଡ଼ାନାହିଁ ଧାନେ ।୨୯
ଏକ କଲମଗାରରେ ରାଜାମାନେ ଧ୍ୱଂସ
ଜମିଦାରୀ ଉଠିବାକୁ ଲାଗିଛି ପ୍ରୟାସ । ୩୦
ଜମି ମାଲିକ ପରଜାଙ୍କର ଗଣ୍ଡଗୋଳ
ଗ୍ରାମେ ଗ୍ରାମେ ଲୋକଙ୍କର ନାହିଁ କାହିଁ ମେଳ ।
କଂଗ୍ରେସ ଦଳ ଅଛନ୍ତି ଶାସନ କଳରେ
ସମାଜବାଦୀଏ ପୁରିଛନ୍ତି ବିପକ୍ଷରେ । ୩୨
ଗାନ୍ଧିଜୀଙ୍କ ମନ ମାନୁନାହିଁ ଏହା ଦେଖି
ପ୍ରକାଶନ୍ତି ମତାମତ ହୋଇ ମନେ ଦୁଃଖୀ ।୩୩
ଦେଶରେ ତାଙ୍କ ପ୍ରଭାବ ହୋଇଲାଣି ଊଣା
କହୁଛନ୍ତି ଉଚ୍ଚେ ତାଙ୍କ ଏକଥା ଠିକଣା । ୩୪
ସ୍ୱରାଜ୍ୟ ହୋଇଛି ବୋଲି କହନ୍ତି ସକଳେ
ତାଙ୍କୁ ଜଣାଯାଉନାହିଁ କହନ୍ତି ବିକଳେ । ୩୫
ତଥାପି ନିରାଶ ନୋହି କର୍ତ୍ତବ୍ୟ ଜ୍ଞାନରେ
ଯାହା ତାଙ୍କୁ ଦିଶୁଅଛି କହନ୍ତି ଉଚ୍ଚରେ । ୩୬
କେ ମାନୁ ନ ମାନୁ ତାଙ୍କ ବଚନ ନିର୍ଦ୍ଦେଶ
କହିବା ଧର୍ମ ତାଙ୍କର କହନ୍ତି ଅବଶ୍ୟ । ୩୭
ଈଶ୍ୱର ପ୍ରାର୍ଥନାସଭା କରି ପ୍ରତିଦିନ
ତାଙ୍କ ମନ୍ତବ୍ୟ ସକଳ କରନ୍ତି ବୟାନ । ୩୮
ରାମଧୂନ ଭଜନ ହୁଅଇ ସେ ସଭାରେ
ଗୀତା ବାଇବେଲ ପାଠ ହୁଅଇ ସେଠାରେ ।
କୋରାନ ସେଠାରେ ପାଠ ହୁଅଇ ଆବର
ସକଳ ଧରମେ ତେଣୁ ସମାନ ଆଦର । ୪୦

ରାଜନୀତି, ଧର୍ମନୀତି, ସାମାଜିକ ନୀତି
ଆପଣାର ମତାମତ କହନ୍ତି ସେ ନିତି । ୪୧
କଂଗ୍ରେସର ସଭ୍ୟ ତାଲିକାରେ ନାହିଁ ନାମ
କଂଗ୍ରେସ ଅନୁଷ୍ଠାନରେ ନାହିଁ ତାଙ୍କ ସ୍ଥାନ ।
କଂଗ୍ରେସ ସଭା ବସିଲେ ପଡ଼ଇ ଡ଼କରା
ମତାମତ ଦେବାପାଇଁ ହୁଅଇ ପଚରା । ୪୩
ହିନ୍ଦୁ ମୁସଲମାନର ହୃଦୟ ମିଳିବ
ଏ ଦୁଇଜାତି ମଧ୍ୟରେ ହେବ ଭାଇଭାବ । ୪୪
ଏଥିପାଇଁ ତାହାଙ୍କର ସତତ ଯତନ
କପରି ଦୁଇ ଜାତିରେ ହେବ ଏକମନ । ୪୫
'ହରିଜନ' ନାମକ ପତ୍ରିକା ସେ ଲେଖନ୍ତି
ତହିଁରେ ଆପଣା ମତାମତ ପ୍ରକାଶନ୍ତି । ୪୬
ଯେତେ ଯେତେ ଯତନ ସେ କଲେ ଦିନୁଦିନ
ନ ଲଭିଲା ସେ ଅନଳ ବଢ଼ିଲାକ ପୁଣ । ୪୭
ହାଣକାଟ ଘରପୋଡ଼ି ଅଧିକ ବଢ଼ିଲା
ନାନାସ୍ଥାନେ ନିଜେ ଯାଇ ବିଫଳ ହୋଇଲା ।
ପଶ୍ଚିମପଞ୍ଜାବ ଦଶା ହେଲା ଗୁରୁତର
ବଢ଼ିଲା ମୁସଲମାନଙ୍କର ଅତ୍ୟାଚାର । ୪୯
ହିନ୍ଦୁ ଶିଖମାନେ ଘରଛାଡ଼ି ପଳାଇଲେ
ଅନ୍ୟ ପ୍ରଦେଶରେ ଯାଇ ଆଶ୍ରୟ ଲୋଡ଼ିଲେ ।
ସରକାର ସାହାଯ୍ୟରେ କାଟୁଛନ୍ତି ଦିନ
ଅବସ୍ଥା ତାଙ୍କର ହେଲା ଅତି ଦୀନହୀନ । ୫୧
ଲକ୍ଷ ଲକ୍ଷ ଲୋକ ଯାଇ ବୁଲନ୍ତି ଭାରତେ
ସବୁ ପ୍ରଦେଶରେ ଖେଦି ଅଛନ୍ତି ଆରତେ ।୫୨
କାଶ୍ମୀର ପାକିସ୍ଥାନରେ ଅବା ଭାରତରେ
ରହିବା ପାଇଁକି ଯୁଦ୍ଧ ଲାଗିଛି ସେଠାରେ । ୫୩
ହାଇଦରାବାଦଠାରେ ଲାଗିଛି କନ୍ଦଳ
ହିନ୍ଦୁ ମୁସଲମାନର ହେଉଛି ସମର । ୫୪

ଗାନ୍ଧିଙ୍କ ଅହିଂସା ବାଣୀ ବିଫଳ ହୋଇଲା
ବେହୁଁ ଅବେଳ ହିଂସାଅଗ୍ନି ଦ୍ୱିଗୁଣ ଜଳିଲା ।
'ସତ୍ୟ ଅହିଂ' ଉପଦେଶ କେଉଁଠି ଲୁଚିଲା
ଲାଞ୍ଚ ମିଛ କଳାପୋତା ଅଧିକ ବଢ଼ିଲା । ୫୬
ଦ୍ରବ୍ୟମୂଲ୍ୟର ଲାଘବ ହୋଇବା କେଣେଗଲା
କର୍ମଚାରୀଙ୍କର ବେତନ ବଢ଼ିଗଲା । ୫୭
ନାନା ପରକାର କରଭାର ବୃଦ୍ଧି ହେଲା
ରେଳ ମାସୁଲ ଆଦି ସକଳ ବଢ଼ିଲା । ୫୮
ଏ ସବୁ ଦେଖି ଗାନ୍ଧିଜୀ ହେଲେ ମର୍ମାହତ
ତାଙ୍କପାଖରେ ଅଭିଯୋଗ ହୋଇଲା ବହୁତ ।
ନିତି ନିତି ଚିଠାଉ ପେଶିଲେ ଗାନ୍ଧି ପାଶେ
ଦୋଷ ତ୍ରୁଟିମାନ ସବୁ ଲେଖିଲେ ପ୍ରକାଶ୍ୟେ ।
ଗାନ୍ଧିଜୀ ପ୍ରକାଶ୍ୟେ ଦେଲେ ତହିଁର ଉତ୍ତର
ସେକଥୋକ କଥାମାନ କହିଲେ ନକର ।୬୧
ପ୍ରକାଶ୍ୟେ କହିଲେ ପବ୍ଲିକ ମୋ ପ୍ରଭାବ
ଆଜ ନାହିଁ ଭାରତରେ କହିଲେ କି ହେବ ।
ଏହାଠାରୁ ବଳି ଆଉ କହନ୍ତେ କି କଥା
ଶୁଣିଲେ ଏକଥା ବଳେ ଘୂରିଯାଏ ମଥା । ୬୩
ସ୍ୱାଧୀନତା ଦିବସରେ ଦେଲେ ଯେ ଭାଷଣ
ସ୍ୱରାଜ୍ୟ ହୋଇଛି ବୋଲି ନଜାଣେ ମୋ ମନ ।
ଅନ୍ୟ କେହି କିଛି ଅବା ଜାଣିପାରୁ ଥିବ
ମୁଁ ତ ଜାଣି ପାରୁନାହିଁ କହିଲେ କି ହେବ ।
ବୋଇଲେ ସରକାରମାନଙ୍କୁ ଧ୍ୱଂସ କର ନାହିଁ
ଦୋଷଥିଲେ ସଂଶୋଧିବା ବିହିତ ଅଟଇ । ୬୬
ଶାସନ କଳର ଯେତେ ଯେତେ ଦୋଷମାନ
ପରିଷ୍କାର କହିଦେଲେ ନରଖି ଗୋପନ । ୬୭
ଶେଷଥର କଲେ ଆମରଣ ଅନଶନ
ସମ୍ପ୍ରଦାୟ ଗଣ୍ଡଗୋଳ ତୁଟାଇବା ପଣ । ୬୮

ବିଶେଷେ ହିନ୍ଦୁ ପଠାଣ ମେଳ ନ ହୋଇଲେ
ଅନଶନ କରି ସେହୁ ପ୍ରାଣଦେବେ ଭଲେ ।୬୯
ଦେଶ ବିଦେଶରେ ତେଣୁ ପଡ଼ିଲା ଚହଳ
ମହାତ୍ମାଙ୍କ ପ୍ରାଣରକ୍ଷା ହେବ କି ପ୍ରକାର । ୭୦
ପାକିସ୍ଥାନ ହିନ୍ଦୁସ୍ଥାନ ଭାଗବଣ୍ଟା ବେଳେ
ଜମାଥିବା ତହବିଲ ବଣ୍ଟାବଣ୍ଟି କଲେ । ୭୧
ପଞ୍ଚସ୍ତରି କୋଟି ଟଙ୍କା ନେବ ପାକିସ୍ଥାନ
ଭାଗବଣ୍ଟାରେ ଠିକଣା ହେଲା ଏ ପ୍ରମାଣ । ୭୨
କୋଡ଼ିଏ କୋଟି ତାହାକୁ ଦିଆ ଯାଇଥିଲା
ପଞ୍ଚାବନ କୋଟି ଦେଣା ବାକି ରହିଥିଲା ।
କାଶ୍ମୀର ସମର ଯହୁଁ ପ୍ରବଳ ହୋଇଲା
ପାକିସ୍ଥାନ ଲଢ଼ୁଅଛି ଯହୁଁ ଜଣାଗଲା । ୭୪
ଭାରତ ସରକାର ସେ ଟଙ୍କା ଦେବାପାଇଁ
ବୋଇଲେ ନ ଦେବୁ ନ ସରିଲେ ଏ ଲଢ଼ାଇ ।
ଏହିକାଳେ ଗାନ୍ଧି ଯହୁଁ କଲେ ଅନଶନ
ଚମକି ଉଠିଲା ସମସ୍ତଙ୍କ ମନପ୍ରାଣ । ୭୬
ଭାରତ ସେ ପଞ୍ଚାବନ କୋଟି ଦେଇଦେଲା
ଶୁଣି ଗାନ୍ଧିଙ୍କ ମନରେ ସନ୍ତୋଷ ହୋଇଲା ।
ଗାନ୍ଧି ବୋଇଲେ ନଅଟି ସରତ ପାଳିଲେ
ଅନଶନ ଭାଙ୍ଗିବେ ସେ ଏ ପ୍ରତିଜ୍ଞା କଲେ ।୭୮
ନେତା କେତେଜଣ ମିଳି ଏ ଜବାବ ଦେଲେ
ଗାନ୍ଧି ତହୁଁ ଅନଶନ ବରତ ଭାଙ୍ଗିଲେ । ୭୯
ଅଠସ୍ତରି ଘଣ୍ଟାପରେ ଗଲା ଅନଶନ
ଆଜାଦ ହସ୍ତରୁ ଗାନ୍ଧି କଲେ ଜଳପାନ । ୮୦
ଉପବାସ ଶେଷେ ପୁଣି କେତେ ଦିନଗଲା
ସୁସ୍ଥ ସବଳ ଶରୀର ହୋଇ ଆସୁଥିଲା । ୮୧
ତେରଶତ ପଞ୍ଚାବନ ସାଲ ମାଘ ମାସ
ପଞ୍ଚମୀ ଶୁକ୍ରବାର ସତର ଦିବସ । ୮୨

ପୂର୍ବପରି ପ୍ରାର୍ଥନା ସଭାକୁ ଯାଉଥିଲେ
ଅପରବେଳା ପଞ୍ଚମ ଘଣ୍ଟା କାଳବେଳେ । ୮୩
ଦିଲ୍ଲୀ ସହରର ଯେଉଁ ବିରଳାଭବନ
ସେହିଠାରୁ କରୁଥିଲେ ସଭାକୁ ଗମନ । ୮୪
ପାଞ୍ଚଶତ ଲୋକ ସେଠି ଜମା ହୋଇଥିଲେ
ମହାତ୍ମାଙ୍କୁ ଦେଖି ଦୁଇଧାଡ଼ି ହୋଇଗଲେ ।୮୫
ମଝିରେ ଗାନ୍ଧିଜୀ ଚଲେ ମଞ୍ଚା ଉପରକୁ
ମାଇଲା କେ ଗୁଳି ଲକ୍ଷ୍ୟକରି ତାଙ୍କ ବୁକୁ ।୮୬
ତିନି ଗୁଳି ହାତ ବନ୍ଧୁକରୁ ଫୁଟାଇଲା
ଗାନ୍ଧିଙ୍କ ଛାତି ପେଟରେ ଗୁଳି ଗଳିଗଲା । ୮୭
ହାହୁଁ ହାହୁଁ ବୁଢ଼ା ପଡ଼ିଗଲା ମଞ୍ଚାପରେ
ବିରଳାଭବନେ ନେଇଗଲେ ତତକାଳେ ।୮୮
ହାହୁ ହାହୁଁ ମହାପ୍ରାଣବାୟୁ ଉଡ଼ିଗଲା
ଅନ୍ତରାତ୍ମା ଯାଇ ପରମାତ୍ମାରେ ମିଶିଲା । ୮୯
ମହାମାନବର ମହାପ୍ରୟାଣ ହୋଇଲା
ଚଉଦିଗେ ବେତାରରେ ଖବର ଖେଳିଲା ।୯୦
ସାରା ଜଗତରେ ଖେଳିଗଲା ହାହାକାର
କି ହେଲା କି ହେଲା ବୋଲି ଉଠିଲା ଚିତ୍କାର ।
ଦେଶ ବିଦେଶରୁ ତାର ଆସିଲା ବହୁତ
ସାରା ଭାରତ ହୋଇଲା ଶୋକେ ଅଭିଭୂତ ।୯୨
ତହିଁ ପରଦିନ ପୁଣି ଏଗାର ଘଣ୍ଟାରେ
ଯମୁନା କୂଳକୁ ଶବ ନେଇ ବାହାରିଲେ । ୯୩
ଲୋକାରଣ୍ୟ ମଧ୍ୟରେ ସେ ଶବଯାତ୍ରା କଲା
ଉଡ଼ାଯାନ ଉପରୁ କୁସୁମ ବୃଷ୍ଟି ହେଲା । ୯୪
ଦୁଇପଟ ପ୍ରାସାଦରୁ ପୁଷ୍ପ ବୃଷ୍ଟି ହେଲା
କ୍ରନ୍ଦନରୋଳରେ ଦିଲ୍ଲୀ ସହର ପୂରିଲା । ୯୫
ଏ ମହାଯାତ୍ରା ଦେଖିବାପାଇଁ କେତେଜନ
ପଞ୍ଚାଶ କୋଶ ଦୂରରୁ କଲେ ଆଗମନ । ୯୬

ଉଡ଼ାଯାନେ ଉଡ଼ିଆସି ପ୍ରବେଶିଲେ କେତେ
ବହୁତ ଲୋକ ଆସିଲେ ତାହାଙ୍କ ସନ୍ନିକଟେ । ୯୭
ଯମୁନା କୂଳରେ ମହାଲୋକାରଣ୍ୟ ହେଲା
ଲାଟ ବଡ଼ଲାଟ ଆଦି ତହିଁ ପ୍ରବେଶିଲା । ୯୮
ଉଚ୍ଚ ଆସନରେ ଶବ ରଖା ହୋଇଥିଲା
ସକଳ ଯାତ୍ରୀଙ୍କି ସୁଖେ ଦର୍ଶନ ମିଳିଲା । ୯୯
ହିନ୍ଦୁ ମୁସଲମାନ ଖ୍ରୀଷ୍ଟିଆନ ଆସିଥିଲେ
ସକଳେ ଯେ ଯାହା ମତେ ପୁଷ୍ପାଞ୍ଜଳି ଦେଲେ ।
ବିରଳାଭବନୁ ଯମୁନାକୁ ଯିବାପାଇଁ
ପୂର୍ଣ୍ଣ ପାଞ୍ଚଘଣ୍ଟାକାଳ ଲାଗିଗଲା ତହିଁ । ୧୦୧
ବାର ଲକ୍ଷ ଲୋକ ଆସି ଜମିଲେ ସେଠାରେ
ମହାତ୍ମାଙ୍କୁ ଦରଶନ କରିବା ଆଶାରେ । ୧୦୨
ଏହାପରେ ଶବଦାହ ଆରମ୍ଭ ହୋଇଲା
ଚନ୍ଦନକାଠ ଯେ ଷୋଳ ମହଣ ଆସିଲା । ୧୦୩
ଘିଅ ଦୁଇମହଣ ତହିଁରେ ଢଳାହେଲା
ଅନଳ ତହିଁରେ ଦେଇ ଶବ ରଖାଗଲା ।୧୦୪
କର୍ପୁର କସ୍ତୁରି ଗୁଣ୍ଡମାନ ସିଞ୍ଚା ହେଲା
ତେରଶ ଫୁଟ ଉଚ୍ଚକୁ ଅନଳ ଉଠିଲା । ୧୦୫
ଗୁହୁଁ ଗୁହୁଁ ଶବଗୋଟି ଭସ୍ମ ହୋଇଗଲା
ମହାତ୍ମାଙ୍କ ମରଲୀଳାଖେଳା ଶେଷ ହେଲା।୧୦୬
ଅଠରଶ ଅଣସ୍ତୋରି ଖ୍ରୀଷ୍ଟାବ୍ଦେ ଜନମ
ଅକ୍ଟୋବର ମାସ ହୋଇଥିଲା ଦୁଇଦିନ ।୧୦୭
ଅଠସ୍ତରି ବରଷ ବୟସ ପୂର୍ଣ୍ଣ ହୋଇ
ତିନମାସ ସତାଇଶ ଦିନ ଭୋଗ ଯାଇ । ୧୦୮
ଅଠାଇଶ ଅପରାହ୍ଣ ସାଢ଼େ ପାଞ୍ଚଘଣ୍ଟା
ବେଳେ ପ୍ରବେଶିଲା କାଳ ଧରି ଖ୍ୱାମଛଟା ।୧୦୯
ଗୁପତରେ ଗୋଟିଆ ବନ୍ଧୁକ ରଖିଥିଲା
ତାହାତାଇ ତିନି ଗୁଳି ମାଡ଼ି ଚଡ଼ାଇଲା ।୧୧୦

ମାୟାଡ଼ୋରକୁ ଛିଣ୍ଡାଇ ଚାଲିଗଲେ ଗାନ୍ଧି
ଲୋକେ ଅଧୀର ହୋଇଣ ଉଠୁଛନ୍ତି କାନ୍ଦି ।
ସାରା ଜଗତରେ ବହେ ଶୋକର ନିଶ୍ୱାସ
ଭାରତ ଶୋକଘୂର୍ଣ୍ଣ୍ୟାରେ ବରଷ ଅଶେଷ ।୧୧୨
ହା ରବରେ ପୂରିଅଛି ଏ ସାରା ଭାରତ
କଏ କେତେ ପରକାରେ ଗାଉଅଛି ଗୀତ ।
ନାନାବିଧ ରସେ ସାହିତ୍ୟ ହେଉଅଛି ଲେଖା
ଏ ମର ନେତ୍ରରେ ଆଉ ନ ହେବଟି ଦେଖା ।
ଗଲା ପୁଣି ବାହୁଡ଼ିବା ନାହିଁ କେବେ ଦେଖା
ଏ ତ ନିଷ୍ଠୁର ବିଧିର ବିଧାନ ପରୀକ୍ଷା । ୧୧୫
ନିଠୁର କାଳର ନାହିଁ ତ କିଛିହିଁ ବିଚାର
ତା କାଳ ବେଳ ଉଣ୍ଡି ସେ ହୁଅଇ ହାଜର ।
ଅତରକେ ଆସି ସେହୁ ହାବୋଡ଼ଣ ଯାଏ
କିହ୍ନପୋଛି ଯିବାକୁ ସେ ସମୟ ନ ଦିଏ । ୧୧୭
ମାନବ ଜନମରଣ ଏ ନିରାଟ ସତ୍ୟ
ଜନମିଲେ ତ ମରିବା ଅଟଇ ନିଶ୍ଚିତ । ୧୧୮
ଭବ ଅଭାବ କିଛିହିଁ ନକରେ ବିଚାର
ତେଣୁ ବିଧିର ବିଧାନ ଅଟଇ ନିଷ୍ଠୁର । ୧୧୯
ଗାନ୍ଧିଜୀ ମରିବାଦିନ ସକାଳ ବେଳରେ
ଆମେରିକାବାସୀ ଜଣେ ବନ୍ଧୁ ଦେଖାକଲେ ।
ପଚାରିଲେ କି ବିଚାରି କହୁଛ ଆପଣ
ଏକଶ ପଞ୍ଚାଶ ବର୍ଷ ଧରିବ ଜୀବନ । ୧୨୧
ମହାତ୍ମା ହୋଇଲେ କହୁଥିଲି ସିନା ମୁହିଁ
ଏବେ ଅଧିକ ବଞ୍ଚିବା ମୋର ଇଚ୍ଛାନାହିଁ ।୧୨୨
ସେ ଆଶା ମୁଁ ପରିତ୍ୟାଗ କରି ଦେଇଅଛି
ଚତୁର୍ଦ୍ଦିଗ ଅନ୍ଧକାର ମୋତେ ଦିଶୁଅଛି । ୧୨୩
ମୋର ସେବା କାର୍ଯ୍ୟ ଆଉ ବେଶି ଲୋଡ଼ାନାହିଁ
ଅନ୍ତରାତ୍ମା ଏ ନିର୍ଦ୍ଦେଶ କିଛି ଦେଉନାହିଁ ।୧୨୪

ସେପରି ଇସାରା ଯେବେ କିଛି ନ ମିଳିବ
ଜଟିଳ ଜଞ୍ଜାଳ ଭବେ ରହି କି ହୋଇବ ।୧୨୫
ମିଳିବ ଯେବେ ଅନ୍ତରୁ ତେମନ୍ତ ଆଦେଶ
ବଞ୍ଚି ପାରିବି ଏକଶ ପଞ୍ଚାଶ ବରଷ । ୧୨୬
ଏ ବଚନ ଶୁଣି ମନେ ଏମନ୍ତ ହେଉଛି
ମହାତ୍ମାଙ୍କ ମନେ ଗ୍ଲାନି ଛାୟା ପଡ଼ିଅଛି । ୧୨୭
ନିରାଶ ସୂଚକ ବାଣୀ ଅଟେ ଏ ନିଶ୍ଚିତ
ଅସନ୍ତୋଷ ଜଡ଼ିତ ହୋଇଛି କ୍ଷୁବ୍ଧ ଚିତ୍ତ ।୧୨୮
ତାଙ୍କ ପ୍ରଭାବର ମୂଲ୍ୟ ନାହିଁ ଆଉ କିଛି
ତାଙ୍କ ଉପଦେଶ ଆଉ କେହି ନ ଶୁଣୁଛି ।୧୨୯
ତାଙ୍କ ମନମୁତାବକ କାମ ହେଉନାହିଁ
ବାରବାର କହିଛନ୍ତି ଏକଥା ଦେଖାଇ । ୧୩୦
ଭାରତ ଶାସନେ ତ୍ରୁଟି ଦେଖିଲେ ସେ ଯେତେ
ସଙ୍ଗେ ସଙ୍ଗେ କହି ଦେଇଛନ୍ତି କେତେମନ୍ତେ ।
ଏହିପରି ମାନସିକ ଯନ୍ତ୍ରଣା ଭୋଗିଲେ
ରାମରାଜ୍ୟ ଆଦରଶ ଆଶା ନ ଦେଖିଲେ ।୧୩୨
ତେଣୁ ଶେଷେ ବୋଇଲେ ଦେଖୁଛି ଅନ୍ଧକାର
କେଉଁଠାନାହିଁ ତାଙ୍କ ସେବା ଏ ଦେଶେ ଦରକାର ।
ଏହିପରି ତାଙ୍କ କାର୍ଯ୍ୟକାଳ ଶେଷହେଲା
ନାଥୁରାମ ବିନାୟକ ଗଡ଼ସେ ମାରିଲା । ୧୩୪
ସେ ଜଣେ ହିନ୍ଦୁଯୁବକ କ୍ରୂର କର୍ମ କଲା
ଏ ମହାପାତକ କରି କି ଫଳ ପାଇଲା । ୧୩୫
ତା' ପାପର ପ୍ରାୟଶ୍ଚିତ ଅବଶ୍ୟ କରିବ
ଏ ମହା ଅପରାଧର ଦଣ୍ଡ ସେ ଭୋଗିବ ।୧୩୬
ଯେତେ ଯାହା ହୋଇବାର ଅବଶ୍ୟ ହୋଇବ
ଗାନ୍ଧି ମହର୍ଷି କି ଆଉ ଜୀବନ ପାଇବ । ୧୩୭
ଯେଉଁଦିନ ମହାତମା ଦେହ ଛାଡ଼ିଗଲେ
ସେଦିନ ସକାଳେ ମାଲକାନି ଦେଖାକଲେ ।

ଅଧ୍ୟାପକ ମାଲକାନି ସିନ୍ଧୁ ଦେଶ ନେତା
କହିଲେ ସିନ୍ଧୁ ଦେଶରେ ହିନ୍ଦୁଙ୍କ ଅବସ୍ଥା । ୧୩୯
ସିନ୍ଧୁ ଦେଶେ ହିନ୍ଦୁମାନେ ରହି ନ ପାରିବେ
ନିରାପଦେ ରହିବାକୁ ଆନସ୍ଥାନେ ଯିବେ ।୧୪୦
ସିନ୍ଧୁ ସରକାର ପାକିସ୍ଥାନ ସରକାର
ଏ ଦୁହିଙ୍କି କହିକରି ପ୍ରତିକାର କର ।  ୧୪୧
ଏକଥା ଶୁଣି ବାପୁଜୀ ଦେଲେକ ଉତ୍ତର
ମୋ କଥା କେ ଶୁଣୁନାହିଁ ଜାଣୁଛି ନିକର ।୧୪୨
ରହିଛି ପୁରାତନ ହୋଇ ଯାଇଅଛି ମୁହିଁ
ତେଣୁ ମୋ କଥା କା ହୃଦ ସ୍ପର୍ଶ କରୁନାହିଁ ।
ମୋ କଥା କେ ଶୁଣୁଥିଲେ ନ ଘଟନ୍ତା ଏହା
ତଥାପି ଯା ସତ୍ୟ ମୁଁ ତ କହୁଅଛି ତାହା ।୧୦୪
ଯାହା ସତ୍ୟ ବୋଲି ମୋର ବିଶ୍ୱାସ ହେଉଛି
କହିବାପାଇଁ କେବେହେଁ କୁଣ୍ଠିତ ନୋହୁଛି ।
ଉଭୟ ଉପନିବେଶେ ଯା ସବୁ ଘଟୁଛି
ତାର ନିୟନ୍ତ୍ରଣକୁ ମୋ ବଳ ନ ପାଉଛି ।୧୪୬
ଦୁଇ ଦିନ ପରେ ମୁଁ ତ ସେବାଗ୍ରାମେ ଯିବି
ପାକିସ୍ଥାନୁ ଆଜ ଯେବେ ଡ଼କରା ପାଇବି ।୧୪୭
ସେବା ଗ୍ରାମକୁ ନ ଯାଇ ପାକିସ୍ଥାନେ ଯିବି
ସିନ୍ଧୁ କଥା ଆଗେ ମୁହିଁ ବିଚାର କରିବି ।୧୪୮
ଲୋକେ ମୋତେ କହୁଛନ୍ତି ହିମାଳୟେ ଯାଅ
ଜଗତର ବିଷୟରୁ ଅବସର ନିଅ ।     ୧୪୯
ଏ ପରାମର୍ଶ ମାନିଲେ ହିମାଳୟେ ଯିବି
ହିିଶ୍ୟୁ ମହାତ୍ମା ହୋଇ ସେଠାରେ ବସିବି ।
ଜନସାଧାରଣ ଯେବେ ମୋ ସ୍ତୁତି ଗାଇବେ
ସେଠାରେ ସୁଖଶାନ୍ତିରେ ରହିବି ମୁଁ ତେବେ ।
ଅତି ସହଜ ଏ କଥା ମୁଁ ସିନା କରିବି
ଦେଖୁଛି ଲୋକେ ବିପନ୍ନ କିପରି ତେଜିବି ।

ଜାଣୁଛି ମୁଁ କଷ୍ଟହେଲେ କରିପାରୁ ନାହିଁ
ତଥାପି ଗୁଡ଼ଣିବା ମୋ ଧରମ ନୁହଇ । ୧୫୩
ମୋର ଆତ୍ମା ତବ ସଙ୍ଗେ ଅଛଇ ନପୂତ
ଜଣାଇବା ମୋତେ ସବୁ ଅଟଇ ବିହିତ ।୧୫୪
ଅନ୍ତିମ କାଳର ମନୋବୃତ୍ତି ଏହିପରି
ଏଥିରୁ ବୁଝ ପାଠକେ ସକଳ ବିଚାରି । ୧୫୫
ମହା ସମାରୋହେ ଶବଦାହ କର୍ମହେଲା
ପ୍ରତିଦିନ ଗୀତାଆଦି ପାଠ କରାଗଲା । ୧୫୬
ଅସ୍ଥି ଭସ୍ମ ପକାଗଲା ଗଙ୍ଗା ଯମୁନାରେ
ଓଡ଼ିଶା ମହାନଦୀରେ ମହୋଦଧି ଜଳେ ।୧୫୭
ପୁରୀ ସ୍ୱର୍ଗଦ୍ୱାର ମହୋଦଧି ତୀର୍ଥଜଳେ
ଆଲ୍ଲାହାବାଦ ତ୍ରିବେଣୀ ସଙ୍ଗମ ଜଳରେ ।
ଭୂରିଭୂରି ଅନ୍ନଦାନମାନ କରାଗଲା
ଦରିଦ୍ରନାରାୟଣଙ୍କ ସେବା କରାଗଲା । ୧୫୯
ସ୍ମୃତିସ୍ତମ୍ଭମାନ ଗଢ଼ାଯିବ ନାନାସ୍ଥାନେ
ଦେଖି ପୂଜା କରୁଥିବେ ସାରା ବିଶ୍ୱଜନେ ।
ଦେଉଳ ଅଟ୍ଟାଳି ସ୍ମୃତିସ୍ତମ୍ଭମାନ ହେବ
ବ୍ୟାପକ ଭାବରେ ତାଙ୍କ ସ୍ମୃତିରକ୍ଷା ହେବ ।
ଗିରି, ନଗର, ପର୍ବତ, ଗ୍ରାମ, ନଦୀ, ବନ
ପ୍ରତିଧ୍ୱନି ଛଳେ ଗାଉଥିବ ଗାନ୍ଧି ନାମ । ୧୬୨
ଗାଉଥିବେ ଲୋକେ ସଦା 'ଗାନ୍ଧି ଜୟ ଜୟ'
ସଭା ସମିତିରେ ନାମ ପଡ଼ିବ ନିଶ୍ଚୟ । ୧୬୩
ଇତିହାସ ଗାଉଥିବ ନାମ କାଳେ କାଳେ
ରହିଥିବ ନାମ ନାନା ସାହିତ୍ୟ ଗୀତରେ ।
ଆବାଳବୃଦ୍ଧବନିତା ଗାଉଥିବେ ନାମ
ବାର୍ଷିକ ଶ୍ରାଦ୍ଧ ଜୟନ୍ତୀ କରିବେ ପାଳନ । ୧୬୫
ଗାନ୍ଧି ଆଚରଣ ଧର୍ମ ନକଲେ ସାଧନ
ଏ ସବୁ ହେବ କେବଳ ପୋଥି ବାଇଗଣ ।

ନାମ ଜପି କାମେ ତାଙ୍କ ଧରମ ସାଧନ
ନ କଲେ ଗାନ୍ଧିଦୋରେହୀ ହେବେ ଶିଷ୍ୟଗଣ ।
ପ୍ରତିଭ୍ର ପ୍ରତିମା ପୂଜା ମରମଟି ଯେନ
ତାଙ୍କ ଆଚରିତ ଧର୍ମ କରିବ ସାଧନ । ୧୬୮
ସାଧନା ବିହୁନେ ସିଦ୍ଧି ହୋଇ ନ ପାରିବ
ପ୍ରତିଭ୍ର ପ୍ରତିମା ପୂଜା ନିଷ୍ଫଳ ହୋଇବ । ୧୬୯
ଈଶ୍ୱରେ ଦୃଢ଼ ବିଶ୍ୱାସ ଶରଧା ନାମରେ
ଜୀବମାତ୍ର କରେ ଦୟା ସମାନ ଭାବରେ ।
ସତ୍ୟ କହ ଅହିଁସା ଧରମ ସମାଚର
ଚାଟି ପିଇ କୁଟି ଖାଅ ନିଶା ପରିହର । ୧୭୦
ଏ ସନାତନ ଧରମ ସେ ଚେତାଇ ଦେଲେ
ଭାଙ୍ଗି ଭାଙ୍ଗି ତାହା ନାନା ସୂତ୍ରେ ଶୁଣାଇଲେ ।
ଧର୍ମନୀତି, ରାଜନୀତି ନୁହେଁ ଭିନ୍ନ ଭିନ୍ନ
ଏ କଥା ଗାନ୍ଧିବାଦର ଅଟଇ ପ୍ରଧାନ । ୧୭୩
ଏହି ସନାତନ ନୀତି ଥିଲା ଭାରତର
ସେହି ନୀତି ଗାନ୍ଧି କରୁଥିଲେକ ପ୍ରଚାର । ୧୭୪
ଈଶ୍ୱର ବିଶ୍ୱାସ ଥିଲା ତାଙ୍କର ପ୍ରଧାନ
ବାର ବାର କରୁଥିଲେ ସେକଥା ବଖାନ ।
ପଟେଲ ପୁଲିସରକ୍ଷୀ ରଖିବା ନିମିତ୍ତ
ପଚାରିଲେ ଗାନ୍ଧିଙ୍କର କିବା ଅଭିମତ । ୧୭୬
ଗାନ୍ଧିଜୀ ବୋଇଲେ କିଛି ଆବଶ୍ୟକ ନାହିଁ
ଈଶ୍ୱର ଭିନ୍ନ କେ ଆନ ରଖି ନପାରଇ ।୧୭୭
ତାଙ୍କ ପ୍ରାର୍ଥନା ସଭାକୁ ଆସିବେ ଯେ ଜନ
ପୁଲିସ ତାହାଙ୍କୁ ନ କରିବେ ହଇରାଣ । ୧୭୮
କେହି ଯେବେ ତାଙ୍କୁ ମାରିବାକୁ ଇଚ୍ଛାକରେ
ମାରିବ ମାରୁ ସେ ଆସି ପ୍ରାର୍ଥନା ସଭାରେ ।
ଈଶ୍ୱର ବିନୁ କେ ପ୍ରାଣ ରଖି ନ ପାରିବ
ପୁଲିସ କମାଇ ସଭାସ୍ଥଳକୁ ଆସିବ । ୧୮୦

ତଥାପି କେତେକ ଜଣ ପୁଲିସ ସଭାରେ
ଥିଲେ ବିନା ପୋଷାକରେ ଅଚିହ୍ନା ଭାବରେ ।
କାଲି ନାଥୁରାମ ସଭା ମଧ୍ୟରେ ପଶିଲା
ପାଦଧୂଳି ନେବା ଛଳନାରେ ପାଖେ ଗଲା ।
ଧୂଳିନେବା ବାହାନାରେ ଗୁଳି ଚଳାଇଲା
ଶେଷଯାଏ କେ ତାହାକୁ ସନ୍ଦେହ ନ କଲା ।
ପରେ ଜଣାଗଲା ହିନ୍ଦୁମହାସଭା ଲୋକ
ନାମଟି ତାହାର ନାଥୁରାମ ବିନାୟକ । ୧୮୪
ଗୋଆଲିଅର ଅଞ୍ଚଳୁ ସେହି ଆସିଥିଲା
ହିନ୍ଦୁମହାସଭା ଷଡ଼ଯନ୍ତ୍ର କରିଥିଲା । ୧୮୫
ରାଷ୍ଟ୍ରସ୍ୱୟଂସେବକ ଦଳର ସେହୁ ଲୋକ
ସମ୍ବାଦପତ୍ରର ସେହୁ ଜଣେ ସମ୍ପାଦକ । ୧୮୬
ଏ ସମ୍ବାଦ ମିଳିବାରୁ ହେଉଛି ସନ୍ଧାନ
କେତେ କେତେ ଲୋକ ଧରାହେଉଛନ୍ତି ପୁଣ ।
ସାରା ଭାରତରେ ତେଣୁ ପଡ଼ିଛି ଚହଳ
ଖୋଜା ଲାଗିଛି କେ କଲା କେଉଁଠି ତା ମୂଳ ।
ଅତି ଜଘନ୍ୟ କୁକର୍ମ, ଏ ମହା ପାତକ
କିଏ କରି ହିନ୍ଦୁ ମୁଣ୍ଡେ ଲେପିଲା କଳଙ୍କ ।
କେ ଚଣ୍ଡାଳ ଏପରି କର୍ମରେ ହାତଦେଲା
ତା ମୁଣ୍ଡଉପରେ ବଜ୍ରପାତ ନ ହୋଇଲା ।
ଦାର୍ଶନିକତତ୍ତ୍ୱ ଏଥି ଯାହା ଥିବ ଥାଉ
ଲୋକମୁଖେ ବିନାୟକ କି ନକଲା ଆଉ ।
ସର୍ବଜନ ପୂଜ୍ୟନେତା ବ୍ରତ ଲୋକହିତ
ବିନାୟକ ଗୁଳିଘେଟେ କଲା ତାଙ୍କୁ ହତ ।
ଈଶ୍ୱରର ମାୟା କିସ ତାହାଙ୍କୁ ତା ଜଣା
କେ କରି ପାରିବ ସେହି ମାୟାର କଳନା ।
ଚାଲିଗଲେ ଗାନ୍ଧି ଆଉ ଫେରି ନ ଆସିବେ
ଶ୍ରାଦ୍ଧାଦି କ୍ରିୟାକରମ ସରିଯିବ ଏବେ । ୧୯୪

ଚେତାଇ ଦେଲେ ମହାତ୍ମା ଯେ ଅମରବାଣୀ
ତିରିଶ ବରଷ କାଳ ଶୁଣାଇଲେ ପୁଣି । ୧୯୫
ସହିଲେ ଜୀବନେ ସେହୁ ବହୁତ କଷଣ
ଲାଗିପଡ଼ି କଲେ ସେହୁ ଜୀବନେ ସାଧନ । ୧୯୬
ବହୁକ୍ଲେଶ ଶ୍ରମବଳେ ଥିଲେ ସେ ସାଧକ
ନ ଥାଇ ମୁଖେ କହିଲେ ହୋଇବା ବଞ୍ଚକ ।
ସକଳ ଧର୍ମକୁ ସେହୁ ଏକା ଧର୍ମ ଜାଣେ
ସମଦରଶୀ ସେ ନର ଅଟଇ ପ୍ରମାଣେ ॥ ୧୯୮
ସକଳ ଜନର ପୂଜ୍ୟ ଅଟେ ସେ ନଯୂତ
ମାନଇ ତାହାଙ୍କୁ ସିନା ଏ ସାରା ଜଗତ ।୧୯୯
ଈଶ୍ୱର କଳା ତାଠାରେ ଅଛି ବୋଲି ଜାଣ
ସକଳ ଲୋକରେ ସେହୁ ବୋଲାଏ ପ୍ରଧାନ ।
ଈଶ୍ୱରେ ଦୃଢ଼ ବିଶ୍ୱାସ ଥିଲା ତାହାଙ୍କର
ଈଶ୍ୱର ପ୍ରେରଣା ଯାହା କରନ୍ତି ନକର । ୨୦୧
ଅନ୍ତର ଆତ୍ମା ତାଙ୍କର ଯେ ପ୍ରେରଣା ଦିଏ
ତାକୁ ଅନୁସରି କଥା କହନ୍ତି ନିଶ୍ଚୟେ । ୨୦୨
ଏହିକଥା ବାରବାର କହିଛନ୍ତି ଜାଣ
ଈଶ୍ୱର ବିନୁ କାହାକୁ ନ ଡରନ୍ତି ପୁଣ । ୨୦୩
ଈଶ୍ୱର ସର୍ବନିୟନ୍ତା ତାଙ୍କର ବିଶ୍ୱାସ
ସେ ବିଶ୍ୱାସେ କର୍ମ କରୁଥିଲେ ଅହର୍ନିଶ ।
ଦୃଢ଼ ଈଶ୍ୱର ବିଶ୍ୱାସୀ ପୁଣି ସତ୍ୟବାଦୀ
ତେଣୁ ତାଙ୍କ କଥାଯାଏ ମରମକୁ ଭେଦି ।
ତେଣୁ ତାହାଙ୍କ କଥାକୁ ମାନନ୍ତି ସକଳେ
ଗୋଳିଆ ନିରଖି କଥା କହନ୍ତି ନର୍ମଳେ । ୨୦୬
ଗାନ୍ଧି ଏବେ ଭାରତରୁ କାଳ ଶେଷେ ଗଲେ
ଭକତମାନଙ୍କଠାରୁ କଳା ଆହରିଲେ । ୨୦୭
ପଥଭ୍ରାନ୍ତ ହେଲେ କିଏ ପଥ ଦେଖାଇବ
ଖାଲିଖମାଣରେ ପଡ଼ି ନଷ୍ଟଭ୍ରଷ୍ଟ ହେବ । ୨୦୮

କ୍ଷମତା ବ୍ୟାମୋହ ଅହଂକାର ଘୋଟିଯିବ
ନ୍ୟାୟ ଅନ୍ୟାୟ କାହିଁ ବାରି ନ ହୋଇବ ।
ନିଜ ସ୍ୱାର୍ଥ ସାଧନରେ ସକଳେ ମାତିବେ
କ୍ଷମତାକୁ ବଶ କରି ଲାଭ ଉଠାଇବେ । ୨୧୦
ମୁଁ ବଡ଼ ମୁଁ ବଡ଼ ବୋଲି ଲଗାଇବେ କଳି
ନିରୀହ ଜନସମାଜ ହୋଇ ଯିବେ ଦଳି । ୨୧୧
ଗୁହାରି କଲେ କେ କାହା କଥା ନ ମାନିବ
ମୁଁ ଯାହା କରୁଛି ନ୍ୟାୟ ବୋଲି ସେ କହିବ ।
ଦୋଷ ଦେଖାଇ ଯେବେ କେ ବଚନ କହିବ
ସେ ବିଷୟ ବିଷତୁଲ୍ୟ ତାକୁ ଦେଖାଯିବ ।
ଆଇନ କରି ତାହାର ତୁଣ୍ଡ ସିଇଁ ଦେବ
ହାତ ଗୋଡ଼ ବାନ୍ଧି ତାକୁ ଖାଲେ ପକାଇବ ।
ତେଣୁ ଡରି ଥରି ସର୍ବେ ହୋଇବେ ମଉନ
ସୁମରିବେ ଗାନ୍ଧି ଥିଲେ କହନ୍ତେ ଏମାନ ।
ନିରାଶ୍ରୟ ବେଳେ ଏକା ରକ୍ଷକ ଈଶ୍ୱର
ଡାକି ପାରିଲେ ତାହାଙ୍କୁ ଶୁଣିବେ ନିକର ।
ସକଳ ତୁମ୍ଭର ଲୀଳା ଅଟେ ବାସୁଦେବ
ଯାହାକୁ ଯେମନ୍ତ ବୁଦ୍ଧି ଦେଉଛ ହେ ଦେବ ।
ମାରିବା ତାରିବା କଥା ତୁମ୍ଭ ହାତେ ଏକା
ନୀଳଚକ୍ର ପରେ ଉଡ଼େ ଅଭୟ ପତାକା ।
ଭଣେ ଦୀନ ଜଗବନ୍ଧୁ ଆହେ ଚକ୍ରଧାରୀ
ଚକ୍ରଧରି ରିଷ୍ଟ ସବୁ ଦିଅ ହେ ନିବାରି । ୨୧୮

ଇତି ଶ୍ରୀ ଭାରତ-ଚରିତାମୃତେ ମହାମାନବ ଗାନ୍ଧିଜୀଙ୍କ ମହାପ୍ରୟାଣ ଯାତ୍ରା
ବର୍ଣ୍ଣନେ ଏକଶତ ଅଷ୍ଟବିଂଶ ଅଧ୍ୟାୟଃ ।

ସ ମା ପ୍ତ

